ଊନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ

# ଶ୍ରୀମନ୍ଦିର ଓ ଅନ୍ୟାନ୍ୟ ମନ୍ଦିର



ଇଂ. ଗୋବର୍ଦ୍ଧନ ଦୋରା

ଊନବିଂଶ ଶତାବ୍ଦୀର ଖବରକାଗଜ ପୃଷ୍ଠାରୁ...

# ଶ୍ରୀମନ୍ଦିର
# ଓ ଅନ୍ୟାନ୍ୟ ମନ୍ଦିର

ସଂକଳନ
ଇଂ ଗୋବର୍ଦ୍ଧନ ଦୋରା

**ଶ୍ରୀମନ୍ଦିର ଓ ଅନ୍ୟାନ୍ୟ ମନ୍ଦିର**

**ସଂକଳନ**

ଇଂ ଗୋବର୍ଦ୍ଧନ ଦୋରା

**ପ୍ରକାଶକ:** ଲାବଣ୍ୟବତୀ ଦୋରା
ଏଲ୍-୧୮୪, ଫକୀରମୋହନ ନଗର,
ବରମୁଣ୍ଡା ହାଉସିଂ ବୋର୍ଡ କଲୋନି
ଭୁବନେଶ୍ୱର- ୭୫୧୦୦୩,

**ପ୍ରଥମ ସଂସ୍କରଣ:** ଜାନୁଆରି ୨୦୨୨
**ମୂଲ୍ୟ : ଟ ୫୦୦/-**

Shrimandir O Anyana Mandir

Er. Gobardhan Dora

**Publisher:** Lavanyavati Dora
L- 184, Fakirmohan Nagar,

Baramunda Housing Board Colony

Bhubaneswar- 751003

**First Edition:** January, 2022

**Price: Rs-500/-**

# ପ୍ରାଗ୍‌ଭାଷ

ଊନବିଂଶ ଶତାବ୍ଦୀର ଚତୁର୍ଥ ଭାଗରେ ଓଡ଼ିଶାରେ ପ୍ରକାଶ ପାଇଲା କିଛି ଖବର କାଗଜ। ଯଥା- ଉତ୍କଳ ଦୀପିକା, ସମ୍ବଲପୁର ହିତୈଷିଣୀ, ବାଲେଶ୍ୱର ସମ୍ବାଦ ବାହିକା ଇତ୍ୟାଦି। ଯାହା ଫଳରେ ଲୋକମାନଙ୍କ ନଜରକୁ ଆସିଲା ଓଡ଼ିଶା ତଥା ଓଡ଼ିଶା ବାହାରର ଅନେକ କିଛି ଖବର। ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ସେବା ପୂଜା, ରଥଯାତ୍ରାର ବିବରଣୀ, ପୁରୀ ରାଜାଙ୍କ ମନ୍ଦିର ପରିଚାଳନା ଇତ୍ୟାଦି ସମ୍ବାଦ ଖବର କାଗଜରେ ବାହାରିବାରୁ ଜନସାଧାରଣ ସେମାନଙ୍କର ପରିଚାଳଣା ସମ୍ବନ୍ଧୀୟ ମନ୍ତବ୍ୟ ମଧ୍ୟ ପ୍ରକାଶ କଲେ। ହାତରେ ଭଲ ପଇସାପତ୍ର ନଥିଲେ ମଧ୍ୟ ଧାର ଉଦ୍ଧାର କରି ଯାତ୍ରୀମାନେ ଚାଲିଚାଲି, ଡଙ୍ଗାରେ ନଈ ପାର ହୋଇ ପୁରୁଷୋତ୍ତମ ଆସୁଥିଲେ। ପୁରୀରେ ମଧ୍ୟ ବିରାଟ ଅବ୍ୟବସ୍ଥା, ରହିବାକୁ ଘର ନାହିଁ। ବାହାରେ ଶୌଚକ୍ରିୟା କଲେ ପୁଲିସ କେସ୍ ଦେବ। ମନ୍ଦିରରେ ବିଶୃଙ୍ଖଳା ହେତୁ ଭୋଗ ଦିନ ଦିନ ଧରି ବନ୍ଦ ହେଲେ ଯାତ୍ରୀ ଉପାସ। ହଇଜା ପ୍ରାୟ ସବୁବେଳେ ଲାଗୁଥିଲା। ସେଥିରେ ଅନେକଙ୍କର ପ୍ରାଣହାନୀ ହେଉଥିଲେ ମଧ୍ୟ ଯାତ୍ରୀ ଆସିବା କମୁ ନଥିଲା। ହଇଜା ପ୍ରବଳ ହେଲେ ରୋଗର ଉପଶମ ପାଇଁ ସୁଦର୍ଶନ ଚକ୍ର ନେଇ ସହରର ସାହି ସାହି ବୁଲା ଯାଉଥିଲା। ରଥଯାତ୍ରାରେ ଯାଇ ଠାକୁର ବର୍ତ୍ତମାନ ପରି ନିର୍ଦ୍ଦିଷ୍ଟ ଦିନରେ ଆସିବା ସମ୍ଭବ ହେଉ ନଥିଲା। ଅନେକ ଦିନ ଲାଗି ଯାଉଥିଲା। ବେଳେବେଳେ ଠାକୁର ରଥରେ ରହିବାରୁ ଚିତାଲାଗି ଅମାବାସ୍ୟାରେ ଦିଅଁମାନେ ଚିତାଲାଗି ହୋଇ ପାରୁ ନଥିଲେ।

ଶତାବ୍ଦୀର ଶେଷ ଦଶକରେ ଶ୍ରୀମନ୍ଦିର ଏବଂ ବେଢ଼ାରେ ଥିବା ଅନ୍ୟ ମନ୍ଦିରଗୁଡ଼ିକର ଜିନ୍ନ ସଂସ୍କାର ହୋଇଥିଲା। ସେଥିପାଇଁ ଉତ୍ସାହୀ ବ୍ୟକ୍ତିମାନେ ଭାରତର ବିଭିନ୍ନ ପ୍ରାନ୍ତକୁ ଲେଖା ପଠାଇ ଯାହା କିଛି ଅର୍ଥ ଆଦାୟ କରିଥିଲେ ସେଥିରେ ବହୁତ କିଛି ସଂସ୍କାର ହୋଇଥିଲା। ଅବସ୍ଥା ଏପରି ହୋଇଥିଲା ଯେ ମୁନିସିପାଲିଟି କର୍ତ୍ତୃପକ୍ଷ ଯାତ୍ରୀମାନଙ୍କୁ ମନ୍ଦିର ପ୍ରବେଶକୁ ମନା କରିଥିଲେ। ଏହି ସମୟରେ ହୋଇଥିଲା ନୂଆ ନୀଳଚକ୍ର ବସାଣ, ଅଁଳା ବେଢ଼ାର ମରାମତି, କାନ୍ଥ ପଲସ୍ତରା ଇତ୍ୟାଦି। ପୁରୀ ମନ୍ଦିରର ରତ୍ନଭଣ୍ଡାର ଖୋଲାଯାଇ ସବୁ ଜିନିଷର ଏକ ତାଲିକା ପ୍ରସ୍ତୁତ କରାଯାଇଥିଲା ଏବଂ ନଷ୍ଟ ହେଇଥିବା ଜିନିଷଗୁଡ଼ିକୁ ବାହାର କରାଯାଇଥିଲା। ଯାତ୍ରୀମାନଙ୍କୁ ରହିବା ପାଇଁ ଏହି ସମୟରେ କହ୍ନେୟାଲାଲ ବୋଗଲାଙ୍କ ବାଦାନ୍ୟତାରେ ଏକ ଧର୍ମଶାଳା ନିର୍ମିତ ହୋଇଥିଲା।

ରାୟ ଶ୍ରୀ ରାଜକିଶୋର ଦାସ ବାହାଦୂର ପୁରୀ ମନ୍ଦିରର ମ୍ୟାନେଜର ଥିଲା ବେଳେ ପୁରୀ ମନ୍ଦିର ଏବଂ ରଥଯାତ୍ରାରେ ବହୁତ କିଛି ଉନ୍ନତି କରିଥିଲେ। ତାଙ୍କରି ସମୟରେ ବର୍ତ୍ତମାନ ପରି ରଥ ଠିକ୍ ସମୟରେ ପହଞ୍ଚୁ ଥିଲା ଏବଂ ଫେରୁଥିଲା। ଏହି ସମୟରେ (୧୯୦୬) ହୋଇଥିଲା ଠାକୁରଙ୍କର ରଘୁନାଥ ବେଶ। ସେ ୧୯୦୫ ମସିହାରେ ପ୍ରଥମ ଥର ପାଇଁ ଶ୍ରୀମନ୍ଦିରରେ ବିଦ୍ୟୁତ୍ ତାର ବିଛାଇ ଥିଲେ। ମାତ୍ର ଜଣେ ସେବକଙ୍କୁ ଠାକୁର ସ୍ୱପ୍ନାଦେଶ ଦେଲ- "ମୁଁ ତିନିଦିନ ହେଲା କି ବିଜୁଳୀବତି ପ୍ରବେଶ କରିବା ଦିନଠାରୁ ମୁଁ କିଛି ମାତ୍ର ଭୋଜନ କରି ନାହିଁ। ଶୀଘ୍ର ଉକ୍ତ ବତି ବାହାର କରି ନଦେଲେ ଘୋର ଅନିଷ୍ଟ ହେବ।" ପ୍ରବଳ ବିରୋଧ ହେବାରୁ ମ୍ୟାନେଜର ତାର ଉଠାଇ ଆଣିଲେ।

ଭୁବନେଶ୍ୱର ଉନବିଂଶ ଶତାବ୍ଦୀରେ ଥିଲା ଅଗମ୍ୟ। ରେଳଗାଡ଼ି ସେତେବେଳକୁ ଆରମ୍ଭ ହୋଇ ନଥିଲା। ଖାଲି ଥିଲା ଶ୍ୱାପଦ ସଂକୁଳ ଚଲାରାସ୍ତା। ମନ୍ଦିର ପରିଚାଳନା ଜମା ଭଲ ହେଉ ନଥିଲା। ଓକିଲ ପ୍ରିୟନାଥ ଚାଟୁର୍ଯ୍ୟା ଦାୟିତ୍ୱ ନେଲା ପରେ ବହୁତ କିଛି ସଂସ୍କାର ହେଲା। ବଙ୍ଗଳାର ଛୋଟଲାଟ୍ ସାର୍ ଜନ୍ ଉଡ୍ବର୍ଣ୍ଣ ପ୍ରାଚୀନ କୀର୍ତ୍ତି ସଂରକ୍ଷଣାର୍ଥ ବାର୍ଷିକ ଟଙ୍କାରୁ କିଛି ଆର୍ଥିକ ସାହାଯ୍ୟ ମଞ୍ଜୁର କରିବାରୁ ଲିଙ୍ଗରାଜ ମନ୍ଦିର ତଥା ଅନ୍ୟାନ୍ୟ ମନ୍ଦିରର ଜୀର୍ଣ୍ଣ ସଂସ୍କାର ତ୍ୱରାନ୍ୱିତ ହେଲା। ଆଗରୁ ଲିଙ୍ଗରାଜଙ୍କ ରୁକ୍ମୁଣା ରଥ ବର୍ତ୍ତମାନ ପରି ମାଉସୀମା ମନ୍ଦିର (ରାମେଶ୍ୱର ମନ୍ଦିର) କୁ ଆସୁ ନଥିଲା। ଯାଉଥିଲା ସିଦ୍ଧେଶ୍ୱର ମନ୍ଦିର ପାଖକୁ। ଯେଉଁଠି ମରିଚକୁଣ୍ଡ ଅଛି।

କୋଣାର୍କର ନବଗ୍ରହ ଶିଳାକୁ ସରକାର ଚାହିଁଥିଲେ, କଲିକତାସ୍ଥ ଯାଦୁଘରକୁ ନେବା ପାଇଁ। ମାତ୍ର ସ୍ଥାନୀୟ ଆପତ୍ତି ଏବଂ ମହାମହୋପାଧ୍ୟୟ ଶ୍ରୀ ମହେଶ ଚନ୍ଦ୍ର ନ୍ୟାୟରତ୍ନଙ୍କ ମତ ଯୋଗୁଁ ଏହି ପ୍ରସ୍ତାବ ବନ୍ଦ ହେଲା। କୋଣାର୍କ କଣ ପାଇଁ ଭଗ୍ନ, ଏ ବିଷୟରେ ଏକ ଆଲୋଚନା ଅଛି।

ଏହା ମହିମା ଧର୍ମର ପ୍ରାରମ୍ଭ ସମୟ। ଏ ଧର୍ମ ଉପରେ ବହୁତ କିଛି ସମ୍ବାଦ ପ୍ରକାଶ ପାଇଛି। ଜଣେ ଲୋକ ମହିମା ଧର୍ମ ଗ୍ରହଣ କରିଥିବାରୁ ଯେହେତୁ ସେ ପିତୃପୁରୁଷଙ୍କୁ ପିଣ୍ଡଦାନ କରିବା ପାଇଁ ଅକ୍ଷମ, ସେଥିପାଇଁ ବଡମ୍ବା ରାଜା ସାର୍ ସୁଢ଼ଳ ଦେବ ତାକୁ ପୈତୃକ ସମ୍ପତ୍ତିରୁ

ବେଦଖଲ କରିଥିଲେ।

ଉତ୍କଳ ଦୀପିକାରୁ ଡି.ଟି.ପି. କଲାବେଳେ ଅନେକଅଂଶ ଭଲ ନ ଦିଶିବାରୁ କିଛି ଅଂଶ ଶୂନ୍ୟ ରହି ଅଛି। ସଂସ୍କୃତ ଶ୍ଳୋକ ମଧ୍ୟ ସ୍ପଷ୍ଟ ନଥିବାରୁ ଭୁଲ୍‌ଭଟକା ଥାଇପାରେ।

ସେ ସମୟର ଲେଖାରେ ପୂର୍ଣ୍ଣଚ୍ଛେଦର ବହୁଳ ବ୍ୟବହାର ନାହିଁ। ଦୀର୍ଘ ଇ କାର, ଦୀର୍ଘ ଉ କାର ଏବଂ ବିଭିନ୍ନ ପ୍ରକାର 'ସ' ଗୁଡ଼ିକ ଯେପରି ଭାବରେ ବ୍ୟବହାର ଥିଲା, ତାହାକୁ ଆମେ ଅବିକଳ ଭାବେ ସ୍ଥାନିତ କରିଛୁ।

ପରିଶେଷରେ 'ସୃଜନିକା'ର ସଂଚାଳକ ଶ୍ରୀଯୁକ୍ତ ଡକ୍ଟର ନୀଖିଳ ମୋହନ ପଟ୍ଟନାୟକ ଏବଂ ଶ୍ରୀମତୀ ପୁଷ୍ପଶ୍ରୀ ପଟ୍ଟନାୟକଙ୍କୁ ମୋର ଆନ୍ତରିକ ଧନ୍ୟବାଦ। ସବୁ ଖବରକାଗଜର ସିଡି ତାଙ୍କଠାରୁ ପାଇଥିବାରୁ ଏ ସଂକଳନ ସମ୍ଭବ ହୋଇପାରିଲା। ଏହି ଦମ୍ପତି ନିରବଚ୍ଛିନ୍ନ ଭାବରେ ପୁରୁଣା ଓଡ଼ିଆ ଖବର କାଗଜ, ପତ୍ରପତ୍ରିକା ଓ ପୁସ୍ତକଗୁଡ଼ିକୁ ଇଣ୍ଟରନେଟ୍‌ରେ ରଖିବାକୁ ପ୍ରସ୍ତୁତି ଚଳାଇ ଅଛନ୍ତି।

**- ଗୋବର୍ଦ୍ଧନ ଦୋରା**

# ସୂଚିପତ୍ର

## ଶ୍ରୀମନ୍ଦିର

# ଶ୍ରୀଗୁଣ୍ଡିଚା ଯାତ୍ରା

## ରଥଯାତ୍ରା

ଆମ୍ଭେମାନେ ଆନନ୍ଦସହିତ ପାଠକମାନଙ୍କୁ ଜଣାଉଅଛୁଁ ଯେ ଏ ବର୍ଷ ପୁରୁଷୋତ୍ତମର ରଥଯାତ୍ରାପର୍ବ ବଡ଼ ସୁନ୍ଦରରୂପେ ନିର୍ବାହ ହେଲା। କୌଣସି ପ୍ରକାର ଉତ୍ପାତ କି ଦୁର୍ଘଟନା ହୋଇ ନାହିଁ ଶ୍ରୀ ଜଗନ୍ନାଥ ମହାପ୍ରଭୁ ରଥରେ ବିଜେ କରି ଅବିଶ୍ରାନ୍ତରୂପେ ବେଗାବେଗ ଗୁଣ୍ଡିଚା ଘରକୁ ଗମନ କରିଅଛନ୍ତି ଏମନ୍ତକି ଠିକ ତିନିଦିନରେ ସେଠାରେ ତିନରଥଯାକ ପ୍ରବେଶ ହେଲା ଯାତ୍ରିଙ୍କ ସଂଖ୍ୟା ଏ ବର୍ଷ ଅତ୍ୟଳ୍ପମାତ୍ର କହିବାକୁ ହେବ କାରଣ ଅନୁମାନିକ ସଂଖ୍ୟା ୬୦୦୦ ଯାତ୍ରିଠାରୁ ଅଧିକ ନୁହଇ। ଯାତ୍ରୀ ଏଡ଼େ ଊଣା ପଡ଼ିବାର ଏହି କାରଣ ମନୋନୀତ ହୁଅଇ ଯେ ଗତବର୍ଷ ନଦୀବଢ଼ି ଓ ବର୍ଷାରେ ଏମାନଙ୍କର ଅତ୍ୟନ୍ତ କ୍ଳେଶ ହୋଇଥିଲା ଓ କେତେକ ଲୋକ ନଦୀରେ ଭାସି ମରିଗଲେ ଏ ବର୍ଷ ପୁଣି ରଥଯାତ୍ରା ଘୋରବୃଷ୍ଟି କାଳରେ ପଡ଼ିବାରୁ ଲୋକେ ମନେକଲେ ଯେ ଏବର୍ଷ ଗତ ବର୍ଷାପେକ୍ଷା ଅଧିକକ୍ଳେଶ ହେବ ଏଣୁ ଭୟରେ ବହୁତ ଯାତ୍ରୀ ଆସି ନାହାନ୍ତି। ସେ ଯାହା ହେଉ ଯେଉଁମାନେ ଆସିଥିଲେ ତାହାଙ୍କର କୌଣସି ଦୁଃଖ ହୋଇ ନାହିଁ ଓଲାଉଠା ରୋଗ କି ଯାହାକୁ ଯାତ୍ରିଙ୍କର ସଙ୍ଗୀ କହିବାକୁ ହେବ ଏ ବର୍ଷ ତାଦୃଶ ପ୍ରତାପ ପ୍ରକାଶ କରି ନାହିଁ। ମାତ୍ର କେତେମାସ ହେବ ଏ ରୋଗ ପୁରୁଷୋତ୍ତମ ଜିଲ୍ଲାର ନାନାଭାଗରେ ପ୍ରଚାର ଥିବାର ସାଧାରଣରୂପେ ଅନୁଭବ ହୋଇ ଅଛି। ଆମ୍ଭେମାନେ ବୁଝିଅଛୁଁ ଯେ ଚଳିତମାସ ଆରମ୍ଭରୁ ପ୍ରାୟ ୭୦ ଜଣ ଲୋକ ଏ ରୋଗରେ ଆକ୍ରାନ୍ତ ହୋଇଥିଲେ ଏଥିମଧ୍ୟରୁ କେବଳ ୧୫/୨୦ ଜଣ ଯାତ୍ରୀ ଅବଶିଷ୍ଟ ନଗରବାସୀ ଅଟନ୍ତି ଏଥିରୁ ଜଣାଯାଏ ଯେ ଯାତ୍ରୀଙ୍କଠାରୁ ଏ ରୋଗ ଜାତ ହୋଇନାହିଁ।

ଯାତ୍ରିଙ୍କ ସଂଖ୍ୟା ଅଳ୍ପ ହେବାରୁ ସ୍ୱାସ୍ଥ୍ୟରକ୍ଷା ଉପଲକ୍ଷରେ କୌଣସି ବିଶେଷ ଉପାୟ କରିବାର ଆବଶ୍ୟକ ନ ହେଲା ସୁତରାଂ ସ୍ଥାନୀୟ କର୍ମଚାରିମାନେ କେବଳ କେତୋଟା ସାଧାରଣ ଟାଟି ନିର୍ମାଣ କରି ନିଶ୍ଚିନ୍ତ ରହିଲେ ଆଉ କିଛି କରିବାର ପ୍ରୟୋଜନ ନ ହେଲା।

ଏ ପ୍ରସ୍ତାବ ଲେଖାହେଲା ଉତ୍ତାରୁ ସଂବାଦ ପାଇଲୁଁ ଯେ ବାହୁଡ଼ାଦଶମୀ ଦିନ ଅପରାହ୍ନ ସମୟରେ ଗୁଣ୍ଡିଚାମଣ୍ଡପଠାରେ ଗୋଟିଏ ଅତି ଦୁଃଖଜନକ ବ୍ୟାପାର ଘଟିଥିଲା। ମନ୍ଦିର ଦ୍ୱାର ଫିଟିବାରେ ବିଳମ୍ବ ହେବାରୁ ଯାତ୍ରିମାନେ ଉତ୍କଣ୍ଠିତ ଥିଲେ ସୁତରାଂ ଦ୍ୱାର ଫିଟିଲାକ୍ଷଣି ଭାରି ଭିଡ଼ ହେଲା ଓ ରଥର ଦୌଡ଼ୀସବୁ ଯେଉଁଠାରେ ଥୁଆ ହୋଇଥିଲା ସେଠାରେ ଲୋକ ଠେଲାଠେଲି ହେବାରୁ ପ୍ରାୟ ୧୦୫ ଲୋକ ପଡ଼ିଯାଇ କିଏ କାହାକୁ ମାଡ଼ି ଦଳିଦେଲା ଭାରି ଆଘାତ ପାଇ ଅନେକ ଲୋକ ଅଚେତନରେ ପଡ଼ିରହିଲେ ଓ ତଦୁତ୍ତାରୁ ଏହାଙ୍କୁ ସାଷ୍ଟାଙ୍ଗ କରିବାରେ ଚେତନା ପାଇ ଯେ ଯାହାସ୍ଥାନକୁ ଚାଲିଗଲେ ଦୁଇ ଲୋକର ପ୍ରାଣ ତ୍ୟାଗହେଲା ଓ ଆଉ ଜ୭ଣ ମଧ୍ୟରୁ ସେରାତ୍ରରେ ଫେର ଦୁଇଲୋକ ମରିଗଲେ ଓ ଆଉ ଚାରି ପାଞ୍ଚଲୋକର ପ୍ରାଣର ଭରସା

ନାହିଁ ଶୁଣିଲୁଁ ଯେ ଏସମୟରେ ରାଜାର ଲୋକ କିମ୍ବା ପୁଲିସ କେହି ଉପସ୍ଥିତ ନ ଥିଲେ। ଆଉ ବିବରଣମାନ ଆଗାମି ସପ୍ତାହରେ ଲେଖିବୁଁ।

*ଉତ୍କଳ ଦୀପିକା-୧୮୬୯: ପୃଷ୍ଠା ସଂଖ୍ୟା-୧୩୧*

## ପ୍ରେରିତ ପତ୍ର

ଶ୍ରୀଯୁତ ଶ୍ରୀ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ

ଏବର୍ଷ ରଥଯାତ୍ରାରେ ବଡ଼ ଗୋଳମାନ ହେଉଅଛି। ଡାକ୍ତରସାହେବ କେବଳ ଟଙ୍କା ତଣ୍ଡେଇବାରେ ଅଛନ୍ତି। ଲୋକମାନଙ୍କର ଅସୁବିଧା ଅପଚାପର ବର୍ଷଠାରୁ ଏବର୍ଷ ଅତ୍ୟନ୍ତ ଅଧିକ ହୋଇଅଛି। ପ୍ରତ୍ୟେକ ପ୍ରବାସିକୁ ବସାଧରିଲେ ତିନିଦିନକୁ ଏକଟଙ୍କା ଦେବାକୁ ପଡୁଅଛି। ତଦଧିକ ରଥଯାତ୍ରାମଧ୍ୟରେ ଟ୧ଙ୍କା ଆଠଅଣା ଓ ଟ୨ଙ୍କା ଏପରି ଦର ଜଣପ୍ରତି ପଡୁଅଛି। ଉତ୍କଳବାସିମାନେ ଚୁଡ଼ା ଚାଉଳ ଓ ଆଠଅଣା କି ବାରଅଣା ଲେଖାଏଁ ପଇସାଘେନି ଜଗନ୍ନାଥଙ୍କ ଦର୍ଶନକୁ ଆସନ୍ତି ସେମାନେ ଏତେ ଭଡ଼ା କିପରି ଦେଇପାରିବେ। ଅଥବା ବିଦେଶରେ କାହୁଁ ଦେବେ। ଅତଏବ ସହସ୍ର ସହସ୍ର ଲୋକ ବଡ଼ଦାଣ୍ଡରେ ଓ ସଡ଼କରେ ପଡ଼ିଥିଲେ। ଇନ୍ଦ୍ରଙ୍କ କୃପାରୁ ସେମାନେ ଆପଣାର କନାପଟାଘେନି ଓଳୀରେ ଆଉଜୁଅଛନ୍ତି। ଘରବାଲା ଓ ଦୋକାନିମାନେ ବାଡ଼ି ଘେନି ପିଟିବାରେ ତୃଟି କରୁ ନାହାନ୍ତି। କେହି କେହି ସମ୍ପ୍ରଦାୟ ୨୫/୩୦ ଜଣ ଏକତ୍ର ହୋଇ ବୋକଚା ପିଠିରେ ତାଳପତ୍ର ଛତା କାନ୍ଧରେ ଘେନି ଚୀନଦେଶୀୟ କର୍ମକାରକଙ୍କ ପ୍ରାୟ ସବୁଗଳିରେ ଦଉଡ଼ି ବୁଲୁଅଛନ୍ତି। ଧର୍ମଶାଳା ଜନକୀର୍ଣ୍ଣ ହୋଇଅଛି। ମୟଳାଗାଡ଼ି ସଂଖ୍ୟା ବୃଦ୍ଧି ହେବାର ଦେଖାଯାଉ ନାହିଁ। ଏଥିଉତ୍ତାରୁ ଦେଉଳର ଚାରିଦ୍ୱାର ବନ୍ଦଥାଏ ଯେ ବେଢ଼ା ମଧ୍ୟକୁ ସୁଦ୍ଧା ଲୋକେ ପ୍ରବେଶ କରି ପାରି ନାହାନ୍ତି। ଚକାଡ଼ୋଳାଙ୍କ ଦର୍ଶନ ହେଲେ ଭଲ ଦୁଃଖ ହରନ୍ତା କିନ୍ତୁ ତାହା ସୁଦୂରପରାହତ। ଜଗନ୍ନାଥଙ୍କ ଭୋଗରାଗର ବ୍ୟାଘାତ ହେବବୋଲି କେବଳ ଦେଉଳରେ ଯାତ୍ରୀ ପ୍ରବେଶ ନ କରନ୍ତେ କିନ୍ତୁ ବେଢ଼ାମଧ୍ୟକୁ ଯିବାର କି ଆପତ୍ତି ଥିଲା? କେବଳ ଦୋପଟି ଓ ବଡ଼ ବଡ଼ ଲୋକଙ୍କ ସ୍ତ୍ରୀମାନେ ଏବଂ ରାଜାଙ୍କର ଆଶ୍ରିତ ବ୍ୟକ୍ତିମାନେ ଦର୍ଶନ ପାଉଅଛନ୍ତି ଦରିଦ୍ରମାନଙ୍କ ଦଶା ମୁକ୍ତ ନୋହିବ ବୋଲି ତାଙ୍କୁ ଦର୍ଶନ ଦେବାରେ ଜଗନ୍ନାଥେ ବନ୍ଧ ପକାଉଅଛନ୍ତି। କି ଅନ୍ୟାୟ ଧିକ୍ ଦୈବ, ଧିକ୍ ଦେଶ, ଧିକ୍ ରାଜା, ସାଧାରଣର ଦର୍ଶନୀୟ ଦ୍ରବ୍ୟରେ ଏତେ ଓଢ଼ଣା କିପାଇଁ ପଡୁଅଛି? ସମ୍ପାଦକ ମହାଶୟ ଆପଣ ଅବଗତ ଥିବେ ଯେ ବୃନ୍ଦାବନରେ ଗୋବିନ୍ଦଜୀଙ୍କ ମନ୍ଦୀରରେ ଏହି ପ୍ରକାରରେ ପୂର୍ବେ ସମସ୍ତଙ୍କୁ ଦର୍ଶନ କରାଇ ଦେଉ ନ ଥିଲେ କିନ୍ତୁ କୌଣସି ଭଦ୍ରଲୋକ ଶ୍ରୀଯୁତ ଶ୍ରୀ ଲେଫ୍ଟେନେଣ୍ଟ ଗବର୍ଣ୍ଣରଙ୍କଠାରେ ଆବେଦନ କରିବାର ସେ ଉକ୍ତ ପ୍ରଥାକୁ ରହିତ କଲେ ଅତଏବ ଆମ୍ଭର ପ୍ରତ୍ୟାଶା ଯେ କୌଣସି ଉତ୍କଳୀୟ ମହତ୍ ଲୋକ ଏତଦ୍‌ବିଷୟରେ ଯତ୍ନକଲେ ଅବଶ୍ୟ ସିଦ୍ଧି ହୋଇପାରେ ଏବର୍ଷ ରଥଦିନ ସର୍ବସୁଦ୍ଧା ଜ୩୦୦୦୦ଣ ଯାତ୍ରୀ ହେବେ।

*ଉତ୍କଳ ଦୀପିକା-୧୮୭୧: ପୃଷ୍ଠା ସଂଖ୍ୟା-୧୦୬*

# ରଥଯାତ୍ରା

ପୁତ୍ରରୁ ଓ ଯାତ୍ରିମାନଙ୍କଠାରୁ ଅବଗତ ହେଲୁଁ ଯେ, ଏବର୍ଷ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀଶ୍ରୀ ଜଗନ୍ନାଥ ଦେବଙ୍କ ରଥଯାତ୍ରା ସୁଚାରୁ ରୂପେ ନିର୍ବାହିତ ହୋଇ ଯାଇଅଛି। ତତ୍ରତ୍ୟ ମାଜିଷ୍ଟେଟ ଶ୍ରୀଯୁକ୍ତ ଅର୍ମଷ୍ଟଂସାହେବଙ୍କ ସୁବନ୍ଦୋବସ୍ତରୁ କୌଣସି ବିଶେଷ ଗୋଳମାଳ ଘଟି ନାହିଁ, ଯାତ୍ରିମାନେ ମଧ୍ୟ ଉତ୍ତମ ରୂପେ ଦର୍ଶନ ପାଇଅଛନ୍ତି। ଯାତ୍ରିମାନଙ୍କ ନିମନ୍ତେ ନୂଆ ଟେକସ ଆଇନ ଯାରୀ ହେବା ଦିନଠାରୁ ଆଜକୁ ୩ ବର୍ଷ ହେଲା ବସାଘର ସକାଶେ ଯାତ୍ରିମାନଙ୍କର ଯେଉଁ କଷ୍ଟ ହୋଇ ଆସିଅଛି ଏବର୍ଷରେ ମଧ୍ୟ ସେହିରୂପ କଷ୍ଟ ହୋଇଅଛି।

ଏବର୍ଷ ଯାତ୍ରିଙ୍କ ସଂଖ୍ୟା ଅନ୍ଦାଜ ୬୦ ହଜାର ସରିକ ହୋଇଥିଲା। ନୂଆ କଳେବର ହେତୁରୁ ଏବର୍ଷରେ ଯାତ୍ରିଙ୍କ ସଂଖ୍ୟା ଆହୁରି ଅଧିକ ହେବାର ଆଶାଥିଲା; କିନ୍ତୁ ବଙ୍ଗଳାଦେଶରେ ଅକାଳ ପଡ଼ିଥିବାରୁ ଅଧିକ ଯାତ୍ରିଙ୍କର ସମାଗମ ହୋଇ ପାରିଲା ନାହିଁ। ଯେଉଁ ଯାତ୍ରିମାନେ ଆସିଥିଲେ ବୃଷ୍ଟି ହେତୁରୁ ସେମାନଙ୍କ ମାର୍ଗରେ କଷ୍ଟ ହୋଇଅଛି। ଏକ ଏକ ଚଟିରେ ରହିବାରସ୍ଥାନ ଅତ୍ୟନ୍ତ ଅକୁଳାଣ ହୋଇ ପଡ଼ିଲା ମଧ୍ୟ ବୃଷ୍ଟି ହେତୁରୁ ମୋଦିମାନେ ବିଲକ୍ଷଣ ଲାଭ କରିଅଛନ୍ତି। ଏ ବର୍ଷରେ ଅନେକ ବଙ୍ଗଳୀ ଯାତ୍ରୀ ଚାନ୍ଦବାଲୀ ଦେଇ ଯିବା ଆସିବା କରି ଅଛନ୍ତି; କେତେକ ଯାତ୍ରୀ ବାଲେଶ୍ୱରକୁ ଆସୁଥିବା କଳଜାହାଜରେ ଯାତାୟାତ କରିଥିଲେ।

ଏବର୍ଷ କାଠଯୋଡ଼ିରେ ଖଣ୍ଡିଏ ନୌକା ବୁଡ଼ିଯିବାରୁ କେତେକ ଜଣ ଯାତ୍ରୀ ମରା ପଡ଼ି ଅଛନ୍ତି। କେହି ୨ କହୁ ଅଛନ୍ତି ଯେ, ଚାରିଜଣ ଯାତ୍ରୀ ବୁଡ଼ି ମରିଅଛନ୍ତି, କେହି ୨ କହୁ ଅଛନ୍ତି ଯେ, ପାଞ୍ଚସାତଜଣ ଯାତ୍ରୀ ଓ କେତେକ ଗାଡ଼ୀ ଲୁଣ ଓ ଲୁଣର ଚଢ଼ନଦାର ସହିତ ନୌକା ବୁଡ଼ି ଯାଇଅଛି।

କେବଳ ଶ୍ରୀଜଗନ୍ନାଥଦେବଙ୍କ ଦର୍ଶନ ଉପଲକ୍ଷରେ ଅନେକ ବିଦେଶୀ ଯାତ୍ରୀ ଓଡ଼ିଶ୍ୟାକୁ ଆଗମନ କରନ୍ତି; ଏଣୁ ଏହି ଉଡିଶ୍ୟା ଦେଶ ଦରିଦ୍ର, ହେଲେହେଁ ଭାରତବର୍ଷ ମଧ୍ୟରେ ବିଖ୍ୟାତ ବୋଲି ପରିଚିତ ହୋଇ ଆସୁଅଛି। ମଧ୍ୟ ବିଦେଶୀଙ୍କ ଆଗମନରେ ଉଡିଶ୍ୟାର ବିଶେଷ ଉପକାର ବିନା କିଛିମାତ୍ର ଅପକାର ହେଉ ନାହିଁ। ସେମାନଙ୍କ ଯାତାୟାତ ପକ୍ଷରେ ରାସ୍ତା ଯେରୂପ ଉତ୍ତମ ହୋଇଅଛି; କିନ୍ତୁ ସେମାନଙ୍କ ରହିବାର ସ୍ଥାନ ଓ ଖାଦ୍ୟ ବସ୍ତୁର ବନ୍ଦୋବସ୍ତ ସେ ପ୍ରକାର ଉତ୍ତମ ହୋଇ ନାହିଁ। ଏ ବିଷୟରେ ସରକାର ବାହାଦୁର ଆହୁରି ସୁବନ୍ଦୋବସ୍ତ ନ କଲେ ଯାତ୍ରୀମାନଙ୍କର କଷ୍ଟଣ ଫେଡିବ ନାହିଁ। ମୋଦିମାନେ କେବଳ ପଇସା ପଇସା ବୋଲି ଯାତ୍ରିଙ୍କ ବେକ ମୋଡନ୍ତି, ପଣ୍ଡାମାନେ ମଧ୍ୟ ତଦ୍ରୂପ। ଯେପର୍ଯ୍ୟନ୍ତ ମୋଦି ଓ ପଣ୍ଡାମାନେ ଯାତ୍ରିଙ୍କର ମଙ୍ଗଳ ଚେଷ୍ଟା ନ କରିବେ ସେପର୍ଯ୍ୟନ୍ତ ସେମାନଙ୍କର କଷ୍ଟ ରହିଥିବ।

କଟକ ଓ ପୁରୀ ଜିଲ୍ଲାରେ ଜଗନ୍ନାଥ ସଡ଼କରେ ପେଟ୍‌ରୋଲ ଗସ୍ତ ହୋଇ ଅଛି କିନା ଆମ୍ଭେମାନେ କହି ନ ପାରୁଁ। କିନ୍ତୁ ବାଲେଶ୍ୱର ଜିଲାର ସୀମାରେ ପୂର୍ବତନ ଡିଷ୍ଟ୍ରିକ୍‌ଟ ସୁପରିଣ୍ଟେଣ୍ଡେଣ୍ଟ ଶ୍ରଦ୍ଧାସ୍ପଦ ବାବୁ ଜଗଦୀଶନାଥ ରାୟ ପେଟ୍ରୋଲ ଗସ୍ତର ସୃଷ୍ଟି କରି ସ୍ୱଦେଶୀ ବିଶେଷତଃ ଯାତ୍ରିମାନଙ୍କ ପକ୍ଷରେ ମହୋପକାର ସାଧନ କରି ଅଛନ୍ତି। ସରକାର ବାହାଦୂର ମୋଦିମାନଙ୍କ ପକ୍ଷରେ ସେହିରୂପ କୌଣସି ନିୟମ କିମ୍ବା ତଳଲେଖିତ ନିୟମ ଜାରୀ କଲେ ଉତ୍ତମ ହେବ।

୧। ମୋଦିମାନେ ସରାଇ ଘର ଉତ୍ତମ ଓ ପରିଷ୍କାର କରି ରଖିବେ, ଯେଉଁମାନେ ତାହା ନ କରିବେ ସେମାନଙ୍କ ପ୍ରତି କୌଣସି ବ୍ୟବସ୍ଥା କରାଯାଉ।

୨। ମୋଦି ଓ ଗୁଡ଼ିଆମାନେ ଯେଉଁ ଖାଦ୍ୟଦ୍ରବ୍ୟ ବିକୁ ଅଛନ୍ତି ତାହା ପରିଷ୍କାର ଅଛି କିନା?

୩। ମୋଦିମାନେ ଚଳିତଦର ଅପେକ୍ଷା ଲୋକ ଗହଳ ହେତୁରୁ ଚଢ଼ା ଦରରେ ଯେମନ୍ତ ନ ବିକନ୍ତି।

୪। ଯେଉଁ ୨ ସ୍ଥାନ ମଜୁଲୀ ମୁଣ୍ଡ, ସେହି ୨ ସ୍ଥାନରେ ମୋଦିମାନଙ୍କୁ ଚକାରୀ ଦାନଦ୍ୱାରା ଅଧିକ ପରିମାଣ ସରାଇରେ ପ୍ରସ୍ତୁତ କରାଯାଉ ଓ ସେହି ସରାଳ ପଟିରେ ମଧ୍ୟସ୍ଥାନ ପ୍ରଶସ୍ତ ଓ ପରିଷ୍କାର ରଖାଯାଉ।

ପ୍ରତ୍ୟେକ ସରାଇରେ ପ୍ରାୟ ପୋଲୀଶ ଆଉଟ ପୋଷ୍ଟମାନ ଅଛି, ଯଦ୍ୟପି ଉକ୍ତ ବିଷୟର ତଦାରକର ଭାର ସେମାନଙ୍କ ଉପରେ ଅଛି; ତତ୍ରାଚ ବିଶେଷରୂପେ ତଦାରକ ଓ ରିପୋର୍ଟର ଭାର ସେହିମାନଙ୍କ ପ୍ରତି ଅର୍ପିତ ହେଉ।

*ବାଲେଶ୍ୱର ସମ୍ବାଦବାହିକା_୧୮୭୨: ପୃଷ୍ଠା ସଂଖ୍ୟା_୧୨୭*

## ରଥଯାତ୍ରା

ଏଥିପୂର୍ବ ସ୍ନାନଯାତ୍ରା ବିଷୟ ଲେଖିଅଛୁଁ ଓ ସେହିଦିନ ଉତ୍ତମରୁପେ କର୍ମ ନିର୍ବାହ ନ ହୋଇଥିବା ପ୍ରଯୁକ୍ତ ଶ୍ରୀଯୁକ୍ତ ଆରମଷ୍ଟ୍ରଂ ସାହେବ ରାଜାଙ୍କ ଉପରେ ଟ୧୦ଙ୍କା ଜରିମାନା କରି କହିଲେ ଯେ ଯଦି ଏହିପରି ଅସାବଧାନତା ଜଗନ୍ନାଥଙ୍କ ନିତ୍ୟାନୀଧୂପରେ କିମ୍ବା ରଥରେ କିମ୍ବା ଅନ୍ୟାନ୍ୟ ବିଷୟରେ ଦେଖାଯାଏ ତେବେ ପ୍ରତ୍ୟେକ ଦୋଷ ସକାଶେ ଆମ୍ଭେ ରାଜାଙ୍କୁ ଟ୧୦୦୦ଙ୍କାରୁ କମ ଜରିମାନା କରିବୁଁ ନାହିଁ ଓ ପ୍ରତ୍ୟହ ଯେତେବେଳେ ଯେଉଁ ନୀତି ଶେଷ ହେବ କିମ୍ବା ଯେଉଁ କର୍ମ ସମାପନ ହେବ ତହିଁର ଏତଲା ଆମ୍ଭଠାରେ ଦେବ ଏହିପରି ହୁକୁମ ଦେଇ ଦିପୋଟୀ କେଦାର ବାବୁ ଓ ଅପରାପରଙ୍କୁ ଅନୁସନ୍ଧାନ ନେବା ସକାଶେ କହିଦେଲେ। ପ୍ରତ୍ୟହ ଉପଯୁକ୍ତ ସମୟରେ ନୀତି ବଢ଼ିବାରୁ ଯାତ୍ରୀମାନେ ଓ ଅପରସାଧାରଣମାନେ ଅନାୟାସରେ ପ୍ରସାଦ ପାଇ ଅକ୍ଳେଶରେ ଆହାର କଲେ। ନବଯୌବନ ଦିନ ରାତ୍ର ଏକଘଣ୍ଟା ସମୟରେ ଦର୍ଶନ ସକାଶେ କବାଟ ଫିଟିବାର ହୁକୁମ ଦେଇ ଦିପୋଟୀ ବାବୁ କେଦାର ନାଥ ଦତ୍ତ ଓ ନନ୍ଦକିଶୋର ଦାସ ଓ କଚେରୀର ଅମଲାମାନେ ଓ ପୁଲିସ ଏମାନଙ୍କୁ ନାନାଦି ସ୍ଥାନରେ ଦେଉଳ ମଧ୍ୟରେ ରହି ଅକ୍ଳେଶରେ ଯାତ୍ରିମାନଙ୍କୁ ଦର୍ଶନ କରାଇବା ସକାଶେ ନିଯୁକ୍ତ କରିଥିଲେ। ସମସ୍ତେ ଉପସ୍ଥିତ ହୋଇ ଏକଘଣ୍ଟା ସମୟରେ ଦୁଆର ଫିଟାଇ ଉକ୍ତ ସମୟଠାରୁ ପରଦିନ ଦିବା ଘ୯ଣ୍ଟା ପର୍ଯ୍ୟନ୍ତ ପ୍ରାୟ ଏକ ଲକ୍ଷ ଲୋକଙ୍କୁ ଅକ୍ଳେଶ ଦର୍ଶନ କରାଇଲେ ଏଦିନ ପୁଲିସର କିଛି ଅତ୍ୟାଚାର ଦେଖାଯାଇ ନାହିଁ ଯେହେତୁ ହାକିମମାନେ ଓ ସରକାରୀ ଅମଲାମାନେ ଉପସ୍ଥିତ ଥିବାରୁ ସେମାନଙ୍କର ସାହାସ ହେଲା ନାହିଁ। ଗୁଣ୍ଡିଚାଦିନ ଦିବା ଅପରାହ୍ନ ଠିକ ଘ୬ଣ୍ଟା ସମୟରେ ତିନିଠାକୁର ଯାକ ରଥ ଉପରେ ପହଣ୍ଡି ବିଜେ କରି ବସିଲେ ଓ ଦର୍ଶନାକାଂକ୍ଷୀ ପ୍ରାୟ ଅଶୀ ନବେ ହଜାର ଲୋକ ଉପସ୍ଥିତ ଥିଲେ ଏଥିମଧ୍ୟରୁ ଷାଠିଏ ସତୁରୀ ହଜାର ପ୍ରାୟ

ବଙ୍ଗଦେଶୀ ଯାତ୍ରୀ ହେବେ ମାତ୍ର ଏସମସ୍ତ ଯାତ୍ରୀ ନିରାପଦରେ ଓ ଅଧିକ ନୋକଶାନ ବିନା ଦର୍ଶନ କରି ପୁରୀ ନଗରରୁ ପ୍ରତ୍ୟାଗମନ କରିଅଛନ୍ତି। ମହାପ୍ରଭୁ ରଥରେ ବସିବାପରେ ଡାକ୍ତର ସାହେବ, କିଲଟର ସାହେବ, ପୁଲିସ ସାହେବ ଓ ଆଶିଷ୍ଟାଣ୍ଟ ସାହେବ ଏ ଚାରି ସାହେବ ଲୋକାରଣ୍ୟ ମଧ୍ୟରେ ଘୋଡ଼ା ଚଢ଼ି ଆସି ପ୍ରବେଶ ହୋଇ ମହାପ୍ରଭୁଙ୍କୁ ଓ ଯାତ୍ରୀମାନଙ୍କର ଆନନ୍ଦୋତ୍ସବ ଦେଖି ଫେରି ଗଲେ। ଗୁରୁବାର ଦିନ ଗୁଣ୍ଡିଚା ହେଲା ଓ ପରେ ଶୁକ୍ର ଶନି ରବି ଏହି ତିନିଦିନ ମଧ୍ୟରେ ସାହେବଙ୍କ ତତ୍ସୃହେତୁରୁ ରଥଟଣା ହୋଇ ମହାପ୍ରଭୁ ରବିବାର ଦିନ ରାତ୍ର ଦୁଇଟା ସମୟରେ ପହଣ୍ଡି ବିଜେ କରି ଗୁଣ୍ଡିଚା ମନ୍ଦିରରେ ପ୍ରବେଶ କରିଅଛନ୍ତି। ଏ ବିଷୟରେ ଏଠାରେ ଭଦ୍ର ଓ ଅପର ସାଧାରଣ ଲୋକମାନେ ଆରମଷ୍ଟ୍ରଂ ସାହେବଙ୍କର ପ୍ରଶଂସା କରିଅଛନ୍ତି ଓ କହନ୍ତି ଯେ ପ୍ରାୟ ବ୧୫ର୍ଷ ହେଲା ଏପରି ନୀତି ଓ ଦର୍ଶନ ଓ ରଥ ଶୀଘ୍ର ଟଣା ହେବାର ଦେଖା ନ ଥିଲା ଓ ଏସନ ଆରମଷ୍ଟ୍ରଂ ସାହେବ ଆସିବାରୁ ୧୫/୨୦ ବରଷ ଗତ ବିଷୟ ଯାହା କି ଓଲକିସନ ସାହେବ ଓ ବାବୁ ନୀଳମଣି ବ୍ରହ୍ମ ଡେପୁଟୀକଲେକ୍ଟରଙ୍କ ସମୟରେ ପ୍ରଚାର ଥିଲା ତାହା ପୁନରୁତ୍ଥାପନ ହେଲା। ଯଦ୍ୟପି କି ଏଠାରେ ସମସ୍ତ ଲୋକ ଗିଡ଼ିସ ସାହେବଙ୍କ ବଦଳିରେ ନିତାନ୍ତ ଦୁଃଖ ପ୍ରକାଶ କରି ତାହାଙ୍କର ପ୍ରତ୍ୟାଗମନ ସକାଶେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରିଥିଲେ ମାତ୍ର ସେମାନେ ବର୍ତ୍ତମାନ ଚାହାନ୍ତି ଯେ ଗିଡ଼ିଶ ସାହେବ ନ ଆସି ଯଦି ଏହି ସାହେବ କିଛିଦିନ ଥାନ୍ତି ତେବେ ତାଙ୍କ ଦେଶର ଅନେକ ମଙ୍ଗଳ ହେବ। ଉପଯ୍ୟୁକ୍ତ ବିଷୟମାନଙ୍କରେ ଆମ୍ଭେମାନେ ଏଠାରେ କଲେକ୍ଟରିର ସିରସ୍ତାଦାର ବାବୁ ରାମପ୍ରସାଦ ସିଂହଙ୍କୁ ଧନ୍ୟବାଦ ନ ଦେଇ କ୍ଷାନ୍ତ ରହି ନ ପାରୁଁ ଯେହେତୁ ସେ ଅନେକ ଯତ୍ନ କରି ସାହେବଙ୍କୁ ସମସ୍ତ ବିଷୟ ଜଣାଇ ଓ କିପରି କି ହେବ ତାହା କହି ଉକ୍ତ କର୍ମ ସମାପନରେ ଯତ୍ପରୋନାସ୍ତି କ୍ଳେଶ ସ୍ୱୀକାର କରିଅଛନ୍ତି ଆମ୍ଭେମାନେ ଜିଲାର ମାଜିଷ୍ଟ୍ରେଟ ଓ ଓଡ଼ିଶା ପ୍ରଦେଶର କମିଶନର ସାହେବଙ୍କୁ ଏହି ପ୍ରାର୍ଥନା କରୁଁ ଯେ ସେମାନେ ଯଦି ଦେଉଳର ତତ୍ତ୍ୱାବଧାରଣ କର୍ମରେ ବାବୁ ରାମପ୍ରସାଦ ସିଂହଙ୍କୁ ସରକାର ତରଫରୁ ନିଯୁକ୍ତ କରନ୍ତି ଓ ରାଜାଙ୍କ ସାବକ ଚାକରମାନଙ୍କ ମଧ୍ୟରୁ ଖାରଜ ଦାଖଲ କରି ନୂତନ ଲୋକ ରଖାନ୍ତି ତେବେ ସମସ୍ତ କର୍ମ ସୁଚାରୁରୁପେ ନିର୍ବାହ ହେବ ସନ୍ଦେହ ନାହିଁ। କି ଆଶ୍ଚର୍ଯ୍ୟ ପୁରୀ ସହର ଲୋକମାନେ ତାଙ୍କ ମଧ୍ୟରୁ କେହି କୌଣସି ଦୁଷ୍କର୍ମର ଦଣ୍ଡ ପାଇବାର ଦେଖି ସୁଦ୍ଧା ସେଥିରେ କ୍ଷାନ୍ତ ରହନ୍ତି ନାହିଁ। ଖୋରଧା କାନଗୋଇ ଭାଇ କୌଣସି ସ୍ତ୍ରୀଲୋକ ଯାତ୍ରିର କୁଚମର୍ଦ୍ଦନ କରି ଦେବାରୁ ତାକୁ ଦୁଇ ମାସ ମିଆଦ ହୋଇଅଛି। ଏକ ବ୍ୟକ୍ତି ରଥ ଉପରେ ଏକ ପଶ୍ଚିମା ସ୍ତ୍ରୀଲୋକର କାନରୁ ଅଳଙ୍କାର ଦିବସରେ ଛିଣ୍ଡାଇ ନେଉଥିବାରୁ ଧରା ପଡ଼ି ଏକମାସ କଏଦ ହୋଇଅଛି। ଏହିପରି ଅନେକ।

ତା୧ ରିଖ ମାହେ ଜୁଲାଇ

ସନ ୧୮୭୩ ମସିହା

*କଶ୍ଚିଦ୍ଦର୍ଶକ*

*ଉତ୍କଳ ଦୀପିକା-୧୮୭୩: ପୃଷ୍ଠା ସଂଖ୍ୟା-୧୧୯*

ଏ ବର୍ଷ ପୁରୀର ରଥଯାତ୍ରା ଅତି ସାମାନ୍ୟରୂପେ ହୋଇଅଛି। ଯାତ୍ରୀଙ୍କ ସଂଖ୍ୟା ଅତ୍ୟନ୍ତ ଊଣା ଓ ଗୋବିନ୍ଦଦ୍ୱାଦଶୀ ସମୟରେ ଏବର୍ଷ ଅନେକ ଯାତ୍ରୀ ଆସିଥିବାରୁ ଏପରି ଘଟିଅଛି। ସ୍ନାନଯାତ୍ରା ପର୍ଯ୍ୟନ୍ତ ପ୍ରାୟ ହ୩ଜାର ଯାତ୍ରୀ ହୋଇଥିଲେ ଓ ତହିଁଉତ୍ତାରୁ ଅନୁମାନିକ ୫/୭ ହଜାର ଆସିଲେ ମୋଟରେ ଗୁଣ୍ଡିଚା ବେଳକୁ ଦଶହଜାର ଯାତ୍ରୀ ସୁଦ୍ଧା ଏକତ୍ରିତ ହୋଇ ନ ଥିଲେ। ଯାତ୍ରୀ ଅଧିକ ନ ହେବାରୁ ଘର ଭଡ଼ା ଅନେକ ଶସ୍ତା ହୋଇଥିଲା ଏମନ୍ତ କି ଗତ ବର୍ଷ ତାହା ଏକଟଙ୍କାରୁ ପାଞ୍ଚଟଙ୍କା ପର୍ଯ୍ୟନ୍ତ ହେବା ସ୍ଥଳେ ଏବର୍ଷ ଚାରିଅଣାଠାରୁ ଦୁଇଟଙ୍କା ପର୍ଯ୍ୟନ୍ତ ହୋଇଥିଲା। ସୁତରାଂ ଯାତ୍ରିଙ୍କର ସବୁ ବିଷୟରେ ସୁବିଧା ହୋଇଥିଲା ଓ ରୋଗର ପ୍ରାଦୁର୍ଭାବ ନାହିଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ। ନବଯୌବନ ଦର୍ଶନ ସକାଶେ ପ୍ରାତଃକାଳରୁ ମନ୍ଦିରର ଦ୍ୱାର ଫିଟିଲା ଓ ବାବୁ କମଳନାଥ ଘୋଷ ଦର୍ଶନ କରାଇବା ଭାର ପାଇଥିଲେ। ଦୁଇଘଣ୍ଟା ମଧ୍ୟରେ ସମସ୍ତ ଯାତ୍ରୀ ସୁଖରେ ଦର୍ଶନ କରି ଚାଲିଗଲେ। ମାତ୍ର ଗୁଣ୍ଡିଚା ଯାତ୍ରାରେ ଅତ୍ୟନ୍ତ ବିଳମ୍ବ ହୋଇଥିଲା। ରଥମାନ ନିର୍ମାଣ ହୋଇ ପୂର୍ବ ଦିନରୁ ସିଂହଦ୍ୱାରରେ ପ୍ରସ୍ତୁତ ରହିବାର ବିଧି କିନ୍ତୁ ଏବର୍ଷ ଗୁଣ୍ଡିଚା ଯାତ୍ରାଦିନ ଅପରାହ୍ନ କାଳ ପର୍ଯ୍ୟନ୍ତ ତାହା ହୋଇ ନ ଥିଲା। ରଥ ଶୀଘ୍ର ପ୍ରସ୍ତୁତ ନ ହେବାରୁ ଓ ଅନ୍ୟାନ୍ୟ କାରଣରୁ ମହାପ୍ରଭୁମାନେ ରଥକୁ ବିଜେ ହେଉ ୨ ପ୍ରାୟ ରାତ୍ର ଶେଷ ହୋଇଗଲା। ଏ ବିଷୟରେ ଯେତେ ବିଶୃଙ୍ଖଳା ଘଟିଅଛି ସେ ସମସ୍ତ ମହାରାଜାଙ୍କର ଅଥବା ତାହାଙ୍କ କର୍ମଚାରିଙ୍କର ତ୍ରୁଟିରୁ ହୋଇଅଛି ବୋଲିବାକୁ ହେବ। ପୂର୍ବରୁ ସତର୍କ ହୋଇ କାର୍ଯ୍ୟ କରିଥିଲେ ଯଥାସମୟରେ ସମସ୍ତ ବିଧି ସମ୍ପାଦିତ ହୋଇ ପାରନ୍ତା।

ତା ୧୩ରିଖ ଶୁକ୍ରବାର ଭୋର ରଥ ଟଣା ହେଲା ନାହିଁ । ଉପରଓଳି ବଳଦେବଙ୍କ ରଥଟଣା ହେବାରୁ କିଛିଦୂର ଆସି କାଶୀନାଥ ମଲ୍ଲିକ ବା ତା କୋଠା ତଳେଥିବା ଗୁଡ଼ିଆ ଓ ବଣିଆର କାହିଁ ଘରମାନ ଲାଗିବାରୁ ସେ ଦିନ ସେ ରଥ ବନ୍ଦ ହୋଇ ସୁଭଦ୍ରାଙ୍କ ରଥଟଣା ହୋଇ ମାଉସୀମା ଘର ପର୍ଯ୍ୟନ୍ତ ଚାଲିଗଲା।

ତା ୧୪ରିଖ ରବିବାର ଉପରଓଳି ଜଗନ୍ନାଥଙ୍କ ରଥଟଣା ହୋଇ ଗଣଶବୃଜ ପର୍ଯ୍ୟନ୍ତ ଗଲା ଇତି।

*ଉତ୍କଳ ଦୀପିକା-୧୮୭୭: ପୃଷ୍ଠା ସଂଖ୍ୟା-୧୨୦*

## ପୁରୀର ରଥଯାତ୍ରା

ଯଦ୍ୟପ କି ପୁରୀରାଜାଙ୍କ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ହେତୁରୁ ଶ୍ରୀଜଗନ୍ନାଥଙ୍କ ନୀତି ଓ ପର୍ବାଦିର କିଛି ବ୍ୟାଘାତ ହୋଇ ନାହିଁ ବରଂ ସର୍ବସାଧାରଣ ଏକବାକ୍ୟ ହୋଇ କହୁଅଛନ୍ତି କି ରାଜାଙ୍କର ମାତା ସ୍ୱୟଂ ମନ୍ଦିରର ସମସ୍ତ ବିଷୟରେ ତତ୍ତ୍ୱାବଧାର କରିବାରୁ ପୂର୍ବାପେକ୍ଷା ନୀତି ଭଲ ହେଉଅଛି ଓ ମନ୍ଦିରର ସମସ୍ତ କର୍ମ ଯଥା ସମୟ ଓ ନିୟମିତ ପ୍ରଥାରେ ଚାଲି ଅଛି ତଥାଚ ଅନୁମାନ ହୁଅଇ ଯେ ରାଜାଙ୍କ ଉପରେ ବିପଦ ପଡ଼ିବାରୁ ଲୋକ ଉତ୍ସାହହୀନ ହୋଇ ଅଛନ୍ତି। ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ଆଦୌ ରୀତିମତ ରଥ ନିର୍ମାଣ କରିବାର ଉଦ୍ୟମ ନ ଥିଲା। ଅନେକ ବିଳମ୍ବରେ ଏବଂ ସ୍ଥାନୀୟ ହାକିମ ଓ ଭଦ୍ର ଲୋକଙ୍କ ବିଶେଷ ଯତ୍ନରେ ରଥମାନ

ପ୍ରସ୍ତୁତ ହେଲା। ଯାତ୍ରୀ ସଂଖ୍ୟା ଅନ୍ୟାନ୍ୟ ବର୍ଷରେ ଯେତେ ହେଉଥିଲା ତହିଁର ତୃତୀୟାଂଶ ମଧ୍ୟ ଏଥର ହୋଇ ନାହିଁ। ସ୍ୱଦେଶୀ ଓ ବିଦେଶୀ ମିଶି କୋଡ଼ିଏ ହଜାର ହେବେ କି ନାହିଁ ସନ୍ଦେହ। ରଥଯାତ୍ରାରେ ଏତେ ଊଣା ଯାତ୍ରୀ ପୂର୍ବେ କେଭେ ଦେଖା ଯାଇ ଥିଲାକି ନା ମନେ ପଡୁ ନାହିଁ। ଅବଶ୍ୟ ଆଜିକାଲି ଯେପରି କାଳ ପଡ଼ିଅଛି ଏଥିରେ ଅନେକ ଲୋକ ଅଧିକ ବ୍ୟୟ ପଡ଼ିବା ଭୟରେ ଘରୁ ବାହାରିବାକୁ ସାହାସ କରି ନଥିବେ। କିନ୍ତୁ ଏହା ମଧ୍ୟ ପ୍ରସିଦ୍ଧ ଯେ ରଥଯାତ୍ରା ସମୟରେ ବଙ୍ଗଦେଶୀୟ ଯାତ୍ରୀ ଅଧିକ ହୁଅନ୍ତି ଓ ଏ ପ୍ରଦେଶରେ କୌଣସିଠାରେ ବିଶେଷ ଅନ୍ନକଷ୍ଟ ହୋଇ ନାହିଁ କିମ୍ବା ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିବାର ରଟନା ହୋଇ ନାହିଁ। ଖାଦ୍ୟ ସାମଗ୍ରିର ଭାଉ ଯେମନ୍ତ ଭାରତବର୍ଷର ପ୍ରାୟ ସର୍ବତ୍ରରେ ଉଚ୍ଚ ହୋଇଅଛି ସେହିପରି ଏଠାରେ ସୁତରାଂ ଏଥିଲାଗି ଯାତ୍ରୀ ସଂଖ୍ୟା ଏତାଦୃଶ୍ୟ ଊଣା ହେବାର ବୋଲା ଯାଇ ନ ପାରେ। ମାତ୍ର ଦୁର୍ମୂଲ୍ୟସଙ୍ଗେ ରାଜାଙ୍କର ଦୁର୍ଦ୍ଦଶାକୁ ଯୋଗ କଲେ ଯାତ୍ରୀ ଊଣା ହେବାର କାରଣ ସୁନ୍ଦରରୂପେ ଜଣା ଯାଉଅଛି। ବାସ୍ତବରେ କେତେ ଲୋକଙ୍କର ଭାବ ଏହି ଯେ ଶ୍ରୀ ଜଗନ୍ନାଥ ବର୍ତ୍ତମାନ ଶ୍ରୀକ୍ଷେତ୍ରରେ ନାହାନ୍ତି ରାଜାଙ୍କ ସଙ୍ଗେ ଯାଇ ଅଛନ୍ତି ଓ କେତେ ବିଦେଶୀୟ ଲୋକ ଏମନ୍ତ କହିବାର ଶୁଣା ଯାଇଅଛି ଯେ ରାଜା ନାହାନ୍ତି କେବଳ ଠାକୁର ଦର୍ଶନରେ ସମ୍ପୂର୍ଣ୍ଣ ଫଳ ହେବ ନାହିଁ। ରାଜା ଯେବେ କଏଦ ହୋଇ ଗଲେ ଆଉ ଠାକୁରଙ୍କ ଯାତ୍ରା କିଏ କରିବ ଏମନ୍ତ ଭାଳି କେତେଲୋକ ଆସି ନ ଥିବେ ଓ ମଧ୍ୟ କେତେ ହୁଣ୍ଡାଲୋକ ଏପରି ସୁଦ୍ଧା କହିବାର ଶୁଣି ଅଛୁଁ ଯେ ଠାକୁରତ ଆପଣା ରାଜାଙ୍କୁ ରକ୍ଷା କଲେ ନାହିଁ ତାଙ୍କୁ ଦର୍ଶନ କରି କି ହେବ ଫଳତଃ ରାଜାଙ୍କ ଦଣ୍ଡ ଲଭିବା ସଙ୍ଗେ ରଥଯାତ୍ରା ଯାତ୍ରୀ ଊଣା ହେବାର ବିଶେଷ ସମ୍ପର୍କ ଅଛି।

ଯାହା ହେଉ ରଥଯାତ୍ରାର କାର୍ଯ୍ୟମାନ ଏ ବର୍ଷ ନିର୍ବିଘ୍ନରେ ଏବଂ ଯଥା ସମୟରେ ସମ୍ପନ୍ନ ହେବାର ଶୁଣି ଆମ୍ଭେମାନେ ବଡ଼ ଆନନ୍ଦିତ ହୋଇଅଛୁଁ ଏବଂ ଏଥି ସକାଶେ ସେଠାର ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ଆର୍ମଷ୍ଟ୍ରଙ୍ଗ ସାହେବ ବିଶେଷରେ ପ୍ରଶଂସା ଭାଜନ ହୋଇଅଛନ୍ତି କାରଣ ସେ ସ୍ୱୟଂ ରଥ ପାଖରେ ଉପସ୍ଥିତ ହୋଇ ଏବଂ ଆପଣା ଡେପୁଟୀ କଲେକ୍ଟର ଓ ଅନ୍ୟ କର୍ମଚାରୀଙ୍କୁ ନିଯୁକ୍ତ କରାଇ ଏମନ୍ତ ବନ୍ଦୋବସ୍ତ କଲେ ଯେ ବେଳ ଦୁଇପ୍ରହର ସମୟରେ ଠାକୁରମାନ ରଥରେ ଆସୀନ ହେଲେ ଏବଂ ସେହିଦିନ ରଥ ଟଣା ହୋଇ ଦୁଇଦିନ ମଧ୍ୟରେ ସମସ୍ତ ରଥ ଗୁଣ୍ଡିଚା ମନ୍ଦିରରେ ପହୁଞ୍ଚି ଗଲା। କୌଣସି କାର୍ଯ୍ୟର ବିଶୃଙ୍ଖଳା ହୋଇ ନାହିଁ କିମ୍ବା କୌଣସି ଦୁର୍ଘଟନା ଘଟି ନାହିଁ। ଏହା ବୋଲି ଓଲାଉଠା ରୋଗ ଅନ୍ୟାନ୍ୟ ବର୍ଷପରି ଆପଣା ବିକ୍ରମ ଦେଖାଇବାକୁ ତ୍ରୁଟି କରି ନ ଥିଲା। ଏ ରୋଗରେ ଅନେକ ଯାତ୍ରୀ ନାଶ ହୋଇଅଛନ୍ତି ଓ ନଗରବାସିମାନେ ଏକାବେଳକେ ନିସ୍ତାର ପାଇ ନାହାନ୍ତି ତେବେ ଏହାଙ୍କ ପ୍ରତି କୋପ କିଛି ଊଣା ଥିଲା।

*ଉତ୍କଳ ଦୀପିକା-୧୮୭୮: ପୃଷ୍ଠା ସଂଖ୍ୟା-୧୩୧*

## ରଥଯାତ୍ରା

ଏଥର ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ରଥଯାତ୍ରା କାର୍ଯ୍ୟସବୁ ଅତି ଚଞ୍ଚଳ ନିର୍ବାହ ହୋଇ ଅଛି।ଚଳିତମାସ ତା୨୧ରିଖ ଶନିବାର ଶ୍ରୀଗୁଣ୍ଡିଚା ଥିଲା। ଏ ଦିନ ସକାଳ ଘ୮ଣ୍ଟା ସମୟରେ

ଖେଚଡ଼ିଭୋଗ ଶେଷ ହୋଇ ଘ୯ଣ୍ଟା ବେଳେ ପହଣ୍ଡିବିଜେ ଆରମ୍ଭ ହେଲା। ଘ୧୧ଣ୍ଟା ମଧ୍ୟରେ ତିନିଠାକୁର ଆପଣା ଆପଣା ରଥରେ ଆସୀନ ହେଲେ। ଅପରାହ୍ନ ଘ୩ଣ୍ଟା ସମୟରେ ବଳଦେବଜୀଉଙ୍କ ରଥଟଣା ଆରମ୍ଭ ହେଲା ଓ ସେହିଦିନ ସନ୍ଧ୍ୟାପର୍ଯ୍ୟନ୍ତ ବଡ଼ଠାକୁରେ ଗୁଣ୍ଡିଚା ମଣ୍ଡପଠାରେ ପହୁଞ୍ଚିଲେ।

ତା୨୨ରିଖ ରବିବାର ପ୍ରାତଃକାଳ ଘ୬ଣ୍ଟା ସମୟରେ ସୁଭଦ୍ରାଙ୍କ ରଥଟଣା ଆରମ୍ଭ ହୋଇ ଘ୧୦ଣ୍ଟା ସରିକି ରଥ ଗୁଣ୍ଡିଚାମନ୍ଦିରରେ ପ୍ରବେଶ ହେଲା।

ଏହିପରି ମାଜିଷ୍ଟ୍ରେଟ ଓ ପୁଲୀସର ଆଜ୍ଞା ଓ ସାହାଯ୍ୟରେ ଦୁଇରଥ ମାଉସିମା ଘର ବା ଅନ୍ୟତ୍ରରେ ବିଶ୍ରାମ ନ ପାଇ ଏକାଟଣାରେ ଗୁଣ୍ଡିଚାମନ୍ଦିରକୁ ଆନୀତ ହେବାରେ ଠାକୁରମାନଙ୍କୁ ଯେ ବାଧିଥିବ ଏହା ବୋଲିବା ବାହୁଲ୍ୟ। ଅନୁମାନ ହୁଅଇ ଏହା ଦେଖି ଶ୍ରୀଜଗନ୍ନାଥଙ୍କର ସୁଦ୍ଧା ଭୟ ହୋଇଥିବ ଓ ସେହି ହେତୁରୁ ହେଉ ଅଥବା ଅନ୍ୟ କାରଣରୁ ହେଉ ଉପରଓଳି ଘ୩ଣ୍ଟା ସମୟରେ ଜଗନ୍ନାଥଙ୍କ ରଥ ଟଣା ହୋଇ ଅଧେବାଟ ଯାଇ (ଅର୍ଥାତ୍ ହାସପାତାଳ ନିକଟରେ) ଚାରିଜଣ କଳାପିଠିଆଙ୍କ ଉପରେ ଚଢ଼ିଗଲା। ପୁଲୀସ ତତ୍ପର ହୋଇ ସେମାନଙ୍କୁ ସଚେତ କରାଇ ହାସପାତାଳକୁ ପଠାଇ ଦେଲେ ମାତ୍ର ସେମାନେ ଗୁରୁତର ପୀଡ଼ା ପାଇଥିବାରୁ ଦୁଇଜଣ ଏ ପର୍ଯ୍ୟନ୍ତ ବଞ୍ଚିଅଛନ୍ତି।

ରଥଟଣା ସମୟରେ କଟକର ଆଶିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ କକ୍ସସାହେବ ପୁରୀର ଇନ୍ସ୍ପେକ୍ଟର ବାବୁ ରାମ ରାଓ ଓ ତିନି ଜଣ ସବ୍ଇନ୍ସ୍ପେକ୍ଟର ଏବଂ ପ୍ରାୟ ଜ୩୦୦ଣ କନଷ୍ଟବଲ ମୁତୟନ ଥିଲେ ଓ ସେମାନେ ଯାତ୍ରିଙ୍କୁ ଅନ୍ତର ରଖିବା ଓ ଭିଡ଼ ନିବାରଣ ପକ୍ଷରେ ଯଥେଷ୍ଟ ସାବଧାନ ଥିଲେ। ତଥାପି ଏପରି ଘଟନା ହେଲା ବଡ଼ ଦୁଃଖର ବିଷୟ ଅଟଇ। ଜଣାଯାଏ ଯେ କଳାପିଠିଆମାନଙ୍କୁ ରଥଠାରୁ ଅନ୍ତର ରଖିବା ବିଷୟରେ ପୁଲୀସ ତେତେ ସତର୍କ ହୋଇ ନ ଥିଲେ କାରଣ ରଥପାଖରେ ଥିବା କଳାପିଠିଆଙ୍କ ମଧ୍ୟରୁ ଚାରିଜଣ ଉପରେ ଏ ବିପଦ ପଡ଼ିଲା ଓ ଅନୁମାନ ହୁଅଇ ଯେ ସେମାନେ ଯାତ୍ରା ଦେଖିବା ଓ ଗୀତ ଶୁଣିବାରେ ମାତି ରଥଦୌଡ଼ି ଶିଥିଳ କରି ଧରିଥିଲେ ଅଥବା ଛାଡ଼ି ଦେଇଥିଲେ ଏହି ହେତୁରୁ ଆଗବାଲାମାନେ ବଳରେ ଟାଣିବା ସମୟରେ ସେମାନଙ୍କ ଉପରେ ରଥ ଚଢ଼ିଗଲା। କେହି କେହି କହନ୍ତି କି ଅସ୍ପର୍ଶୀୟଲୋକ ଅର୍ଥାତ୍ ଇଂରାଜ ଓ ମୁସଲମାନ ରଥକୁ ଛୁଇଁବାରୁ ଏପରି ଦୁର୍ଘଟନା ହେଲା। ଯାହା ହେଉ ମାଜିଷ୍ଟ୍ରେଟୀ ତଦାରଖରେ କାହାରି ତ୍ରୁଟି ପ୍ରକାଶ ପାଇ ନାହିଁ। ମାତ୍ର ସାଧାରଣ ବିଶ୍ୱାସ ଏହି କି ପୁଲୀସ ଯେମନ୍ତ ଯାତ୍ରିଙ୍କ ରକ୍ଷା ପ୍ରତି ଦୃଷ୍ଟି ରଖିଥିଲେ ଯେବେ ତହିଁ ସଙ୍ଗେ ରଥଟାଣିବା ଲୋକଙ୍କ ରକ୍ଷାପ୍ରତି ଦୃଷ୍ଟି ରଖିଥାନ୍ତେ ତାହା ହେଲେ ଏ ଦୁର୍ଘଟନା ଘଟି ନ ଥାନ୍ତା। ହାକିମମାନଙ୍କ ତରତରିଆପଣ ମଧ୍ୟ ଏଥିର ଅନ୍ୟତର କାରଣ ଅଟଇ।

ତା୨୩ରିଖ ରବିବାର ଅପରାହ୍ନ ଘ୪ଣ୍ଟା ସମୟରେ ଜଗନ୍ନାଥଙ୍କ ରଥଟଣା ହୋଇ ବାଘଆଖଡ଼ାଠାରେ ଅଟକିଲା। ଏଦିନ ରଥରେ ପାଞ୍ଚୁଟା ଦୌଡ଼ା ଲାଗିଥିଲା ଓ ରଥ ନିକଟରୁ ପ୍ରାୟ ୧୫୦ ଫୁଟ ଅନ୍ତରରେ କଳାପିଠିଆମାନେ ଥାଇ ଟାଣିଥିଲେ ଓ ରଥ ଅତି ଧୀରେ ଧୀରେ ଚାଲି ଥିଲା।

ତା୨୪ରିଖ ମଙ୍ଗଳବାର ଅପରାହ୍ନ ଘ୪ଣ୍ଟା ସମୟରେ ସେହିପରି ଧୀରେ ଧୀରେ ରଥକୁ ଟାଣି ନେଇ ଗୁଣ୍ଡିଚାମନ୍ଦିରରେ ପହୁଞ୍ଚାଇଲେ।

ତା୨୫ରିଖ ବୁଧବାର ପ୍ରାତଃକାଳରେ ପହଣ୍ଡିବିଜେ ଆରମ୍ଭ ହେଲା ଓ ଠାକୁରମାନେ ଘ୧୦ଣ୍ଟା ସମୟରେ ସିଂହାସନରେ ବସିଲେ।

ବଡ଼ ସୁଖର ବିଷୟ ଯେ ଓଲାଉଠା ରୋଗ ଏ ବର୍ଷ ଶାନ୍ତ ଅଛି।

*ଉତ୍କଳ ଦୀପିକା-୧୮୭୯: ପୃଷ୍ଠା ସଂଖ୍ୟା-୧୧୩*

## ପୁରୀର ରଥଯାତ୍ରା

ଗତ ରଥଯାତ୍ରା ସଂକ୍ରାନ୍ତରେ ହିନ୍ଦୁପେଟ୍ରିଅଟ ପତ୍ରିକା ଯାହା ଲେଖିଥିଲେ ତାହା ପାଠକମାନଙ୍କୁ ଆମ୍ଭେମାନେ ଏଥିପୂର୍ବେ ଜଣାଇଅଛୁଁ। ସେ ଲେଖା କାର୍ଯ୍ୟରେ ଆସିଅଛି, ଆମ୍ଭମାନଙ୍କ ଲେଫ୍ଟନେଣ୍ଟ ଗବର୍ଣ୍ଣର ସାହେବ ଉକ୍ତ ପ୍ରବନ୍ଧରୁ ପୁରୀ ରଥରେ ପୁଲିସର ଆଶିଷ୍ଟାଣ୍ଟ ସାହେବମାନେ ବସିଥିବା ଓ ମୁସଲମାନ କନଷ୍ଟବଲମାନେ ରଥ ଛୁଇଁଥିବା ଓ ଠାକୁରଙ୍କ ନୀତି ସରିବା ପୂର୍ବେ ରଥ ଟଣାହେବା ଇତ୍ୟାଦି ବିଷୟ ଅବଗତ ହୋଇ ଶ୍ରୀଯୁକ୍ତ କମିଶନର ସାହେବଙ୍କ ଦ୍ୱାରା ସ୍ଥାନୀୟ କର୍ମଚାରୀଙ୍କଠାରୁ ଏଥିର କୈଫିୟତ୍ ତଲବ କଲେ। କମିଶନରସାହେବ ଗବର୍ଣ୍ଣମେଣ୍ଟଙ୍କ ଆଜ୍ଞା ପୁରୀ ମେଜଷ୍ଟରଙ୍କ ନିକଟକୁ ପଠାଇ ଦେଲେ ଓ ସେ ଆଶିଷ୍ଟାଣ୍ଟମାନଙ୍କଠାରୁଁ କୈଫିୟତ୍ ନେଇ ପଠାଇବାରୁ କମିଶ୍ନର ସାହେବ ଆପଣା ମନ୍ତବ୍ୟ ସହିତ ସେସବୁ କାଗଜ ଗବର୍ଣ୍ଣମେଣ୍ଟଙ୍କୁ ପଠାଇଅଛନ୍ତି ବା ଆଜିକାଲି ପଠାଇବେ। ଆମ୍ଭେମାନେ ଭରସାକରୁଁ ଗବର୍ଣ୍ଣର ସାହେବ ଏଥର ସୁବିଚାର କରି ବିହିତ ଆଜ୍ଞା ପ୍ରଦାନ କରିବେ। କିଏ କି କୈଫିୟତ୍ ଦେଇଅଛନ୍ତି ଏହା ଜାଣିବାକୁ ପାଠକମାନେ ଉତ୍ସୁକ ହେବେ ଅତଏବ ଆମ୍ଭେମାନେ ନାନାଦିସୂତ୍ରେ ଯାହା ଅବଗତ ହୋଇଅଛୁଁ ତାହା ନିମ୍ନେ ଲେଖୁଅଛୁଁ।

ପୁଲିସ ଆଶିଷ୍ଟାଣ୍ଟଙ୍କ ମଧ୍ୟରେ ଜଣେ କଟକର କକ୍ ସାହେବ ଓ ଅନ୍ୟ ଜଣ ପୁରୀର ରବର୍ଟ ସାହେବ। କକ୍ ସାହେବ ଦୋଷ ସ୍ୱୀକାର କରି ଲେଖିଅଛନ୍ତି ରଥ ଚକର ଅଖ ଉପରେ ପଡ଼ିଥିବା ମୋଟ କାଷ୍ଠଖଣ୍ଡ ଉପରେ ଆମ୍ଭେ ଅନେକଥର ବସିଅଛୁଁ ଓ ଥରେ ତହିଁରେ ବସି ଚାହା ପାନ କରିଅଛୁଁ। ଏହା ଆପତ୍ତିଜନକ ବୋଲି ଆମ୍ଭଙ୍କୁ ଜଣା ନ ଥିଲା କିମ୍ବା କେହି ଆମ୍ଭଙ୍କୁ ନିଷେଧ ନ କଲେ ନଚେତ୍ ଆମ୍ଭେ କଦାପି ବସି ନ ଥାନ୍ତୁ। ଥରେ ରଥରେ ବସି ଜଣେ ପ୍ରଧାନ ମହନ୍ତ ସହିତ କଥପକଥନ କରିଥିଲୁ ସେ ମଧ୍ୟ ନିଷେଧ ନ କଲେ। ମୁସଲମାନ କନଷ୍ଟବଲ ନିଯୁକ୍ତ କରିବାର ଦୋଷଯୁକ୍ତ ବୋଲି ଆମ୍ଭଙ୍କୁ ଗୋଚର ନ ଥିଲା, ତଥାଚ ଆମ୍ଭେ ସେମାନଙ୍କୁ ରଥ ପଛରେ ରଖି ହିନ୍ଦୁ କନଷ୍ଟବଲଙ୍କୁ ଆଗରେ ରଖାଇଥିଲୁଁ ନୀତି ସରିବା ପୂର୍ବେ ରଥ ଟଣା କଥା ସତ ନୁହେ, ଆମ୍ଭେ ସେବକମାନଙ୍କୁ ପଚାରି ଓ ସେମାନଙ୍କ ଉତ୍ତରରୁ ନୀତି ଶେଷହେବାର ଜ୍ଞାତହୋଇ ରଥ ଟାଣିବାର ଆଜ୍ଞା ଦେଇଅଛୁଁ। ରବର୍ଟ ସାହେବ ମଧ୍ୟ ଦୋଷ ସ୍ୱୀକାର କରି ଆପଣାର ଅଜ୍ଞାନତାକୁ ତହିଁର କାରଣ ସ୍ୱରୂପ ଦେଖାଇ ଅଛନ୍ତି। ମେଜଷ୍ଟର ସାହେବ ଲେଖନ୍ତି ଆମ୍ଭେ ଶାରୀରିକ ଅସୁସ୍ଥତା ହେତୁ ସେ ଦିନ ଯାତ୍ରାରେ ଉପସ୍ଥିତ ନ ଥିଲୁ। ତହିଁ ଆରଦିନ ଶୁଣିଲୁ ଯେ ଆଶିଷ୍ଟାଣ୍ଟମାନେ

ରଥରେ ବସିବାରୁ ହିନ୍ଦୁମାନେ ବିରକ୍ତ ହୋଇଅଛନ୍ତି। ତହିଁ ଆମ୍ଭେ ସେମାନଙ୍କ ପଚାରିବାରେ ସେମାନେ ଏ କଥା ମାନିଲେ। ମୁସଲମାନ କନଷ୍ଟବଲମାନେ କେବଳ ଯାତ୍ରିମାନଙ୍କୁ ରଥଠାରୁ ଅନ୍ତର ରଖିବାରେ ନିଯୁକ୍ତ ଥିଲେ ସେମାନେ ରଥ ଚଳାଉ ନ ଥିଲେ ଓ ସବୁ ନୀତି ଶେଷ ହେବା ଉତ୍ତାରେ ରଥ ଟଣା ହୋଇଅଛି"। କକ୍ ସାହେବ ନୂତନ ଓ ସେ ଯେପରି ମୁକ୍ତ କଣ୍ଠରେ ସବୁ କଥା ସ୍ୱଷ୍ଟ ଲେଖିଅଛନ୍ତି ଓ ଚାହା ପାନର କଥା ସ୍ୱଷ୍ଟ ଲେଖି ଅଛନ୍ତି ଓ ଚାହା ପାନର କଥା କୌଣସି ପତ୍ରିକାରେ ଉଲ୍ଲେଖ ନ ଥିଲେ ମଧ ତାହା ସେ ଆପଣା ସୁଖେ ସ୍ୱୀକାର କରିଅଛନ୍ତି ଏଥିରୁ ବୋଧ ହୁଏ ଯେ ରଥରେ ବସିବା ଦୋଷଜନକ ବୋଲି ବାସ୍ତବରେ ତାଙ୍କୁ ଜଣା ନ ଥିଲା। କିନ୍ତୁ ସେ ଜଣେ ପ୍ରଧାନ ପୁଲିସ କର୍ମଚାରୀ ଥିବାରୁ ଲୋକମାନଙ୍କର ଧର୍ମ ନୀତି ରୀତି ଇତ୍ୟାଦି କଥା ତାଙ୍କୁ ଜାଣିବାର ଉଚିତ। ଇଂରେଜମାନେ ହିନ୍ଦୁ ଦେବ ମନ୍ଦିର ମଧକୁ ଯିବାର ନିଷେଧ, ଏତକ ସେ ଅବଶ୍ୟ ଜାଣି ଥିବେ। ରଥରେ ବସିବାରେ କିଛି ଦୋଷ ଅଛି କି ନା ଏହା ବୁଝିବାର ତାଙ୍କୁ ଆବଶ୍ୟକ ଥିଲା ଓ ସେ ବୁଝିଥିଲେ ଏହା ଘଟି ନ ଥାନ୍ତା। ଏତିକିରେ ତାଙ୍କର ଦୋଷ କିନ୍ତୁ ତାଙ୍କ ଅପେକ୍ଷା ରବଟ ସାହେବଙ୍କ ଦୋଷ ଅଧିକ କାରଣ ସେ ନୂତନ ନୂହନ୍ତି ଓ ଜାଣୁ ନ ଥିବାର ସେ ଯେ ଉତ୍ତର କରନ୍ତି ଏହା ଶୁଣିବାର ଯୋଗ୍ୟ ନୁହେ। ଯାହା ହେଉ ହିନ୍ଦୁପେଟ୍ରିଅଟ ଯଥାର୍ଥ କହି ଅଛନ୍ତି ଏପରି କାର୍ଯ୍ୟରେ ଅପ୍ରବୀଣ ଯୁବା ଇଂରେଜ କର୍ମଚାରିଙ୍କୁ ନିଯୁକ୍ତ କରିବାର ଉଚିତ ନ ଥିଲା। ଆର୍ମଷ୍ଟ୍ରଙ୍ଗ ସାହେବତ ଅପ୍ରବୀଣ ନୁହନ୍ତି ସେ କାହିଁକି ସେମାନଙ୍କୁ ସବୁ କଥା ପୂର୍ବରୁ ବୁଝାଇ ନ ଦେଲେ ଓ ଉତ୍ତମ ତତ୍ତ୍ୱାବଧାରଣ ନ କଲେ ଏବଂ ସେ ଏପରି ଗୁରୁତର କଥା ଜ୍ଞାତହୋଇ କାହିଁକି ତୁନିହୋଇ ରହିଲେ।

ଉପରର ଲିଖିତ ବିଷୟରେ କମିଶନର ସାହେବ କି ମନ୍ତବ୍ୟ ପ୍ରକାଶ କରିଅଛନ୍ତି ଆମ୍ଭେମାନେ ଏ ପର୍ଯ୍ୟନ୍ତ ଜ୍ଞାତ ହୋଇ ନାହୁଁ। ବର୍ତ୍ତମାନ ସେ ମହନ୍ତଙ୍କ ପକ୍ଷରେ ବିଚାର କରିବାର ଆବଶ୍ୟକ। କକ୍ ସାହେବ ତାଙ୍କର ନାମ ନ ଲେଖି ପ୍ରଧାନ ମହନ୍ତ ବୋଲି ଲେଖନ୍ତି ଓ ତାଙ୍କ ସଙ୍ଗେ ସେ କଥୋପକଥନ କରିଥିଲେ। ଏଥିରୁ ଜଣାଯାଏ ଯେଉଁ ମହନ୍ତମାନେ ସାହେବମାନଙ୍କର ନିକଟକୁ ଗତାୟତ କରନ୍ତି ସେମାନଙ୍କ ମଧରୁ କେହି ହୋଇଥିବ। ତେବେ ସେ ସାହେବଙ୍କୁ କିଛି କହିଲେ କାଳେ ସାହେବ ମାରି ଗୋଡ଼ାଇବ ଏପରି ଅଜ୍ଞ ନ ଥାଇ ସାହେବଙ୍କ ମରଜି ଯୋଗାଇବା ଓ ଖୋସାମଦିଆ ବ୍ୟକ୍ତି ହୋଇଥିବ। ଆପଣାର ଧର୍ମନଷ୍ଟ ପଛକେ ହେଉ ସାହେବଙ୍କର ସୁମତି ଥାଉ ଓ ବିରକ୍ତି ନ ଜନ୍ମୁ ଏହି ଭଳି ଲୋକ ସେ ଅଟଇ। ନଚେତ୍ ସେ କକ୍ ସାହେବଙ୍କୁ ଅବଶ୍ୟ ନିଷେଧ କରି ଥାନ୍ତା। ହିନ୍ଦୁ ଧର୍ମ ରକ୍ଷା ପକ୍ଷରେ ଦୃଷ୍ଟି ରଖିବାର ମହନ୍ତମାନଙ୍କର ବିଶେଷ କର୍ତ୍ତବ୍ୟ ଯଦ୍ୟପି ସେମାନେ ଏଥିରେ ତ୍ରୁଟି କଲେ ଓ ଧର୍ମ ରକ୍ଷା ନିମନ୍ତେ ପଦେ କଥା କହିବାକୁ ଇଚ୍ଛା ନ କଲେ ତେବେ ଏକା ସାହେବଙ୍କୁ ଅବା କାହିଁକି ଦୋଷୀ କରିବା। ଆମ୍ଭମାନଙ୍କ ବିବେଚନାରେ ସାହେବ ଦ୍ୱୟଙ୍କ ଅପେକ୍ଷା ସେ ମହନ୍ତ ଅଧିକ ଦୋଷୀ ଅଟେ ଓ ତାକୁ ମହନ୍ତ ନ କହି ମାହୁନ୍ତ କହିଲେ ହୁଏ।

*ଉତ୍କଳ ଦୀପିକା-୧୮୭୯: ପୃଷ୍ଠା ସଂଖ୍ୟା-୧୫୬*

# ପୁରୀ ରଥଯାତ୍ରା

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଗୁଣ୍ଡିଚାଯାତ୍ରା କୌଣସି ମତେ ନିର୍ବାହ ହେଲା କିନ୍ତୁ ଦୁଃଖର ସହିତ ଅବଗତ ହେଲୁଁ ଯେ ହାକିମମାନେ ଏଥିରେ ଯଥାସାଧ ବାଧା ଦେବାକୁ ତ୍ରୁଟି କରିନାହାନ୍ତି। ଚଳିତମାସ ତା୧୪ରିଖରେ ବଳଦେବ ଜିଉଙ୍କ ରଥ ମାଉସିମାଆ ଘରଠାରେ ପହୁଞ୍ଚି ପୁଲିସ ସାହେବଙ୍କ ଆଜ୍ଞାରେ ସେହିଠାରେ ରହିଲା। ତହିଁର ଆରଦିନ ସକାଳେ ସୁଭଦ୍ରାଙ୍କ ରଥ ବଳଗଣ୍ଡିଠାରେ ପହୁଞ୍ଚିବା ମାତ୍ରକେ ପୁଲିସ ସାହବ ରଥଟଣା ବନ୍ଦ କରି ଘରକୁ ଗଲେ। ଲୋକମାନେ କଚେରୀକୁ ଯାଇ ମାଜିଷ୍ଟ୍ରେଟଙ୍କ ନିକଟରେ ଗୁହାରି କଲେ ମାତ୍ର ସାହେବ ତାହାଙ୍କ କଥା ଗ୍ରାହ୍ୟ କଲେ ନାହିଁ ସୁତରାଂ ସମସ୍ତେ ଅତ୍ୟନ୍ତ ମନସ୍ତାପରେ ଫେରି ଆସିଲେ। ଭାଗ୍ୟରୁ ଏହି ସମୟରେ ଗବର୍ଣ୍ଣମେଣ୍ଟଙ୍କ ତାରଡ଼ାକ ଆଜ୍ଞା ପ୍ରବେଶ ହେଲା। ତହୁଁ ମାଜିଷ୍ଟ୍ରେଟ ଏବଂ ପୁଲିସ ସାହେବଙ୍କର ନିଦ୍ରା ଭାଙ୍ଗିଲା ଏବଂ ସେ ସମୟରେ ଭାରୀ ବୃଷ୍ଟି ହେଉଥିଲେ ହେଁ ସାହେବମାନେ ତାହା ନ ମାନି ଘୋଡ଼ା ଚଢ଼ି ବଡ଼ଦାଣ୍ଡକୁ ଯାଇ ରଥ ଟଣାଇବା ବନ୍ଦୋବସ୍ତ କଲେ। ଜଗନ୍ନାଥଙ୍କ ରଥ ମାଉସିମାଆ ଘରଠାରେ ପହଞ୍ଚାଇ ଦେଇ ବଳଦେବ ଓ ସୁଭଦ୍ରାଙ୍କ ରଥମାନ ଗୁଣ୍ଡିଚାଘର ଦ୍ୱାରରେ ରାତ୍ର ଆଠ ଘଣ୍ଟା ବେଳେ ପହୁଞ୍ଚାଇଲେ। ରାତ୍ରରେ ମଶାଲ ଲଗାଇ ରଥଟଣା କେବେ ଦେଖାଯାଇ ନ ଥିଲା। ସାହେବଙ୍କ ହୁକୁମ ମତେ ରାଣୀ ଗୋ୫୦ଟା ମଶାଲ ଜ୍ୱଳାଇ ଦେଇଥିଲେ। ଯେଉଁ ରଥମାନ ଦିନରେ ଟାଣିବା ଏଡେ ବିପଦଜନକ ସେ ସବୁ କି ସାହାସରେ ହାକିମମାନେ ରାତ୍ରରେ ଟଣାଇଲେ ତାହା ପାଠକମାନେ ବିବେଚନା କରିବେ। ଯାହା ହେଉ ସେଦିନ କୌଣସି ଦୁର୍ଘଟନା ହୋଇ ନାହିଁ। ତହିଁ ଆରଦିନ ସକାଳୁ ରଥଟଣା ଆରମ୍ଭ ହୋଇ କେବଳ ଘ୧୧ଣ୍ଟା ସମୟରେ ଶ୍ରୀ ଜଗନ୍ନାଥଙ୍କ ରଥ ଗୁଣ୍ଡିଚାମନ୍ଦିରରେ ପହୁଞ୍ଚିଲା। ଏଦିନ ଗୁଣ୍ଡିଚାମନ୍ଦିରରେ ଠାକୁରମାନେ ପହୁଞ୍ଚି ପାରି ନ ଥିଲେ ବ୧୨ର୍ଷ ଦାଣ୍ଡରେ ରହନ୍ତେ। କୌଣସି ମତେ ତାହା ନିବାରଣ ହୋଇଅଛି। ଏବଂ ହାକିମମାନେ ଆଉ କିଞ୍ଚିତ କଷ୍ଟ ସ୍ୱୀକାର କରିଥିଲେ ରଥ ପହୁଞ୍ଚିବା ମାତ୍ରକେ ପହଣ୍ଡି ବିଜେ ହୋଇଥାନ୍ତା କିନ୍ତୁ ତାହା ନ ହୋଇ ଅପରାହ୍ନ ଘ୩ଣ୍ଟା ସମୟରେ ପହଣ୍ଡି ବିଜେ ହେଲା ଏବଂ ତଦ୍ୱାରା ନୀତିମାନ ବିଳମ୍ବରେ ହେବାରୁ ଯାତ୍ରିଙ୍କର ବିଶେଷ କଷ୍ଟ ହେଲା।

ଏହିରୂପେ ଗୁଣ୍ଡିଚାଯାତ୍ରା ନିର୍ବାହିତ ହେଲା। ଏଥର ବକ୍ତବ୍ୟ ଏହି କି ଏ ଯାତ୍ରା ନିୟମାନୁସାରେ ହେବା ପକ୍ଷରେ ଯେତେ ବ୍ୟାଘାତ ଓ ବିଳମ୍ବ ହେଲା ତହିଁର ଦାୟୀ କିଏ? ବିଚାରକ ଲୋକ ମାତ୍ରକେ ନିଶ୍ଚୟ କହିବ ଯେ ଏ ଦୋଷ ହାକିମଙ୍କର ଅଟଇ। ପ୍ରଥମେ ମାଜିଷ୍ଟ୍ରେଟ ସାହେବ ଏକାର୍ଯ୍ୟର ଗୁରୁତ୍ୱ ବୁଝି ଯଥା ସମୟରେ ତହିଁପ୍ରତି ମନୋଯୋଗୀ ହୋଇ ନାହାନ୍ତି ସେ ମନୋଯୋଗୀ ହୋଇଥିଲେ ବାରିକମାଷ୍ଟରଙ୍କ ସାର୍ଟିଫିକେଟ ଶେଷ ସମୟ ପର୍ଯ୍ୟନ୍ତ ପଡ଼ି ରହି ନ ଥାନ୍ତା ଏବଂ ଯଦ୍ୟପି ସେ ସ୍ୱୟଂ ଆସି ଖାଲି ରଥ ସିଂହଦ୍ୱାର ପର୍ଯ୍ୟନ୍ତ ଟଣା ହେବା ସମୟରେ ଦେଖି ଥାନ୍ତେ ତେବେ ରଥଗଢ଼ା କାର୍ଯ୍ୟରେ ଦୋଷ ନ ଥିବାର ବିଲକ୍ଷଣରୂପେ ଜାଣି ପାରି ଥାନ୍ତେ ଓ ପଶ୍ଚାତ୍ ବାରିକମାଷ୍ଟରୀରୁ ବାଧା ଦେବାର ଚେଷ୍ଟା ହେଲେ ମଧ ତାହା ସଫଳ ହୁଅନ୍ତା ନାହିଁ। ଦ୍ୱିତୀୟତଃ ବାରିକମାଷ୍ଟରୀ ମହକୁମାରୁ ଯଥାସମୟରେ ରଥ ଦେଖିବା ଓ ତହିଁରେ କିଛି ଦୋଷ

ଥିଲେ ତାହା ସଂଶୋଧନ କରାଇବାର ଚେଷ୍ଟା ହୋଇ ଥାନ୍ତା। ଓବରସିୟରପ୍ରତି ସଦରଅଫିସରୁ ତମ୍ବି ଥିଲେ ସେ କଦାଚ ଯାତ୍ରା ସମୟରେ ବାଧା ଦେଇ ପାରନ୍ତେ ନାହିଁ ଏବଂ ତାହାଙ୍କର ତଦାରଖ ଯେ ଅତ୍ୟନ୍ତ ଅକର୍ମଣ୍ୟ ସେ ବିଷୟରେ ଦ୍ୱିମତ ନାହିଁ କାରଣ ସ୍ୱୟଂ ରଥମାନେ ନିର୍ବିଘ୍ନରେ ଚାଲିଯିବା ଦ୍ୱାରା ତହିଁର ସାକ୍ଷ ଦେଇଅଛନ୍ତି। ଏମନ୍ତ ଗୁରୁତର କାର୍ଯ୍ୟରେ ଜଣେ ଓବରସିୟର ଉପରେ ନିର୍ଭର କରିବା ବାରିକମାଷ୍ଟର ସାହେବଙ୍କର ଉଚିତ ହୋଇନାହିଁ। ତୃତୀୟତଃ ପୁଲିସ ସାହେବଙ୍କର ଅଯଥା କର୍ତ୍ତୃତ୍ୱ କରିବାର ଉଚିତ ନ ଥିଲା। ଶାନ୍ତି ରକ୍ଷା ତାହାଙ୍କର କାର୍ଯ୍ୟ ଏଥିପାଇଁ ସେ ରଥଟଣା ସମୟରେ ଉପସ୍ଥିତ ରହନ୍ତେ ତାହାଙ୍କର ସୁବିଧା ସକାଶେ ସାଧାରଣଙ୍କର ଧର୍ମ ସମ୍ପର୍କୀୟ କାର୍ଯ୍ୟ ସ୍ଥଗିତ ରଖିବାର ଉଚିତ ହୋଇ ନାହିଁ। ଆମ୍ଭେମାନେ ଶୁଣି ଆନନ୍ଦିତ ହେଲୁଁ ଯେ ମାନ୍ୟବର ଲେଫ୍ଟନେଣ୍ଟ ଗବର୍ଣ୍ଣର ଏଥିର ତଦନ୍ତ ଆରମ୍ଭ କରିଅଛନ୍ତି ଏବଂ ଭରସା କରୁଁ ଯେ ଭବିଷ୍ୟତକୁ ଏପରି ଗୋଳଯୋଗ ନିବାରଣ ପକ୍ଷରେ ବିହିତ ଉପାୟ କରିବେ।

ଏ ପ୍ରସ୍ତାବ ଲେଖା ହେଲା ଉତ୍ତାରୁ ଅବଗତ ହେଲୁଁ ଯେ ବାହୁଡ଼ା ଦଶମୀଦିନ ରଥମାନ ଦକ୍ଷିଣମୁଖା ହେବାର ତେଣିକି ଥାଉ ଗତ ବୁଧବାର ପର୍ଯ୍ୟନ୍ତ ତାହା ହୋଇ ନ ଥିଲା। ସୁତରାଂ ଠାକୁରମାନେ ଅବଧି ମନ୍ଦିରକୁ ଫେରି ଆସିବାର ସମ୍ଭବ ନୁହଇ। ଏଥିରେ ଯେ ଅନ୍ନମହାପ୍ରସାଦ ବିନା ଲୋକଙ୍କର କେତେ କଷ୍ଟ ହେଉ ଥିବ ବୋଲା ଯାଇ ନ ପାରେ। ପୁଲିସର ଶୈଥିଲ୍ୟ ଏଥିର କାରଣ ଅଟଇ ଓ କଥିତ ହୁଅଇ ଯେ ମ୍ୟାନେଜର କମିଶ୍ନର ଓ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବାରୁ ପୁଲିସ ଓ ମାଜିଷ୍ଟ୍ରେଟ ଉଭୟ ତାହାଙ୍କ ଉପରେ ରାଗାନ୍ୱିତ ହୋଇଅଛନ୍ତି। ପୁଲିସ କର୍ମଚାରିମାନେ ଚାରିଟା ବେଳେ ଆସି ପାଞ୍ଚଟା ବେଳେ ଫେରି ଗଲେ କଦାଚ ଏ କର୍ମ ନିର୍ବାହ ହେବାର ନୁହଇ। ଆମ୍ଭେମାନେ ଆଶା କରୁଁ କି ନୂତନ କମିଶ୍ନର ଏଥିର ବିହିତ ବନ୍ଦୋବସ୍ତ କରି ଦେବେ।

*ଉତ୍କଳ ଦୀପିକା-୧୮୮୦: ପୃଷ୍ଠା ସଂଖ୍ୟା-୧୩୬*

## ପୁରୀ ରଥଯାତ୍ରା

ଏ ସମ୍ପର୍କରେ ତଳଲିଖିତ ପତ୍ର ଆମ୍ଭମାନଙ୍କ ସମ୍ବାଦ ଦାତାଙ୍କଠାରୁ ପ୍ରାପ୍ତ ହୋଇ ସର୍ବସାଧାରଣଙ୍କ ଜାଣିବା କାରଣ ପ୍ରକାଶ କଲୁଁ। ଯଥା

"ଗତସପ୍ତାହ ବୁଧବାର ଶ୍ରୀଗୁଣ୍ଡିଚା ଦିନ ମଧ୍ୟାହ୍ନ ସମୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ବାର୍ଷିକ ନବଦିନ ଯାତ୍ରା ଉତ୍ସବ ନିମନ୍ତେ ନିଳାଚଳରୁ ପହଣ୍ଡି ବିଜେ ଆରମ୍ଭ ହୋଇ ପ୍ରାୟ ଚାରିଟା ସମୟରେ ରଥାରୋହଣ କ୍ରିୟା ପରିସମାପନ ହେଲା। ଏଦିନ ଆମ୍ଭମାନଙ୍କର ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ଜୋନ୍ସ ସାହେବ ଅନ୍ୟାନ୍ୟ କର୍ମଚାରିମାନଙ୍କ ସହିତ ପହଣ୍ଡି ସ୍ଥାନରେ ଉପସ୍ଥିତ ଥାଇ ଉକ୍ତ କର୍ମ ସୁନିର୍ବାହ ପକ୍ଷେ ଯତ୍ନବାନ ହୋଇଥିବା ମହାପ୍ରଭୁଙ୍କର ରଥାରୋହଣ ଉତ୍ତାରୁ ବଡ଼ ଠାକୁରଙ୍କ ରଥରେ ଦଉଡ଼ି ଲାଗି ରଥ ରଜାଙ୍କ ନଅରଦ୍ୱାର ପର୍ଯ୍ୟନ୍ତେ ଚାଲି ଯାଇଥିଲା ଏବଂ ଯେବେ ବି ସେଦିନ ରଥ ସଡ଼କ କାନ୍ଥିରେ ଲାଗି ଯାଇ ନ ଥାନ୍ତା ତେବେ ଆହୁରି ମଧ୍ୟ ଖଣ୍ଡଦୁର ପର୍ଯ୍ୟନ୍ତେ ଯିବାର ସମ୍ଭବ ଥିଲା। ଥରେ ଗୁରୁ, ଶୁକ୍ର ଓ ଶନି ଏହି ତିନି ଦିନ ମଧ୍ୟରେ ତିନିରଥ ଯାକ ନିର୍ବିଘ୍ନରେ ଗୁଣ୍ଡିଚା ମନ୍ଦିରରେ ଲାଗିଥିଲା। ତିନିଦିନ ମଧ୍ୟରେ ରଥ ଗୁଣ୍ଡିଚା ମନ୍ଦିରରେ

ଲାଗିବା ସହଜ ବ୍ୟାପାର ନୁହେଁ ପ୍ରାୟ ଅନେକ ବର୍ଷ ହେଲା ଏତେ ଶୀଘ୍ର ରଥ ଲାଗିବାର କେବେ ଦୃଷ୍ଟି କି ଶ୍ରୁତିଗୋଚର ହୋଇ ନ ଥିଲା। କେବଳ ଇନ୍ଦ୍ରଦେବତାଙ୍କର କରୁଣା ଏଥିରେ ପ୍ରଧାନ କାରଣ ଅଟେ କିପାଇଁକି ସେ କେତେକ ଦିନ ଏକାବେଳକେ ବୃଷ୍ଟିର ପ୍ରଦୁର୍ଭାବ ହୋଇ ନ ଥିଲା ନୋହିଲେ ଏ ବର୍ଷ ଯାତ୍ରୀ ସଂଖ୍ୟା ଯେ ପରିମାଣରେ କମ ଥିଲା ସେଥିରେ ବୃଷ୍ଟିରେ ପ୍ରାଦୁର୍ଭାବ ହୋଇ ଏପର୍ଯ୍ୟନ୍ତ ସୁଦ୍ଧା ଥିଲେ ରଥ ଲାଗିବାର କଷ୍ଟକର ହୋଇ ଥାନ୍ତା। ରବିବାର ଦିନ ପ୍ରାୟ ତିନିଟା ସମୟରୁ ଶ୍ରୀମହାପ୍ରଭୁଙ୍କ ରଥରୁ ଗୁଣ୍ଡିଚା ମନ୍ଦିରକୁ ବିଜେ ହେବାର ଆୟୋଜନ ହେବାକୁ ଲାଗିଲା, ଗୁଣ୍ଡିଚା ମନ୍ଦିରର ସିଂହଦ୍ୱାର ଅନେକ ଦୂର ବ୍ୟାପି ଜନତାରେ ପରିପୂର୍ଣ୍ଣ; ବଡ଼ଦାଣ୍ଡ ଜୋଡି ଲୋକେ ସିଂହଦ୍ୱାରରେ ପହଣ୍ଡି ଦେଖିବା ନିମନ୍ତେ ଉପସ୍ଥିତ ହେବାକୁ ଲାଗିଲେ, କ୍ରମେ କ୍ରମେ ଚତୁର୍ଦ୍ଦିଗରୁ ମେଘମାଳା ଏକତ୍ରିତ ହୋଇ ସୂର୍ଯ୍ୟଦେବଙ୍କୁ ଆଚ୍ଛନ୍ନ କଲେ। ଅଳ୍ପ ଅଳ୍ପ ବିନ୍ଦୁ ପତନ ହେବାକୁ ଲାଗିଲା। ବଡ଼ଠାକୁର ଓ ସୁଭଦ୍ରାଦେବିଙ୍କର ପହଣ୍ଡି କ୍ରିୟା ପରିସମାପନ ହୋଇ ଗଲା ତହୁଁ ଦୈତାମାନେ କାଳିଆଙ୍କ ସାକ୍ଷାତରେ ଆସି ଉପସ୍ଥିତ ହେଲେ ଆକାଶ ମାର୍ଗରେ ସମୁଦିତ ନିବିଡ଼ ଘନଘଟାକୁ ବଳି କାଳିଆଙ୍କ ବଦନମଣ୍ଡଳି ବିଶେଷ ଶୋଭା ପ୍ରକାଶ କରିବାକୁ ଲାଗିଲା କିରିଟ କୁଣ୍ଡଳ ବିମଣ୍ଡିତ ମସ୍ତକ ଉପରିସ୍ଥ ସୁରଞ୍ଜିତ ଟାୟାହାର ମୃଦମନ୍ଦ କମ୍ପନରେ କ୍ଷଣକ୍ଷଣକେ ଶତ ଶତ ସୌଦାମିନୀ ପ୍ରତିଘାତ ହେବାକୁ ଲାଗିଲା ଲୋକଙ୍କର ହୃଦୟକମଳ ଆନନ୍ଦଭରାରେ ପ୍ରସ୍ଫୁଟିତ ହୋଇ ଉଠିଲା ମହାପ୍ରଭୁ ରଥ ଚକଡ଼ାରୁ ଧୀରେ ଧୀରେ ଅବତରଣ କରି ଚାର ଉପରେ ଆସି ଅବସ୍ଥିତ କଲେ ସହସା ଚତୁର୍ଦ୍ଦିଗ ଅନ୍ଧକାରମୟ ହୋଇଉଠିଲା ଏବଂ ଅବିରଳ ଧାରାରେ ଅନର୍ଗଳ ବାରି ବର୍ଷଣ ହେବାକୁ ଲାଗିଲା ତହୁଁ ମହାପ୍ରଭୁ ଅଜ୍ଞାନୀ ଖେଳୁଆଳ ପିଲା ପରି ସେହି ଘୋର ବୃଷ୍ଟିରେ ତିନ୍ତି ବୁଡ଼ି ଧୀରେ ଧୀରେ ସିଂହାସନକୁ ବିଜେ କଲେ। ଏଥର ରଥ ଚଳାଇବା ସକାଶେ ଆମ୍ଭମାନଙ୍କର ପୁଲିସ ସାହେବ ଏକ ନୂଆ ଉପାୟ ଅବଲମ୍ବନ କରିଥିଲେ, ସାହେବ ପ୍ରଶଂସିତ ବଜାରୀ ପିଲାମାନଙ୍କ ହସ୍ତେ ଏକ ଏକ ଖଣ୍ଡ ବେତ ଦେଇ ତାହାଙ୍କଦ୍ୱାରା ଲୋକଙ୍କୁସବୁ ଅଣାଇ ରଥ ଟଣାଇଥିଲେ ଏବଂ ରଥ ଟଣା ଶେଷରେ ପିଲାମାନଙ୍କୁ ମିଠାଇ ଖାଇବାକୁ ଦେଇଥିଲେ ଯେ ଏକେତ ସେମାନେ ବଜାରୀ ପିଲା ତହିଁରେ ପୁଲିସ ସାହେବଙ୍କର ହୁକୁମ ପାନ୍ତି ସେମାନେ ଯେ ଲୋକଙ୍କ ଉପରେ କେତେଦୂର ଅତ୍ୟାଚାର କରିଥିଲେ ତାହା ଲେଖିବା ବାହଲ୍ୟ ମାତ୍ର ଭରସା କରୁଁ ଏଥର ସାହେବ ପ୍ରଶଂସିକ ଉକ୍ତ ଉପାୟ ପକ୍ଷେ ବିଶେଷ ଦୃଷ୍ଟିପାତ କରିବେ, ଗୁଣ୍ଡିଚା ସମୟରେ ଏ ସ୍ଥାନର ଡାକ୍ତରଖାନାରେ ଅନେକ ଯାତ୍ରୀ କଲରା ରୋଗଗ୍ରସ୍ତ ହୋଇ ନୀତ ହୋଇଥିଲେ, ବର୍ତ୍ତମାନ ସହରରେ ମଧ୍ୟ କୃତାପି ଦୃଷ୍ଟିଗୋଚର ହେଉଅଛି। ଗତ ରବିବାରଠାରୁ ଏଠାରେ ପ୍ରତିଦିନ ସନ୍ଧ୍ୟା ସମୟରେ ଘୋର ବୃଷ୍ଟି ହେଉଅଛି।" ୨/୭/୮୪

ଏଥି ଉତ୍ତାରୁ ଆମ୍ଭେମାନେ ସଂବାଦ ପାଉ ଅଛୁଁ କି ଗତ ବୁଧବାର କେବଳ ଦେବୀଙ୍କ ରଥ ଦକ୍ଷିଣମୁଖୀ ହୋଇଥିଲା ଓ ଗୁରୁବାର ବାହୁଡ଼ା ଦିନ ଅନ୍ୟ ଦୁଇରଥ ଦକ୍ଷିଣମୁଖୀ ହେବାର ବନ୍ଦୋବସ୍ତ ଲାଗିଥିଲା ସୁତରାଂ ସେଦିନ ଠାକୁରମାନେ ରଥକୁ ବିଜେ କରି ନାହାନ୍ତି।

*ଉତ୍କଳ ଦୀପିକା-୧୮୮୪: ପୃଷ୍ଠା ସଂଖ୍ୟା-୨୧୫*

# ପୁରୀର ରଥଯାତ୍ରା

(ସମ୍ବାଦଦାତାଙ୍କ ପତ୍ର)

ଶ୍ରୀଜିଉଙ୍କ ଶ୍ରୀ ଗୁଣ୍ଡିଚାଯାତ୍ରା ଉପଲକ୍ଷେ ବଙ୍ଗୀୟ ଯାତ୍ରୀ ଅନ୍ଦାଜ ୪୦୦୦, ହିନ୍ଦୁସ୍ଥାନୀ ପ୍ରାୟ ୧୦୦୦, ଓଡ଼ିଆ ପଞ୍ଚକ୍ରୋଶୀ ଓ ଗଡଜାତୀ ପ୍ରାୟ ୪୦୦୦, ଯାତ୍ରୀମାନଙ୍କର ସମାରୋହ ହୋଇଥିଲା।

ଓଲାଉଠା ବେମାରିରେ ବଙ୍ଗଯାତ୍ରା ପ୍ରାୟ ୫୦୦ରୁ ଅନ୍ୟୂନ ନଷ୍ଟ ହୋଇଅଛନ୍ତି। ପୁଲିସ ରିପୋର୍ଟରୁ ପ୍ରକାଶ ଯେ ଚଳିତମାସ ତା୧୦ରିଖ ସୋମବାର ଦିନ ଉକ୍ତ ରୋଗରେ ୨୫ ଜଣଙ୍କର ମୃତ୍ୟୁ ହୋଇଅଛି। ସହର ମଧ୍ୟରେ ଉକ୍ତ ରୋଗର କ୍ରମଶଃ ବୃଦ୍ଧି ହେବାର ଦେଖାଯାଏ।

ଯାତ୍ରା ପୂର୍ବରୁ ସହରବାସିନ୍ଦା କେତେକ ଲୋକ ପ୍ରାର୍ଥନା କରିବାରୁ ତଦନୁସାରେ ଶ୍ରୀଯୁକ୍ତ ମେଜଷ୍ଟର ସାହେବ ଯାତ୍ରିମାନଙ୍କ ରହିବା ସୁବିଧା ସକାଶେ ଯେଉଁମାନେ ଘରର ପାସ କରିବେ ସେମାନଙ୍କ ଟଙ୍କା କେବଳ ଦାଖଲ କରିବା ମାତ୍ରେ ଟିକଟ ଦିଆ ଗଲେ ସେମାନେ ଯାତ୍ରୀ ରଖିବେ ଏପରି ହୁକୁମ ଦେବାରୁ ତଦନୁସାରେ ଯାତ୍ରିମାନେ ପାସ ଘରେ ରହିଲା ପରେ ଅମଲା ଯାଇ ଉକ୍ତ ଘର ମାପ ଇତ୍ୟାଦି କରି ଡାକ୍ତର ସାହେବଙ୍କୁ ଜଣାଇବେ । ଏପରି ବନ୍ଦୋବସ୍ତରେ ଯାତ୍ରି ଓ ଘରଓ୍ୱାଲା ଉଭୟଙ୍କର ସୁବିଧା ହୋଇଅଛି। ତା୧୫ରିଖ ପର୍ଯ୍ୟନ୍ତ ପାସଓ୍ୱାଲା ୬୫୫ ନମ୍ବର ଦରଖାସ୍ତକାରିମାନଙ୍କ ମଧ୍ୟରୁ ପ୍ରଥମେ ପ୍ରଥମେ ବିଧିମତେ ପାସଓ୍ୱାଲାମାନଙ୍କଠାରୁ ଟଙ୍କା ନିଆପାଇ ପାସର ଫାରମ ୨୮୬ ନମ୍ବରକୁ ଦିଆ ଗଲା। ଅବଶିଷ୍ଟ ଦରଖାସ୍ତକାରିମାନଙ୍କୁ କେବଳ ଟଙ୍କା ଦାଖଲ କଲା ମାତ୍ର ଟିକଟ ଦିଆ ଯାଇ ଯାତ୍ରୀ ରଖିବା ସକାଶେ ଅନୁମତି ଦିଆ ଯାଇ ଥିଲା। ଚଳିତମାସ ତା୧୦ରିଖ ପର୍ଯ୍ୟନ୍ତ ପାସଓ୍ୱାଲାମାନଙ୍କଠାରୁ ଟ୯୬୩୪ ଦଶ ଅଣା ଆଦାୟ ହୋଇଅଛି। ସନ ୧୮୮୪/୮୫ ମସିହା ଆୟ ବ୍ୟୟ ବଜେଟରେ ଟ୬୦୦୦ଙ୍କା ଉତ୍ପନ୍ନର କାଳ୍ପନିକ ଆଶା କରା ଯାଇଥିଲା। ସମ୍ପ୍ରତି ତାହା ନ ହୋଇ ତତୋଽଧିକ ଟଙ୍କା ଆଦାୟ ହୋଇଅଛି। ଭାରି ଆହୁରି ଆଦାୟ ହେବାର ମଧ୍ୟ ସମ୍ଭାବନା ଅଛି।

ଶ୍ରୀ ଶ୍ରୀ ଜିଉ ସ୍ନାନଯାତ୍ରା ଦିନ ଦିବା ଘ୭ଣ୍ଟା ସମୟରେ ସେନାପଟା ଲାଗି ହୋଇ ପହଣ୍ଡି ବିଜେ ଆରମ୍ଭ ହୋଇ ଘ୧୦ଣ୍ଟା ସମୟରେ ସ୍ନାନମଣ୍ଡପରେ ବିରାଜମାନ କଲେ। ୨ଟା ସମୟରେ ସ୍ନାନଯାତ୍ରା ନିର୍ବାହ ହେଲା। ୩ଟା ସମୟରେ ହସ୍ତିବେଶ ସନ୍ଧ୍ୟା ସରିକି ଖେଚଡ଼ି ଭୋଗ ଶେଷ ହେଲା। ତହିଁ ଉତ୍ତାରୁ ସାହାଣ ମେଲା ହୋଇ ଯାତ୍ରିମାନେ ଦର୍ଶନ କଲେ। ସେ ସମୟରେ ସମସ୍ତ ମନ୍ଦିର କର୍ମଚାରୀ ଓ ଡେପୁଟୀ ବାବୁ ଏମାନେ ଥାଇଁ ଦର୍ଶନ କାର୍ଯ୍ୟ ଉତ୍ତମରୂପେ ନିର୍ବାହ କଲେ। ଘ୮ଣ୍ଟା ସମୟରେ ଶ୍ରୀ ଜିଉ ସ୍ନାନମଣ୍ଡପରୁ ପହଣ୍ଡି ହୋଇଯାଇ ଘ୧୦ଣ୍ଟା ସରିକି ଅନବସରରେ ବିଜେ କଲେ। ତତ୍ପରେ ତାଟି ଦିଆ ଯାଇ ପଟିଦେବତା ଆସି ମହାସ୍ନାନ ହୋଇ ବିଜେ କଲେ ଏପର ଆଉ କିଛି ନୀତି ହୋଇ ପାରିଲା ନାହିଁ। ଦୁଇପ୍ରହର ଧୂପଠାରୁ ବଡ଼ସିଂହାର ଭୋଗ ଓ ପହୁଡ଼ ପର୍ଯ୍ୟନ୍ତ ସମସ୍ତ ନୀତି ଉତ୍ସବ ହେଲା କାରଣ କେବଳ ସେବକମାନଙ୍କ ଦୌରାତ୍ମ୍ୟ, ମାତ୍ର ଯାତ୍ରିମାନଙ୍କ ଦର୍ଶନ ନିର୍ବିଘ୍ନେ ନିର୍ବାହ ହୋଇଅଛି।

ତା୧୨ରିଖ ରବିବାର ରାତ୍ର ୩ଟା ଥାଉଁ ଶ୍ରୀ ଜିଉଙ୍କ ତାଟି ଫିଟିଲା। ସେ ସମୟରେ କେବଳ ମନ୍ଦିରର କର୍ମଚାରିମାନେ ଉପସ୍ଥିତ ଥିଲେ। ପ୍ରାତଃକାଳରେ ଶ୍ରୀଯୁକ୍ତ ଡିପୋଟି ବାବୁ ଆସି ଯାତ୍ରିମାନଙ୍କୁ ନବଯୌବନ ଦେଖାଇବା ସକାଶେ ଡିପୋଟି ଓ ଅମଲାମାନଙ୍କୁ ମନ୍ଦିର ମଧ୍ୟରେ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ରଖାଇ ପୁଲୀସର କର୍ମଚାରିମାନଙ୍କୁ ସେହିପରି ମନ୍ଦିର ମଧ୍ୟରେ ନିଯୁକ୍ତ କରି ଦର୍ଶନର ଉତ୍ତମ ବନ୍ଦୋବସ୍ତ କରି ଦେଇ ଥିଲେ। ତହିଁରେ ଯାତ୍ରିମାନେ ଅନାୟାସେ ଦର୍ଶନ କରି ଚାଲି ଗଲେ। ଉକ୍ତ କାର୍ଯ ଦିନ ୮/୯ ଘଣ୍ଟା ସରିକି ଶେଷ ହୋଇଗଲା। ତା୧୩ରିଖ ସୋମବାର ଦିନ ରଥଗଡ଼ା ପଦାରୁ ରଥମାନେ ସିଂହଦ୍ୱାରେ ୩ଘଣ୍ଟା ମଧ୍ୟରେ ଆସି ଲାଗିଗଲେ।

ତା୧୪ରିଖ ମଙ୍ଗଳବାର ଶ୍ରୀ ଗୁଣ୍ଡିଚାଯାତ୍ରା ଉପଲକ୍ଷେ ଦିନ ୧୦ଟା ସମୟରେ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ବାବୁ ଓ ପୁଲୀସ କର୍ମଚାରିମାନେ ଆସି ହାଜର ହେଲେ। ମାତ୍ର ଶ୍ରୀ ଜିଉଙ୍କର ସକାଳଧୂପ ସରି ପହଣ୍ଡି ଆରମ୍ଭ ହେଉଁ ହେଉଁ ୧୨ଟା ବାଜିଗଲା ରାଜକର୍ମଚାରିମାନେ କେବଳ ଯାତ୍ରିମାନଙ୍କ ଗୋଳମାଳ ହେତୁ ବ୍ୟତିବ୍ୟସ୍ତ ହୋଇ ଶ୍ରୀ ଜିଉଙ୍କ ପହଣ୍ଡି ୪ଟା ସମୟରେ ଶେଷ ହେଲା। ଯାତ୍ରିମାନେ ବଡ଼ଦାଣ୍ଡରେ ଛିଡ଼ା ହୋଇ ପକାଘର ଉପରେ ସ୍ନାନ ବେଦି ଉପରେ ରହି ଦେଖିଲେ। ପୁଲୀସ ବନ୍ଦୋବସ୍ତ କରି କାହାକୁ ଛାଡ଼ି ନ ଦେଇ ସାବଧାନ ଥିଲେ ମାତ୍ର ପହଣ୍ଡି ସମୟରେ ଉତ୍ତମ ବୃଷ୍ଟି ହୋଇଥିଲା। ତହିଁରେ ଦର୍ଶକମାନଙ୍କର କିଞ୍ଚିତ୍ କଷ୍ଟ ହୋଇଥିଲା। ସେହି ବୃଷ୍ଟି ଯୋଗୁଁ ରଥ ଚଳି ପାରିଲା ନାହିଁ। ପହଣ୍ଡି ସମୟରେ ଶ୍ରୀଯୁକ୍ତ ମେଜଷ୍ଟର ସାହେବ ଓ ଡାକ୍ତର ସାହେବ ଓ ପୁଲୀସ ସାହେବ ଉପସ୍ଥିତ ଥିଲେ। ପୁଲୀସ ସାହେବ ମହୋଦୟ ଯେଉଁ ବନ୍ଦୋବସ୍ତ କରିଥିଲେ ଉତ୍ତମ ହୋଇଥିଲା। ମାତ୍ର ତହିଁ ମଧ୍ୟରେ ସ୍ୱୟଂ କେତେକ ଅତିରିକ୍ତ କାର୍ଯ୍ୟ କରିବାରେ ତହିଁରେ ଲୋକେ ଅସନ୍ତୁଷ୍ଟ ହୋଇଅଛନ୍ତି।

ତା୧୫ରିଖ ବଡ଼ ରଥ କେବଳ ଜଗନ୍ନାଥ ବଲ୍ଲଭଠାରେ ରହିଲେ। ତା୧୬ରିଖ ସକାଳଓଳି ବଡ଼ରଥ ବଳଗଣ୍ଡି ମଠ ନିକଟରେ ଓ ଶ୍ରୀ ଠାକୁରାଣୀଙ୍କ ରଥ ଜଗନ୍ନାଥ ବଲ୍ଲଭଠାରେ ଅଛନ୍ତି।ଇତି।

*ଉତ୍କଳ ଦୀପିକା-୧୮୮୫: ପୃଷ୍ଠା ସଂଖ୍ୟା-୨୩୧*

## ପୁରୀ ରଥଯାତ

ଦୀପିକାରୁ ଅବଗତ ହେଲୁଁ ଯେ, ଏବର୍ଷ ଗୁଣ୍ଡିଚା ଯାତ୍ରା ଉପଲକ୍ଷରେ ବଙ୍ଗାଳୀ ଯାତ୍ରୀ ପ୍ରାୟ ୪୦ ହଜାର, ହିନ୍ଦୁସ୍ଥାନୀ ପ୍ରାୟ ୧୦ ହଜାର ଏବଂ ଓଡ଼ିଆ ଯାତ୍ରୀ ପ୍ରାୟ ୪ ହଜାର ପୁରୀକୁ ଯାଇଥିଲେ। ବଙ୍ଗାଳୀ ଯାତ୍ରିଙ୍କ ମଧ୍ୟରୁ ପ୍ରାୟ ପଞ୍ଚଶତ ଯାତ୍ରୀ ଓଲାଉଠାରେ ନଷ୍ଟ ହୋଇଅଛନ୍ତି। ରଥଦିନ ବେଳ ଚାରିଟା ସମୟରେ ଶ୍ରୀଶ୍ରୀ ଜିଉଙ୍କ ପହୁଣ୍ଡି ବିଜୟ ଶେଷ ହେଲା। ପହୁଣ୍ଡି ସମୟରେ ଉତ୍ତମ ବୃଷ୍ଟି ହୋଇ ଥିବାରୁ ସେଦିନ ରଥ ଚଳି ପାରିଲା ନାହିଁ ମଧ୍ୟ ଯାତ୍ରୀମାନେ କଷ୍ଟ ପାଇଥିଲେ। ଜିଲ୍ଲାର ଡାକ୍ତର ସାହେବ ଏବଂ ପୁଲିସ ସାହେବ ସେଠାରେ ଉପସ୍ଥିତ ଥିଲେ।

*ବାଲେଶ୍ୱର ସମ୍ବାଦ ବାହିକା, ୧୮୮୫, ପୃଷ୍ଠା-୧୧୭*

# ପୁରୀ ରଥଯାତ୍ରା

୨୩/୨୪/୨୫ ତାରିଖମାନଙ୍କରେ ରଥ ସବୁ ଦକ୍ଷିଣ ମୂର୍ତ୍ତି ହେବାରେ ଗଲା। ତା୨୬ରିଖ ରବିବାର ଦିନ ଠାକୁରମାନେ ଗୁଣ୍ଡିଚାଘର ଜଗନ୍ମୋହନରୁ ଗୋଟାକ ସମୟରେ ଧାଡ଼ି ପହଣ୍ଡି ବିଜେ କରି ରଥାରୂଢ଼ ହେଲେ। ଘ୪ଣ୍ଟା ସମୟେ ବିଜେ କରି ଚାର ଫିଟି ବଡ଼ ରଥରେ ଦଉଡ଼ି ଲାଗି ଚଳିବାର ଉପକ୍ରମ ହେଲା ଯେ ଘ୬ଣ୍ଟା ସମୟରେ ବଡ଼ଦେଉଳର ସିଂହଦ୍ୱାରେ ଆସି ଲାଗି ଗଲେ।

ତା୨୭ରିଖେ ସେହିପରି ଠାକୁରାଣୀଙ୍କ ରଥ ସକାଳବେଳା ନ ଚଳାଇ ଘ୪ଣ୍ଟା ସମୟରେ ଡେପୁଟୀ ବାବୁ ପୁଲିସ ପ୍ରଭୃତି ହାଜରଥାଇ ୬ଟାରେ ସିଂହଦ୍ୱାରେ ଦୁଇଘଣ୍ଟା ମଧ୍ୟରେ ଲଗାଇ ଦେଇ ହରିବୋଲ ଧ୍ୱନିରେ ପୂର୍ଣ୍ଣକରିଦେଲେ। ଏପରି ଘଟନା ବହୁତ ଦିନରେ ଦେଖା ଗଲା।

ତା୨୮ରିଖେ ଶ୍ରୀ ନନ୍ଦିଘୋଷରଥ ୪ଟା ସମୟେ ଚଳିବା ଉଦ୍ୟୋଗ ଲାଗିଲେ। ସେ ଦିନ ସହର ଶୂନ୍ୟ ହୋଇ ଆବାଳବନିତା ରଥ ସମୀପସ୍ଥ ହୋଇ ହରିବୋଲ ଓ ହୁଳହୁଳି ଧ୍ୱନିରେ ଚହଳ ପଡ଼ିଗଲା। ରାଜକର୍ମଚାରୀ ପ୍ରଭୃତି ଉପସ୍ଥିତ ଥାଇ ରଥ ଚଳାଇ ଲାଗିଲେ। ସମୁଦ୍ର ମଧ୍ୟରେ ପୋତ ଭାସମାନ ହେଲା ପ୍ରାୟ ବଡ଼ଦାଣ୍ଡରେ ନନ୍ଦିଘୋଷରଥ ସ୍ଥଳରେ ଭାସମାନ ହେଲା ପ୍ରାୟ ଦେଖା ଯାଉଥିଲା।୫ ଟା ସମୟରେ ରଥ ଆସି ପୁରୀରାଜାଙ୍କ ନବର ସମ୍ମୁଖସ୍ଥ ହେଲା କ୍ଷଣେ ଲକ୍ଷ୍ମୀନାରାୟଣ ଭେଟର ଆରମ୍ଭ ଯୋଗୁଁ ସେଠାରେ ରଥ ରହିଲେ।

ଶ୍ରୀ ଠାକୁରାଣୀ ଚାହାଣୀ ମଣ୍ଡପକୁ ଆସି ରଥ ଆସିବା ଦେଖି ଉତ୍ସାହ ପୂର୍ବକ ମକରମୁଖୀ ଚନ୍ଦ୍ର ସୂର୍ଯ୍ୟାଚ୍ଛାଦିତ ଗଜଦନ୍ତ ପାଲିକୀରେ ବିଜେ କରି ଛତ୍ର କାହାଳ ବାଦ୍ୟ ସେବକ ଓ ଦେବଦାସୀ ତ୍ରାସ କାହାଳ ବାଦ୍ୟ ସେବକ ଓ ଦେବଦାସୀ ତ୍ରାସ ଘଣ୍ଟ ହସ୍ତୀ ସହିତ ପଟୁଆର କରି ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ସମ୍ମୁଖରେ ଆସି ଦଣ୍ଡାୟମାନ ହେଲେ। ତହୁଁ ମହାପ୍ରଭୂଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇବା ସମୟେ ହିନ୍ଦୁମାତ୍ରେ ଯେ କି ସେ ସ୍ଥଳରେ ପ୍ରାଣ ଆଶା ନ ରଖି ଦର୍ଶନ କରିବାକୁ ଉପସ୍ଥିତ ଥିଲେ ସେମାନେ (କୃତାର୍ଥୋଽସ୍ମି) ଉଚ୍ଚ ଶବ୍ଦ ଉଚ୍ଚାରଣ ପୂର୍ବକ ଭେଟ ଦେଖି ସନ୍ତୁଷ୍ଟ ହେଲେ। ଠାକୁରାଣୀ ବିଜେ କରିବା ସମୟେ ମନ୍ଦିରରୁ ପୁରୀ ରାଜକୁମାର ଆପଣାର ଆଡମ୍ବର ମାନ ଘେନି ଠାକୁରାଣୀଙ୍କ ସଙ୍ଗେ ସଙ୍ଗେ ଥିଲେ। ବିଜେ ସମୟରେ ରଥ ନିକଟରେ ଶ୍ରୀଯୁକ୍ତ ମେଜେଷ୍ଟର ଓ ପୁଲିସ ସାହେବ ଉଭୟେ ଭେଟ ଦେଖିଲେ। ଭେଟବଢ଼ା ଠାକୁରାଣୀ ବିଜେ ହେଲା ପରେ ରାଜକୁମାରଙ୍କର ରାଜନୀତି ଅର୍ଥାତ୍ ପ୍ରାସାଦମାଳ ପ୍ରଭୃତି ବିଧିମତେ ଦିଆ ହେଲା। ରାଜକୁମାରଙ୍କ ସହିତ ସାହେବଙ୍କ ସାକ୍ଷାତ ଓ ସେଖେଣ୍ଡ ପରେ ଦେଓ୍ୱାନ ବାବୁ ରାଜମାତାଙ୍କୁ ସଲାମ ଜଣାଇ ରଥ ସେଦିନ ସେହିଠାରେ ରହି ପରଦିନ ସିଂହଦ୍ୱାରେ ରହି ଅପର ଦିନ ପହଣ୍ଡି ବିଜେ ହେବାର ପ୍ରାର୍ଥନା କରିବାରୁ ସାହେବ ମହୋଦୟ ତହିଁରେ ସମ୍ମତ ହେଲେ। ପୁରୀବାସିନ୍ଦାମାନେ ସାହେବଙ୍କ ଅନୁରୋଧ ରକ୍ଷାରେ ବଡ଼ ସନ୍ତୁଷ୍ଟ ହେଲେ। ତା୨୯ରିଖେ ଉକ୍ତ ରଥ ୪ଟା ସମୟେ ସିଂହଦ୍ୱାରସ୍ଥ ହେଲେ। ଗୁରୁବାର ତା୩୦ରିଖ ପହଣ୍ଡିବିଜେ ହୋଇ ରତ୍ନସିଂହାସନରେ ବସିଲେ ଏବଂ ବରଷକର ରଥ ଯାତ୍ରା ନିର୍ବିଘ୍ନରେ ଶେଷ ହେଲା।

*ଉତ୍କଳ ଦୀପିକା-୧୮୮୫: ପୃଷ୍ଠା ସଂଖ୍ୟା-୨୪୭*

# ପୁରୀର ରଥଯାତ୍ରା।

(ଶେଷ ବିବରଣ)

ତା୩୦ରିଖ ଗୁରୁବାର ୨ଟା ସମୟରେ ରଥର ଚାରମାଳ ପୂର୍ବରୁ ବନ୍ଧା ହୋଇଥିଲା। ମାତ୍ର ଠିକ ସମୟରେ ହାକିମମାନେ ପହଣ୍ଡିବିଜେ ସକାଶେ ରଥଠାରେ ଆସି ହାଜର ହେଲେ ଘଣ୍ଟୁଆମାନେ ପ୨୮ଟ ଘଣ୍ଟ ଘେନି ହାଜର ହେଲେ। ବର୍ତ୍ତମାନ୍ ରାଜଦେଓ୍ୱାନ ବାବୁ ମହାଶୟ ସେଦିନ ବହୁ ପରିଶ୍ରମ କରି ଦେଉଳ ମଧରେ ପ୍ରବେଶ ପୂର୍ବକ ରୋଷ ମଧରେ କୋଠଭୋଗ ଚୁଲିମାନ ପ୍ରସ୍ତୁତ ହେବା ଓ ରୋଷାଇଶାଳା ପରିଷ୍କାର ସିଂହାସନର କାର୍ଯ୍ୟ ସବୁ ପରିଷ୍କାର ଥିବା ଦେଖି ହାକିମମାନଙ୍କୁ ଜଣାଇ ପହଣ୍ଡିବିଜୟର ଅନୁମତି ନେଇ ଆରମ୍ଭ କଲେ। ସେବକମାନେ ଏବଂ ଦର୍ଶକମାନେ ଏକତ୍ରିତ ହୋଇ ଉତ୍ସାହରେ ପୂର୍ଣ୍ଣ ହୋଇଥିଲେ। ଶ୍ରୀଯୁତ ମେଜଷ୍ଟର ସାହେବ ଓ ପୁଲିସ ସାହେବ ଆସି ପୁଲିସ ସାହେବ ଠିକା କନେଷ୍ଟବଲମାନଙ୍କୁ ନେଇ ଦଉଡ଼ି ଧରାଇ ବନ୍ଦୋବସ୍ତ କଲେ ଯେ ଦଉଡିଆଡ଼ା ମଧରେ ଲୋକେ ପ୍ରବେଶ କରି ପାରିବେ ନାହିଁ। କେବଳ ଦୁଇ ସାହେବ ଆଉ ଶ୍ରୀ ପ୍ରାଣକୃଷ୍ଣ ବାବୁ ଡିପୁଟୀ ରାଜଦେଓ୍ୱାନ ଏତିକି ମାତ୍ର ଆଡ଼ା ମଧରେ ରହିଲେ। ବିଜେ କରିବା ସମୟେ ଠାକୁରମାନେ ଭୂମିରେ ପହଣ୍ଡି ନ ହୋଇ ତୁଳାରେ ଶେଯ ପାହାଡ଼ାକୁ ତୁଳୀ ବୋଲାଯାଏ ତୁଳୀ ଘେନି ସେବକ ଉପସ୍ଥିତ ହେଲାପର ଶ୍ରୀ ରାମକୃଷ୍ଣଙ୍କର ପ୍ରଥମତଃ ବିଜେ ଆରମ୍ଭ ହେଲା। ଘଣ୍ଟା ମାଦଳ ତେଲଙ୍ଗିବାଜା କାହାଳ ଛତ୍ର ତ୍ରାସ ମେଘାଡ଼ମ୍ବର (ଓଲାର) ବୈଷ୍ଣବ ଓ ବୈଷ୍ଣବୀମାନେ ଆଲଟ ଓ ଚାମରମାନ ଘେନି ଉପସ୍ଥିତ ଥିଲେ। ପରେ ଶ୍ରୀ ମଦନମୋହନଙ୍କ ବିଜେ ବଢ଼ିଲା। ସୁଦର୍ଶନଙ୍କ ବିଜେ ଆରମ୍ଭ ଗୋଟି ପହଣ୍ଡି ହେତୁ ଏକ ଠାକୁରଙ୍କ ପହଣ୍ଡି ବଢ଼ିଲେ ଅନ୍ୟ ଠାକୁରଙ୍କର ପହଣ୍ଡି ଆରମ୍ଭ ହୁଏ। ପରେ ବଡ଼ ଠାକୁରଙ୍କର ଡୋରଲାଗି ବଢ଼ି ପୁଷ୍ପମୁକୁଟ ଧାରଣ କରି ବିଜେ କଲେ। ଠାକୁରମାନେ ମନ୍ଦିର ମଧରେ ସନ୍ୟାସୀ ଓ ସେବକମାନଙ୍କର ପଣ୍ତି ଭୋଗ ମଣୋହି କରି ଜଗନ୍ମୋହନ ମଧରେ ବିଭୀଷଣ ବନ୍ଦାପନା ହୋଇ ସିଂହାସନରେ ବିଜେ କରନ୍ତି ଏହି ପରି ସୁଭଦ୍ରା ଠାକୁରାଣୀଙ୍କର ବିଜେ ବଢ଼ିଲା ପର ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କର ଡୋରଲାଗି ଓ ପୁଷ୍ପମୁକୁଟ ଧାରଣ ପର ରଥ ଭିତରୁ ରଥ ବାହାରର ଉପରେ ବିଜେ କଲା ସମୟରେ ଶ୍ରୀ ଲକ୍ଷ୍ମୀଠାକୁରାଣୀଙ୍କୁ ବିଜେ କରାଇ ଭେଟ ମଣ୍ଡପରେ ଆଣି ବିଜେ କରାଇଲେ। ଉଭୟ ପକ୍ଷରୁ ସଙ୍କେତରୂପ କାହାଳି ଧ୍ୱନି ହୋଇ ବନ୍ଦାପନା ପରସ୍ପରରେ ହୋଇ ହରିବୋଲ ଧ୍ୱନିରେ ମେଦିନୀ ଚମକି ଉଠିଲା। ଦର୍ଶକମାନେ ସେ ସମୟ ଦର୍ଶନରେ ଆନନ୍ଦାମୃତ ପାନରେ ମତ୍ତ ହୋଇ ଧର୍ମାର୍ଥକାମମୋକ୍ଷ ଚତୁର୍ବର୍ଗପଦକୁ ତୁଚ୍ଛ ଜ୍ଞାନ କରୁଥିଲେ। ଆହା ଭକ୍ତମାନଙ୍କର ମନର ଭାବ ଈଶ୍ୱରଙ୍କ ପ୍ରତି ଯେପରି ଉଦୟ ହୋଇଥିଲା ତାହା ଲେଖି ଜଣାଇବା ସାଧ୍ୟାତୀତ ଲକ୍ଷ୍ମୀନାରାୟଣ ବନ୍ଦାପନା ବଢ଼ି ମହାପ୍ରଭୂ ଚାରରୁ ଓହ୍ଲାଇ ଚାରତଳେ ତୁଳି ଉପରେ ବିଜେ କରିଅଛନ୍ତି ଏପରି ସମୟେ କେତେକ ଉକ୍ତ ସମ୍ଭାଳି ହୋଇ ନ ପାରି ଦଉଡୀର ଆବରଣ ନମାନି ପ୍ରାଣ ଓ ମାନର ଆଶା ନ ରଖି ମହାପ୍ରଭୂଙ୍କ ଛାମୁରେ ଆସି ସ୍ପର୍ଶ କରିବା ଇଚ୍ଛାରେ ଜମା ହୋଇଗଲେ ପୁଲିସ ସାହେବ ଜନତା ଦେଖି ଲୋକମାନଙ୍କୁ ସେଠାରୁ ଦୂର କରି ଦେଲେ। କିନ୍ତୁ

ସେଠାରେ ଶ୍ରୀଯୁକ୍ତ ଗଗନଚନ୍ଦ୍ର ଦାସ ଡିପୋଟି ଦର୍ଶନ କରୁଥିଲେ ପୁଲିସ୍ ସାହେବ ତାଙ୍କୁ (ତୁମ୍ କୌନ ହେ ଚଲେ ଯାଓ) ହିନ୍ଦିରେ କହି ବାହା ଧରି ଝିଙ୍କି ଆଣିଲେ। ବାବୁ ମଉସୁଫ ଆପଣାକୁ ଡିପୋଟୀ ବୋଲି ପରିଚୟ ଦେଲେ ସୁଦ୍ଧା ସାହେବ ଅଗ୍ରାହ୍ୟ କରି ସ୍ଥାନାନ୍ତରିତ ହେବାର ଆଦେଶ ଦେଲେ। ବାବୁ ଅପମାନିତ ହୋଇ ସେଠାରେ ବଡ଼ ସାହେବଙ୍କୁ ଏତ୍ତଲା ଦେଲା। ବଡ଼ ସାହେବ ଶୁଣି ଆଛା ବୁଝିବା କହି ବାବୁଙ୍କୁ ବିଦାୟ ଦେଲେ। ପରେ ମହାପ୍ରଭୂ ବିଜେ ହୋଇ ସିଂହଦ୍ୱାରେ ଉପସ୍ଥିତ ହେବା ମାତ୍ର ଶ୍ରୀ ଠାକୁରାଣୀ ଆସି କବାଟ ବନ୍ଦ କଲେ କିଛିକ୍ଷଣ ପରେ କବାଟ ଫିଟି ମହାପ୍ରଭୂ ବିଜେ ହେଲେ। ଭିତର ପଛିମାନ ସାରି ବିଭୀଷଣ ବନ୍ଦାପନା ଓ ଗରୁଡ଼ ଗୋବିନ୍ଦ ବନ୍ଦାପନା ବଢ଼ି ମହାପ୍ରଭୂ ଜୟ ବିଜୟ ଦ୍ୱାରସ୍ଥ ହେବା ସମୟେ ଶ୍ରୀ ଠାକୁରାଣୀ ଆସି କବାଟ ବନ୍ଦ କଲେ ଲକ୍ଷ୍ମୀଠାକୁରାଣୀଙ୍କ ତରଫରୁ ଦେବଦାସୀମାନେ କବାଟ ଆରପାଖେ ଥାଇ ଶ୍ଳୋକ ପାଠ କଲେ ଯଥା:- ତ୍ରିମାଦିହ ସମାଗତୋ ନ ଭବ ଗୁଣ୍ଡିଚା ମଣ୍ଡପଃ ସନାକ ଯୁବତୀବୃତୋ ବିବିଧ ନୃତ୍ୟ ଗୀତୋତ୍ସବଃ ଇଦଂ ବିରହଣୀ ଗୃହଂ ନୟନ ନୀରପୂରାଙ୍କିତଂ ନ ଚନ୍ଦନ ସୁବାସିତଂ ସଂପଦିତତ୍ର ଯାହି ପ୍ରଭୋ। ମହାପ୍ରଭୂଙ୍କ ତରଫରୁ ବଚନିକା ହେଲା ଏହି ପରି ପରସ୍ପର କଥୋପକଥନ ପରେ କବାଟ ଫିଟିଲା ପ୍ରଭୂ ବିଜେ କଲେ। ଭଣ୍ଡାରଦ୍ୱାରଠାରେ ଠାକୁରାଣୀ ବିଜେ କଲେ ମହାପ୍ରଭୂ ସେଠାରେ ଆସି ବିଜେ କଲେ। ସେଠାରେ ବିବାହ ସମୟର ଗଇଁଠିଆଳ ଫିଟିବାର ନୀତି ହୋଇଗଲା।

ମହାପ୍ରଭୂ ବିଜେ କରି ସିଂହାସନାରୁଢ଼ ହେଲେ। ସେନାପଟମାନ ଠାକୁରମାନଙ୍କ ଶ୍ରୀ ଅଙ୍ଗରୁ ଫିଟିଲା। ଠାକୁରମାନେ ଦୃଢ଼ରୂପେ ରୁନ୍ଧା ହେଲେ। ସିଂହାସନ ଚାର ଫିଟିଲା। ଠାକୁରମାନଙ୍କର ମହାସ୍ନାନ ବଢ଼ିଲେ। ରଥ ଉପରେ ଠାକୁରମାନଙ୍କର ସନ୍ଧ୍ୟାଧୂପ ପର୍ଯ୍ୟନ୍ତ ନୀତି ହୋଇଥିଲା। ସିଂହାସନାରୂଢ଼ ଠାକୁରମାନଙ୍କର ଚନ୍ଦନ ଲାଗି ବଡ଼ ସିଂହାର ବେଶ ଓ ଭୋଗ ଇତ୍ୟାଦି ବଢ଼ିଗଲା। ବରଷକର ରଥ ଯାତ୍ରା ନୀତି ଏଠାରୁ ସମାପ୍ତ ହେଲା।

ତା୩୧ରିଖେ ଡିପୋଟୀ ବାବୁ ଦରଖାସ୍ତ ଦେବାରୁ ବଡ଼ ସାହେବ ପୁଲିସ ସାହେବଙ୍କୁ କଇଫିୟତ୍ ତଲବ କରିବାରୁ ସାହେବ ମଉସୁଫ ଉକ୍ତ କାର୍ଯ୍ୟକରିଥିବାର ସ୍ୱୀକାର କରି ସନ୍ତୋଷଜନକ କଇଫିୟତ ଦେଇଅଛନ୍ତି। ଏ ମକଦମାର ଅବସ୍ଥା ଯାହା ହେବ ଏପର ଜଣାଇବୁଁ।

ଚଳିତ ମାସ ତା୧ରିଖ ଶନିବାର ଦିନ ୭ଟା ସମୟରେ ବଡ଼ଦେଉଳରେ ମହାପ୍ରଭୂଙ୍କର ମଙ୍ଗଳ ଆଳତୀ ସମୟରେ ଅବକାଶ ନୋହୁଁ ନୋହୁଁ ଠାକୁରଙ୍କ ନିକଟସ୍ଥ ଲୁହା ଶିକୁଳି ଓ ଦୀପ ଛିଡ଼ି ଗୋଟିଏ ପୂଜା ପଣ୍ଡାର ମୁଣ୍ଡ କ୍ଷତ ହୋଇ ରକ୍ତପାତରେ ଅଜ୍ଞାନ ହେଲା। ତାକୁ ଲୋକେ ଲାଗି ଉଠାଇ ଘରେ ନେଇ ଛାଡ଼ି ଦେଲେ। ଠାକୁରମାନେ ରଥ ଉପରକୁ ଆସିଲେ ସିଂହାସନଠାରୁ ଗରୁଡ଼ଙ୍କ ପର୍ଯ୍ୟନ୍ତ ଭିତର ଓ ଉପର ଚତୁଃପାର୍ଶ୍ୱ ଏ ସମସ୍ତ ପରିଷ୍କାର କରିବାର ଚୂନରାମାନଙ୍କର କର୍ତ୍ତବ୍ୟ କର୍ମ ବୋଲି ପୂର୍ବରୁ ଦସ୍ତୁର ଅଛି। ଯେଉଁ ଲୁହା ଶିଙ୍କୁଳି ଦଉଡ଼ିରେ ବନ୍ଧା ହୋଇଥିଲା ସେ ଦଉଡୀ ବଦଳରେ ନୂଆ ଦଉଡ଼ୀ ନ ହେବାରୁ ଏପରି ଘଟିବାର ଶୁଣାଯାଏ। ଏ ତ୍ରୁଟି କେବଳ ଚୂନରାମାନଙ୍କର ବୋଲି କଥିତ ହୁଏ।

*ଉତ୍କଳ ଦୀପିକା-୧୮୮୫: ପୃଷ୍ଠା ସଂଖ୍ୟା-୨୬୩*

# ପୁରୀ ରଥଯାତ୍ରା

ଯୁନମାସ ପହିଲାରୁ ରଥଯାତ୍ରାର ଯାତ୍ରୀମାନଙ୍କର ପୁରୀସମାଗମ କରିବାର ଆରମ୍ଭହେଲା। ମଧ୍ୟ ପୁରୀବାସିନ୍ଦାମାନେ ଯାତ୍ରୀଘର ପାଶ କରିବାଲାଗି ବ୍ୟତିବ୍ୟସ୍ତ। କେତେକ ଗରିବ ଲୋକ ନିଜ ଅଳଙ୍କାର ବିକ୍ରୟକରି ଆଉ କେତେକଲୋକ ଦୁଇ ଅଣା ସୁଧରେ ସୁନାରୂପା ବନ୍ଧକଦେଇ ଦରଖାସ୍ତ ଦ୍ୱାରା ଗବର୍ଣ୍ଣମେଣ୍ଟ କୋଷ ପୂର୍ଣ୍ଣକରିବାରେ ତୃଟୀ କରି ନାହାନ୍ତି। ଏଥିରେ କେହି କେହି ଦୁଇପଇସା ଲାଭ କରିଅଛନ୍ତି ଏବଂ କେହି କେହି ଉତ୍ସ୍‌କ ହୋଇ ଉପରକୁ ଚାହିଁ ବସିଅଛନ୍ତି।

ଚଳିତସନ ଏପ୍ରେଲମାସଠାରୁ ଯୁଲାଇମାସ ତା୧୫ରିଖ ପର୍ଯ୍ୟନ୍ତ ପୁରୀରେ ଯାତ୍ରୀଘର ନ୮୩୭ମ୍ବର ଘର ମୋଟେ ପାଶ ହୋଇଅଛି। ଏତନ୍ମଧ୍ୟରୁ ନ୬୮୫ମ୍ବର ଘରର ପାଶବଣ୍ଟନ ହୋଇ ଘରବାଲାମାନେ ପାଶ ଅବଶିଷ୍ଟ ପାଇ ବଣ୍ଟନ ହୋଇପାରି ନାହିଁ। ଉପରୋକ୍ତ ନ୮୩୭ମ୍ବର ଘରର ସାର୍ଟୀଫିକେଟ ଖର୍ଚ୍ଚାସହିତ ଲାଇସନ୍ସ ଫିସ ମୋଟ ଟ୧୨୦୭୩ଙ୍କା ଆ୦ ଅଣା ଖଜଣା ଖାନାରେ ଜମା ହୋଇଅଛି। ଯାହା ହେଉ ଏବର୍ଷ ବସାଘରଆମଦାନୀ ପ୍ରଚୁର ହୋଇଅଛି।

ଯୁନମାସ ତା୧୬ରିଖ ବୁଧବାରଦିନ ଶ୍ରୀଜିଉଙ୍କର ସ୍ନାନୋତ୍ସବ ଯାତ୍ରା ହୋଇଥିଲା। ଶ୍ରୀ ଯିଉଙ୍କର ସ୍ନାନଯାତ୍ରାଠାରୁ ଗୁଣ୍ଡିଚାଘରୁ ଫେରି ରତ୍ନସିଂହାସନରେ ବିଜେକରିବା ପର୍ଯ୍ୟନ୍ତ କାର୍ଯ୍ୟ ଚଳାଇବାଭାର ଶ୍ରୀଯୁକ୍ତ ବାବୁ ପ୍ରଭାତଚନ୍ଦ୍ର ଚାଟୁର୍ଯ୍ୟା ଡିପୋଟୀ ମହାଶୟଙ୍କ ଉପରେ ନ୍ୟସ୍ତ ହୋଇଥିଲା। ବାବୁ ମହାଶୟ ପୌର୍ଣ୍ଣମୀଦିନ ପୂର୍ବରାତ୍ର ୨ଟା ସମୟରେ ମନ୍ଦିରକୁ ଆସି ପୁରୀରାଜାଙ୍କ ଦେଓ୍ୱାନ ବାବୁଙ୍କୁ ସଙ୍ଗେ ନେଇ ଶ୍ରୀଯିଉଙ୍କୁ ପହଣ୍ଡିକରାଇ ୭ଟା ସମୟକୁ ସ୍ନାନମଣ୍ଡପସ୍ଥ କରାଇ ସେହିପରି ନୀତିସବୁ ଆପେ ଚଳାଇ ପୌର୍ଣ୍ଣମୀଦିନ ୧୨ଟା ସମୟରେ ସ୍ନାନଉତ୍ସବ ବଢ଼ାଇ ହାତୀବେଶ କରାଇ ମଣ୍ଡପଉପରେ ଖେଚଡୀଭୋଗ ଦିନ ୪ଟା ସମୟରେ ସମାଧା କରିଦେଇଥିଲେ। ପରେ ସାହାଣମେଳା କରାଇ ଯାତ୍ରୀମାନଙ୍କର ଦର୍ଶନ ବନ୍ଦୋବସ୍ତ ହେଲା। ପରେ ୯ଟା ସମୟରେ ଅନବସରକୁ ପହଣ୍ଡି ବିଜେ ଆରମ୍ଭ ହେଲା ଯେ ୧ଟା ସମୟରେ ଶେଷହେଲା। ସେଦିନ ଯେପରି ବନ୍ଦୋବସ୍ତ କରାଯାଇଥିଲା ତହିଁରେ କୌଣସି ନୀତିରେ ବ୍ୟାଘାତ ଓ ଯାତ୍ରିମାନଙ୍କ ଦର୍ଶନର ଅସୁବିଧା ଘଟି ନ ଥିଲା।

ଏଦିନଠାରୁ ଦି୧୫ନ ଠାକୁରମାନେ ଅନବସରରେ ରହି ଭିତରର କାର୍ଯ୍ୟସବୁ ଶେଷ ହେଲା। ଯୁଲାଇ ପହିଲାରେ ନବଯୌବନ ଦର୍ଶନର ସୁବିଧାସକାଶେ ମନ୍ଦିରମଧ୍ୟରେ ଡିପୋଟୀବାବୁ ଓ ଦେଓ୍ୱାନବାବୁ ପ୍ରଭୃତି ରାଜ କର୍ମଚାରିମାନେ ରହି ବନ୍ଦୋବସ୍ତ କଲେ ବାହାରେ ଶ୍ରୀଯୁକ୍ତ ବଡ଼ ସାହେବ ଓ ପୁଲିସ ସାହେବ ରଥଯାତ୍ରାରେ ନିଯୁକ୍ତ ହୋଇଥିବା କନେଷ୍ଟବଳ ଜ୧୫୦ଣଙ୍କୁ ସଙ୍ଗେ ଘେନି ଆପଣା ଆପଣାର ବନ୍ଦୋବସ୍ତ କଲେ। ପୂର୍ବଦିନ ରାତ ୩ଟା ସମୟରୁ ପହିଲା ତାରିଖର ୯ଟା ପର୍ଯ୍ୟନ୍ତ ଯାତ୍ରିମାନେ ନବଯୌବନର ଦର୍ଶନରେ କୌଣସି ବିଶେଷ କଷ୍ଟ ନ ପାଇ ତୃପ୍ତିଲାଭ କଲେ ତା୩ରିଖ ଯୁଲାଇ ଶନିବାର ଶ୍ରୀଗୁଣ୍ଡିଚା ଯାତ୍ରା ହୋଇଥିଲା।

ଏଦିନକୁ ୩ ରଥ ସିଂହଦ୍ୱାରସ୍ଥହୋଇ ମଣ୍ଡଣୀ ଆରମ୍ଭହେଲା ପୂର୍ବରୁ ଶ୍ରୀଯୁକ୍ତ ଇଞ୍ଜିନୀୟର

ଅମୃତଲାଲବାବୁ ମହାଶୟ ରଥ ଦେଖି ସାର୍ଟୀଫିକେଟ ଦେଇଥିଲେ ଏବଂ ରଥ ଚଳିବା ସମୟ ସଙ୍ଗେ ସଙ୍ଗେ ଥାଇ ଅନୁସନ୍ଧାନ କରୁଥିଲେ। ପୂର୍ବପ୍ରାୟ ସମସ୍ତ ହାକିମ ଓ କେତେକ ଅମଲାମାନେ ରହି ଦିନ ୨ଟା ସମୟରୁ ପହଣ୍ଡି ଆରମ୍ଭକରାଇ ୪ ରିଟା ସମୟରେ ସମସ୍ତ ଠାକୁରଙ୍କୁ ରଥାରୂଢ଼ କରାଇଲେ। ଏଦିନ ମଧ୍ୟ ଉତ୍ତମରୂପେ କାର୍ଯ୍ୟ ସମ୍ପନ୍ନ ହେଲା। ବିଦେଶୀୟ ଯାତ୍ରୀ ଓ ପଞ୍ଚକ୍ରୋଶୀ ଓ ପୁରୀବାସିନ୍ଦା ସମସ୍ତ ମିଶି ୬୦/୭୦ ସହସ୍ରଲୋକ ସମବେତ ହୋଇଥିଲେ। ଏଥିରେ ବିଦେଶୀ ଯାତ୍ରୀସଂଖ୍ୟା ୩୦/୩୫ ସହସ୍ରରୁ ଅଧିକହେବ ନାହିଁ।

ତା୪ରିଖ ରବିବାର ସମସ୍ତ ହାକିମମାନେ ଦଳବଳସହିତ ରଥପାଖରେ ଏକତ୍ର ହୋଇ ରଥ ଚଳାଇବାର ଆରମ୍ଭ ହେଲା। ଏହିପରି କ୍ରମାନ୍ୱୟରେ ରବିବାରଦିନଠାରୁ ତା୭ରିଖ ବୁଧବାରପର୍ଯ୍ୟନ୍ତ ରଥସବୁ ଚଳି ଗୁଣ୍ଡିଚାମଣ୍ଡପର ସିଂହଦ୍ୱାରେ ଏକତ୍ରହେଲେ। ଏହି ଦିନ ହେରାପଞ୍ଚମୀ ଥିବାରୁ ଶ୍ରୀଯିଉଙ୍କୁ ବିଜେକରାଇ ଗୁଣ୍ଡିଚାଘର ରତ୍ନସିଂହାସନରେ ବସାଇଲେ ଓ ଶ୍ରୀମହାଲକ୍ଷ୍ମୀ ଗୁଣ୍ଡିଚାଘରକୁ ଯାଇ ହେରାଯାତ୍ରା ସମାଧା କଲେ। ଅନ୍ନ ନୈବେଦ୍ୟ ମଧ୍ୟ ଏହିଦିନଠାରୁ ଆରମ୍ଭ ହୋଇ ତା୧୦ରିଖ ଶନିବାର ପର୍ଯ୍ୟନ୍ତ ବିଧିପୂର୍ବକ ହୋଇଥିଲା। ଦୁଃଖର ବିଷୟ ଏହିଯେ ପୁଲିସ ସାହେବ ଓ କର୍ମଚାରିମାନେ ସତର୍କ ଥିଲେ କି ହେବ ଗୋଟିଏ ମଠବଳଦ କାହାରି ବାରଣ ନ ମାନି ରଥ ନିକଟରେ ଉପସ୍ଥିତ ହେଲା ଯେତେବେଳେ ଦଉଡ଼ୀ ଡେଇ ବାହାରକୁ ଗଲା ସେ ସମୟରେ ତାହା ଆଘାତରେ ୨ ଜଣ ଯାତ୍ରୀ ପଡ଼ିଗଲେ। ଜଣକର ମୁଣ୍ଡଖପୁରି ଉଠିଯାଇ ହାସପାତାଳରେ ମରିଗଲା। ଆଉଜଣେ ଜୀବିତ ଥିବାର ଶୁଣାଯାଏ।

ଯାତ୍ରୀମାନେ ଶ୍ରୀଯିଉ ରଥରେ ବିଜେକଲାରୁ ରଥଚଳା ଦେଖି ରବିବାରଦିନଠାରୁ ପ୍ରସ୍ଥାନ କଲେ ଯେଉଁମାନେ ଅବଶିଷ୍ଟ ଥିଲେ ସେମାନେ ଗୁଣ୍ଡିଚାଘର ହେରାଯାତ୍ର ଓ ମହାପ୍ରସାଦ ସେବନକରି ସ୍ୱଦେଶ ପ୍ରସ୍ଥାନ କଲେ।

ତା୯ରିଖ ରଥ ଦକ୍ଷିଣାମୂର୍ତ୍ତି ହୋଇ ନ ଥିବାରୁ ଶ୍ରୀଯିଉ ଶ୍ରୀଜଗନ୍ମୋହନରେ ବିଜେ କରିଅଛନ୍ତି ତା୧୫ରିଖ ଗୁରୁବାର ରଥକୁ ପହଣ୍ଡିହେବାର ଚେଷ୍ଟା ହେଲା କିନ୍ତୁ ବର୍ଷାହେତୁ ଘଟିଲା ନାହିଁ।

ଯାତ୍ରୀମାନଙ୍କର ଉପକାରାର୍ଥେ ଖାଦ୍ୟଦ୍ରବ୍ୟ ଯେକି ମନ୍ଦିରମଧ୍ୟରେ ବିକ୍ରୟ ହୋଇଥାଏ ସେପ୍ରତି ଦୃଷ୍ଟିରଖିବା ଆବଶ୍ୟକ ବୋଧହେବାରୁ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କ ଅନୁରୋଧମତେ ପୁରୀ ମିଉନିସିପାଲଟୀର କମିଶ୍ନରମାନେ ମନ୍ଦିରାନ୍ତର୍ଗତ ଶ୍ରୀମହାପ୍ରସାଦମାନଙ୍କର ତତ୍ତ୍ୱାବଧାରଣ କରିବାଲାଗି ୨ ଜଣ କର୍ମଚାରୀ ନିଯୁକ୍ତ କରିଥିଲେ ଏମାନଙ୍କୁ ମିଉନିସିପଲ ଫଣ୍ଡରୁ ଟ୨୫ଙ୍କା ଲେଖାଏଁ ଟ୫୦ଙ୍କା ପୁରସ୍କାର ଦିଆଯାଇଅଛି।

ଯାତ୍ରୀମାନଙ୍କ ଆଗମନ ଶୀତଳଷଷ୍ଠୀଠାରୁ ଶ୍ରୀଗୁଣ୍ଡିଚା ଯାତ୍ରାପର୍ଯ୍ୟନ୍ତ ଏଥିମଧ୍ୟରେ ଓଲାଉଠାର ଶଙ୍କା ନ ଥିଲା। ଯାତ୍ରିମାନଙ୍କ ପ୍ରସ୍ଥାନ ସଙ୍ଗେ ସଙ୍ଗେ ଉକ୍ତରୋଗ ଆରମ୍ଭ ହୋଇଅଛି ଏବଂ ଏତେବେଳେ ବାସିନ୍ଦାମାନେ ତାହା ଭୋଗ କରୁଅଛନ୍ତି। ଯାତ୍ରିମାନଙ୍କୁ ମଧ୍ୟରୁ ପ୍ରାୟ ଜ୨୦୦ଣ ଓଲା ଓଠା ରୋଗରେ ମରା ପଡ଼ିଅଛନ୍ତି।

ତା୧୯ରିଖ ରବିବାର - ଠାକୁରମାନଙ୍କର ବାହୁଡ଼ାବିଜେ ପହଣ୍ଡି ହେଲା ଏବଂ ତିନିଠାକୁର ରଥରେ ବସିଲାରୁ ଦୁଇଟା ସମୟରେ ବଳଭଦ୍ରଙ୍କର ରଥ ଟଣାହେଲା। ତହିଁ ଆରଦିନ ତା ୨୦ ରିଖରେ ଏହି ରଥ ରାଜାଙ୍କ ନଅର ନିକଟ ପର୍ଯ୍ୟନ୍ତ ଆସିଲା।

ତା୨୧ରିଖ ମଙ୍ଗଳବାର - ସୁଭଦ୍ରାଙ୍କ ରଥ ଖଣ୍ଡେଦୂର ଟଣାହୋଇ ଏଦିନର କାର୍ଯ୍ୟ ବନ୍ଦହେଲା। ଏଥିରୁ ଅନୁମାନ ହେଉଅଛି ଯେ ଅବଧି ଠାକୁରମାନେ ମନ୍ଦିରକୁ ଫେରିଆସି ନାହାନ୍ତି। ଗୁଣ୍ଡିଚାଯାତ୍ରା ଯେମନ୍ତ ସମୟାନୁସାରେ ହେଲା ବାହୁଡ଼ା ସେହିପରି ନ ହେବାର କାରଣ ଏହିରୂପ କଥିତହୁଅଇ ଯେ କଳାପିଠିୟାମାନେ ଅଳ୍ପ ଆସିଅଛନ୍ତି ଏବଂ ଯାତ୍ରିମାନେ ଶୀଘ୍ର ବାହାରିଯିବାରୁ ରଥଟଣାରେ ସେମାନଙ୍କର ସାହାଯ୍ୟ ପ୍ରାପ୍ତହେଲା ନାହି ଏପର ପୁଲିସ ପୂର୍ବପ୍ରାୟ ରଥଟଣାରେ ଏବର୍ଷ ସାହାଯ୍ୟ କରି ନାହାନ୍ତି।

*ଉତ୍କଳ ଦୀପିକା-୧୮୮୬: ପୃଷ୍ଠା ସଂଖ୍ୟା-୨୫୬*

## ପୁରୀରଥଯାତ୍ରାର ବିବରଣ

ସ୍ନାନଯାତ୍ରା ପରେ ଅନବସର ଦି୧୫ନ ପରେ ନବଯୌବନ ଦର୍ଶନର ବନ୍ଦୋବସ୍ତ ଗତବର୍ଷପରି ହୋଇଥିଲା ତାହା ନିର୍ବିଘ୍ନେ ନିର୍ବାହିତ ହୋଇ ଯାଇଅଛି। ଏବର୍ଷ ଉଭାଯାତ୍ରା ଦି୩ନ ହେଲା।

ତା୧୧ରିଖ ବୁଧବାର ଶ୍ରୀ ଗୁଣ୍ଡିଚାଯାତ୍ରା। ରଥ ସିଂହଦ୍ୱାରେ ଉପସ୍ଥିତ ହୋଇ ପ୍ରତିଷ୍ଠାହେଲା ପର ସରଦାର ହାକିମମାନେ ଡାକ୍ତର ସାହେବ ଓ ମୁତିଏନ ହୋଇଥିବା ପୁଲିସଚପରାଶି ପ୍ରଭୁତି ରାଜସରକାର ସମସ୍ତ ଅମଲାମାନେ ପ୍ରାୟ ହାଜର ରହି ପହଣ୍ଡିବିଜେ ୩ଟା ସମୟରେ ଆରମ୍ଭ ଓ ରାତ୍ର ଘ୯ଣ୍ଟା ସରିକି ଶେଷ କରାଇଲେ ସେଦିନ ନୀତି ରୀତିମତ ହୋଇଅଛି। ତା୧୨ରିଖେ ଗୁରୁବାର ପ୍ରଭାତ ଘ୮ଣ୍ଟା ସମୟରେ ସାହେବ ଅମଲାପ୍ରଭୁତି ଉପସ୍ଥିତ ହୋଇ ରଥ ଚଳାଇ ବଡ଼ରଥ ହାସପାତାଳ ନିକଟରେ ରଖାଇ ଚାଲିଗଲେ। ଏଦିନ ଘ୩ଣ୍ଟା ସମୟରେ ସେହିପରି ସମସ୍ତ ହାକିମମାନେ ଥାଇ ଶ୍ରୀ ଠାକୁରାଣୀଙ୍କ ରଥ ଚଳାଇ ବଡ଼ରଥ ପଛରେ ରଖାଇଲେ।

ତା୧୩ରିଖେ ଶୁକ୍ରବାର ସକାଳ ଘ୮ଣ୍ଟା ସମୟରେ ଶ୍ରୀ ନନ୍ଦିଘୋଷ ରଥ ନେଇ ଶ୍ରୀ ଠାକୁରାଣୀଙ୍କ ପଛେ ରଖିଲେ।

ତା୧୪ରିଖେ ଶନିବାର ଘ୮ଣ୍ଟା ସମୟରେ ବଡ଼ରଥ ଗୁଣ୍ଡିଚାଘର ସିଂହାଦ୍ୱାରେ ପହୁଞ୍ଚାଇଲେ ଓ ଅପରାହ୍ନ ଘ୩ଣ୍ଟା ସମୟରେ ଶ୍ରୀ ଠାକୁରାଣୀଙ୍କ ରଥ ସେଠାରେ ଲଗାଇ ଦେଲେ।

ତା୧୫ରିଖେ ରବିବାର ହେରାଯାତ୍ରା ଅପରାହ୍ନ ଘ୩ଣ୍ଟା ସମୟରେ ରଥଟଣା ଆରମ୍ଭ ହୋଇ ନନ୍ଦିଘୋଷ ରଥ ଯାଇଁ ସନ୍ଧ୍ୟା ସମୟକୁ ଲାଗିଲେ। ପହଣ୍ଡିବିଜେ ନ ହେବାରୁ ନନ୍ଦିଘୋଷ ରଥଉପରେ ସନ୍ଧ୍ୟାଧୂପ ସମୟରେ ଠାକୁରାଣୀ ଯାଇ ରଥଉପରେ ହେରା ଯାତ୍ରାନୀତି ହେଲା। କି ସକାଶେ ଯେ ହେରାଦିନ ବିଜେ ନ କରାଇ ଏପରି କଲେ ଏଥିର ମର୍ମ ବୁଝାଯାଉ ନାହିଁ।

ତା୧୭ରିଖ ସୋମବାର ୩ଟା ସମୟରେ ଆରମ୍ଭ ହୋଇ ରାତ୍ର ୮ଟା ସମୟକୁ ପହଣ୍ଡିବିଜେ ଶେଷ ହେଲା।

ତା୧୭ରିଖେ ମଙ୍ଗଳବାର ଏ ଦିନ (ନୀଳାଦ୍ରୌ ଦଶସହସ୍ରାଣି ଆଡ଼ପେ ମଣ୍ଡପେ ଦିନେ) ସନ୍ଧ୍ୟା ଦର୍ଶନ ହେତୁ ପୁରୀବାସୀନ୍ଦା ପ୍ରାୟ ଅକାଳ ବନିତା ଅଧିକାଂଶ ଲୋକ ଇନ୍ଦ୍ରଦ୍ୟୁମ୍ନେ ସ୍ନାନ କରି ପ୍ରବାସ କରିବାକୁ ଗୁଣ୍ଡିଚା ଘରଠାରେ ରହିଲେ।

ମହାରାଣୀ ହୁକୁମ ଅନୁସାରେ ସେ ଦିନ ଶୀଘ୍ର ଶୀଘ୍ର ମହାପ୍ରଭୂଙ୍କ ନୀତି ବଢ଼ି ୧୦ଟା ସମୟରେ ସକାଳ ଧୂପ ସରି ୧୨ଟା ସମୟରେ ଭୋଗମଣ୍ଡପ ଭୋଗପରେ ଗହଣ ବିଜେ ହେବାର ନଅରଠାରୁ ହୁକୁମ ପହଞ୍ଚିଲା। ତାହା ଶୁଣି ରାଜକର୍ମଚାରିମାନେ ଭୋଗମଣ୍ଡପଦ୍ୱାରେ ଚାବୀଦେଇ ଶ୍ରୀ ମହାପ୍ରସାଦ ଛାଡ଼ି ଦେଲେ ନାହିଁ। ପରେ ଶୋଧ ଆରମ୍ଭ ହେଲା। ନଅରଠାରୁ ଶ୍ରୀମୁକୁନ୍ଦଦେବ ମହାରାଜା ମାତା ଓ ପ୍ରମାତା ଠାକୁରାଣୀ ପ୍ରଭୃତିଙ୍କୁ ଆପଣା ସମଭିବ୍ୟାହାରେ ଘେନାଇ ବିଜେ କରି ପହଞ୍ଚି ଗୁଣ୍ଡିଚା ମଣ୍ଡପମଧ୍ୟରେ ପ୍ରବେଶ କଲେ ଘରଠାରୁ ୧୨ଟା ସମୟରେ ବାହାରି ମନ୍ଦିରରେ ୪ଟା ପର୍ଯ୍ୟନ୍ତ ରହିଲେ ଏ ପର ଫେରତା ବିଜେ ହେଲେ ପ୍ରାୟ ସନ୍ଧ୍ୟା ସରିକି ନଅରରେ ପହଞ୍ଚିଲେ ଗହଣ ବିଜେ ବଢ଼ିଲାଉତ୍ତାରୁ ଭୋଗମଣ୍ଡପଘର ଚାବୀ ଖୋଲି ଦେଲେ କିନ୍ତୁ ସକାଳର ମହାପ୍ରସାଦ ସନ୍ଧ୍ୟାବେଳେ ଯେପରି ଅବସ୍ଥା ହୋଇଥିଲା ତାହା ଲେଖିବା ବାହୁଲ୍ୟ।

ଯେଉଁମାନେ ସକାଳୁ ଗୁଣ୍ଡିଚାଘର ପ୍ରବାସ କରିବାକୁ ଯାଇଥିଲେ ନାଚାର ହୋଇ ଫଳ ମୂଳ ଚୂଡ଼ା ଉଖୁଡ଼ାଇତ୍ୟାଦି ଖାଇ ରହିଥିଲେ ଘ୪ଣ୍ଟା ପରେ ଭୋଗମଣ୍ଡପ ମହାପ୍ରସାଦ ସେବନ କରି ସନ୍ଧ୍ୟା ସମୟରେ ସନ୍ଧ୍ୟାଦର୍ଶନ କରି ଆସିଲେ।

ତା୧୮ରିଖ ବୁଧବାର ଏଦିନ ଦୋଓଡ଼ା ଭୋଗ ଏଦିନ ଦିନ ଓ ରାତ୍ର ସିଂହାସନରେ ମହାପ୍ରଭୁ ବିରାଜମାନ କରି ତିନିଧୂପ ପାଞ୍ଚଅବକାଶ ହୋଇ ଯେଉଁ ବାସିନ୍ଦାମାନେ ସବୁ ପ୍ରବାସ କରିବାକୁ ଯାଇଥିଲେ ସେମାନେ ଯଥାସମୟରେ ଶ୍ରୀମହାପ୍ରସାଦ ସେବନ କରି ଆସିଲାପର ରାତ୍ର ଥାଉଁ ଥାଉଁ ଖେଚଡ଼ି ଭୋଗ ଶେଷ ହେଲା। ରଥସବୁ ଦକ୍ଷିଣମୂର୍ତ୍ତି ନୋହିଥିବାରୁ ତା୧୯ରିଖ ଗୁରୁବାର ଦିନ ୩ଟା ସରିକି ରତ୍ନସିଂହାସନରୁ ପହଣ୍ଡିବିଜେ ହୋଇ ଜଗମୋହନରେ ବିରାଜମାନ କଲେ।

ରଥ ଦକ୍ଷିଣମୂର୍ତ୍ତିହେବାରେ ମେଘ ବ୍ୟାଘାତୁକ ହେବାରୁ ଏପରି ଘଟିଅଛି ଯେ କେବଳ ଠାକୁରାଣୀଙ୍କ ରଥ ଦକ୍ଷିଣମୂର୍ତ୍ତି ହୋଇ ବଡ଼ରଥ ଅଧାବାଟରେ ରହିଅଛନ୍ତି ନନ୍ଦିଘୋଷରଥ ଉଠି ନାହିଁ। ବୋଧହୁଏ ଆହୁରି ଦି୨/୪ନ ବାଦ ରଥ ଦକ୍ଷିଣମୂର୍ତ୍ତି ଶେଷ ହେବ। ଏପରେ ଯାହା ହେବ ଜଣାଇବୁଁ।

*ଉତ୍କଳ ଦୀପିକା-୧୮୮୮: ପୃଷ୍ଠା ସଂଖ୍ୟା-୨୪୪*

# ପୁରୀ ରଥଯାତ୍ରାର ବିବରଣ

ଗତ ଜୁଲାଇମାସ ତା୧୮ରିଖେ ରଥ ଦକ୍ଷିଣମୂର୍ତ୍ତି ହେବା ଲାଗି ମହାପ୍ରଭୂଙ୍କଠାରୁ ଆଜ୍ଞାମାଳ ଆସିଲେହେଁ ସେହିଦିନଠାରୁ ତା୨୭ରିଖ ଶୁକ୍ରବାର ପର୍ଯ୍ୟନ୍ତ ଦି୧୦ନରେ ରଥମାନଙ୍କର ଦକ୍ଷିଣମୂର୍ତ୍ତି ଶେଷ ହେଲା।

ତା୨୮ରିଖ ଶନିବାର ଦିନ ୪ଟା ସମୟରେ ରଥ ଉପରକୁ ପହଣ୍ଡିବିଜେ ଆରମ୍ଭ ହୋଇ ଧାଡ଼ି ପହଣ୍ଡି ହୋଇ ୮ଟା ରାତ୍ର ସରିକୀ ପ୍ରଭୂ ରଥଉପରେ ବିଜେ କଲେ। ପହଣ୍ଡି ଶେଷ ହୋଇ ନୀତି ହେଲା।

ତା ୨୯ରିଖ ରବିବାର ଦିନ ବଡ଼ରଥ ........ ସନ୍ଧ୍ୟା ସମୟକୁ ରଥ ଆସି ସିଂହଦ୍ୱାରେ ଲାଗିଗଲେ।

ତା୩୦ରିଖ ସୋମବାର ଶ୍ରୀ ସୁଭଦ୍ରାଠାକୁରାଣୀ ରଥ ଚଳି ଚଳି ଦଉଡ଼ି ଆସି ଆଉ ନ ଚଳିବାରୁ ରଥ ଟଣା ବନ୍ଦ ହେଲା।

ତା୩୧ରିଖ ମଙ୍ଗଳବାର ରଥରେ ଦଉଡ଼ି ଲାଗି ସେଦିନ ଠାକୁରାଣୀଙ୍କ ରଥ ବଡ଼ ଦେଉଳସିଂହଦ୍ୱାରେ ଲାଗିଲେ।

ଅଗଷ୍ଟ ମାସ ତା୧ରିଖ ବୁଧବାର ୪ଟା ସମୟରେ ନନ୍ଦିଘୋଷ ରଥରେ ଦଉଡ଼ୀ ଲାଗି ସନ୍ଧ୍ୟା ପର୍ଯ୍ୟନ୍ତ ସ୍ୱୟଂ ବଡ଼ ସାହେବ ଥାଇଁ ଚଳାଉଥିଲେ ମାତ୍ର ରଥ ମାଉସିମାଙ୍କଠାରେ ରହି ଦଉଡ଼ା ଖୋଲାଗଲା।

ତା୩୧ରିଖ ମଙ୍ଗଳବାରଦିନ ବେଳ ଘ୮ଣ୍ଟା ସମୟରେ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ଦକ୍ଷିଣଶ୍ରୀଭୁଜରେ ଗୋଟାଏ କୁଆ ଆସି ବସିଗଲା। ଏଥିରେ ଲୋକେ ଅନିଷ୍ଟଶଙ୍କା କରୁଅଛନ୍ତି ଦଇତାମାନେ ଯାତ୍ରୀ ଥିଲେ ଜଗିବସନ୍ତି। ଯାତ୍ରୀ ନ ଥିବାରୁ ଦଇତା କେହି ଶ୍ରୀଅଙ୍ଗ ଜଗିବସି ନ ଥିବାରୁ ଏପରି ଘଟିଲା। ତା୩୦ରିଖ ରାତ୍ରରେ ଦଇତାଏ ବନଭୋଜି କରି ଅର୍ଥାତ୍ ସଂଖୁଡ଼ୀ ରନ୍ଧାକରି ପୂଜାପଣ୍ଡାଙ୍କ ଦ୍ୱାରା ଭୋଗ ଲଗାଇ ମହାପ୍ରସାଦ ଜ୍ଞାନ କରି ଭୋଜନ କରନ୍ତି ସେହି ଆମୋଦରେ ରହି ରାତ୍ର ଉନ୍ନିଦ୍ର ଥିବାରୁ ରଥଉପରେ କେହି ନ ଥିବାରୁ ଏପରି ଦୁର୍ଘଟନା ଘଟନା। ଏପରି ଘଟନା କେବେ ଘଟିଥିବାର ଶୁଣାଯାଇ ନାହିଁ।

*ଉତ୍କଳ ଦୀପିକା-୧୮୮୮: ପୃଷ୍ଠା ସଂଖ୍ୟା-୨୫୧*

# ପୁରୀରଥଯାତ୍ରାର ବିବରଣ

ଅଗଷ୍ଟମାସ ତା୧ରିଖ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ନନ୍ଦିଘୋଷ ରଥ ବଳଗଣ୍ଡି ମଠପଛରେ ବିରାଜମାନ କରିଥିଲେ।

ତା୨ରିଖ ବୁଧବାର ରଥ ଚଳିପାରିଲା ନାହିଁ। ତା୩ରିଖ ଗୁରୁବାର ଦିନ ୩ଟା ସମୟରେ ପୁଲିସକର୍ମଚାରି ପ୍ରଭୃତି ଉପସ୍ଥିତ ଥାଇ ରଥଚଳା ୪ଟା ସମୟରେ ଆରମ୍ଭ ହେଲା। ରଥଦେଉଳର ଦେଉଳକରଣ ପ୍ରଭୃତି ହାକିମମାନେ ବଡ଼ ଦେଉଳକୁ ଫେରିଆସି ଶ୍ରୀଲକ୍ଷ୍ମୀ ଠାକୁରାଣୀଙ୍କୁ

ବେଶଭୁଷା କରାଇ ଗଜଦନ୍ତ ପାଲିକୀରେ ଚାହାଣିମଣ୍ଡପକୁ ବିଜେକରି ପ୍ରଭୂଙ୍କ ଆଗମନ ଦର୍ଶନକରି ବିଜେକଲେ ଶ୍ରୀ ମୁକୁନ୍ଦଦେବ ମହାରାଜା ଠାକୁରାଣୀଙ୍କ ଗହଣରେ ରହିଥିଲେ। ରାଜନବରଦ୍ୱାରେ ରଥ ଅଟକ ରହିଲେ ଠାକୁରାଣୀଙ୍କ ଭେଟ ସେଠାରେ ହେଲାପରେ ଦର୍ଶକମାନେ ମହାଆନନ୍ଦରେ ହରିବୋଲ ଓ କରତାଳ ଧ୍ୱନି କରି ଆପଣାକୁ କୃତାର୍ଥ ଜ୍ଞାନ କଲେ। ରାଜା ନବରକୁ ବିଜେକଲେ।

ଶ୍ରୀ ଲକ୍ଷ୍ମୀଠାକୁରାଣୀ ମହାପ୍ରଭୂଙ୍କ ଗହଣରେ ରହି ରଥ ଚଳିଲେ ମାତ୍ର ସେହିଦିନ ରଥ ସିଂହଦ୍ୱାରେ ଲାଗିପାରିଲେ ନାହିଁ। କାରଣ ବଡ଼ଦାଣ୍ଡ ପୂର୍ବତରଫ ପକ୍କା ସଡ଼କରେ ରଥ ଲାଗିବାରୁ ଅନେକ ଚେଷ୍ଟା କଲେସୁଦ୍ଧା ଆଉ ରଥ ଚଳିଲା ନାହିଁ ସନ୍ଧ୍ୟାସମୟ ହୋଇଗଲା।

ତା୪ରିଖ ଶୁକ୍ରବାର ଏଦିନ ଚକ୍ରବୁଲା ଏକାଦଶୀ ଥିଲା। ମାତ୍ର ମହାପ୍ରଭୂ ରଥରେ ଥିବାରୁ ଚକ୍ର ବୁଲିବାର ସ୍ଥଗିତ ହେଲା। ଚକ୍ର ବୁଲିବାର ନୀଳାଦ୍ରିମହୋଦୟ ଉକ୍ତ ନୀତି ନୁହେ। ମରହଟ୍ଟା ଅମଳର ବାବା ବ୍ରହ୍ମଚାରୀଙ୍କ ଅମଳରେ ଓଲାଉଠା ରୋଗର ସୁରୁ ହେବାରୁ ଉକ୍ତ ବ୍ରହ୍ମଚାରୀ ଚକ୍ର ଅର୍ଥାତ୍ ଶ୍ରୀ ଜଗନ୍ନାଥ ମହାପ୍ରଭୂ ଶ୍ରୀହସ୍ତଧୃତ ସୁବର୍ଣ୍ଣ ନିର୍ମିତ ସୁଦର୍ଶନ ଚକ୍ରଙ୍କୁ ସାତସାହିରେ ବୁଲାଇଥିବାରୁ ଉକ୍ତ ରୋଗର ଉପଶମ ହୋଇଥିଲା। ସେହିଦିନଠାରୁ ଚକ୍ରବୁଲା ପ୍ରଥା ଚଳି ଆସୁଅଛି। ମହାପ୍ରଭୁ ବଡ଼ଦେଉଳ ମଧରେ ଥିଲେ ଚକ୍ରବୁଲା ହୁଏ। ରଥଉପରେ ଥିଲେ ଆଉ ତାହା ହୁଏ ନାହିଁ। ସେଦିନ ୪ଟା ସମୟରେ ରଥ ଚଳି ରଥ ସିଂହଦ୍ୱାରେ ଲାଗିଲା। ଉକ୍ତ ରଥ ସଡ଼କଉପରକୁ ଚଢ଼ିଯିବାରୁ ଗୋଟିଏ ରଥଚକ ଫାଟିଗଲା। ତହିଁରେ ଲୋକେ ଚକ୍ରଭଙ୍ଗ ଦୋଷରେ ସାଧାରଣର ଅମଙ୍ଗଳ ବୋଲି ଜ୍ଞାନ କରିଅଛନ୍ତି।

ତିନିଠାକୁରେ ଏକତ୍ର ସିଂହଦ୍ୱାରେ ବିଜେକଲେ ସେହିଦିନ ରାତ୍ରରେ ବାସିନ୍ଦାମାନଙ୍କର କୂଳବଧୂମାନେ ଆସି ଦର୍ଶନ କରିବାର ପ୍ରଥା ଅଛି।

ତା ୪ରିଖ ଶନିବାରଦିନ ସବୁରଥରେ ଚାରମାଲ ବନ୍ଧାହେଲା ୪ଟା ସମୟରେ ପହଣ୍ଡିବିଜେହବାର ସ୍ଥିର ହୋଇ ପୁଲିସକର୍ମଚାରିମାନେ ଯାଇଁ ହାଜରହେଲେ। ରାଜ ଗୋପାଳ ବାବୁ ପହଣ୍ଡି କରାଇବା ସକାଶେ ଉପସ୍ଥିତ ହେଲେ। ପହଣ୍ଡିବିଜେ ଆରମ୍ଭ ହୋଇ ଶ୍ରୀ ବଡ଼ଠାକୁରେ ବିଜେହେଲେ ସେହି ସମୟରେ ମେଘ ବୃଷ୍ଟିର ସୂଚକ ଦେଖାଗଲା। ଅବାଳବନିତା ବାସିନ୍ଦା ଓ ଯାତ୍ରୀ ପ୍ରାୟ ୧୦୦୦୦ ଲୋକ ଦର୍ଶନାର୍ଥୀ ଉପସ୍ଥିତ ଥିଲେ। କେତେକ ଲୋକ ମନ୍ଦିରମଧରେ ଓ ଦାଣ୍ଡରେ ମଧ କେତେକଲୋକ ଥିଲେ ବର୍ଷା ଦେଖି ମନ୍ଦିର ଜଗନ୍ମୋହନରେ କେତେକ ଲୋକ ରହିଥିଲେ କିନ୍ତୁ ରାଜଗୋପାଳ ବାବୁ ସେମାନଙ୍କୁ ସେଠାରୁ ବାହାର କରିଦେବାରୁ ସେମାନେ ବର୍ଷାରେ ଆଉ ରହି ନ ପାରି ଚାଲିଗଲେ ଗୋଟି ପହଣ୍ଡିହେତୁ ରାତ୍ର ୯ଟା ସରିକି ପହଣ୍ଡି ଶେଷହେଲା ବଡ଼ ବର୍ଷା ହେବାରୁ ଅନ୍ଧାର ହେତୁକ ପହଣ୍ଡିର ସୁଖ ଲୋକେ ଲାଭ କରିପାରିଲେ ନାହିଁ। ଏହିରୂପେ ଏବର୍ଷର ରଥ ଯାତ୍ରା ସମାପ୍ତ ହେଲା।

*ଉତ୍କଳ ଦୀପିକା-୧୮୮୮: ପୃଷ୍ଠା ସଂଖ୍ୟା-୨୫୯*

ଜଗନ୍ନାଥଙ୍କ ମନ୍ଦିରର ମୋକଦ୍ଦମା ରଫା ହୋଇଅଛି। ଗତବର୍ଷ ରଥଯାତ୍ରାରେ କୋଡ଼ିଏହଜାର ପଞ୍ଚକରେ ଅଧଲକ୍ଷ ଏବଂ ଦୋଳଯାତ୍ରାରେ ୧୦ ହଜାର ଯାତ୍ରି ପୁରୀରେ ହୋଇଥିଲେ।

*ଉତ୍କଳ ଦୀପିକା-୧୮୮୮: ପୃଷ୍ଠା ସଂଖ୍ୟା-୩୨୯*

## ପୁରୀ ରଥଯାତ୍ରା

ଏଥର ରଥଯାତ୍ରା ବଡ଼ ସୁଖରେ ନିର୍ବାହ ହେଲା। ଯାତ୍ରିଙ୍କର ସଂଖ୍ୟା ଊଣା ଏବଂ ନଦୀବଢ଼ି, ବୃଷ୍ଟି ଓ ରୋଗ ନ ଥିବାର ଯେଉଁମାନେ ଆସିଥିଲେ ସେମାନଙ୍କର କିଛି କଷ୍ଟ ହୋଇ ନାହିଁ। ପ୍ରତ୍ୟେକଦିନର ବିବରଣ ନିମ୍ନେ ଲେଖାଗଲା।

ଯଥା, ଜୁଲାଇମାନ ତା୬ରିଖ ସୋମବାର ରାତ୍ରି ଶେଷରେ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ଅନବସର ଶେଷ ହୋଇ ଟାଟି ଫିଟିଲା।

ତା୭ରିଖ ମଙ୍ଗଳବାର ପ୍ରଭାତ ୮ଟା ସମୟରେ ଶ୍ରୀଯୁକ୍ତ ମେଜଷ୍ଟର ସାହେବ ଡିପୋଟୀ ଅମଲା ଏବଂ ପୁଲିସ ଦଳବଳ ସହିତ ଆସି ସିଂହଦ୍ୱାରେ ଉପସ୍ଥିତ ହେଲେ। ଯାତ୍ରିମାନେ ପ୍ରଭୁଙ୍କ ନବଯୌବନ ଦେଖିବା ସକାଶେ ଉପସ୍ଥିତ ହେବାରୁ ୭ଟା ଠାରୁ ୯ଟା ପର୍ଯ୍ୟନ୍ତ ଦର୍ଶନର ସମୟ ଦିଆଗଲା। ପ୍ରାୟ ୧୦୦୦୦ ଯାତ୍ରୀ ଏହି ସମୟମଧ୍ୟରେ ନିରାପଦରେ ଦର୍ଶନକରି ଚାଲିଗଲେ। ତହିଁଉତ୍ତାରୁ ପ୍ରଭୁଙ୍କର ମହାସ୍ନାନ ବଢ଼ି ନେତ୍ରୋତ୍ସବ ହେଲା ଏବଂ ଭୋଗ ସରି ଆଜ୍ଞାମାଳ ୨ଟା ସମୟରେ ରଥକୁ ବିଜେକଲେ।

ଇଞ୍ଜିନୀୟର ଥାଇଁ ପୁଲିସ ସାହେବ ୩ଟା ସମୟରେ ରଥଚଳା ଆରମ୍ଭ କରି ୨ ଥର ସିଂହଦ୍ୱାରକୁ ଆଣିଲେ ଇଞ୍ଜିନୀଅର ରଥଚକା ଦେଖି ସାର୍ଟିଫିକଟ ଦେଲେ।

ତା୮ରିଖ ବୁଧବାର ଶ୍ରୀ ଗୁଣ୍ଡିଚାଯାତ୍ରା ଥିବାରୁ ପ୍ରଭାତ ୭ଟା ସମୟରେ ଆଉ ଗୋଟିଏ ରଥ ଆସି ସିଂହଦ୍ୱାରେ ଲାଗିଲା। ୧୦ଟା ସମୟରେ ରଥ ସୁସଜ୍ଜିତ ହୋଇ ଦୁଇ ପ୍ରହର ସମୟରେ ରଥ ପ୍ରତିଷ୍ଠା ହେଲା ଓ ଚାରମାଳ ବନ୍ଧାଯାଇ ୪ଟା ସମୟରେ ପହଣ୍ଡି ବିଜେ ଆରମ୍ଭ ହେଲା। ପ୍ରଭୂମାନେ ଧାଡ଼ୀ ପହଣ୍ଡି ହୋଇ ବିଜେ କରୁ କରୁ ରାତ୍ର ୭ଟା ସରିକି ରଥରେ ଆରୋହଣ କଲେ। ଦର୍ଶକମାନେ ରାତ୍ର ହୋଇ ଯିବାରୁ ଦର୍ଶନର ଅସୁବିଧା ହେତୁ ଦୁଃଖିତ ହୋଇ ଥିଲେ ମାତ୍ର ମହାପ୍ରଭୂଙ୍କର ନୀତି ଉତ୍ତମରୂପେ ହୋଇ ଯାଇ ଅଛି।

ତା୯ରିଖ ଗୁରୁବାର ଦିନଠାରୁ ରଥ ସବୁ ଚାଲିବାର ଆରମ୍ଭ ହୋଇ ତା୧୩ରିଖ ସୋମବାର ଦିନ ସନ୍ଧ୍ୟା ସରିକି ସବୁରଥ ଗୁଣ୍ଡିଚାମଣ୍ଡପ ଘର ଦୁଆରେ ପହଞ୍ଚିଲେ। ସେଦିନ ପହଣ୍ଡିବିଜେ ସକାଶେ ଅନେକଲୋକ ଜମା ହୋଇ ଥିଲେ। କୌଣସି ଅସୁବିଧା ହେତୁ ତାହା ହୋଇ ପାରିଲା ନାହିଁ।

ତା୧୪ରିଖ ମଙ୍ଗଳବାର ପହଣ୍ଡି ବିଜେ ଦିନ ୨ଟା ସମୟରେ ଆରମ୍ଭ ହୋଇ ସନ୍ଧ୍ୟା ସରିକି ଶେଷ ହେଲା। ଏଦିନ ଆବାଳ ବନିତା ପ୍ରାୟ ୭/୮ ହଜାର ଲୋକ ସୁବିଧାରେ ପହଣ୍ଡିବିଜେ ଦର୍ଶନ କରି ଆନନ୍ଦିତ ହୋଇ ଅଛନ୍ତି।

ତା୧୫ରିଖ ବୁଧବାର ଦିନ ଗୁଣ୍ଡିଚାଘରେ ପ୍ରଭୂମାନେ ଭୋଗ ଖାଇ ରହିଲେ। ଏଦିନ ଗୋଟିଏ ଭୋଗ ହେବାରୁ ସହର ପ୍ରାୟ ସମସ୍ତ ଲୋକ ଗୁଣ୍ଡିଚାଘରକୁ ପ୍ରବାସ କରିବାକୁ ଉତ୍ସୁକ ହୋଇ ଧାବିତ ହୋଇ ଥିଲେ।

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୨୨୫*

# ପୁରୀ-ରଥଯାତ୍ରା

ପୂର୍ବପ୍ରକାଶିତ ବିବରଣରୁ ପାଠକମାନେ ଜାଣିଥିବେ ଯେ ଗୁଣ୍ଡିଚାଯାତ୍ରା ଯଥାସମୟରେ ନିର୍ବାହିତ ହୋଇ ଥିଲା ଅର୍ଥାତ୍ ଠାକୁରମାନେ ଜୁଲାଇମାସ ତା୧୩ରିଖ ସୋମବାର ସପ୍ତମୀଦିନ ଗୁଣ୍ଡିଚାଘରକୁ ବିଜେକଲେ ଏବଂ ଅନ୍ନଭୋଗାଦି ଯଥାରୀତିରେ ହୋଇଥିଲା। ମାତ୍ର ବାହୁଡ଼ାବିଜୟରେ ବଡ଼ ବିଳମ୍ବ ହୋଇ ଅଛି।

ତା୧୪ରିଖ ମଙ୍ଗଳବାର ନୀତିମାନ ସମୟାନୁସାରେ ହୋଇ ରଥ ଦକ୍ଷିଣମୂର୍ତ୍ତି ହେବାସକାଶ ଆଜ୍ଞାମାଳ ବିଜେ ହେଲା। ଯଥାସମୟରେ ରଥ ଦକ୍ଷିଣମୂର୍ତ୍ତି ହୋଇ ଥିଲେ। ଠାକୁରମାନେ ତା୧୬ରିଖ ଗୁରୁବାର ବାହୁଡ଼ାଦଶମିଦିନ ରଥାରୋହଣ କରିଥାନ୍ତେ ମାତ୍ର ତା୨୪ରିଖ ପର୍ଯ୍ୟନ୍ତ ତାହା ନ ହେବାରୁ ମହାପ୍ରଭୁ ଜଗନ୍ମୋହନରେ ଆସି ରହିଲେ।

ତା୨୫ରିଖ ରବିବାର ରଥମାନ ବିଜେଦ୍ୱାରେ ଉପସ୍ଥିତ ହେବାରୁ ବେଳ ୨ଟା ସରିକି ଠାକୁରମାନେ ରଥାରୂଢ଼ ହେଲେ ଓ ୪ଟା ସମୟରେ ପୁଲିସସାହେବ ଆସି ରଥଚଳା ଆରମ୍ଭ କରିବାରେ ବଡ଼ରଥ ବଳଗଣ୍ଡିଠାରେ ରହିଲେ। ବଡ଼ ଦୁଃଖର କଥା ଯେ ସାହେବ ପ୍ରଶଂସିତ ସକାଳଓଳି ରଥ ଚଳାଇବାର ଉଦ୍‌ଯୋଗ ନ କରି ନିୟ ୪ଟା ସମୟରେ ସ୍ୱୟଂ ଦଳବଳ ସହିତ ଆସି ରଥ ଚଳାଇବାରେ ଓ ବର୍ଷାହେତୁ ଦି୨ନ ରଥଚଳା ବନ୍ଦ ହେବାରେ କିଛି ବିଳମ୍ବ ହେଲା। ଯାହାହଉ ସାହେବ ପ୍ରଶଂସିତ ଏବର୍ଷ ବିଶେଷ ଯାତ୍ରୀ ନ ଥିବାରୁ ନବଯଉବନଠାରୁ ରଥଯାତ୍ରା ଶେଷ ପର୍ଯ୍ୟନ୍ତ ନିରାପଦେ ରଥ ସିଂହଦ୍ୱାରେ ଲାଗିବାରୁ ସୁଖ୍ୟାତ ଲାଭ କରି ଅଛନ୍ତି।

ତା୩୦ରିଖ ଗୁରୁବାର ୫ଟା ସମୟରେ ଗଣେଶଗୁରୁଜାଠାରୁ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ନନ୍ଦିଘୋଷ ରଥ ଚଳି ରାଜନଅରଦ୍ୱାରେ ଲକ୍ଷ୍ମୀ ନାରାୟଣ ଭେଟ ହୋଇ ୬ଟା ସମୟ ସନ୍ଧ୍ୟା ସରିକି ସିଂହଦ୍ୱାରେ ଲାଗିଲେ।

ତା୩୧ରିଖ ଶୁକ୍ରବାର ଚକ୍ରବୁଲା ଏକାଦଶୀ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦକ୍ଷିଣଭୁଜସ୍ଥ ସୁବର୍ଣ୍ଣଚକ୍ର ମଧ୍ୟାହ୍ନ ଧୂପ ସାରି ବିମାନରେ ସାତସାହି ଭ୍ରମଣ କରିବାର କେତେବର୍ଷ ହେଲା ଚଳି ଆସୁଅଛି ମାତ୍ର ଏ ନୀତି ଇନ୍ଦ୍ରଦ୍ୟୁମ୍ନଦେବ ମହାରାଜାଙ୍କ ସମୟରୁ ନୁହେ। ଗୁଣ୍ଡିଚା ଓ ପଞ୍ଚକ ଯାତ୍ରାରେ ଓଲାଉଠା ପ୍ରଭୃତି ହେବାରୁ ପୁରୀର ମହାରାଜା ଓ ବାବା ବ୍ରହ୍ମଚାରୀ ଏମାନେ ଚକ୍ର ଓ ନୃସିଂହଙ୍କୁ ସାତସାହିରେ ଭ୍ରମଣ କରିବାର ଚଳାଇ ଅଛନ୍ତି। ଏବର୍ଷ ଓଲାଉଠା ଏଠାରେ ନୋହିବାରୁ ଚକ୍ରଦେବତା ବୃଥା ଭ୍ରମଣ କରିବାକୁ ଇଛା ନ କରି ଏହିଦିନ ଦିନ ୧୨ଟା ସମୟରେ ପ୍ରଭୁ ବଡ଼ଦେଉଳ ରତ୍ନ ସିଂହସାନରେ ବିଜେକଲେ।

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୨୪୯*

# ପୁରୀ-ରଥଯାତ୍ରା

ଗତ ତା ୧୨ରିଖରେ ଏଠାରେ ଅନୁମାନିକ ତିରିସହଜାର ଯାତ୍ରି ହୋଇଥିବାର ଲେଖିଥିଲୁଁ। କିନ୍ତୁ ତା ୧୩ରିଖ ଠାରୁ ଯାତ୍ରିସଂଖ୍ୟା ଏପରି ବୃଦ୍ଧି ହେବାକୁ ଲାଗିଲା ଯେ ତା ୧୫ରିଖ ଶ୍ରୀଗୁଣ୍ଡିଚା ଦିନକୁ ଏଠାକୁ ଅନ୍ଦାଜ ୨୦୦୦୦ ଦୁଇଲକ୍ଷ ଯାତ୍ରି ହେବାର ଅନୁମାନ ହୋଇଥିଲା। ଘରଭଡ଼ା ବୃଦ୍ଧି ହେବାରୁ ଅଧିକାଂଶ ଯାତ୍ରି ବାହାରେ ପଡ଼ିଥିଲେ। ପ୍ରତ୍ୟେକ ସାହିର ରାସ୍ତା ଏବଂ ବାରିନ୍ଦ୍ରାମାନ ଯାତ୍ରିପୂର୍ଣ୍ଣ ହୋଇଥିଲା। ବଡ଼ ସୁଖର ବିଷୟ ଯେ ଯାତ୍ରିମାନେ ଏପରି ଦୀନାବସ୍ଥାରେ ପଡ଼ି ରହିବା ଦେଖି ଇନ୍ଦ୍ରଦେବ ଦୟା କରି ମେଘର ଆଡ଼ମ୍ବର ଭାଙ୍ଗି ଦେଇଥିଲେ।

ତା ୧୪ରିଖରେ ନବଯୌବନଯାତ୍ରା। ଏଦିନ ଶ୍ରୀଜିଉଙ୍କର ଅନବସର ଡାଟି ଫିଟିବାର ଯାତ୍ରିମାନଙ୍କର ଦର୍ଶନ ହେବାର ବିଧି ଅଛି। କିନ୍ତୁ ବଡ଼ ଦୁଃଖର ବିଷୟ ଯେ ଏ ଦିନ ଯାତ୍ରି ସଂଖ୍ୟା ଅଧିକ ହେବାର ଦେଖି ମାଜିଷ୍ଟ୍ରେଟ ଓ ପୁଲିସ ସାହେବ ଅନିଷ୍ଟ ହେବା ଶଙ୍କାରେ ନବଯୌବନ ଦର୍ଶନ ବନ୍ଦ ହେବା ଆଦେଶ ଦେଲେ ଏବଂ ପୂର୍ବଦିନ ରାତ୍ରରୁ ଚାରିଦ୍ୱାର ବନ୍ଦ ହୋଇ ପୁଲିସ ପ୍ରହରା ରହିଲେ। ଏତ୍‌ଦ୍ୱାରା ଯାତ୍ରିମାନେ ସେପରି ଦୁଃଖିତ ଏବଂ ଶୋକାକୁଳ ହୋଇଥିଲେ ତାହା ଲେଖିବା ବାହୁଲ୍ୟ ମାତ୍ର। ଏ ଦିନ ବରାବର ଦ୍ୱାର ବନ୍ଦ ରହିବାରୁ ଯାତ୍ରିମାନେ ଚାରିଦ୍ୱାର ସମ୍ମୁଖରେ ପୂର୍ଣ୍ଣ ହୋଇ ରହିଲେ ସେବକମାନେ ଓ ମନ୍ଦିରର ନିତ୍ୟବ୍ୟବହାର୍ଯ୍ୟ। ଜିନିସମାନ ମନ୍ଦିରମଧ୍ୟକୁ ଯିବାର ବଡ଼ ଅସୁବିଧା ହେବାରୁ ମହାପ୍ରଭୂଙ୍କ ନୀତି ହେଉ ହେଉ ପ୍ରଭାତ ହୋଇଗଲା। ଏବଂ ବଡ଼ସିଂହାର ଭୋଗ ହୋଇ ପାରିଲା ନାହିଁ। ସେବକମାନେ ଏବଂ ମହାପ୍ରସାଦମାନ ଶିକାଦ୍ୱାରା ପ୍ରାଚୀର ଲଙ୍ଘନ କରି ବାହାରକୁ ଆସିଲେ। ତଦ୍ଦ୍ୱାରା ଅନେକ ମହାପ୍ରସାଦ ଭଗ୍ନ ହୋଇ ଯିବାରୁ ସୁପକାରମାନଙ୍କର ଅନେକ କ୍ଷତି ହେଲା। ଯାତ୍ରିମାନେ ମହାପ୍ରସାଦ ନ ପାଇ ବଡ଼ କଷ୍ଟ ପାଇଲେ। ଯେବେ କେହି ଅସୀମକଷ୍ଟ ସହ୍ୟ କରି ଦୁଇ ଏକବୋଝ ମହାପ୍ରସାଦ ମନ୍ଦିରମଧ୍ୟରୁ ଆଣିଲା ତାହା ରାସ୍ତାରେ ବୈଷ୍ଣବ ଓ ନାଗାମାନେ ବଳାତ୍କାର ଛଡ଼ାଇ ଭାଙ୍ଗି ଖାଇଗଲେ।

ଏ ଦିନ ମାଜିଷ୍ଟ୍ରଟ, ପୁଲିସ, ଡାକ୍ତର ଏବଂ ବାରିକମିସ୍ତ୍ରୀ ସାହେବମାନେ ଥାଇଁ ଅପରାହ୍ନ ଘ୫ଣ୍ଟା ସମୟରେ ରଥତ୍ରୟ ଟଣା ହୋଇ ସିଂହଦ୍ୱାର ସମ୍ମୁଖରେ ଲାଗିଲା।

ତା ୧୫ରିଖ ଶନିବାର ଶ୍ରୀଗୁଣ୍ଡିଚା। ରଥ ତୟାରି ଅବଶିଷ୍ଟ ଥିବାରୁ ତାହା ଶେଷ ହୋଇ ରଥମଣ୍ଡନ ଓ ରଥ ପ୍ରତିଷ୍ଠାଦି କର୍ମ ଶେଷ ହୋଇ ପ୍ରଭୂମାନେ ରଥ ଉପରକୁ ବିଜେକଲା ସମୟକୁ ରାତ୍ର ଘ୧୨ଣ୍ଟା ହୋଇଥିଲା। ଏ ସମୟରେ ଆମ୍ଭେମାନଙ୍କର ମାଜିଷ୍ଟ୍ରେଟ ଓ ପୁଲୀସ ସାହେବ ଏବଂ ବାବୁ ମଧୁସୂଦନ ଦାସ ମହୋଦୟ ସ୍ୱୟଂ କାୟିକ ପରିଶ୍ରମ ଦ୍ୱାରା ବହୁକଷ୍ଟ ସ୍ୱୀକାର କରି ଯାତ୍ରିମାନଙ୍କର ଗୋଳମାଳ ନିବାରଣ କରିଥିଲେ। ଯେପରି ଠାକୁରମାନେ ରଥଉପରେ ବିଜେ କଲେ ତାହା ସଙ୍ଗେ ସଙ୍ଗେ ଯାତ୍ରିମାନେ ରଥଉପରେ ଚଢ଼ି ଏପରି ଭିଡ଼କଲେ ଯେ ଠାକୁରମାନଙ୍କୁ ପ୍ରଭାଉପରେ ରୁନ୍ଧିବାକୁ ଅବସର ହୋଇ ପାରିଲା ନାହିଁ। ତା ୧୬ ରିଖ ଦିବା ଘ୭ଣ୍ଟା ସମୟରେ ମାଜିଷ୍ଟ୍ରେଟ ଓ ପୁଲିସ ସାହେବ ଆସି ଅନବରତ ଘ୨ଣ୍ଟା ପରିଶ୍ରମ କରି ଯାତ୍ରିମାନଙ୍କୁ ବହିଷ୍କୃତ କରିବାରେ ମହାପ୍ରଭୂ ରଥଉପରେ ରୁନ୍ଧା ହେଲେ। ଏବଂ ବଳଭଦ୍ରଜିଉଙ୍କ ରଥ ଟଣା ହେଲା।

ରଥଉପରେ ଠାକୁରମାନେ ବିଜେ କରିବା ସମୟଠାରୁ ରଥରଣା ପର୍ଯ୍ୟନ୍ତ ସମୟ ମଧ୍ୟରେ ଯାତ୍ରିମାନେ ରଥ ତଳେ ଦଣ୍ଡାୟମାନ ହୋଇ ରଥଉପରକୁ ପଇସା, ଟଙ୍କା, ମୋହର ବୃଷ୍ଟି କରିଥିଲେ ଯାହାଭାଗ୍ୟରେ ଯାହା ଥିଲା ସେ ତାହା ନେଇ ଅଛି। ସୁଆର ସେବକମାନଙ୍କ କଥା ତେଣିକି ଥାଉ ସାମାନ୍ୟ ତେଲି, ତାମ୍ବୁଳୀ, ବୋଝିଆ, ପର୍ଯ୍ୟନ୍ତ ଯାହାର ଜୋର ଅଛି ସେ ଟ ୨୫/୫୦ଙ୍କା ପାଇଗଲା। କିନ୍ତୁ ଏସମୟ ମଧ୍ୟରେ ଯାତ୍ରିମାନେ ମହାପ୍ରଭୂଙ୍କ ଶ୍ରୀଅଙ୍ଗରେ ସଜୋରରେ ସ୍ୱର୍ଶ କରିବାରୁ ଶ୍ରୀଜିଉଙ୍କର ମୁଖାରବିନ୍ଦର ରଙ୍ଗମାନ ମଳିନ ଓ ବିବର୍ଣ୍ଣ ହୋଇ ଯାଇଥିଲା। ପ୍ରଭୂଙ୍କର ଏପରି କଷ୍ଟ ଗତ ଗୋବିନ୍ଦ ଦ୍ୱାଦଶୀଠାରୁ ଅଜିପର୍ଯ୍ୟନ୍ତ ଦେଖା ନ ଥିଲା। ଏପରି ଗୁଣ୍ଡିଚା ଯାତ୍ରା ମଧ୍ୟ ବହୁକାଳରୁ ଦେଖା ନ ଥିଲା। ଥଟାରି, ବଜାରି ମିଠାଇବିକ୍ରେତା ଏମାନେ ପଇସାକର ଦ୍ରବ୍ୟ ଚାରିପଇସାରେ ବିକ୍ରିକରି ସୁଦ୍ଧା ସେମାନଙ୍କ ନିକଟରେ ପଦାର୍ଥର ଅଭାବ ହୋଇଅଛି। ଯେତେ ଯାତ୍ରୀ ହୋଇଥିଲେ ଏମାନଙ୍କ ମଧ୍ୟରେ ଅଧିକାଂଶ ପଶ୍ଚିମା ଥିବାରୁ ଅଟା, ମଏଦା, ଘିଅ, ଚିନିର ବିଶେଷ ଆକ୍ରା ପଡ଼ିଅଛି। ରଥଉପରେ ପ୍ରଭୂଙ୍କୁ ଦର୍ଶନ କରି ତିନିଭାଗ ଯାତ୍ରି ବାହାରି ଗଲେଣି ଏବଂ କେତେକ ଯାଉଅଛନ୍ତି। ଆଉ କେତେକ ମଧ୍ୟ ଆସୁଅଛନ୍ତି।

ତା୧୬ରିଖ ପ୍ରାତଃକାଳରେ ବଳଭଦ୍ରଜିଉଙ୍କ ରଥ ଟଣା ହୋଇ ମାଉସୀମାଙ୍କ ନିକଟରେ ଲାଗିଲା। ଅପରାହ୍ନରେ ମାଜିଷ୍ଟେଟ ପ୍ରଭୃତି ହାକିମମାନେ ପୂର୍ବଦିନ ପରିଶ୍ରମରେ ଶାନ୍ତ ହୋଇ ଅବସର ନେବାରୁ ରଥଟଣା ବନ୍ଦ ହେଲା।

ତା୧୭ରିଖ ପୂର୍ବାହ୍ନରେ ମାଜିଷ୍ଟ୍ରେଟ, ପୁଲିସ ଏବଂ ମଧୁବାବୁ ଉପସ୍ଥିତ ଥାଉଁ ସୁଭଦ୍ରାଦେବୀଙ୍କ ରଥ ଟଣାହେଲା ଏବଂ ନରେନ୍ଦ୍ର ଶଙ୍ଖନିକଟରେ ଅବସ୍ଥାପିତ ହେଲା। ଅପରାହ୍ନରେ ବଡ଼ରଥ ଟଣା ହୋଇ ବାଘଆଖଡ଼ା ସମ୍ମୁଖରେ ରହିଲା।

ତା ୧୮ରିଖ ପୂର୍ବାହ୍ନରେ ବର୍ଷାର ଆଗମ ହେତୁ ସୁଭଦ୍ରାଦେବୀଙ୍କ ରଥ ଅଳ୍ପଦୂର ଯାଇଥିଲା। ଅପରାହ୍ନ ବେଳରେ ବଳଭଦ୍ରଙ୍କ ରଥନିକଟରେ ରହିଲା।

ଅଦ୍ୟ ତା୧୯ରିଖ ହେରାପଞ୍ଚମୀ। ଆଜି ଲକ୍ଷ୍ମୀଠାକୁରାଣୀ ଗୁଣ୍ଡିଚାମନ୍ଦିରକୁ ଯାଇ ଶ୍ରୀଜଗନ୍ନାଥଦେବଙ୍କର ରଥ ଭାଙ୍ଗି ଦେଇ ଅଛନ୍ତି। କିନ୍ତୁ ଶ୍ରୀଜଗନ୍ନାଥଦେବଙ୍କର ଅଦ୍ୟ ଘ୮ଣ୍ଟା ଅଧେ ସମୟରେ ରଥ ଟଣା ହୋଇ ବଳଗଣ୍ଡିନିକଟରେ ଥିବାରୁ ସେହିଠାରେ ହେରାପଞ୍ଚମୀ କାର୍ଯ୍ୟସମାଧା ହେବ।

*ଉତ୍କଳ ଦୀପିକା-୧୮୯୩: ପୃଷ୍ଠା ସଂଖ୍ୟା-୨୩୨*

## ପୁରୀ ରଥଯାତ୍ରା

ଏ ବର୍ଷ ଶ୍ରୀଗୁଣ୍ଡିଚା ଦୁଇ ତିନିଦିନ ପୂର୍ବରୁ ଯାତ୍ରୀମାନଙ୍କର ଆଗମନ କିଛି ବିଶେଷ ପରିମାଣରେ ହୋଇଥିଲା। ଶ୍ରୀଗୁଣ୍ଡିଚାଦିନ ସର୍ବସୁଦ୍ଧା ଅନୁମାନିକ ୧୫ ହଜାର ଯାତ୍ରୀ ହୋଇଥିଲେ ଜଟନୀ ପର୍ଯ୍ୟନ୍ତ ରେଳର ଗତାୟତର ସୁବିଧା ହେତୁ ଦାକ୍ଷିଣାତ୍ୟ; ନାଗପୁରୀ ଓ ହାଇଦ୍ରାବାଦୀ ଯାତ୍ରୀ ହ୬/୭ ହଜାରରୁ ନ୍ୟୁନ ହୋଇ ନ ଥିଲା। ବଙ୍ଗଦେଶୀୟ ଯାତ୍ରୀ ହ୩/୪ଜାରରୁ ଅଧିକ ହୋଇ ନ ଥିଲା। ପଞ୍ଚକ୍ରୋଶୀ ଓ ଅନ୍ୟାନ୍ୟ ଯାତ୍ରୀସଂଖ୍ୟା ହ୫/୬ଜାର

ମଧ୍ୟ ହୋଇଥିଲା ଓଲାଉଠା ବା ଅନ୍ୟାନ୍ୟ ରୋଗର ପ୍ରାଦୁର୍ଭାବ ନ ଥିବାରୁ ଯାତ୍ରୀମାନେ ସୁଖରେ ଦର୍ଶନ କରି ଚାଲି ଯାଉଅଛନ୍ତି।

ଗତ ତା ୧୦ରିଖ ପ୍ରଭାତରେ ଶ୍ରୀ ଜିଉଙ୍କର ଅନବସର ତାଟୀଫିଟି ପୁଲିସ ପ୍ରଭୃତି ସାହାଯ୍ୟ ରହି ଯାତ୍ରୀମାନେ ନବଯୌବନ ଦର୍ଶନ କରିଥିଲେ। ତା୧୦/୧୧ରିଖ ଦୁଇଦିନ ଉଭାଯାତ୍ରା ହୋଇଥିଲା। ସୁତରାଂ ଦୁଇଦିନ ଯାତ୍ରୀମାନେ ସ୍ୱଚ୍ଛନ୍ଦରେ ଦର୍ଶନ କରିଥିଲେ। ତା୧୧ରିଖ ଦିନ ଶ୍ରୀଜିଉଙ୍କର ନେତ୍ରୋତ୍ସବ ବିଧି ସମ୍ପନ୍ନ ହୋଇ ସକାଳ ଧୂପ ସରିବା ଉତ୍ତାରୁ ରଥକୁ ଆଜ୍ଞାମାଳ ଯାଇଥିଲା। ସେ ସମୟକୁ ରଥର ଅନେକ କାର୍ଯ୍ୟ ଅବଶିଷ୍ଟ ଥିବା ଏବଂ ଡିଷ୍ଟ୍ରିକଇଞ୍ଜିନିୟର ସାର୍ଟିଫିକେଟ ଦେଇ ନ ଥିବାରୁ ରଥ ସିଂହଦ୍ୱାରକୁ ଯାଇ ପାରିଲା ନାହିଁ। ଏବର୍ଷରଥର ତୟାର ସକାଶେ ଏମମାସ ଅଧିକ ଥିଲେହେଁ ରାଜବାଟୀର ଅମନୋଯୋଗୀତା ବା ଦୁରବସ୍ଥା ବଶତ ଗୁଣ୍ଡିଚାଦିନ ପର୍ଯ୍ୟନ୍ତ ରଥର ଆବଶ୍ୟକୀୟ ଅନେକ କାର୍ଯ୍ୟ ଦାବୀ ପଡ଼ି ରହିଥିଲା। ପରଦିନ ତା୧୨ରିଖ ଶ୍ରୀଗୁଣ୍ଡିଚାଦିନ ପ୍ରାୟ ଘ୧୦ଣ୍ଟା ସମୟରେ ରଥମାନେ ସିଂହଦ୍ୱାରରେ ଉପସ୍ଥିତ ହୋଇଥିଲା। ଏବଂ ଏଦିନ ସନ୍ଧ୍ୟାପର୍ଯ୍ୟନ୍ତ ରଥର ଆବଶ୍ୟକୀୟ କେତେକ କର୍ମମାନ ଯଥା କଥଞ୍ଚିତ ଶେଷ ହେବାର ରଥ ମଣ୍ଡନ ଓ ରଥପ୍ରତିଷ୍ଠାଦି ବିଧି ହୋଇ ରାତ୍ର ପ୍ରାୟ ଘ୩ଣ୍ଟା ଠାରେ ପ୍ରଭୁମାନେ ପହଣ୍ଡି ବିଜେ କରି ରଥାରୂଢ଼ ହୋଇଥିଲେ। ଏଦିନ ସମୟେ୨ ସାମାନ୍ୟ ଏକ୨ ଅଶ୍ରା ବୃଷ୍ଟି ହେଉଥିଲେ ହେଁ ତଦ୍ୱାରା ଯାତ୍ରୀମାନଙ୍କର ବିଶେଷ କ୍ଲେଶ ହୋଇ ପୂର୍ବଦିନ ରଥମାନେ ସିଂହଦ୍ୱାରେ ଲାଗି ଶ୍ରୀ ଗୁଣ୍ଡିଚାଦିନ ପ୍ରାତଃକାଳରେ ପ୍ରଭୁମାନେ ରଥାରୂଢ଼ ହୋଇଥାନ୍ତେ। ତାହା ନ ହୋଇ ବିଶେଷ ରାତ୍ରରେ ପ୍ରଭୁମାନଙ୍କର ପହଣ୍ଡି ବିଜେ ହେବାରୁ ଦର୍ଶନାର୍ଥୀ ଯାତ୍ରୀମାନଙ୍କର ପକ୍ଷେ ଅନେକ ଅସୁବିଧା ହୋଇଥିଲା।

ତା୧୦ରିଖ ସକାଳେ ରଥ ଟଣା ହେବା ଆଶାରେ ବିଶେଷ ଜନତା ହୋଇଥିଲା। କିନ୍ତୁ କୌଣସି କାରଣରୁ ତାହା ନ ହୋଇ ଅପରାହ୍ନ ପ୍ରାୟ ଘ୪ଣ୍ଟା ସମୟରେ ପୁଲିସ ଓ ରାଜକର୍ମଚାରିବାନେ ଉପସ୍ଥିତ ଥାଇ ରଥ ଟଣା ଆରମ୍ଭ ହୋଇ ବଡ଼ରଥ ବଳଗଣ୍ଡି ପଶ୍ଚାତ ଭାଗରେ ଅବସ୍ଥାପିତ ହେଲା।

ତା୧୪ରିଖ ଦିନ ସକାଳେ ଦେବୀରଥ ଟଣା ହୋଇ ନରେନ୍ଦ୍ର ଶଙ୍ଖ ଅଗ୍ରତର ଓ ଏଦିନ ଅପରାହ୍ନରେ ବଡ଼ରଥ ବାଘଆଖଡ଼ା ଅତିକ୍ରମ କରି ରହିଲା।

*ଉତ୍କଳ ଦୀପିକା-୧୮୯୩: ପୃଷ୍ଠା ସଂଖ୍ୟା-୨୩୨*

## ପୁରୀ ରଥଯାତ୍ରା

ଏବର୍ଷ ଶ୍ରୀ ଜଗନ୍ନାଥ ଦେବଙ୍କର ରଥଯାତ୍ରାରେ ବଙ୍ଗଦେଶୀୟ ଅଧିକାଂଶ ବିଧବା ସ୍ତ୍ରୀମାନଙ୍କର ସମାଗମ ହୋଇଅଛି। ଯାତ୍ରୀ ପ୍ରାୟ ଦେଢ଼ଲକ୍ଷ ଓ ଭଗବତୀ ଯୋଗମାୟାଙ୍କର ବିଶେଷ ପ୍ରକୋପ। ଜ୩୦/୪୦ଣରୁ ତା୧୧ରିଖ ଦିବା ଘ୮ଣ୍ଟା ସୁଦ୍ଧା ଜ୧୦୬ଣ ପର୍ଯ୍ୟନ୍ତ ଦୈନିକ ମୃତ୍ୟୁ ସଂଖ୍ୟା ବୃଦ୍ଧିହୋଇଅଛି। ଏହା ଯେ କେତେଦୂର ଠିକ୍ ବୋଲାଯାଇ ନ ପାରେ। ଏତେ ଜନତାରେ ଯେ ମୃତ୍ୟୁର ସଂଖ୍ୟା ହେଉଅଛି ଏହା ବଡ଼ ଉତ୍କୃଷ୍ଟ।

ଶ୍ରୀଜିଉଙ୍କର ନବ ଯୌବନ ଦର୍ଶନ ଉପଲକ୍ଷେ ସମାରୋହ ହୋଇଥିବା ସ୍ଥଳେ ମହାପ୍ରଭୂ x x x x x x x ଅମାବାସ୍ୟା ପୂଜାର ଭବରେ ଦ୍ୱାର ବନ୍ଦ ଥିଲା। ପାଠକବୃନ୍ଦ ଏଥିପୂର୍ବରୁ ମନ୍ଦିର ସୁବିଧା ବୁଝିପାରିବେ। ଅମାବାସ୍ୟା ଦିନରୁ ଦର୍ଶନର ଯୌବନ ଦର୍ଶନ ନ ହେବାର ଦିନ ନବଦିଆ ଯାଇ ରାତ୍ର ଦ୍ୱିପ୍ରହର ଉତ୍ତାରୁ ତାହା ଘୋଷଣା ଦର୍ଶନ ହେବାର ପଶ୍ଚାତ୍ ପ୍ରସ୍ତାବ ହେଲା। ପଟି ଫିଟି ହିନ୍ଦୁ ହାକିମମାନେ ନିଜ ଓ ସ୍ୱଗ୍ରାମାଗତ ମହୀଳାବର୍ଗଙ୍କ ସହିତ ରାତ୍ର ଦ୍ୱିପହର ଉତ୍ତାରୁ ସର୍ବସାଧାରଣଙ୍କ ସକାଶ ଦ୍ୱାର ଖୋଲା ନ ହେବା ପୂର୍ବରୁ ଆଗେ ପ୍ରବେଶ କରି ଯଥା ସମୟରେ ଦର୍ଶନ କଲେ। ସେ ପର୍ଯ୍ୟନ୍ତ ଦ୍ୱାର ଖୋଲା ଯାଇ ନ ଥିବାରୁ ଦର୍ଶନାକାଙ୍କ୍ଷି ମାନଙ୍କ ଦ୍ୱାରା ଚାରି ଦ୍ୱାରରେ ବିଶେଷ ଜନତା ହୋଇଥିବାରୁ ପଣ୍ଡାମାନେ ଆପଣା ଆପଣା ଯାତ୍ରିମାନଙ୍କ ସକାଶେ ଆପତ୍ତି କରିବାହେତୁ ଉପସ୍ଥିତ ଥିବା ହାକିମମାନଙ୍କ ସହିତ ମନ୍ଦିର କର୍ମଚାରୀମାନଙ୍କର ବିବାଦ ଘଟି ସର୍ବସାଧାରଣ ଦର୍ଶନ ବନ୍ଦ ହେଲା। ଯାତ୍ରା ଶେଷ ହେଲେ ଏଥିର ଫଳାଫଳ ଜଣାଯିବ।

ତା୮ରିଖ ପ୍ରତିପଦ୍ ଦିବସ ଆଜ୍ଞାମାଳ ଆସି ଦୁଇ ରଥ ସିଂହଦ୍ୱାରସ୍ଥ ହେଲା। ପରଦିନ ତା୯ରିଖ ଶ୍ରୀଗୁଣ୍ଡିଚା ଦିନ ପୂର୍ବାହ୍ନରେ ଅନ୍ୟ ଏକ ରଥ ଲାଗିଲା। ରାତ୍ର ଘ୯ଣ୍ଟାଠାରେ ପହଣ୍ଡି ବିଜେ ଆରମ୍ଭ ହୋଇ ଘ୧୨ଣ୍ଟା ମଧ୍ୟରେ ପ୍ରଭୂମାନେ ରଥାରୂଢ଼ ହେଲେ। ତା୧୦ରିଖ ପୂର୍ବାହ୍ନରେ ବଳଦେବଜିଉଙ୍କ ରଥ ବଳଗଣ୍ଡିଠାରେ ଓ ଦେବୀ ରଥ ମାଉସୀମା ନିକଟରେ ଅବସ୍ଥାପିତ ହେଲା। ତା୧୧ରିଖ ପୂର୍ବାହ୍ନରେ ଦେବୀ ରଥ କିଛିଦୂର ଯାଇ ଶ୍ରୀ ଜଗନ୍ନାଥଦେବଙ୍କ ରଥ ଦେବୀରଥର ପଶ୍ଚାଦ୍‌ବର୍ତ୍ତୀ ହେଲା। ଅପରାହ୍ନ ଘ୪ଣ୍ଟା ସମୟରୁ ବୃଷ୍ଟି ଆରମ୍ଭ ହେବାରୁ ରଥ ଟଣା ବନ୍ଦ ହେଲା।

ଓଲାଉଠାର ବିଶେଷ ପ୍ରାଦୁର୍ଭାବ। ବଡ଼ଦାଣ୍ଡ ଓ ଗଳିମାନଙ୍କରେ ମୃତ ଓ ରୋଗୀ ଦାଣ୍ଡରେ ସୁଦ୍ଧା ପଡ଼ି ରହିଅଛନ୍ତି। ମେହେନ୍ତରମାନେ ଡୋଲି ବହିବାରେ ଅଶକ୍ତ ହୋଇ ପଡ଼ିବାରୁ କଚରାଗାଡ଼ିମାନଙ୍କରେ ୧୦/୧୫ଜୀବିତ ଓ ମୃତ ପକାଇ ନେଉଅଛନ୍ତି। ଖୋରଧା, ସତ୍ୟବାଦୀ ଇତ୍ୟାଦିରୁ ମେହେନ୍ତର ଆସି ନିଯୁକ୍ତ ହୋଇଥିଲେ ସୁଦ୍ଧା ବଡ଼ଦାଣ୍ଡର ନାଳ ସଫା ହୋଇ ପାରୁ ନାହିଁ। ଡାକ୍ତରମାନେ ଲଜିଂହାଉସରୁ କଲେରା ରୋଗୀ ବାହାରିଲେ ଯାତ୍ରୀ ବାହାର କରି ଗୃହ ପରିଷ୍କାର କରିବା ପ୍ରଥା ଭଲ ଚଳୁ ଥିଲା। କିନ୍ତୁ ତହିଁରେ ଘରବାଲାମାନଙ୍କର ବିଶେଷ କଷ୍ଟ ହୋଇଥିଲା। ବିଶେଷ ଚିକିତ୍ସା ହୋଇ ନ ପାରିବାର ସମ୍ଭବ ଥିବା ସ୍ଥଳେ କଲେରା ହାସପିଟାଲରୁ ରୋଗୀ ବଞ୍ଚି ଆସିବାର ଦେଖା ଯାଉଅଛି।

ଯାତ୍ରୀମାନେ ଆସିବା ଦିନରୁ ବର୍ଷା ହୋଇ ନ ଥିବାରୁ କଷ୍ଟ ଭୋଗ କରି ନ ଥିଲେ। ତା୧୧ରିଖ ଅପରାହ୍ନରୁ ବର୍ଷା ହେବାର ଆରମ୍ଭ ହେବାରୁ କେହି କେହି ରେଳ ଷ୍ଟେସନ କେହି କେହି ଅବା ଜଗନ୍ନାଥ ରୋଡ କିମ୍ବା ନଦୀ ନାଳ ନିକଟରେ ପଡ଼ି ବିଶେଷ କଷ୍ଟ ଭୋଗ କରୁଅଛନ୍ତି।

ଟାଉନ ମଧ୍ୟରେ କଲେରାର ଅତ୍ୟନ୍ତ ପ୍ରାଦୁର୍ଭାବ ଦେଖି ଜିଲା ସ୍କୁଲ ହେଡମାଷ୍ଟର ଇନ୍‌ସ୍ପେକ୍ଟର ମହୋଦୟଙ୍କ ନିକଟକୁ ଟେଲିଗ୍ରାଫ କରି ଆପତତଃ ଦି୫ନ ସକାଶେ ସ୍କୁଲ ବନ୍ଦ କରିଅଛନ୍ତି। କଚେରୀର କେତେକ ଅମଲା ଉକ୍ତ ରୋଗଗ୍ରସ୍ତ ଥିବା ରିପୋର୍ଟ ହେବାରୁ କିଛି ଦିନ ସକାଶ କଚେରୀ ବନ୍ଦ ହେବାର କଥା ଶୁଣା ଯାଉଅଛି।ଇତି।

*ଉତ୍କଳ ଦୀପିକା-୧୮୯୯: ପୃଷ୍ଠା ସଂଖ୍ୟା-୨୩୩*

# ପୁରୀ ରଥଯାତ୍ରା

ଏବର୍ଷ ରଥ କାର୍ଯ୍ୟ ଯେପରି ଶିଥିଳ ଭାବରେ ଚାଲୁଥିଲା ନିୟମିତ ସମୟ ମଧ୍ୟରେ ରଥ କାର୍ଯ୍ୟ ଶେଷ ହେବାର ଅସମ୍ଭବ ବୋଧ ହେଉଥିଲା। କିନ୍ତୁ ପୂର୍ବ ମାନେଜର ଶ୍ରୀଯୁକ୍ତ ପ୍ରାଇସ ସାହେବ ଆସିବା ଦିନଠାରୁ ରଥ କର୍ମପ୍ରତି ବିଶେଷ ମନୋଯୋଗୀ ହୋଇ କାର୍ଯ୍ୟକାରୀମାନଙ୍କୁ ନାନାବିଧ ଉତ୍ସାହ ଓ ପୁରସ୍କାର ଦେବାରେ ଯଥା ସମୟରେ ରଥକାର୍ଯ୍ୟ ଶେଷ ହୋଇଥିଲା। ପ୍ରାଇସ ସାହେବଙ୍କୁ ଅଣାଇ ରାଜା ଭଲ କରିଅଛନ୍ତି ଏବଂ ପୁରୀବାସିମାନେ ଏଥିରେ ବଡ଼ ଆନନ୍ଦିତ ଅଛନ୍ତି।

ଯାତ୍ରାର ଦି୨/୩ନ ପୂର୍ବରୁ ଯାତ୍ରିସ୍ରୋତ ଏମନ୍ତ ମାଡ଼ି ଆସିଲା ଯେ ପୃଥକ ଟ୍ରେନ୍ ବନ୍ଦୋବସ୍ତ ହୋଇ ଦୈନିକ ଚାରିଥର ଆସୁଥିଲେହେଁ ଷ୍ଟେଶନମାନଙ୍କରେ ଅନେକାନେକ ଯାତ୍ରୀ ପଡ଼ି ରହିଥିବାର ଶୁଣାଗଲା। ପ୍ରାୟ ୫୦ ହଜାର ଯାତ୍ରୀ ହୋଇଥିଲେ। ପାଶ ଘର ଓ ମିଉନିସିପାଲିଟୀ ତାଟିଘରମାନ ପୂର୍ଣ୍ଣ ହୋଇଗଲା ଓ ଅତିରିକ୍ତ ଫିସ ଦେଇ ଘର ପାଶ କରିବାପାଇଁ ଲୋକେ ବ୍ୟସ୍ତ ହେଲେ। ଘରଭଡ଼ା ଜୋର ଦେଖି ଯାତ୍ରିମାନେ ବାଧ୍ୟ ହୋଇ ତାଟିଘରେ ପଡ଼ି ରହିଲେ।

ଗତ ତା୨୮ରିଖ ଗୁରୁବାର ପ୍ରାତଃକାଳରେ ତାଟି ଫିଟି ଶ୍ରୀଜିଉଙ୍କର ନବଯୌବନ ଦର୍ଶନ ଆରମ୍ଭ ହୋଇଥିଲା। ମନ୍ଦିର ପ୍ରତିହାରି ନିଯୋଗ ଯାତ୍ରିମାନଙ୍କୁ ସୁବିଧାରେ ଦର୍ଶନ କରାଇବାଦ୍ୱାରା ନିଜ କର୍ତ୍ତବ୍ୟକର୍ମ ପାରଦର୍ଶିତାର ପରିଚୟ ଦେଇଥିଲେ ଓ ପୁଲୀସ ଶାନ୍ତିରକ୍ଷାର୍ଥ ନିଯୁକ୍ତ ଥିଲେ। ଏବର୍ଷ ଯାତ୍ରିମାନେ ନବଯୌବନ ଦର୍ଶନରେ ତୃପ୍ତି ଲାଭ କରିଥିଲେ।

ଏଦିନ ଅପରାହ୍ନ ଘ୪ଣ୍ଟା ପରେ ରଥକୁ ଆଜ୍ଞାମାଳ ଆସିଥିଲା ଏବଂ ଡିଷ୍ଟ୍ରିକ୍ଟ ଇଞ୍ଜିନୀୟର ସାହେବ ସାର୍ଟିଫିକେଟ ଦେବା ପର ପୁଲୀସ ନିଯୁକ୍ତ ଥାଇ ପ୍ରାୟ ଘ୫ଣ୍ଟାଠାରେ ରଥଟଣା ଆରମ୍ଭ ହୋଇଥିଲା। ଏବଂ ସନ୍ଧ୍ୟାସୁଦ୍ଧା ଦୁଇ ରଥ ସିଂହଦ୍ୱାରରେ ଲାଗିଥିଲା।

ପରଦିନ ତା୨୯ରିଖ ଶୁକ୍ରବାର ଶ୍ରୀଗୁଣ୍ଡିଚା ଦିନ ପୂର୍ବାହ୍ନରେ ଅବଶିଷ୍ଟ ଏକ ରଥ ଟଣାହୋଇ ସିଂହଦ୍ୱାରରେ ଉପସ୍ଥିତ ହେବାରୁ ରଥମଣ୍ଡନ ଓ ପ୍ରତିଷ୍ଠାଦି ବିଧି ହୋଇ ରାତ୍ର ପ୍ରାୟ ଘ୮ଣ୍ଟା ଠାରେ ଖେଚଡ଼ି ଭୋଗ ଶେଷ ହୋଇଥିଲା। ଘ୧୦ଣ୍ଟା ପରେ ପହଣ୍ଡି ବିଜେ ଆରମ୍ଭ ହୋଇ ଘ୧୨ଣ୍ଟା ସମୟରେ ଠାକୁରମାନେ ରଥାଧିରୂଢ଼ ହେଲେ।

ଏଦିନ ସମସ୍ତ ଯାତ୍ରିସଂଖ୍ୟା ଅନ୍ୟୁନ ଏକଲକ୍ଷ ଥିବାର ଅନୁମାନ ଦେଉଥିଲା ଏବଂ ପହଣ୍ଡି ସମୟରେ ବଡ଼ଦାଣ୍ଡ ଲୋକାରଣ୍ୟ ହୋଇ ଯାତ୍ରିମାନଙ୍କ ଆନନ୍ଦ ଧ୍ୱନିରେ ପ୍ରତିଧ୍ୱନିତ ହେଉ ଥିଲା।

ତା୩୦ରିଖ ଶନିବାର ପୂର୍ବାହ୍ନରେ ବଳଦେବ ଜିଉଙ୍କ ରଥଟଣା ଆରମ୍ଭ ହୋଇ ବଳଗଣ୍ଡି ନିକଟରେ ଓ ଅପରାହ୍ନରେ ଦେବୀରଥ ତାହାର ପୃଷ୍ଠସ୍ଥ ଏବଂ ବଳଦେବ ଜିଉଙ୍କ ରଥ ବାଘଆଖଡ଼ା ପୋଲ ନିକଟରେ ରହିଲା। ଉକ୍ତ ରଥ ଆଘାତରେ ପୋଲର କେତେକ ଅଂଶ ଭାଙ୍ଗି ଯାଇଥିଲା ଓ ରଥ କ୍ରମାନିମ୍ନସ୍ଥାନରେ ବକ୍ରଭାବରେ ଅବସ୍ଥାପିତ ହୋଇଥିଲା।

ତା୧ରିଖ ରବିବାର ପୂର୍ବାହ୍ନରେ ଶ୍ରୀ ଜଗନ୍ନାଥ ଦେବଙ୍କ ରଥ ଟଣା ହୋଇ ମାଉସୀମା

ନିକଟରେ, ଅପରାହ୍ଣରେ ଦେବୀରଥ ବଳଦେବଙ୍କ ରଥ ପୃଷ୍ଠରେ ଓ ବଳଦେବ ଜିଉଙ୍କ ରଥ ଗୁଣ୍ଡିଚା ମନ୍ଦିରସ୍ଥ ହେଲା। ତା୨ରିଖ ସୋମବାର ପୂର୍ବାହ୍ଣରେ ଜଗନ୍ନାଥ ଦେବଙ୍କ ରଥ କିଛିଦୂର, ଅପରାହ୍ଣରେ ଦେବୀରଥ ଗୁଣ୍ଡିଚା ମନ୍ଦିରରେ ଲାଗିଲା ଏବଂ ଜଗନ୍ନାଥଦେବଙ୍କ ରଥ ପୋଲ ପାର ହୋଇ ରହିଥିଲା। ଏ ଦିନ ରାତ୍ରରେ ବର୍ଷା ହେବାରୁ ପରଦିନ ତା୩ରିଖ ପୂର୍ବାହ୍ଣରେ ଜଗନ୍ନାଥ ଦେବଙ୍କ ରଥ ଗୁଣ୍ଡିଚା ମନ୍ଦିରରେ ଲାଗିଛି। ଏ ଦିନ ହେରା ପଞ୍ଚମୀରେ ଲକ୍ଷ୍ମୀଦେବୀ ସନ୍ଧ୍ୟା ଧୂପ ପରେ ହେରା ଗୋହରି ରାସ୍ତାରେ ଅତୀର୍କିତ ଭାବରେ ଗମନ କରି ଶ୍ରୀ ଜଗନ୍ନାଥ ଦେବଙ୍କ ରଥ ଭଗ୍ନ କରିବାର ନୀତି ଥିବାରୁ ଏ ଦିନ ରାତ୍ରରେ ପହଣ୍ଡିବିଜେ ହୋଇ ପାରିଲା ନାହିଁ। ତେବେ ଚାରିଦିନରେ ତିନିରଥ ଗୁଣ୍ଡିଚା ମନ୍ଦିରରେ ଲାଗିବା ଅବଶ୍ୟ ସୁଖର ବିଷୟ।

ତା୪ରିଖ ବୁଧବାର ଅପରାହ୍ଣରେ ପହଣ୍ଡି ବିଜେ ହେଲେ ଏ ବର୍ଷ ଗୁଣ୍ଡିଚା ମଣ୍ଡପରେ ଦୁଇଦିନ ପୂର୍ଣ୍ଣ ଭୋଗ ହେବ।

ଓଲାଉଠାର ପ୍ରକୋପ ଗତବର୍ଷ ପ୍ରାୟ ନ ଥିଲେହେଁ ଏକାବେଳେ ଅଦୃଶ୍ୟ ହୋଇ ନ ଥିଲା। ଗୁଣ୍ଡିଚାର ପୂର୍ବ ଓ ପର ଦି୫/୬ନରେ ସାମାନ୍ୟ ପରିମାଣରେ ଯାତ୍ରୀ ଉକ୍ତ ରୋଗରେ ଆକ୍ରାନ୍ତ ହୋଇ କେହି କେହି ମୃତ ହୋଇଅଛନ୍ତି।

ଆଜିକାଲି ସମସ୍ତ ଯାତ୍ରୀ ଚାଲି ଯାଉଅଛନ୍ତି। ସାମାନ୍ୟ ଯେଉଁମାନେ ଅଛନ୍ତି ସେମାନେ ବାହୁଡ଼ା ଦେଖି ପ୍ରତ୍ୟାଗମନ କରିବେ।

*ଉତ୍କଳ ଦୀପିକା-୧୯୦୦: ପୃଷ୍ଠା ସଂଖ୍ୟା-୨୧୨*

## ପୁରୀ ରଥଯାତ୍ରା

ପୁରୀ ରଥଯାତ୍ରା ଏପର୍ଯ୍ୟନ୍ତ ଶେଷ ହୋଇ ନାହିଁ। ଠାକୁରମାନେ ଗୁଣ୍ଡିଚା ମନ୍ଦିର ଜଗମୋହନରେ ଚିତାଲାଗି ପର୍ଯ୍ୟନ୍ତ ରହିବାର କେବେ ଦେଖା ନ ଥିଲା। ଏ ବର୍ଷ ତାହା ଘଟିବାରୁ ଚିତାଲାଗି ବନ୍ଦ ହେଲା। ଚକ୍ରବୁଲା ଏକାଦଶୀ ପୂର୍ବରୁ ଦୁଇଥର ଦକ୍ଷିଣମୂର୍ତ୍ତୀ ହୋଇଥିଲା ମାତ୍ର ଜଗନ୍ନାଥଙ୍କର ରଥ ଦକ୍ଷିଣମୂର୍ତ୍ତୀ ହେବା ବେଳେ ଦୁଇଗୋଟିଚକ ଭାଙ୍ଗିଗଲା ଏବଂ ସେସବୁ ସଜାଡ଼ିବା ଓ ଇଞ୍ଜିନିୟରଙ୍କ ସାର୍ଟିଫିକେଟ ନେଇ ରଥ ଟଣା ଆରମ୍ଭ ହେବାରେ ଦି୩/୪ନ ବାହାରିଗଲା। ତହିଁ ଉତ୍ତାରୁ ପ୍ରତିଦିନ ରଥଟଣା ହେଲେହେଁ ସେହି ଚକଦ୍ଵୟ ମୋଡ଼ି ହୋଇ ବାଲିରେ ପୋତି ପଡ଼ିଲା ପରି ହୋଇଅଛି ଆଉ ଚାଲୁ ନାହିଁ। ରାଜାଙ୍କ ପକ୍ଷର ୪/୫ ଶତ ବେଠିଆ ବାହୁଡ଼ା ଦଶମୀ ବାସି ଦିନଠାରୁ ଦୈନିକ ଟ୦/୩ ପାହୁଲା ଲେଖାଏଁ ଖୋରାକି ନେଇ ରଥଟଣା କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ଏବଂ ବୃଷ୍ଟି ଜଳରେ ରଥ ଦଉଡ଼ିମାନ ଛିଣ୍ଡି ଯିବାରୁ ନୂଆ ଦଉଡ଼ି ପ୍ରସ୍ତୁତ ହୋଇ ଦିଆ ଯାଉଅଛି। ମାତ୍ର ପୂର୍ବ ବର୍ଷମାନଙ୍କରେ ପୁଲୀସ କର୍ମଚାରୀ ଓ ରାଜାଙ୍କର କର୍ମଚାରୀମାନେ ଯେପରି ଏକଯୋଗରେ ଅତ୍ୟନ୍ତ ମନୋଯୋଗ ପୂର୍ବକ ଶୀଘ୍ର ରଥଟଣାର ଯତ୍ନ କରୁଥିଲେ ଏ ବର୍ଷ ସେପରି ଦେଖାଯାଉ ନାହିଁ। ଏହା ମଧ୍ୟ ବିଳମ୍ବର ଗୋଟିଏ କାରଣ ଅଟେ। ଦୁଇ ବେଳା ରଥ ଟଣା ନ ହୋଇ କେବଳ ଅପରାହ୍ଣ ଏକଥର ସେ କାର୍ଯ୍ୟ ହେଉଅଛନ୍ତି। ଝୁଲଣଯାତ୍ରା ଆସନ୍ତା ଶୁକ୍ରବାର ଆରମ୍ଭ ହେବ। ଏଥି ମଧ୍ୟରେ ଠାକୁରମାନେ

ନୀଳାଦ୍ରି ବିଜୟ ହେବାର ଆଶା ଦିଶୁ ନାହିଁ ସୁତରାଂ ସେ ଯାତ୍ରା ବନ୍ଦ ହେବାର ଭୟ ହେଉଅଛି। ଲୋକେ ଏ ସମସ୍ତ ଘଟନା ଅଶୁଭ ମନେ କରି ବ୍ୟସ୍ତ ଅଛନ୍ତି।

*ଉତ୍କଳ ଦୀପିକା-୧୯୦୨: ପୃଷ୍ଠା ସଂଖ୍ୟା-୩୨୫*

## ପୁରୀ ରଥଯାତ୍ରା

ସମାଗତ ବହୁଯାତ୍ରୀ ରଥ ଉପରେ ଶ୍ରୀଜୀଉଙ୍କୁ ଦର୍ଶନ କରିପାରି ନ ଥିବାରୁ ସେମାନଙ୍କ ଦର୍ଶନର ସୁବିଧାସକାଶେ ଗତ ତା୧୮ରିଖ ଗୁରୁବାର ପହଣ୍ଡି ବନ୍ଦ ରହି ଗୁଣ୍ଡିଚାମନ୍ଦିରରେ ତିନିରଥର ମିଳନ ହୋଇଥିଲା। ପରଦିନ ତା୧୯ରିଖ ଶୁକ୍ରବାର ଅପରାହ୍ଣ ଘ୪ଣ୍ଟାଠାରେ ପହଣ୍ଡିବିଜୟ ଆରମ୍ଭ ହୋଇ ରାତ୍ର ପ୍ରାୟ ଘ୮ଣ୍ଟା ସୁଦ୍ଧା ଠାକୁରମାନନେ ଗୁଣ୍ଡିଚାମନ୍ଦିର ରତ୍ନବେଦୀ ଅଳଂକୃତ କରିଥିଲେ ସେ ରାତ୍ରରେ ଶ୍ରୀଜୀଉଙ୍କର କେବଳ ବଡ଼ସିଂହାର ଭୋଗ ହୋଇଥିଲା ତା୨୦ରିଖ ଶନିବାରଠାରୁ ତା୨୩ରିଖ ମଙ୍ଗଳବାର ପର୍ଯ୍ୟନ୍ତ ଦି୪ନ ପ୍ରଭୂଙ୍କର ପୂର୍ଣ୍ଣ ଅନ୍ନଭୋଗ ହୋଇଥିଲା। ତା୨୪ରିଖ ବୁଧବାର ପ୍ରଭାତୀ ଖେଚଡ଼ୀଭୋଗ ପରେ ଠାକୁରମାନେ ସିଂହାସନ ଚକା ଛାଡ଼ି ଜଗମୋହନ ସ୍ତମ୍ଭରେ ବିରାଜମାନ ହୋଇଅଛନ୍ତି। ଏ ବର୍ଷ ସନ୍ଧ୍ୟା ଦର୍ଶନ ସୋମବାର ଏବଂ କେହି ୨ ମଙ୍ଗଳବାର ପ୍ରତିପାଳନ କରିଥିଲେ।

ତା୨୧ରିଖ ରବିବାରଠାରୁ ରଥମାନଙ୍କର ଦକ୍ଷିଣମୂର୍ତ୍ତି ଆରମ୍ଭ ହୋଇ ତା୨୪ରିଖ ବୁଧବାର ଶେଷ ହୋଇଛି।

ଶ୍ରୀଗୁଣ୍ଡିଚାଦିନ ରଥଟଣା ଦେଖି ଅଧିକାଂଶ ଯାତ୍ରୀ ରେଳଷ୍ଟେଶନରେ ଜମା ହୋଇଥିଲେ। ରେଳ ଦିବା ରାତ୍ର ଯାତ୍ରୀ ବହିଲେ ସୁଦ୍ଧା ଅନେକଯାତ୍ରୀ ଦୁଇ ତିନିଦିନ ରେଳ ଅପେକ୍ଷାରେ ଷ୍ଟେଶନରେ ପଡ଼ି ରହିବାରୁ କେତେକ ଯାତ୍ରୀ ଓଲାଉଠାରେ ଆକ୍ରାନ୍ତ ହୋଇଥିଲେ। ବର୍ତ୍ତମାନ ପ୍ରତିଦିନ ପ୍ରାୟ ଜ୧୫/୨୦ଣ ଯାତ୍ରୀ ଓଲାଉଠାରେ ଆକ୍ରାନ୍ତ ହୋଇ କଲେରା ହାସପିଟାଲକୁ ନୀତ ହେଉଅଛିନ୍ତି। ଆଗେ ଆସିଥିବା ସମସ୍ତ ଯାତ୍ରୀ ଚାଲି ଯାଇଅଛନ୍ତି। ମାତ୍ର ନୂଆଯାତ୍ରୀ ଆମଦାନି ବନ୍ଦ ନାହିଁ।

ରଥରେ ଦଉଡ଼ି ବାନ୍ଧିବା ପ୍ରଭୃତି କାର୍ଯ୍ୟ ବାଉରିମାନେ କରନ୍ତି। ଶ୍ରୀଗୁଣ୍ଡିଚାଦିନ ରଥଟଣା ସମୟେ ରଥତଳ ପୀଢ଼ରେ ବସିଥିବା ବାଉରିମାନଙ୍କ ମଧ୍ୟରୁ ଜଣେ ବାଉରି ଯାତ୍ରିମାନେ ରଥ ଉପରକୁ ଫିଙ୍ଗୁଥିବା ଟଙ୍କା, ପଇସା ଗୋଟାଇବା ଲୋଭରେ ରଥ ଉପରୁ ଡେ଼ଇଁ ପଡ଼ିବା ମାତ୍ରେ ତାହା ଉପରେ ରଥଚକ ଚାଲି ଯିବାରୁ ମରିଯାଇଅଛି।

ଗତ ବଡ଼ ଏକାଦଶୀ ବୁଧବାର ଦିନ ସକାଳେ ଜଣେ ଯାତ୍ରୀ ଗୁଣ୍ଡିଚା ମନ୍ଦିର ମଧ୍ୟରେ ମରି ପଡ଼ିଥିବାର ଦେଖା ଯିବାରୁ ଶବ ବାହାରି ଶ୍ରୀଜୀଉଙ୍କର ମହାସ୍ନାନାଦି ବିଧି ଅନୁଷ୍ଠିତ ହୋଇଥିଲା। ଏଥିସକାଶେ କେତେକ କ୍ଷଣ ଉଭୟ ଦ୍ୱାର ବନ୍ଦ ଥିଲା। ଉକ୍ତ ଯାତ୍ରୀ ସମ୍ଭବତଃ ଓଲାଉଠାରେ ମରି ଯାଇଥିଲା।

*ଉତ୍କଳ ଦୀପିକା-୧୯୧୨: ପୃଷ୍ଠା ସଂଖ୍ୟା-୧୫୬*

# ପୁରୀ-ରଥଯାତ୍ରା

ଗତ ତା୧୧ରିଖ ରବିବାର ଶେଷ ରାତ୍ରରେ ଶ୍ରୀଜିଉଙ୍କର ଅନବସର ତାଟି ଫିଟି ପରଦିନ ସୋମବାର ନବଯୌବନ ଦର୍ଶନ ଆରମ୍ଭ ହେଲା। ଦର୍ଶନର ସୁବିଧା ସକାଶେ ଅନ୍ୟାନ୍ୟ ବର୍ଷ ପରି ସିଂହଦ୍ୱାର ସମ୍ମୁଖରେ ପଟାବାଡ଼ ଏବଂ ମନ୍ଦିର ବେଢ଼ା ମଧ୍ୟରେ କାଠ ଘେରା ହୋଇ ଦଳେ ୨ ଯାତ୍ରୀ କ୍ରମଶଃ ଦର୍ଶନ କରିଥିଲେ। ଦିନ ଘ୧୦ଣ୍ଟା ପର୍ଯ୍ୟନ୍ତ ଦର୍ଶନ ହୋଇଥିଲା। ନେତ୍ରୋତ୍ସବାଦିବିଧି ଥରେ ସକାଳ ଧୂପ ହୋଇଥିଲା। ଏ ବର୍ଷ ସୋମ ଓ ମଙ୍ଗଳବାର ଦୁଇଦିନ ଉଭାଯାତ୍ରା ହୋଇଥିଲା। ଶେଷୋକ୍ତ ଦିନ ସକାଳ ଧୂପପରେ ତିନିରଥକୁ ଆଜ୍ଞାମାଳ ଆସିଥିଲା ଓ ଅପରାହ୍ଣକୁ ରଥଟଣା ହୋଇ ତିନିରଥ ସିଂହଦ୍ୱାରକୁ ଆସିଲା। ସ୍ଥାନୀୟ ପୁଲିସ ଛଡ଼ା ସୁଦୁର ପାଟନା, ଗୟା, ଭାଗଲପୁର ଓ ମୁଙ୍ଗେର ପ୍ରଭୃତି ଜିଲାମାନଙ୍କରୁ ପୁଲିସ ଆସିଥିଲେ। କେତେକ ଠିକା କନଷ୍ଟବଲ ମଧ୍ୟ ନିଯୁକ୍ତ ହୋଇଥିଲେ।

ଗତ ତା୪ରିଖ ବୁଧବାର ଶ୍ରୀଗୁଣ୍ଡିଚାଦିନ ପୂର୍ବାହ୍ଣ ଘ୮ଣ୍ଟା ସମୟେ ଶ୍ରୀଜିଉଙ୍କର ଖେଚଡ଼ୀ ଭୋଗଶେଷ ପରେ ପହଣ୍ଡିବିଜେ ଠାକୁର ମାନେ ଘ୧୦ଣ୍ଟା ବେଳେ ରଥାରୁଢ଼ ହୁଅନ୍ତେ ଚାର ଫିଟି ସାରଥି ସ୍ଥାପନ ଓ ଅଶ୍ୱଯୋଜନ ପରେ ମଧ୍ୟାହ୍ନ ପ୍ରାୟ ଘ୧୨ଣ୍ଟାରେ ହାକିମ ଓ ପୁଲିସ ଉପସ୍ଥିତ ଥାଇ ତିନିରଥରେ ଦଉଡ଼ୀ ଲାଗି ଏକ ରଥ ପଛେ ଅନ୍ୟ ରଥ ଟଣା ହୋଇଥିଲା। ଏସମୟର ଦୃଶ୍ୟ ବର୍ଣ୍ଣନାତୀତ ଥିଲା। ମନ୍ଦିର, ସୁନାବେଦୀ, ବଡ଼ଦାଣ୍ଡ ପକ୍କା ଚାଳ, ଓ ପିଣ୍ଡା ସର୍ବତ୍ର ନରମୁଣ୍ଡମାଳ ପରିଦୃଷ୍ଟ ହେଉଥିଲା। ହରିଧ୍ୱନି ଓ ଜୟପଦରେ ଗଗନ ମେଦିନୀ ବି କମ୍ପିତ ହେଉଥିଲା। ରଥଟଣା ସମୟ ପ୍ରଚଣ୍ଡ ମାର୍ତ୍ତଣ୍ଡ ତାପରେ ଶୁଷ୍କକଣ୍ଠ ପିପାସାତୁର ଯାତ୍ରୀବୃନ୍ଦଙ୍କୁ ସତ୍ୟବାଦୀ ସ୍କୁଲର ସ୍ୱଚ୍ଛାସେବକ ଶିକ୍ଷକ ଓ ଛାତ୍ରବର୍ଗ ଅକ୍ଳାନ୍ତ ପରିଶ୍ରମ ପୂର୍ବକ ସ୍ଥାନେ ୨ ପ୍ରଚୁର ଶୀତଳ ଜଳ ଦାନ କରି ଅକ୍ଷୟ ପୁଣ୍ୟାର୍ଜ୍ଜନ କରିଥିଲେ। ଅପରାହ୍ଣ ଘ୬ଣ୍ଟା ମଧ୍ୟରେ ତିନିରଥ ଗୁଣ୍ଡିଚାମନ୍ଦିର ନିକଟରେ ଉପସ୍ଥିତ ହେଲେ। ପରଦିନ ତା୧୫ରିଖ ଗୁରୁବାର ଅପରାହ୍ଣ ପ୍ରାୟ ଘ୪ଣ୍ଟା ସମୟେ ପହଣ୍ଡି ବିଜୟ କରି ଠାକୁରମାନେ ଗୁଣ୍ଡିଚା ମନ୍ଦିର ସିଂହାସନାରୋହଣ କଲେ। ଶ୍ରୀଗୁଣ୍ଡିଚା ଆଠଦିନ ପୂର୍ବରୁ ଯାତ୍ରୀ ସମାଗମ ଆରମ୍ଭ ହୋଇ ଏବଂ ଚାରିପଞ୍ଚ ଦିନ ଯାତ୍ରି ପୂର୍ଣ୍ଣ ସ୍ପେଶଲ୍ ଟ୍ରେନ୍ ଘନ ୨ ଆସିଥିଲା। ଶ୍ରୀଗୁଣ୍ଡିଚା ଦିନ ଆନୁମାନିକ ୪୦/୫୦ ହଜାର ଯାତ୍ରୀ ହୋଇଥିଲେ। ଏଥିମଧ୍ୟରେ ଅଧିକାଂଶ ବଙ୍ଗାଳୀ।

ଯାତ୍ରୀ ବୃଦ୍ଧିଯୋଗେ ଲଜିଂହାଉସ ଘର ଭଡ଼ା ଜଣପ୍ରତି ଦୁଇ ତିନିଟଙ୍କାରୁ ୬/୭ ଟଙ୍କାକୁ ଉଠିଥିଲା। ସମସ୍ତ ଧର୍ମଶାଳା ଓ ମିଉନିପାଲିଟୀ ଟିଣଘର ଯାତ୍ରୀପୂର୍ଣ୍ଣ ହୋଇଥିଲା। କେବଳ ଅନେକ ଓଡ଼ିଆଯାତ୍ରୀ ବଡ଼ ଅସୁବିଧାଭୋଗ କରିଥିଲେ। ସେମାନେ ଜଣପ୍ରତି ଦୁଇତିନି ଟଙ୍କା ଭଡ଼ା ଦେବାକୁ ଅପାରଗ ହୋଇ ବସା ନ କରି ଇତସ୍ତତଃ ପଡ଼ିରହିଥିଲେ। ସୁଖର ବିଷୟ ବର୍ଷା ନ ଥିବାରୁ ସେମାନଙ୍କର ଓ ଉଠାଦୋକାନିମାନଙ୍କର କୌଣସି କଷ୍ଟ ହୋଇ ନ ଥିଲା। ସ୍ୱାସ୍ଥ୍ୟ ଏପର୍ଯ୍ୟନ୍ତ ଭଲ ଅଛି। ଅଧିକାଂଶ ଯାତ୍ରୀ ନିର୍ବିଘ୍ନେ ସ୍ୱଦେଶ ଯାତ୍ରା କରିଅଛନ୍ତି। ରେଳ ଅପେକ୍ଷାରେ ଅନେକ ଯାତ୍ରୀ ଷ୍ଟେଶନରେ ପଡ଼ିରହିଅଛନ୍ତି। ରେଳ କର୍ତ୍ତୃପକ୍ଷ ଯଥାସାଧ୍ୟ ସ୍ପେଶଲ୍‌ଟ୍ରେନ୍‌ର

ବ୍ୟବସ୍ଥା କରିଅଛନ୍ତି ଗତ ତା ୧୨ରିଖ ରାତ୍ର ସାମାନ୍ୟ ଓ ତା ୧୫ରିଖ ସକାଳେ ଏକ ଅଶ୍ରା ଭଲ ବୃଷ୍ଟି ହୋଇଥିଲା ମିଉନିସିପାଲଟୀର ସୁବ୍ୟବସ୍ଥାରେ ସହର ପରିଷ୍କାର ଅଛି। ସୁଖର ବିଷୟ ଏ ବର୍ଷ ରଥଯାତ୍ରାରେ ମାଛି ଉପଦ୍ରବ ପ୍ରାୟ ନାହିଁ।

*ଉତ୍କଳ ଦୀପିକା-୧୯୧୫: ପୃଷ୍ଠା ସଂଖ୍ୟା-୧୫୪*

## ପୁରୀର ରଥଯାତ୍ରା

ଏ ବର୍ଷ ନୂଆ କଳେବର ଯୋଗେ ପୁରୀର ପଣ୍ଡା ପଢ଼ିଆରିମାନେ ବହୁତ ଅର୍ଥଲାଭ କରିବେ ବୋଲି ଆଶା କରିଥିଲେ। ରେଳକମ୍ପାନୀ ମଧ୍ୟ ଯାତ୍ରୀ ସଂଖ୍ୟା ଅତ୍ୟନ୍ତ ଅଧିକ ହେବେ ବୋଲି ଆଶାକରି ଯଥେଷ୍ଟ ସ୍ପେସାଲ ଗାଡ଼ି ଆୟୋଜନ କରିଥିଲେ। ସରକାରୀ ବିଭାଗର କର୍ତ୍ତୃପକ୍ଷମାନେ ଯେତେଦୂର ସତର୍କ ହେବାର ସମ୍ଭବ ତହିଁରେ ତିଳେମାତ୍ର ତ୍ରୁଟି କରି ନ ଥିଲେ। ସ୍ୱାସ୍ଥ୍ୟବିଭାଗର ଡିରେକ୍ଟର ଏବଂ ଆସିଷ୍ଟାଣ୍ଟ ଡାଇରେକ୍ଟର ପ୍ରଭୃତି ଯାଇ ପୁରୀରେ ଜଗି ରହିଥିଲେ। ତାହାଛଡ଼ା ଓଡ଼ିଶାର କମିଶନର ସାହେବ, ପୋଲିସ  ବିଭାଗର ଡେ: ଇ: ଜେନେରଲ ପ୍ରଭୃତି ଉପସ୍ଥିତ ଥିଲେ। ରଥଯାତ୍ରା ଆରମ୍ଭ ପୂର୍ବରୁ ଭିନ୍ନଭିନ୍ନ ସ୍ଥାନରୁ ପୁଲିସ ଆସି ଜମା ହୋଇଥିଲେ। ପାଟନାରୁ ମଧ୍ୟ ସମସ୍ତ ପୁଲିସ ଆସିଥିଲେ। ଅନ୍ୟ ଜିଲାମାନଙ୍କରୁ ଯେଉଁ ପୁଲିସ କର୍ମଚାରୀମାନେ ଆସିଥିଲେ ସେମାନଙ୍କ ସଂଖ୍ୟା ଏକହଜାରରୁ କମ୍ ନୁହେଁ। ରେଲ ଷ୍ଟେସନମାନଙ୍କରେ କଲେରାଟୀକା ଦବାର ଯଥେଷ୍ଟ ବନ୍ଦୋବସ୍ତ ହୋଇଥିଲା। ରେଲ ଷ୍ଟେସନ ଛଡ଼ା କଟକର ନଦୀଘାଟମାନଙ୍କରେ ମଧ୍ୟ ଟୀକାଦାରମାନେ ରହି କଟକରେ ଯେ ପାରି ହୋଉଥିଲା ତାକୁ ଯୋରଜବରଦସ୍ତି ଟିକାଦବାକୁ ଆରମ୍ଭ କରିଥିଲେ। ଏହି ପ୍ରକାର ଆୟୋଜନର କୌଣସି ସୀମା ନ ଥିଲା। ପୁରୀ ସହରରେ ଯାତ୍ରୀମାନଙ୍କର ରହିବା ପାଇଁ ଅସ୍ଥାୟୀ ଗୃହ ମଧ୍ୟ ବହୁ ପରିମାଣରେ ନିର୍ମିତ ହୋଇଥିଲା। ଭିନ୍ନଭିନ୍ନ ସ୍ଥାନରୁ ସ୍ୱଚ୍ଛୋସେବକମାନେ ଆସି ସେବା ନିମିତ୍ତ ପ୍ରସ୍ତୁତ ହୋଇ ରହିଥିଲେ। ପୁରୀର ସ୍ଥାନୀୟ ସେବାସମିତି, କଟକର ମାରବାଡୀ ଯୁବକସଙ୍ଘ ଓ ଭାରତ ସେବା ସଙ୍ଘର କର୍ମୀ ସମସ୍ତେ ମିଶି ପ୍ରାୟ ଛଅଶତରୁ ଅଧିକ ପୁରୀଠାରେ ଉପସ୍ଥିତ ଥିଲେ, କିନ୍ତୁ ଯାତ୍ରିଙ୍କର ସଂଖ୍ୟା ଯେତେ ହେବ ବୋଲି ସମସ୍ତେ ଅନୁମାନ କରିଥିଲେ ତହିଁରୁ ଅତ୍ୟନ୍ତ କମ୍ ଯାତ୍ରୀ ହୋଇଥିଲେ। ସର୍ବମୋଟ ଯାତ୍ରୀସଂଖ୍ୟା ଏକ ଲକ୍ଷରୁ ଅଧିକ ନୁହେ। ଏ ପ୍ରକାର ଯାତ୍ରିସଂଖ୍ୟା ପୁରୀରେ ସାଧାରଣ ରଥଯାତ୍ରାର ଯାତ୍ରୀ ଅପେକ୍ଷା ସାମାନ୍ୟ ଅଧିକ ହୋଇ ପାରିବେ ମାତ୍ର ନୂଆକଳେବର ରଥଯାତ୍ରାର ଯାତ୍ରୀ ଅପେକ୍ଷା ପୂର୍ବ ନୂଆକଳେବର ସମୟରେ ଯାତ୍ରିସଂଖ୍ୟା ଯାହା ହୋଇଥିଲା ତାହାଠାରୁ ଅତ୍ୟନ୍ତ କମ୍। ରେଲ କମ୍ପାନୀଙ୍କର ସାଧାରଣ ଗାଡ଼ି ଛଡ଼ା କେବଳ ୧୪ଗୋଟି ସ୍ପେସାଲ ଗାଡ଼ି ଆସିଥିଲା। ଯେଉଁ ପଣ୍ଡା ପଢ଼ିଆରିମାନେ କରଜ କରି ଯାତ୍ରିଙ୍କ ସକାଶେ ଆୟୋଜନ କରିଥିଲେ ସେମାନେ ହତାଶ ପୁଣି ରଥଯାତ୍ରା ଯେପରି ହେଲା ଯେଉଁ ଯାତ୍ରିମାନେ ଆସିଲେ ସେମାନେ ମଧ୍ୟ ଅସନ୍ତୁଷ୍ଟ। ଗତ କେତେବର୍ଷ ହେଲା ପୁରୀର ରଥ ଗୁଣ୍ଡିଚା ଦିନ ଯାଇ ଗୁଣ୍ଡିଚାଘରେ ଲାଗୁଥିଲା। ପୂର୍ବେ ଅବଶ୍ୟ ରଥ ପହୁଞ୍ଚିବାକୁ ଅନେକ ଦିନ ଲାଗି ଯାଉଥିଲା। ସ୍ୱର୍ଗୀୟ ମହାରାଜା ମୁକୁନ୍ଦଦେବଙ୍କ ସମୟରେ ଏହି ରାୟ ବାହାଦୂର

ରାଜକିଶୋର ଦାସଙ୍କ ମେନେଜରୀ ଅମଳରେ ଉକ୍ତ ରାୟ ବାହାଦୂରଙ୍କ ଯତ୍ନରେ ପୂର୍ବ ବିଶୃଙ୍ଖଳା ସମସ୍ତ ଦୂରୀଭୂତ ହୋଇ ରଥଯାତ୍ରାର ତଥା ପୁରୀ ଜଗନ୍ନାଥଙ୍କ ଦେଉଳର ସମସ୍ତ କାର୍ଯ୍ୟପ୍ରଣାଳୀ ଅତ୍ୟନ୍ତ ଶୃଙ୍ଖଳା ସହିତ ଚଳି ଆସୁଥିଲା। ବର୍ତ୍ତମାନ ମଧ୍ୟ ସେହି ରାୟ ବାହାଦୂର ରାଜକିଶୋର ଦାସ ଦେଓ୍ୟାନ୍ ଅଛନ୍ତି। ଶୀଘ୍ର ଛାଡ଼ିବେ ଛାଡ଼ିବେ ବୋଲି ଶୁଣାଯାଉଅଛି, କିନ୍ତୁ ନ ଛାଡୁଣୁ ପୁଣି ବିଶୃଙ୍ଖଳା ଆରମ୍ଭ ହୋଇଗଲାଣି।

ଏଥର ଗୁଣ୍ଡିଚାଦିନ ରଥ ଆଦୌ ଚଳିଲା ନାହିଁ। ଠାକୁରଙ୍କ ପହଣ୍ଡି ବିଜେ ହେବାକୁ ସନ୍ଧ୍ୟା ବେଳେ ହେଲା। ଲୋକେ ପହଣ୍ଡିବିଜେ ଦର୍ଶନ କରିବା ନିମନ୍ତେ ପ୍ରାତଃକାଳରୁ ଅପେକ୍ଷା କରି ବସି ବସି ନିରାହାରରେ ଘୋର ଯନ୍ତ୍ରଣା ଭୋଗ କରିଥିଲେ, ତହିଁଉପରେ ପୁଣି ଶାନ୍ତିରକ୍ଷା ନିମନ୍ତେ ପୁଲିସଙ୍କର ଦାଉ କମ୍ ନ ଥିଲା।

ନବଯୌବନ ଦର୍ଶନ ନିମନ୍ତେ ଲୋକଙ୍କର ଆଗ୍ରହ ଅତ୍ୟନ୍ତ ଅଧିକ। ଯେଉଁ ବର୍ଷମାନଙ୍କରେ ଏବର୍ଷ ଅପେକ୍ଷା ଅଧିକ ଯାତ୍ରୀ ହୋଇଥିଲେ ତେତେବେଳେ ମଧ୍ୟ ନବଯୌବନ ଦର୍ଶନ ବନ୍ଦ କରାଯାଇ ନ ଥିଲା, କିନ୍ତୁ ଏଥର ବିଶୃଙ୍ଖଳା ଭୟରେ ତାହା ନିଷେଧ କରାଗଲା। ଅର୍ଥାତ୍ କର୍ତ୍ତୃପକ୍ଷମାନ ଏଥିର ସୁବ୍ୟବସ୍ଥା କରିବାକୁ ଅକ୍ଷମ ବୋଲି ପରିଚୟ ଦେଲେ।

ଶନିବାର ଦିନ ରଥଟଣା ହେଲା ଏବଂ ଠାକୁରମାନେ ନିର୍ବିଘ୍ନରେ ଗୁଣ୍ଡିଚାଘରେ ପହୁଞ୍ଚିଥିଲେ। ସ୍ୱଚ୍ଛୋସେବକମାନେ ଯଥେଷ୍ଟ ଯତ୍ନ ଓ ପରିଶ୍ରମ କରିଅଛନ୍ତି, ସେମାନଙ୍କର କାର୍ଯ୍ୟ ମଧ୍ୟ ସମନ୍ତେ ପ୍ରଶଂସା କରୁଅଛନ୍ତି। ଗୁଣ୍ଡିଚାଦିନ ଏବଂ ତହିଁପରେ ଯାତ୍ରୀମାନଙ୍କର ଯାହାର ଯେଉଁ ସ୍ଥାନରେ ଅସୁବିଧା ହୋଇଅଛି ତହିଁରେ ମଧ୍ୟ ସେମାନେ ଯଥେଷ୍ଟ ସାହାଯ୍ୟ କରିଅଛନ୍ତି। ଜଳଯୋଗାଇବା ଏବଂ ପଙ୍ଖା ଯୋଗାଇବାଠାରୁ ଯେ ଯେଉଁଠାରେ x x x x କୌଣସି ପ୍ରକାର ଆଘାତ ପ୍ରାପ୍ତ ହୋଇ କିମ୍ବା ରୋଗଗ୍ରସ୍ତ ହୋଇ ସାହାଯ୍ୟ ଓ ଶୁଶ୍ରୂସାର ଆବଶ୍ୟକ ହେଉଥିଲା ତତ୍‌କ୍ଷାତ୍ ସ୍ୱଚ୍ଛାସେବକମାନେ ଉପସ୍ଥିତ ହୋଇ ତାହାଙ୍କୁ ସାହାଯ୍ୟ କରୁଥିଲେ। ଯେଉଁମାନେ ମୂର୍ଚ୍ଛାହୋଇ ଯାଉଥିଲେ କିମ୍ବା କୌଣସି କାରଣରୁ ଅଶକ୍ତ ହୋଇ ଯାଉଥିଲେ ସେମାନଙ୍କୁ ଷ୍ଟ୍ରେଚରରେ ବହିନେଇ ଡାକ୍ତରଖାନାରେ ଚିକିତ୍ସା ଏବଂ ଶୁଶ୍ରୂସା କରୁଥିଲେ।

ଗୁଣ୍ଡିଚାଯାତ୍ରା ଶେଷ ହୋଇ ଯାଉଅଛି, କ୍ରମେ କ୍ରମେ ଯାତ୍ରିମାନେ ଫେରି ଯାଉଅଛନ୍ତି, ଏପର୍ଯ୍ୟନ୍ତ ମଧ୍ୟ ରେଳରେ ଭିଡ଼ ଛିଡ଼ିନାହିଁ। କିନ୍ତୁ ପୁରୀର ରାଜାସାହେବଙ୍କର କାର୍ଯ୍ୟପ୍ରଣାଳୀ ସମ୍ବନ୍ଧେ ସନ୍ତୋଷବାକ୍ୟ କାହାରିଠାରୁ ଶୁଣାଯାଇନାହିଁ। ପୁରୀର ଭୂତପୂର୍ବ ରାଜା ମୁକୁନ୍ଦଦେବଙ୍କର ଅନେକ ଦୁର୍ଗୁଣ ଥିଲା ବୋଲି ଲୋକେ କହନ୍ତି, ତଥାଚ ତାହାଙ୍କର ଆତ୍ମଗୌରବ ଓ ଆତ୍ମସମ୍ମାନ ଏତେ ଅଧିକ ଥିଲା ଯେ, ଲୋକେ ତାହାଙ୍କୁ ପୁରୀର ମହାରାଜା ବୋଲି ଜଗନ୍ନାଥଙ୍କର ପ୍ରତିନିଧିର ଯଥାଯୋଗ୍ୟ ସମ୍ମାନ ଦେଖାଉଥିଲେ। ପୁରୀର ରାଜପଣ ରାଜ୍ୟର ସମ୍ପଦ ଓ ବିପଦ ଉପରେ ନିର୍ଭର କରେନାହିଁ। ପୁରୀ ରାଜାଙ୍କର ଏ ସାଧାରଣ ଇଚ୍ଛା, ଠାକୁର ରଜା ହିନ୍ଦୁଧର୍ମର ଓ ହିନ୍ଦୁଜାତିର ପ୍ରଧାନ ନେତାର ସ୍ଥାନ ଅଧୀକାର କରିବାକୁ ଗଲେ, ହିନ୍ଦୁଜାତି, ହିନ୍ଦୁଧର୍ମ ଓ ନୀତିର ବିରୁଦ୍ଧ ତଦ୍ରୂପ କୌଣସି କାର୍ଯ୍ୟ କଲେ ସେ ସମ୍ମାନ କଦାଚ ଆଶା କରାଯାଇ ନ ପାରେ। କେବଳ

ପବିତ୍ରସ୍ୱଭାବ, ହିନ୍ଦୁ ଧର୍ମୋଚିତ ଚରିତ୍ର ଏବଂ ଅଚାର ବ୍ୟବହାର ସେହି ସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରିବାର ପ୍ରଧାନ ନୀତି। ତହିଁରେ ତିଳେ ମାତ୍ର ବ୍ୟତିକ୍ରମ ଘଟିଲେ ହିନ୍ଦୁଜାତିଠାରୁ ସମ୍ମାନ ଆଶାକରିବା ବୃଥା।

ରଥଯାତ୍ରା ସମ୍ବନ୍ଧେ ଏଥର ପକେଟକଟା ଚୋରି ଅନେକ ଘଟିଅଛି। ଗୁଣ୍ଡିଚାଦିନ ଗୋଟିଏ ଉଡାଜାହାଜ ଆସି ପୁରୀରେ ପହୁଞ୍ଚି ଥିଲା।

*ଉତ୍କଳ ଦୀପିକା-୧୯୩୧: ପୃଷ୍ଠା ସଂଖ୍ୟା-୨୪୦*

# ବଜ୍ରପାତ

## ସାପ୍ତାହିକ ସଂବାଦ

ପୁରୀର ସଂବାଦ ପାଇଅଛୁଁ ଯେ ଚଳିତମାସ ତା ୧୨ ରିଖ ରାତ୍ର ଦୁଇପ୍ରହର କିମ୍ବା ତହିଁର କିଛି ପୂର୍ବରେ ଶ୍ରୀ ଜଗନ୍ନାଥଦେବଙ୍କ ମନ୍ଦିରରେ ବଜ୍ରପାତ ହୋଇଥିଲା। ସେଦିନ ପ୍ରାୟ ସକାଳୁଁ ମେଘ ଘୋଟିରହିଥିଲା ବଜ୍ର କେଉଁଆଡୁ ପ୍ରଥମେ ଆସିଲା ଜଣା ନାହିଁ ମାତ୍ର ମନ୍ଦିରର ଦକ୍ଷିଣଦ୍ୱାରରେ ପ୍ରବେଶକରି ସିଂହାସନ ପାଖଦେଇ ପାଦୁକପାଣି ଗଡ଼ିଯିବା ମହୁରିବାଟେ ଦାଣ୍ଡକୁ ବାହାରିଗଲା। ମହାପ୍ରଭୁଙ୍କ ନିକଟରେ ଜଳୁଥିବା ପ୍ରଦୀପମାନ ଲିଭିଗଲା ଏବଂ ମନ୍ଦିରମଧରେ ଘଡ଼ିଏଯାଏ ବାରୁଦଗନ୍ଧ ରହିଥିଲା। ସେବାକାରୀ ଲୋକଙ୍କ ମଧରୁ ୨/୩ ଜଣ ଶବ୍ଦ ଶୁଣି ଓ ବିଦ୍ୟୁତ୍‌ପାଖ ଦେଇ ଯିବାରୁ ଭୟପାଇ ଅଚେତନ ହୋଇ ପଡ଼ିଗଲେ ନଚେତ୍ କୌଣସି ଭାରୀ ପୀଡ଼ା ହୋଇ ନାହିଁ। ମନ୍ଦିରର କିଛି ମଧ କ୍ଷତି ହୋଇନାହିଁ କେବଳ ଏକସ୍ଥାନରେ ଚଟାଣ ଖୋଲିଯାଇଥିଲା ଓ ନୀଳଚକ୍ରପତାକା ସମ୍ପୂର୍ଣ୍ଣରୁପେ ପୋଡ଼ିଯାଇଥିଲା। ରାତ୍ରରେ ବିଦ୍ୟୁତ ପଡ଼ିବା ଅସାଧାରଣ ଘଟନା ଅଟଇ ତହିଁରେ ପ୍ରଧାନଦେବଙ୍କ ମନ୍ଦିରରେ ପଡ଼ିଅଛି। ଏ ଦୁଇକଥାକୁ ଘେନି କେତେଲୋକ କେତେପ୍ରକାର ଅନିଷ୍ଟ ସମ୍ଭାବନା କରିଅଛନ୍ତି ମାତ୍ର ଈଶ୍ୱରଙ୍କ କୃପାରୁ ଏବର୍ଷ ଓଡ଼ିଶାର ଅବସ୍ଥା ସର୍ବପ୍ରକାରରେ ଭଲ ଦେଖାଯାଏ।

*ଉତ୍କଳ ଦୀପିକା-୧୮୭୧: ପୃଷ୍ଠା ସଂଖ୍ୟା-୧୫୬*

## ପ୍ରେରିତପତ୍ର

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ

ନିମ୍ନଲିଖିତ କେତେକ ପଂକ୍ତିକୁ ତଦୀୟ ପତ୍ରିକ ପାର୍ଶ୍ୱରେ ସ୍ଥାନଦାନ କଲେ ଉପକୃତ ହେବୁଁ।

ମହାଶୟ! ଏବର୍ଷ ବାହୁଡ଼ା ରଥଯାତ୍ରା ସମୟରେ କେତେକ ଅମଙ୍ଗଳସୂଚକ ଘଟନା ପୁରୁଷୋତ୍ତମ କ୍ଷେତ୍ରରେ ହୋଇ ଯାଇଥିବାରୁ ତହିଁରେ ଜନ ସାଧାରଣ ସକାତର ଥାଇଁ

ନାନାପ୍ରକାର କଳ୍ପନା କରିଅଛନ୍ତି।

ପ୍ରଥମେ ରଥ ସମ୍ମୁଖରେ ଯେଉଁ ମଶାଲଚି ମଶାଲ ଘେନି ଦଣ୍ଡୟମାନ ହୋଇଥିଲା ତାହା ଅସତର୍କତା ଶ୍ରୀଯୁକ୍ତ ଶ୍ରୀଜିଉଙ୍କ ରଥ ପାର୍ଶ୍ୱସ୍ଥିତ ବସ୍ତ୍ରରେ ଅଗ୍ନି ପ୍ରବେଶହୋଇ କ୍ରିୟଦଂଶ ଭସ୍ମ ହୋଇଗଲା।

ଦ୍ୱିତୀୟରେ ଏକ ଯାତ୍ରୀ ଶ୍ରୀଜିଉଙ୍କ ରୁପ ଦର୍ଶନରେ ଅସାଧାରଣ ଭକ୍ତି ପ୍ରଦର୍ଶନ କରି ଆପଣା ମୁଖରେ ଭୁଜ ସ୍ପର୍ଶକଲା ପ୍ରକୃତ ସେ ସ୍ନେହ ଓ ଭକ୍ତିସୂଚକ ଚିହ୍ନ ପାଦ ଓ ହସ୍ତଚୁମ୍ବକ ଆଦି କ୍ରିୟାକୁ ମନେକରି ଏରୁପ କର୍ମ କରିବାରେ ପ୍ରବୃତ୍ତ ହୋଇଥିଲା କିମ୍ବା ତାହାର ମାନସିକ ଭାବ ଅନ୍ୟପ୍ରକାର ଥିଲା ତାହା ଆମ୍ଭେ କହି ନ ପାରୁଁ ମାତ୍ର ଶ୍ରୀଜିଉଙ୍କ ଗହଣସ୍ଥିତ ଜନସମାଜର ଯାତ୍ରୀ ଶ୍ରୀଜିଉଙ୍କ ଭୁଜ ଦଂଶନ କରିଥିବାର ରାଷ୍ଟ୍ର ହୋଇଗଲା।

ତୃତୀୟରେ ଏକ ଯାତ୍ରୀ ସ୍ତ୍ରୀଲୋକ ଆପଣା ସନ୍ତାନ ସହିତ ଶ୍ରୀ ବଳଦେବଜିଉଙ୍କ ପରିଧେୟ ବସ୍ତ୍ର ଧାରଣକରି ଭୂମିଷ୍ଠ ହୋଇ ପରିଣତ ହେବାସମୟରେ ତାହାର ସନ୍ତାନଟି ବିଷ୍ଠା ତ୍ୟାଗକଲା। ସେଥିରେ ଦେବବସ୍ତ୍ର ଅପ୍ରତିଷ୍ଠିତ ସ୍ପର୍ଶାଯୋଗ୍ୟ ହୋଇଯିବାରୁ ରାଜା ତହିଁର ସମ୍ବାଦ ପାଇ ପ୍ରଧାନ ପଣ୍ଡାଙ୍କୁ ଦୁଇଶତ ଟଙ୍କା ଅର୍ଥଦଣ୍ଡ କରି ଦେବତାଗଣଙ୍କୁ ନୂତନ ବସ୍ତ୍ର ପରିଧାନ କରାଇ ବିଜେ କରାଇଲେ।

ଚତୁର୍ଥରେ ଦେବତାମାନେ ବାହୁଡ଼ା ରଥର ପରିଗମନ କଲାପର ଦୁଇ ତିନିଦିନ ଉତ୍ତାରେ ଶ୍ରୀଜିଉଙ୍କ ଦେଉଳକୁ ପଣ୍ଡାମାନେ ଭୋଗ ଘେନି ଯିବା ସମୟରେ ଏକ ବୈଷ୍ଣବ ଚନ୍ଦନଅର୍ଗଳୀ ନିକଟରେ ଦଣ୍ଡାୟମାନ ହୋଇଥିଲା ପଣ୍ଡାମାନେ ଚନ୍ଦନଅର୍ଗଳୀ ମଧ୍ୟକୁ ଭୋଗ ଘେନିଯିବାରେ ସେମଧ ସେମାନଙ୍କ ପଶ୍ଚାଦ୍ଗାମୀ ହୋଇ ଅନ୍ୟାନ୍ୟ ବ୍ୟକ୍ତିଙ୍କ ନିଷେଧ ନ ମାନି ଅର୍ଗଳୀମଧରେ ପ୍ରବେଶ ହେଲା ସେଥିରେ ପଣ୍ଡା ଓ ପଡ଼ିଆରୀ ଓ ପୁଲିସକର୍ମଚାରିମାନେ ବିରକ୍ତ ହୋଇ ବଳପୂର୍ବକ ଧୃତ କରିବା ପାଇଁ ପ୍ରବେଶ ହୁଅନ୍ତେ ସେ ଅଦୃଶ୍ୟ ହୋଇଗଲା କି ଆଜିପର୍ଯ୍ୟନ୍ତ ତହିଁର ବିବରଣସ୍ଥିର ହୋଇପାରି ନାହିଁ। ଏଥିରେ ହିନ୍ଦୁଧର୍ମାବଲମ୍ବିମାନେ ନାନାପ୍ରକାର ଉତ୍କଳଦେଶରେ ଦୁର୍ଘଟନା ଆଶଙ୍କା କରୁଅଛନ୍ତି।ଇତି।

*ଉତ୍କଳ ଦୀପିକା-୧୮୭୨: ପୃଷ୍ଠା ସଂଖ୍ୟା-୧୩୦*

# ପଣ୍ଡାମାନଙ୍କ ଗୁମାସ୍ତା ନିଯୁକ୍ତି

## ପ୍ରେରିତ ପତ୍ର

ମହାଶୟ!

ଶ୍ରୀଜଗନ୍ନାଥମହାପ୍ରଭୂଙ୍କ ଗୁଣ୍ଡିଚାଦର୍ଶନ ସକାଶେ ପଣ୍ଡାମାନଙ୍କର ଗୁମାସ୍ତାମାନେ ଭାରତବର୍ଷର ଚତୁର୍ଦ୍ଦିଗରୁ ଯାତ୍ରୀମାନଙ୍କୁ ଶିକାର ଘଉଡ଼ାଇଲା ପରି ନେଇ ଆସୁଅଛନ୍ତି। ପ୍ରଧାନ ପଥମାନ ଯାତ୍ରୀମୟ। ମୋଦିମାନେ ବହୁକାଳ ଆଶା ତୃପ୍ତ କରିବାରେ ଧର୍ମକୁ ପିଠୀ ଦେଇ

ବସିଅଛନ୍ତି, ଏଣେ ଗୁମାସ୍ତାମାନେ ନାନାପ୍ରକାର ମୁକ୍ତି ବା ପୁଣ୍ୟର ପ୍ରଲୋଭନ ଦର୍ଶାଇ ବ୍ୟୟ କରିବାରେ ତୃଟି କରୁ ନାହାନ୍ତି। ଏପରି ଅବସ୍ଥାରେ ବିଦେଶୀ ଦୂର ପଥଗାମୀ ଯାତ୍ରୀମାନେ ଦର୍ଶନ କରି ପ୍ରତ୍ୟାଗମନ କରିବା ସମୟରେ ଏହି୨ମାନ ଘଟେ। ଯଥା, ବ୍ୟୟର ଅନାଟନା ମୋଦି ଧର୍ମବିହୀନା ପଥ କର୍ଦମା ନଦୀ ଜଳପୂର୍ଣ୍ଣା ଝାଡ଼ାବାନ୍ତି ପ୍ରବଳ ହେତୁ ଯାତ୍ରୀମାନେ ଯେ କି ଦୁଃଖ ଭୋଗ କରିବେ ତାହା ଆପଣ ଅନୁଭବ କରି ପାରନ୍ତି। ମାତ୍ର ମୋହ ଜାଣିବାରେ କଟକ, ବାଲେଶ୍ୱର ଓ ପୁରୀର ମାନ୍ୟବର ମାଜିଷ୍ଟ୍ରେଟ ସାହେବମାନେ ଯାତ୍ରୀମାନଙ୍କୁ ବାଲେଶ୍ୱର, ଚାନ୍ଦବାଲି ଓ ବତୀଘର ପର୍ଯ୍ୟନ୍ତ ପହୁଁଚାଇ ଦେଇ ସେଠାରେ ସୁବିଧା ଓ ସୁଲଭ ଦରରେ କଲିକତା ପଠାଇ ଦେଲେ ସର୍ବମଙ୍ଗଳ ହୋଇ ପାରେ ଏବଂ ସର୍ବ ଅନିଷ୍ଟ ମୁହଁରେ କାଳୀ ଲାଗିପାରେ। ନତୁବା ଉକ୍ତ ସାହେବମାନେ ଆସି ଦୁଃଖ ଦେଖି ମନ ସନ୍ତୋଷ କରନ୍ତୁ।

*ସିମୂଳିୟା*
*୧୯/୬/୭୦*
*ଶ୍ରୀ କୃପାସିନ୍ଧୁ ଦାସ*
*ବାଲେଶ୍ୱର ସମ୍ବାଦବାହିକା_୧୮୭୨: ପୃଷ୍ଠା ସଂଖ୍ୟା_୧୦୧*

କଲିକତାର ଏକ ସମ୍ବାଦପତ୍ରରେ ପାଠ କଲୁଁ କି ଦୁଇଜଣ ଓଡ଼ିୟା ପଣ୍ଡା କଲିକତା ନିକଟ ମାତାଲାଠାରୁ ଦୁଇଜଣ ହିନ୍ଦୁ ସ୍ତ୍ରୀଙ୍କୁ ଜଗନ୍ନାଥ ଦର୍ଶନ କରାଇବା କାରଣ ସଙ୍ଗେ ଆଣି ବାଟରେ ଏକ ସ୍ଥାନରେ ସେମାନଙ୍କୁ ମାଦକଦ୍ରବ୍ୟ ଖୁଆଇ ଅଜ୍ଞାନ କରି ସେମାନଙ୍କ ପାଖରେ ଟଙ୍କା ପାଇସା ଯାହା ଥିଲା ସମସ୍ତ ନେଇ ପଳାଇଗଲେ, ସୁଖର ବିଷୟ ଯେ ରମଣୀମାନେ ପୁଲୀସରେ ସମ୍ବାଦ ଦେବାର କୌଣସିମତେ ଧରା ପଡ଼ି ବିଚାରରେ ଏକବର୍ଷ ଲେଖାଏଁ କଏଦ ଦଣ୍ଡ ପାଇଅଛନ୍ତି। ପଣ୍ଡା ବୋଲି ଯେଉଁ ଉତ୍କଳବାସିମାନେ ଭାରତର ଚାରିଆଡ଼େ ବୁଲି ଯାତ୍ରୀ ସଂଗ୍ରହ କରି ଆଣନ୍ତି ସେମାନଙ୍କଠାରେ ଯାତ୍ରିମାନଙ୍କର ଭାରି ବିଶ୍ୱାସ ଏବଂ ତହିଁରେ ପଣ୍ଡା ଓ ଯାତ୍ରୀ ଉଭୟଙ୍କର ଉପକାର ହୁଅଇ। ବଡ଼ ଦୁଃଖର ବିଷୟ ଯେ ଏକ ଏକ ଜଣ ଖଣ୍ଟ ପଣ୍ଡା ଗୋଟିଏ ଭଲ ବ୍ୟବସାୟରେ ଅବିଶ୍ୱାସ ଜନ୍ମାଇଁ ଦେଉଅଛନ୍ତି। ପୁରୀର ପଣ୍ଡାମାନେ ଲିଖିତ ସନନ୍ଦ ଦେଇ ଭଲଲୋକଙ୍କୁ ଏ କାର୍ଯ୍ୟରେ ନିଯୁକ୍ତ କରି ପଠାଇବାର ବିଚାର କରନ୍ତୁ।

*ଉତ୍କଳ ଦୀପିକା-୧୯୦୧: ପୃଷ୍ଠା ସଂଖ୍ୟା-୨୩୦*

# ସ୍ନାନଯାତ୍ରା

## ପୁରୀର ସ୍ନାନଯାତ୍ରା

ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ସ୍ନାନପୂର୍ଣ୍ଣିମାଦିନ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରର ବ୍ୟବସ୍ଥା ଉତ୍ତମରୂପ ହୋଇନାହିଁ। ସେଠା କଲେକ୍‌ଟରସାହେବ ଯାତ୍ରିଙ୍କ ସୁବିଧା ସକାଶେ ପୂର୍ବରୁ ରାଜାଙ୍କ ନିକଟକୁ ପରଓ୍ୱାନା ପଠାଇଥିଲେ ଯେ, ପୂର୍ଣ୍ଣିମାଦିନ ନିତ୍ୟକର୍ମ

ଶୀଘ୍ରସାରି ମହାପ୍ରଭୁଙ୍କୁ ମଣ୍ଡପକୁ ବିଜେ କରାଇବେ ଓ ଉକ୍ତ ଦିନ ଘ ୯ ଣ୍ଟା ସମୟରେ ସ୍ୱୟଂ ସେଠାରେ ଉପସ୍ଥିତ ହୋଇ ଦେଖିଲେ ଯେ କିଛି ହୋଇ ନାହିଁ ତାହାଙ୍କ ପରଓ୍ୱାନା କେବଳ କାଗଜରେ ରହିଅଛି। ତହୁଁ ସେ ମୁକ୍ତାରକୁ ଡକାଇ ତାକିଦ କରି ପହଣ୍ଡି କରାଇ ଦେଇ ଚାଲିଗଲେ। କିନ୍ତୁ ଏଥିରେ କିଛି ଫଳ ହେଲା ନାହିଁ। ମନ୍ଦିରର ଚାରିଦ୍ୱାର ବନ୍ଦ ଯାତ୍ରିମାନେ ଦର୍ଶନ ପାଇଲେ ନାହିଁ କିମ୍ବା ମନ୍ଦିରରୁ ମହାପ୍ରସାଦ କିଣି ଆଣିବାକୁ ସୁଯୋଗ ପାଇଲେ ନାହିଁ। ତୃଛାକୁ ସବୁ ଦାଣ୍ଡରେ ପଡ଼ି ରହିଥାନ୍ତି। ଘ ୧୧ଣ୍ଟାରେ ନୀତି ବଢ଼ିଲା ଓ ଘ୫ଣ୍ଟାକୁ ଦର୍ଶନ ନିମିତ୍ତ କବାଟ ଫିଟିଲା। ସେଥିରେ ଯାତ୍ରିଙ୍କର କେତେ କଷ୍ଟ ହେଲା ପାଠକମାନେ ବିଚାର କରନ୍ତୁ ଏସମସ୍ତ ବିଶୃଙ୍ଖଳା ପାଇଁ ରାଜା ଦାୟୀ ଅଟନ୍ତି କାରଣ ସେ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ହେଉଅଛନ୍ତି। ମାତ୍ର ରାଜା ନାବାଳଗ ଓ ତାହାଙ୍କ କର୍ମଚାରିମାନେ ଭଲ ନୁହନ୍ତି। କର୍ମଚାରୀ ଭଲ ହୋଇଥିଲେ ରାଜାଙ୍କର ନିନ୍ଦା ହୁଅନ୍ତା ନାହିଁ। ଦେଉଳର ଅମିନ ଯେଉଁ ବ୍ୟକ୍ତି ହୋଇଅଛନ୍ତି ତାହାଙ୍କର ପୂର୍ବଚରିତ୍ର ଭଲ ନ ଥିବାର ପ୍ରକାଶ ଅଛି। ଗୁରୁ ଭାରାକ୍ରାନ୍ତ କର୍ମରେ ଏପରି ଲୋକଙ୍କୁ ନିଯୁକ୍ତ କରିବା ଆଦୌ ଭୁଲ ଅଟଇ। ସେ ଯାହା ହେଉ ଆମ୍ଭେମାନେ ବିବେଚନା କରୁଁ ଯେ ମନ୍ଦିରର ତତ୍ତ୍ୱାବଧାରଣ ବିଷୟରେ ଗବର୍ଣ୍ଣମେଣ୍ଟର କେତେକ ପରିମାଣରେ ହସ୍ତକ୍ଷେପଣ କରିବାର ଆବଶ୍ୟକ ବିଶେଷରେ ଯେସ୍ଥଳେ ରାଜା ନାବାଲଗ ଥିବାର କୌଣସି କଥାରେ ତାହାଙ୍କୁ କିଛି କୁହା ଯାଇ ନ ପାରେ। କିନ୍ତୁ ସରକାରୀ ପୁଲିସମାନେ ସେଠାରେ ଯାତ୍ରାଦିନ ଉପସ୍ଥିତ ଥାଇଁ ଯେ ଭଲକର୍ମ କରି ଅଛନ୍ତି ଏମନ୍ତ ବୋଲାଯାଇ ନ ପାରେ। ଦେଉଳ ପହରାବାଲାମାନେ ଯାତ୍ରିପ୍ରତି ଏକଅଣାଠାରୁ ଦୁଇଏକ ଟଙ୍କା ପର୍ଯ୍ୟନ୍ତ ଆପଣା କର୍ମାନୁସାରେ ଲାଭ କଲେ। ସମୟରେ ଦ୍ୱାର ଫିଟିଥିଲେ ଏ ଘଟନା ହୋଇ ନ ପାରନ୍ତା। ଆମ୍ଭମାନଙ୍କର ପତ୍ରପ୍ରେରକ ଲେଖିଅଛନ୍ତି ଯେ କଲେକ୍‌ଟର ସାହେବ ନୂତନ ଆସିଥିବାରୁ ସେ ଉତ୍ତମ ବନ୍ଦୋବସ୍ତ କରି ପାରିଲେ ନାହିଁ ତଥାଚ ସାଧ୍ୟାନୁସାରେ ତ୍ରୁଟି କରି ନାହାନ୍ତି ଭରସା ହୁଅଇ ସେସ୍ଥାନର ସକଳ ଅବସ୍ଥା ଅବଗତ ହେଲାରୁ ଭବିଷ୍ୟତକୁ ଭଲ କରିବେ। ଏକ ବ୍ୟକ୍ତି ଅଣ୍ଟାରେ ଗଞ୍ଜିୟାରେ ଟଙ୍କା ଥିଲା ତାକୁ କେହି ଚୋରୀ କରିଥିଲା ଏହି ସମୟରେ ଟାକ୍‌ସ ଚପରାସୀ ତାହାକୁ ଗିରଫତାର କରିବାରୁ ତାହାର ଦଣ୍ଡ ହେଲା ମାଜିଷ୍ଟ୍ରେଟ ଦଣ୍ଡ ଦେବାବେଳେ ଯଥାର୍ଥ କହିଅଛନ୍ତି ଯେ ଟାକ୍‌ସଚପରାସୀ ଯେବେ ଚୋର ଧରିଲା ଏତେ ପୁଲିସ ଥାଇଁ କି କରୁଥିଲା।

ଉପସଂହାରସ୍ଥଳେ ପତ୍ରପ୍ରେରକ ଲେଖିଅଛନ୍ତି ଯେ ପୂର୍ବେ ରାମକ୍ଷୟବାବୁ ଡେପୁଟୀ କଲେକ୍‌ଟର ଥିବା ସମୟରେ ମନ୍ଦିରର ତତ୍ତ୍ୱାବଧାରଣ କରୁଥିବାରୁ ସୂଚାରୁପେ ସକଳକାର୍ଯ୍ୟ ଚଳୁଥିଲା ବର୍ତ୍ତମାନ ଯେବେ କଲେକ୍‌ଟରୀର ନୂତନ ସିରସ୍ତାଦାର ବାବୁ ରାମପ୍ରସାଦସିଂହଙ୍କୁ ସେ ଭାର ଦିଆ ଯାଏ ତେବେ ଭରଣ ହେବ ଆମ୍ଭେମାନେ ଏମତରେ ଐକ୍ୟଅଛୁଁ।

*ଉତ୍କଳ ଦୀପିକା-୧୮୭୩: ପୃଷ୍ଠା ସଂଖ୍ୟା-୧୦୮*

# ଯାତ୍ରୀଙ୍କ କ୍ଳେଶ

## ପୁରୀ

ଆମ୍ଭମାନଙ୍କ ସମ୍ବାଦଦାତା ତଳଲିକିତ ବିଷୟମାନ ଲେଖିଅଛନ୍ତି ଯଥା।

୧ ସତ୍ୟବାଦୀଠାରୁ।ପ୍ରା।ରାହାଙ୍ଗ।ମୌ। ଶ୍ରୀରାମଚନ୍ଦ୍ର ପୁରକୁ ଯିବା ବାଟରେ ବାଙ୍କକୁଠ ନାମକ ନଦୀ ଅକ ତହିଁରେ ପାର ଉଦ୍ଧାର ହେବାର ଉତ୍ତମ ନୌକାଦି ନ ଥିବାରୁ ଅନେକ ଅନିଷ୍ଟ ଘଟୁଅଛି। ଗତ ଅକ୍ଟୁବର ମାସ ତା୧୬ରିଖରେ ଏକ ନୌକା ବୁଡ଼ିଯିବାରୁ ଜ୬ଣ ମନୁଷ୍ୟ ପ୍ରାଣରେ ମରାପଡ଼ିଥିଲେ। ଜିଲା ହାକିମମାନେ ଏନଦୀ ପାର ଉତ୍ତାର ପକ୍ଷରେ ଭଲ ବନ୍ଦୋବସ୍ତ କରି ଦେଲେ ଅନେକ ମଙ୍ଗଳ ହେବ।

୨ ନରୀନ୍ଦ୍ର ପୁଷ୍କରିଣୀ ମରମତ ବିଷୟରେ ପୂର୍ବେ ଯାହା ଦୀପିକାରେ ପ୍ରକାଶ ହୋଇଥିଲା ସ୍ଥାନୀୟ ସୁଯୋଗ୍ୟ ମାଜଷ୍ଟ୍ରେଟ ଆର୍ମଷ୍ଟ୍ରଙ୍ଗ ସାହେବଙ୍କୁ ତାହା ଗୋଚର  ହେବାର ଚାନ୍ଦା ଆଦାୟ କରି ମରମତି କାର୍ଯ୍ୟ ଶୀଘ୍ର ଆରମ୍ଭ କରିବାକୁ ଦୃଢ଼କଳ୍ପ ହୋଇଅଛନ୍ତି ଓ ମଧ ବାବୁ ଶିବପ୍ରସାଦ ସିଂହ ଏନଗରକୁ ବଦଳୀ ହୋଇ ଆସିଛନ୍ତି ଏ ମହାଶୟଙ୍କଠାରୁ ମାଜିଷ୍ଟ୍ରେଟ ସାହେବ ପୁରୀନଗର ଉନ୍ନତି ସାଧନପକ୍ଷରେ ଅନେକ ସାହାଯ୍ୟ ପାଇବେ।

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାଦି ପୂର୍ବ ରୀତିରୁ ବିପରିତ ହେବାର ଦେଖାଯାଏ ଓ ମନ୍ଦିରର କେତେକ ଦେଉଳ ଓ ପାଚେରୀ ପ୍ରଭୃତିରେ ବୃହତାକାର ବୃକ୍ଷମାନ ହୋଇ ଅତ୍ୟନ୍ତ ଅପରିଷ୍କାର ଅବସ୍ଥାରେ ଅଛି ମନ୍ଦିରର ସୁପ୍ରଣ୍ଟେଣ୍ଟ ପର୍ଦାନସିନ ସ୍ତ୍ରୀ ଓ କୌଣସି ଉପଯୁକ୍ତ ଦେୱାନ କିମ୍ବା ଉଚ୍ଚକର୍ମଚାରୀ ନିଯୁକ୍ତ ନ କରିବାରୁ ଏସବୁ ଦୁର୍ଘଟନା ହେଉଅଛି। ପୁରୀର ମହାରାଜା ନାବାଳଗ ଓ ପୁରୁଣା ଚାକରଙ୍କଦ୍ୱାରା ବେଷ୍ଟିତ ସୁତରାଂ ତାହାଙ୍କଦ୍ୱାରା କିଛି କାର୍ଯ୍ୟ ହେଉନାହିଁ। ମୁଗଲବନ୍ଦୀ ଏଲାକରୁ ଜଣେ ଉପଯୁକ୍ତ ଉଚ୍ଚକର୍ମଚାରୀ ଯେବେ ସେ ନିଯୋଗ କରନ୍ତେ ତେବେ ସବୁକାର୍ଯ୍ୟ ଶୃଙ୍ଖଳାରେ ଚାଲନ୍ତା।

୪ ମାର୍କଣ୍ଡ ପୁଷ୍କରିଣୀର ଅବସ୍ଥା ମଧ ଅତିମନ୍ଦ ହୋଇଅଛି ଓ ଏହାର ଜଳ ଏମନ୍ତ ଅପରିଷ୍କାର ଓ ଦୁର୍ଗନ୍ଧ ହୋଇଅଛି ଯେ ଏଥିରେ ସ୍ନାନ କରିବାକୁ ଘୃଣା ବୋଧ ହୁଅଇ। ପୂର୍ବେ ବର୍ଦ୍ଧମାନର  ମହାରାଜା ଥରେ ଏ ପୁଷ୍କରଣୀକୁ ମରମତି କରିଥିଲେ ବର୍ତ୍ତମାନ ଏହାକୁ ପରିଷ୍କାର କରିବାର ଦୂରେ ଥାଉ ଅପର କେହି ଧନୀବ୍ୟକ୍ତି ତାହା କରିବାକୁ ପ୍ରବୃତ୍ତ ହେଲେ ତହିଁରେ ତାହାଙ୍କ ମୁକ୍ତାର ବାଧା ଦେଉଅଛନ୍ତି।

୫ ଏ ପୁରୀସହରସ୍ଥିତ ଗୁଣ୍ଡିଚାମନ୍ଦିରକୁ ବନ୍ଦର ବାଲେଶ୍ୱର ନିବାସୀ ସୁବିଖ୍ୟାତ ଓ ଧର୍ମିଷ୍ଟ ଶ୍ରୀଯୁକ୍ତ ବାବୁ ଶ୍ୟାମାନନ୍ଦ ଦେ ବହୁଟଙ୍କା ବ୍ୟୟରେ ପରିଷ୍କାର କରାଇଅଛନ୍ତି ବର୍ତ୍ତମାନ ସେ ମନ୍ଦିର ଚତୁଃପାର୍ଶ୍ୱ ବେଢ଼ା ମଧ୍ୟରେ ଓ ପାଚେରୀ ଉପରେ ଭୟଜାତ ଜଙ୍ଗଲ ହୋଇଅଛି। ରାତ୍ରସମୟ ଉକ୍ତ ବେଢ଼ାମଧ୍ୟକୁ ଯିବାର ଦୁଃସାଧ ଯଦି ବାବୁ ପ୍ରଶଂସିତ ପୁନରାୟ ପୂର୍ବ ସୁଚିତ ପ୍ରକାଶରେ ଉକ୍ତ

ଜଙ୍ଗଲକୁ ପରିଷ୍କାର କରାନ୍ତି ତେବେ ତାଙ୍କର ସୁକୀର୍ତ୍ତୀ ଓ ମଧ୍ୟ ହିନ୍ଦୁଧର୍ମର ସ୍ଥାନ ଯାବତ୍ ଚନ୍ଦ୍ରାର୍କେ ଜାଗ୍ରତ ରହିବାର ସମ୍ଭାବନା।

୬ ଶ୍ରୀଜଗନ୍ନାଥ ସଡ଼କର ଭୁବନେଶ୍ୱର ଶ୍ରୀଲିଙ୍ଗରାଜ ମହାପ୍ରଭୂଙ୍କ ଛାମୁକୁ ଯିବା ସଡ଼କ ସକାଶେ ବୈକୁଣ୍ଠଗାମୀ ବାବୁ ପଦ୍ମଲୋଚନ ମଣ୍ଡଳ ଟ୫୦୦ଦଉ କରିଥିଲେ କିନ୍ତୁ ଉକ୍ତ ଟଙ୍କା ଜଙ୍ଗଲ କଟା ଓ ସଡ଼କର ନୟନ ଅର୍ଥାତ୍ ଚିହ୍ନ କରିବାରେ ଅନଷ୍ଟନ ହୋଇଅଛି ଅତଏବ ସେ ସଡ଼କ ନ ଥିବାରୁ ଶ୍ରୀ ଲିଙ୍ଗରାଜ ମହାପ୍ରଭୂଙ୍କ ଦର୍ଶନାର୍ଥୀ ବିଦେଶୀ ଓ ସ୍ୱଦେଶୀ ଯାତ୍ରିମାନଙ୍କର ବହୁ କ୍ଳେଶ ଓ ଦୁଃଖ ଜାତ ହେଉଅଛି ଏ ବିଷୟରେ ଯଦି ଏଜିଲାର ମହାମାନ୍ୟ କମିଶ୍ନର ଓ ମେଜଷ୍ଟର ସାହେବ ଦୃଷ୍ଟିପାତ କରି ଚାନ୍ଦା ନତୁବା ସରକାର ବ୍ୟୟରେ ଉକ୍ତ ସଡ଼କ ନିର୍ମାଣ କରାନ୍ତି ତେବେ ଅନାୟାସରେ ସମସ୍ତଙ୍କର ଦୁଃଖ ମୋଚନ ହୋଇପାରେ ସନ୍ଦେହ ନାହିଁ।

*ଉତ୍କଳ ଦୀପିକା-୧୮୭୩: ପୃଷ୍ଠା ସଂଖ୍ୟା-୨୦୮*

## ପ୍ରେରିତପତ୍ର

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ।

ଶ୍ରୀଯୁକ୍ତ ଆର୍ମଷ୍ଟ୍ରଂ ସାହେବ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ନୀତି ଇତ୍ୟାଦି ଚଳିବା ଓ ସହର ସଫା ରହିବା ବିଷୟରେ ଭାରୀ ମନୋଯୋଗ ପୂର୍ବକ କାର୍ଯ୍ୟ କରୁଅଛନ୍ତି ଯେପରି ଏଠାରେ ହୋଇଅଛି ସେପରି କଟକ ଓ ବାଲେଶ୍ୱରରେ ଦେଖା ନାହିଁ କଲିକତା ଦସ୍ତୁର ପରି ସହରଠାରୁ ସମୁଦ୍ର ବାଲିରେ ସୁଦ୍ଧା ସ୍ଥାନେ ସ୍ଥାନେ ପାଏଖାନା ମାଳ ମାଳ ହୋଇ ତୟାର ଅଛି ଲୋକମାନେ ସେ ସ୍ଥାନ ବ୍ୟତିରେକେ ଅନ୍ୟ ସ୍ଥାନରେ ମଇଳା କରୁ ନାହାନ୍ତି। ଫି ଜଣକୁ ଟ୪ଙ୍କା ଲେଖାଏଁ ଦରମାହିରେ ଜ୬୧ଣ ମେହେନ୍ତର ଚାକର ନିଯୁକ୍ତ ଓ ମଏଳା ବୁହାଇ ଜେବା ଗୋ୫୦ଟା ବଳଦ ମଏ ଗାଡ଼ି ପ୍ରସୁତ ଅଛି ଓ ଟିଣାହାଣ୍ଡିରେ ମଏଳା ରହି ସେହି ଟିଣାର ସରପୋସ ତଙ୍କା ଯାଇ ରଓ୍ୟାନା ହୁଏ ଲୋକମାନଙ୍କୁ ମଏଳା ଯାଉଥିବାର ଦୁର୍ଗନ୍ଧ ଜଣାଯାଉ ନାହିଁ। ବଳଦ ଫି ଗୋଟିକୁ ଖୋରାକୀ କୁଣ୍ଡା ଓ ହରକିସମ ରକମର ଚୋପା ଓ ଚଣା ଓଗେର ଦାନା ଓ ଘାସର କିମତ ଅମଣାର ଖାଉଅଛନ୍ତି ତାହାର ହିସାବ ଓ ହିପାଜତ ବୁଝିବାସକାଶେ ଚଉକୀଦାରୀ ଇଲାକା ଛଡ଼ା ଅନ୍ୟ କନଷ୍ଟବଲ ଜମାଦାର ଓ ମୋହରମାନଙ୍କୁ ନିଯୁକ୍ତ କରି ଆପେ ଓ ଡାକ୍ତର ସାହେବ ପ୍ରତ୍ୟହ ସକାଳ ବେଳାରେ ତଦନ୍ତ କରୁଅଛନ୍ତି। ଦୁଷ୍ଟ ଜମିଦାର ଓ ଲାଖରାଜଦାରମାନଙ୍କୁ ଅପରାଧ ସାବ୍ୟସ୍ତ ଦ୍ୱାରା ଜବ୍ଦ କରୁଥିବାରୁ ଲୋକମାନେ ତାଙ୍କ ନାମ ଶୁଣିଲା ମାତ୍ରକେ ଥରହର ହେଉଅଛନ୍ତି। ସରକାରୀ ଚାକରମାନେ ଭୟ ପ୍ରଯୁକ୍ତ କାର୍ଯ୍ୟ କରୁଅଛନ୍ତି କୌଣସି ମକଦ୍ଦମା ଅଧିକ ଦିନ ବାକି ରହୁ ନାହିଁ। ପ୍ରଭୁଙ୍କ କାର୍ଯ୍ୟରେ ସାବକ କିଲକ୍ଟର ଶ୍ରୀଯୁକ୍ତ ଓକିଲସନ ସାହେବଙ୍କ ତୁଲ୍ୟ ମନୋଯୋଗୀ ଅଛନ୍ତି। ଏଥର ରଥଯାତ୍ରାରେ ବିଶେଷ ଯାତ୍ରୀ ହୋଇ ନାହାନ୍ତି ତଥାପି ବଙ୍ଗଳା ଦେଶ ଓ ଓଡ଼ିଶାଦେଶ ଯାତ୍ରୀ ଅନ୍ଦାଜ ପଚାଶ ହଜାର ପର୍ଯ୍ୟନ୍ତ ହୋଇଥିଲେ କାହାରି ଅନିଷ୍ଟ ହୋଇ ନାହିଁ ରଥମାନ କଉତୁକରେ ଆଗପଛ ହୋଇ ଗୁଣ୍ଡିଚାବାଡ଼ିରେ ପହୁଞ୍ଚିଅଛି। ଏସାଲ ଛ ଗୁଣ୍ଡିଚା ହେଲା ସାତଦିନ ରାତ୍ର ପ୍ରହରକ ସମୟେ ଗୁଣ୍ଡିଚା ଘରକୁ ଠାକୁରମାନେ ପହଣ୍ଡିବିଜେ

କରି କ୍ଷୁଧାର୍ତ୍ତୀ ହେତୁରେ ଗତ କାଲି ଭୋରଠାରୁ ଆଜି ଭୋର ହେବାତକ କୋଠାଭୋଗ ଓ ମହନ୍ତମାନଙ୍କର ଜଜମାନମାନଙ୍କର ଅନେକ ପଦାର୍ଥ ଆହାର କରି ଲୋକମାନଙ୍କୁ ମହାପ୍ରସାଦ ଖୁଆଇ ସନ୍ତୁଷ୍ଟ କରାଇଅଛନ୍ତି। ଆଜି ଜୁଲାଇ ତା୨୦ରିଖ ଶୁକ୍ରବାର ଦିବା ଶେଷ ସନ୍ଧ୍ୟା ସମୟେ ବାହୁଡ଼ା ଘର ସ୍ଥିତ ରତ୍ନସିଂହାସନରୁ ପହଣ୍ଡି ବିଜେ ହୋଇ ଜଗମୋହନ ଘର ଖମ୍ବମାନଙ୍କରେ ବନ୍ଧା ଯାଇଅଛନ୍ତି। ରଥମାନେ ଦକ୍ଷିଣମୂର୍ତ୍ତି ହୋଇ ନାହାନ୍ତି ତାହା କରିବା ପକ୍ଷେ ରାଜାଙ୍କ ତରଫରୁ ମନୋଯୋଗ ନାହିଁ ରଥ ଫେରି ହେଲାରୁ ପ୍ରାୟ ଚାରିଦିନ ପରେ ଠାକୁରମାନେ ରଥକୁ ବିଜେ କରିବେ ତାହାର କେତେକ ଦିନେ ବଡ଼ଦେଉଳରେ ନୀଳାଦ୍ରି ବିଜେ କରିବେ ତାହା ବର୍ତ୍ତମାନ ସ୍ଥିର କରା ଯାଇ ନ ପାରେ ଓ ମହାମାନ୍ୟ ଗବର୍ଣ୍ଣମେଣ୍ଟଙ୍କ ଆଜ୍ଞାନୁସାରେ ଦେଉଳର ହାନି ଲାଭ ବୁଝିବା ସକାଶେ କମିଟୀ ମୁକରର ହେବେ ଶ୍ରୀଯୁକ୍ତ ମେଜଷ୍ଟର ସାହେବ ରାଜାଙ୍କ ନାମରେ କମିଟୀ ମୁକରର କାରଣ ପସନ୍ଦ କରି କମିଟୀ ନାମ ତାଲିକା ଦେବା ସକାଶ ପରଓ୍ୱାନା ସାଦର କରିଅଛନ୍ତି ଉତ୍ତମ ବ୍ୟକ୍ତିମାନେ କମିଟୀ ମୁକରର ହେଲେ ରାଜାଙ୍କ ନିଦ୍ରା ଭଙ୍ଗ ହେବ। ପୁରୀ ସହରରେ ଟଙ୍କାକୁ ମୋଟଚାଉଳ ସେ୧୨ର ଓ ସରୁଚାଉଳ ସେ୧୦ର ଲେଖାଏଁ ହୋଇଅଛି ନଅ ଅଙ୍କ ଦୁର୍ଭିକ୍ଷ ସମୟେ ଯେପରି ଲୋକମାନେ ରୁଣ୍ଡ ହୋଇ ସରକାରୀ ଗୋଦାମରୁ ଚାଉଳ ଖରିଦ କରୁଥିଲେ ସେହି ପରି ଏଠାଗଞ୍ଜରୁ ଲୋକମାନେ ନେଉଅଛନ୍ତି ସେ ଜାଗା ଦୁର୍ଭିକ୍ଷ ପରି ଦେଖାଯାଏ ଓ ମଧ୍ୟ ଏ ପୁରୀଜିଲା ମଧ୍ୟରେ ବିଶେଷ ବରଷା ନ ହେବାରୁ ଧାନଫସଲ ଉତ୍ତମରୂପେ ତରଦୁଦ ହୋଇ ନାହିଁ କେତେକ ଜାଗା ଧାନଗଛ ଗୋରୁ ଖାଇ ଗଲେଣି ପାଣି ଅଭାବେ ରୁଆ ବେହୁଡା ହୋଇ ନାହିଁ ସଡ଼କ କିନାରା ନୟନଯୋଡିରେ ଟୋପାଏ ପାଣି ନାହିଁ ଏ ପୁରୀମୁକାମରେ ଓଲାଉଠାବ୍ୟାଧି ବିଶେଷ ନାହିଁ।ଇତି।

*ଶ୍ରୀ ନେତ୍ରାନନ୍ଦ ପଟ୍ଟନାୟକ*
*୨୦/୭/୭୭*
*ପୁରୀ*

*ଉତ୍କଳ ଦୀପିକା-୧୮୭୭: ପୃଷ୍ଠା ସଂଖ୍ୟା-୧୨୬*

## ଯାତ୍ରୀଙ୍କ କଷ୍ଟ

ପୁରୀ ରଥଯାତ୍ରାରେ ଏଥର ଯେପରି ଯାତ୍ରୀ ହୋଇଅଛନ୍ତି ଅନେକ ବର୍ଷରୁ ସେପରି ହୋଇ ନାହିଁ। ପୂର୍ବ ନୂଆକଳେବର ଅଥବା ଗୋବିନ୍ଦ ଦ୍ୱାଦଶୀ ସମୟରେ ଯାତ୍ରିଙ୍କ ସଂଖ୍ୟା ଏକଲକ୍ଷ ବା ତହିଁରୁ କିଛି ଅଧିକ ଥିଲା। ଏଥର ଦେଢ଼ ଲକ୍ଷଠାରୁ ଦୁଇଲକ୍ଷପର୍ଯ୍ୟନ୍ତ ଅନୁମାନ ହେଉଅଛି। ରେଳ ଏବଂ ଜାହାଜର ସୁବିଧା ଏବୃଦ୍ଧିର କାରଣ ଅଟଇ। ଜାହାଜ ଅପେକ୍ଷା ରେଳର ସୁବିଧା ଅନେକ ଅଧିକ ଏବଂ ଏଥର ପଶ୍ଚିମାଯାତ୍ରି ବିଶେଷ ହୋଇଅଛନ୍ତି। ସେମାନେ ରେଳରେ କଲିକତାକୁ ଆସି ପ୍ରୟୋଜନମତେ ଜାହାଜ ନ ପାଇ ଗଙ୍ଗାକୂଳରେ ଦି୨/୩/୪ ବା୭/୮ନ ପଡ଼ି ରହି ଯେ କଷ୍ଟ ଭୋଗ କରି ଅଛନ୍ତି ତାହା ଅକଥନୀୟ। ଗତ ବଙ୍ଗବାସୀରେ ସେମାନଙ୍କ ଦୁଃଖର କଥା ପଢ଼ିଲେ ପାଷାଣହୃଦୟ ତରଳ ହେବ। ସହସ୍ର ସହସ୍ର ଯାତ୍ରୀ ବର୍ତ୍ତମାନର ଗ୍ରୀଷ୍ମ ଓ

ବର୍ଷାଋତୁରେ କେବଳ ଅନାବୃତ ସ୍ଥାନରେ ପଡ଼ି ରହିଲେ ଏବଂ ରାନ୍ଧିବାସ୍ଥାନ ନ ପାଇ ଉପବାସ ରହିଲେ ଏତିକି ନୁହେ ପୁଲୀସ ମିଉନିସିପାଲିଟୀର କଟକଣା ହେତୁ ମଳମୂତ୍ର ତ୍ୟାଗ କରି ପାରି ନଥିଲେ। ଏ ସମୟରେ ଚୋର ବଦମାଏସ କେତେ ଲୋକଙ୍କ ସର୍ବନାଶ କରିଅଛନ୍ତି କହିବାର ନୁହେ ଶେଷରେ ପୋଟକମିଶନରମାନେ ସେମାନଙ୍କ ଘାଟ ଚାନ୍ଦନି ଛାଡ଼ି ଦେବାରୁ ରହିବାର ଟିକିଏ ସୁବିଧା ହେଲା। ମାତ୍ର ଜାହାଜରେ ଚଢ଼ିବା ପ୍ରାଣ ସଂଶୟ ହୋଇ ଥିଲା। ଗୋଟିଏ ଗୋଟିଏ ଜାହାଜରେ ଏତେ ଯାତ୍ରୀ ଚଢ଼ିବାକୁ ଧାଇଁଲେ ଯେ ଜାହାଜିଆମାନେ ସମ୍ଭାଳି ନ ପାରି ମାଡ଼ପିଟ କଲେ। ଜାହାଜିଆଙ୍କ ନିଷ୍ଠୁର ମାଡ଼ରେ ଅନେକ ଲୋକର ରକ୍ତପାତ ହୋଇଅଛି ଏବଂ କଥିତ ହୁଅଇ କେହି କେହି ଯାତ୍ରି ଜଳରେ ଖସିପଡ଼ି ପ୍ରାଣ ହରାଇ ଅଛନ୍ତି। ମନ୍ଦିରରେ ଭିତର ଦର୍ଶନ କଲାବେଳେ ଯାତ୍ରିମାନେ ବେତ ପ୍ରହାର ଖାଇବାର ଦେଖାଅଛି। ଏଥର କଲିକତାଠାରେ ଜାହାଜରେ ସେ କଷ୍ଟ ଭୋଗ ହୋଇଗଲା। ଜାହାଜର ମାଲିକମାନେ ସୁବନ୍ଦୋବସ୍ତ କରିଥିଲେ ଏପରି କେବେ ଘଟି ନ ଥାନ୍ତା। ସେମାନଙ୍କ ଅସାବଧାନତା ଓ ଅନ୍ୟାୟଲୋଭରୁ ଯାତ୍ରିମାନେ ଏତେ ଦୁଃଖ ଲଭିଲେ। ଜାହାଜର ଠିକ ନାହିଁ ଟିକଟ ଦିୟାଗଲା ଓ ଟିକଟ କିଣି ଦି୭/୮ନ ଯାତ୍ରି ପଡ଼ିରହିଲେ। ଯେଉଁ ଜାହାଜରେ ଯେତେ ଲୋକ ଯିବାର ନିଦ୍ଦିଷ୍ଟ ଅଛି ତହିଁରୁ ଅଧିକ ନେଲେ। ଏହି ସବୁ ଅନିବାର୍ଯ୍ୟ ଘଟନା ନୁହଇ? ଏବଂ ଏଥିପାଇଁ କି ଜାହାଜିଆମାନେ ଦାୟୀ ହେବେ ନାହିଁ। ଏସବୁ ବିଷୟର ତଦନ୍ତ କରି ଉଚିତ ବିଚାର କରିବା କାରଣ ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କୁ ବିଶେଷ ଅନୁରୋଧ କରୁଅଛୁଁ।

*ଉତ୍କଳ ଦୀପିକା-୧୮୯୩: ପୃଷ୍ଠା ସଂଖ୍ୟା-୨୩୧*

## ପୁରୀ-ରଥଯାତ୍ରା

ଗତବର୍ଷ ନୂଆ କଳେବର ଉପଲକ୍ଷରେ ପ୍ରାୟ ଦୁଇଲକ୍ଷ ଯାତ୍ରୀ ରଥଯାତ୍ରା ଦେଖିବାକୁ ପୁରୀକୁ ଆସି ଥିଲେ। ଏ ବର୍ଷ ତହିଁର ଏକ ଦଶମାଂଶ ସୁଦ୍ଧା ଆସି ନାହାନ୍ତି। ସ୍ନାନୋତ୍ସବ ପର୍ଯ୍ୟନ୍ତ ପ୍ରାୟ ଯାତ୍ରୀ ନ ଥିଲେ। କେବଳ ରଥଯାତ୍ରା ଦୁଇ ତିନି ଦିନ ଥାଉଁ ପ୍ରାୟ ୧୦/୧୨ ହଜାର ଲୋକ ଏକାବେଳକେ ଉପସ୍ଥିତ ହୋଇଗଲେ। ତହିଁଉତ୍ତାରୁ ୨/୩ ହଜାରରୁ ଅଧିକ ଯାତ୍ରୀ ଆସି ନାହାନ୍ତି ଅଧିକାଂଶ ଯାତ୍ରୀ ମୋଫସଲିଆ ବଙ୍ଗାଳି କଲିକତାସହରର ଲୋକ ଅତ୍ୟଳ୍ପ। ବଡ଼ ଦୁଃଖର ବିଷୟ ଯେ ଏଥର ଅଳ୍ପ ଯାତ୍ରୀ ହେଲେ ସୁଦ୍ଧା ଓଲାଉଠା ରୋଗ ଶୀଘ୍ର ବାହାରି ପଡ଼ି ଦୁଇ ତିନି ଦିନ ମଧ୍ୟରେ ୪୦/୫୦ ଲୋକଙ୍କର ପ୍ରାଣ ଘେନି ଗଲା। ଆଉ କେତେକ ଲୋକ ହାସପାତାଲରେ ପଡ଼ି ଅଛନ୍ତି। ରୋଗିମାନଙ୍କୁ ଗୋଟାଇ ନେବା ପାଇଁ ସର୍ବଦା ଡୋଲି ଗତାୟାତ କରୁଅଛି।

ବଡ଼ ସୁଖର ବିଷୟ ଯେ ରଥ ନିର୍ମାଣ ସମ୍ବନ୍ଧରେ ସରକାର ଏବଂ ରାଜକର୍ମଚାରୀଙ୍କ ମଧ୍ୟରେ କୌଣସି ମତାନ୍ତର ଘଟି ନାହିଁ। ନିର୍ଦ୍ଵନ୍ଦରେ ସକଳ କାର୍ଯ୍ୟ ନିର୍ବାହ ହେଉ ଅଛି। ପର୍ବର କାର୍ଯ୍ୟମାନ ଯେଉଁ ଦିନ ଯେପରି ନିର୍ବାହିତ ହେଲା ନିମ୍ନେ ଲେଖାଗଲା, ଯଥା -

ତା୩ରିଖ ମଙ୍ଗଳବାର ପ୍ରାତଃକାଳରେ ଶ୍ରୀ ଜିଉଙ୍କର ଅବସର ଡାଟି ଫିଟି ନବଯୌବନ ଦର୍ଶନ ଆରମ୍ଭ ହେଲା। ପୁଲିସଦଳ ରହି ଯାତ୍ରିମାନଙ୍କର ଦର୍ଶନର ସୁବିଧା କରାଇ ଦେଇଥିଲେ।

କିନ୍ତୁ ଅବିଚ୍ଛିନ୍ନ ବୃଷ୍ଟିପାତ ହେତୁ ଯାତ୍ରିମାନଙ୍କର ଦର୍ଶନରେ ସାମାନ୍ୟ ଅନ୍ତରାୟ ଜନ୍ମିଥିଲା। ଏ ଦିନ ଦର୍ଶନ ସମୟରେ କହେି ଯାତ୍ରୀ ଚମଡ଼ା ବେଗ୍ ନେଇ ମନ୍ଦିରକୁ ଯାଇ ଥିବାର ଦେଖା ଯିବାରୁ ମହାପ୍ରଭୁଙ୍କର ମହାସ୍ନାନ ହେଲା ଏବଂ ନିୟମିତ ବିଧିମାନ ହେବାପର ସକାଳ ଧୂପ ଶେଷ ହେବା ସମୟକୁ ଅପରାହ୍ନ ଘ୫ଣ୍ଟା ହୋଇ ଥିଲା। କିନ୍ତୁ ଭୋଗ ହେବାର ବିଳମ୍ବ ହେବାରୁ ଯାତ୍ରିମାନେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ମହା ସନ୍ତୋଷରେ ଦର୍ଶନ କରି ଥିଲେ। ଘ୫ଣ୍ଟା ସମୟରେ ଆଜ୍ଞାମାଳ ରଥକୁ ଆସିବାରୁ ଇଞ୍ଜିନିୟର ସାହେବଙ୍କ ଇନ୍ସ୍‌ପେକ୍ସନ୍ ପର ମାଜିଷ୍ଟ୍ରେଟ ପୁଲିସସାହେବ ଏବଂ ମେନେଜର ପ୍ରଭୃତି କର୍ମଚାରିମାନେ ଥାଇ ବଡ଼ ରଥରେ ଦଉଡ଼ି ଲାଗିଲା। ସନ୍ଧ୍ୟା ଘ୬ଣ୍ଟା ସମୟରେ ଉକ୍ତ ରଥ ସିଂହଦରୋଜାରେ ଲାଗିଲା। ଦେବୀ ରଥ ଚଳାଇବା ପାଇଁ ଦୀପ ଦୁହୁଡୀମାନ ଆଣି ବିଶେଷ ଯତ୍ନ କଲେ ହେଁ ରଥ ଆଦୌ ସ୍ଥାନରୁ ଚଳିଲା ନାହିଁ। ଏ ଦିନ ସନ୍ଧ୍ୟାଧୂପ ଶେଷ ହେବା ସମୟକୁ ରାତ୍ର ଶେଷ ହୋଇ ଯିବାରୁ ଚନ୍ଦନଲାଗି ବଡ଼ ସିଂହାର ଭୋଗ ହୋଇ ପାରିଲା ନାହିଁ।

ତା୪ରିଖ ବୁଧବାର ଶ୍ରୀଗୁଣ୍ଡିଚା। ଏଦିନ ପ୍ରାତଃକାଳରୁ ବର୍ଷାହେବାରୁ ସାଢ଼େ ଆ୦ ଘଣ୍ଟା ପର୍ଯ୍ୟନ୍ତ ରଥ ଚଳି ପାରିଲା ନାହିଁ ପ୍ରାୟ ଘ୯ଣ୍ଟା ସମୟରେ ବର୍ଷା ଛାଡ଼ି ଯିବାରୁ ଦେବୀ ରଥ ଓ ବଳଭଦ୍ରଙ୍କ ରଥ ଟଣା ହୋଇ ଘ୧୨ଣ୍ଟା ଠାରେ ସିଂହଦ୍ୱାରରେ ଲାଗିଲା।

ମେନେଜର ମହୋଦୟ ବିପଦ୍‌ଗ୍ରସ୍ତ ଥିବାରୁ ରଥ ତୟାର ବିଷୟରେ ପୂର୍ବରୁ ତତ୍ତ୍ୱାବଧାରଣ ନ ହେବା ହେତୁ ଏ ଦିନକୁ ରଥର ଅନେକ କର୍ମ ବାକୀ ଥିଲା। ଯଥା କିଞ୍ଚିତ୍ ରାତ୍ରକୁ କର୍ମ ଶେଷ ହେବାରୁ ରଥ ପ୍ରତିଷ୍ଠା ରଥ ମଣ୍ଡନ ହୋଇ ପ୍ରଭୁମାନେ ରଥକୁ ବିଜେକଲା ସମୟକୁ ରାତ୍ର ପ୍ରାୟ ଘ୧୨ଣ୍ଟା ହୋଇଥିଲା। ବିଶେଷ ରାତ୍ର ହେବାରୁ ପହଣ୍ଡି ଦର୍ଶନ ସୁଖରେ ହେଲା ନାହିଁ ଏବଂ ଚୋରମାନେ ସମୟ ପାଇ ଆପଣା୨ କର୍ମରେ ଲିପ୍ତ ହେଲେ। ବଡ଼ ସୁଖର ବିଷୟ ଯେ ଏ ସମୟକୁ ବର୍ଷା ସମ୍ପୂର୍ଣ୍ଣରୂପେ ଛାଡ଼ି ଯାଇଥିଲା।

ତା୫ରିଖ ଗୁରୁବାର ସକାଳେ ପୁଲିସ ଓ ମାଜିଷ୍ଟ୍ରେଟ ସାହେବ ମେନେଜର ଏବଂ ଦେଓ୍ୱାନ ଥାଇ ବଳଭଦ୍ର ଜିଉଙ୍କ ରଥ ଟଣା ହେଲା ଏବଂ ଏହି ରଥ ଘ୯ଣ୍ଟା ସମୟରେ ଜଗନ୍ନାଥବଲ୍ଲଭ ସମ୍ମୁଖରେ ଅବସ୍ଥାପିତ ହେଲା। କ୍ରମଶଃ --

*ଉତ୍କଳ ଦୀପିକା-୧୮୯୪: ପୃଷ୍ଠା ସଂଖ୍ୟା-୨୪୯*

## ପୁରୀଯାତ୍ରିଙ୍କର ପୀଡ଼ାର ନିଦାନ

ପୁରୀ ରଥଯାତ୍ରା ସମ୍ବନ୍ଧରେ ବାଲେଶ୍ୱରର 'ଓଡ଼ିୟା ଓ ନବସମ୍ବାଦ'ରେ କେତେଗୁଡ଼ିଏ ପ୍ରବନ୍ଧ ବାହାରିଅଛି। ଯାତ୍ରିଙ୍କର ସ୍ୱାସ୍ଥ୍ୟ ଓ ସୁବିଧା ସକାଶେ ପୁରୀ ବସାଘର ଆଇନ ଜାରୀ ହୋଇ ଅଛି ଏବଂ ସେ ଆଇନ ଚଳାଇବା ନିମନ୍ତେ ଉପଯୁକ୍ତ କର୍ମଚାରୀ ନିଯୁକ୍ତ ଅଛନ୍ତି। ମାତ୍ର ଯାତ୍ରୀମାନଙ୍କର ନାନା କଷ୍ଟ ଯେରୂପ ବର୍ଣ୍ଣିତ ହୋଇ ଅଛି ତାହା ସତ୍ୟ ହେଲେ ଅବଶ୍ୟ ବୋଲିବାକୁ ହେବ ଯେ ବନ୍ଦୋବସ୍ତ ଦୋଷରୁ ସେ ସବୁ ଅନେକ ପରିମାଣରେ ଘଟିଥିଲା। ଅନେକ ଯାତ୍ରୀ ଭଡ଼ାଘର ନ ପାଇ ପଦାରେ ପଡ଼ିରହି ଖରା ବର୍ଷା ଭୋଗ କଲେ। ନରେନ୍ଦ୍ର ପୁଷ୍କରିଣୀର ବ୍ୟବହାର ଏକାବେଳେ

ବନ୍ଦ କରାଗଲା। ନଗରର ନାନାସ୍ଥାନରେ ଥିବା କୂପନିକଟରେ ମଧ୍ୟ ସ୍ନାନ କରିବାର ନିଷେଧ ହେଲା। କଚେରୀ କୂଅର ଜଳ ବିଶୁଦ୍ଧ ବୋଲି ନଗରବାସୀ ଅନେକ ଲୋକ ସେହି ଜଳ ପାନ କରନ୍ତି। ଲୋକ ନିଜର ମାଟି ବା ପିତ୍ତଳମାଠିଆ ସେ କୂଅରେ ବୁଡ଼ାଇଲେ କାଳେ ଜଳ ଦୂଷିତ ହେବ ଏଥିପାଇଁ ସେ କୂଅରୁ କେହି ଜଳ ନେବାର ନିଷେଧ ହେଲା। ସରକାରୀ ପିତ୍ତଳ ବା ତମ୍ବାର ପାତ୍ର ସେ କୂଅପାଖରେ ଜଣେ ଲୋକ ଜିମାରେ ରଖାଇ ଦେଇଥିଲେ ସେଥିରେ ଜଳ କାଢ଼ି ଆପଣା ଆପଣା ପାତ୍ରରେ ଲୋକ ନେଇଯାଇ ପାରନ୍ତେ ଏହା କାହାରି ହେଜ ହେଲା ନାହିଁ। ବିଶେଷ ଯାତ୍ରିର ସମାଗମ ଦେଖି ମିଉନିସିପାଲଟିରୁ ଅଧିକା ପାଇଖାନା ହେବାର ଉଚିତ ଥିଲା। ମାତ୍ର ତାହା ହୋଇ ନାହିଁ। ପାଇଖାନା ନ ପାଇ ଯାତ୍ରିମାନେ ମଳ ମୁତ୍ରର ବେଗ ଧାରଣ କରିବାକୁ ଅଥବା ଅନ୍ୟ ସ୍ଥାନରେ ତାହା ତ୍ୟାଗ କରିବାକୁ ବାଧ୍ୟ ହେଲେ। ସେମାନେ ବିଦେଶୀ ମିଉନିସିପାଲଟିର ସୀମା ଅଥବା କେଉଁଠାରେ ମଳ ମୂତ୍ର ତ୍ୟାଗ କରିବା ନିଷେଧ ଜାଣନ୍ତି ନାହିଁ। ବାଲିଚର ବା ପଡ଼ିଆ ଦେଖି ମଳତ୍ୟାଗ କଲେ ପୁଲୀସ ହାବୁଡ଼ରେ ପଡ଼ି ଆଇନ ଅନୁସାରେ ଚାଲାଣ ହେଲେ ଥାନାରୁ କଚେରୀକି ଯାଇ ଜରୀମାନାଦେଇ ଆସୁ ଆସୁ ସନ୍ଧ୍ୟା ହୋଇଗଲା ସୁତରାଂ ସ୍ନାନାହାର ବିନା ସଶଙ୍କିତଭାବରେ ଦିନଟି କଟାଇଲେ। ମଳ ମୂତ୍ର ତ୍ୟାଗ, ସ୍ନାନ ଏବଂ ପାନୀୟଜଳ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ନିତାନ୍ତ ଆବଶ୍ୟକ। ଯେବେ ଏ ତିନିବିଷୟରେ ବ୍ୟାଘାତ ହେଲା ଏବଂ ବିଶେଷତଃ ଏବର୍ଷ ରଥଯାତ୍ରା ସମୟ ଅସହ୍ୟ ଗ୍ରୀଷ୍ମରେ ଲୋକେ ଖରାରେ ପଡ଼ିରହି ଜଳକଷ୍ଟ ଭୋଗ କଲେ ତେବେ ପୀଡ଼ା ବୃଦ୍ଧି ହେବା ଆଶ୍ଚର୍ଯ୍ୟ ନୁହେ ଯାତ୍ରିସଂଖ୍ୟା କ୍ରମାଗତ ବୃଦ୍ଧି ହେବାର ଦେଖି କର୍ତ୍ତୃପକ୍ଷମାନେ ବେଳହୁଁ ସାବଧାନ ହୋଇ ବିଶେଷ ବନ୍ଦୋବସ୍ତ କରି ନ ପାରିଲେ ଏହା ସେମାନଙ୍କର ତ୍ରୁଟି ବିନା ଆଉ କି ବୋଲାଯିବ? ସେମାନେ ଚେଷ୍ଟା କରିଥିଲେ ଆଶା ହେଉଅଛି ସେସବୁ କଷ୍ଟ ଏବଂ ଅସୁବିଧା ଅନେକ ପରିମାଣରେ ନିବାରଣ ହୋଇ ପାରନ୍ତା। ନରିନ୍ଦ୍ରପୁଷ୍କରିଣୀର ବ୍ୟବହାର ଏକ ବେଳେ ବନ୍ଦ ନ କରି କେବଳ ସେ ଜଳ ପାନ କରିବାର ନିଷେଧ କଲେ ଯଥେଷ୍ଟ ହୋଇଥାନ୍ତା ଏବଂ କେତେଗୁଡ଼ିଏ କିଞ୍ଚିତ୍‌କାଳ ନିମନ୍ତେ ପତ୍ରତାଟିର ପାଇଖାନା ପ୍ରସ୍ତୁତ କରି ଦେଇ ଅଥବା ପଡ଼ିଆ ଛାଡ଼ିଦେଇ ଠିକା ହାଡ଼ି ନିଯୁକ୍ତ କରିଥିଲେ ଅନାୟାସରେ ପ୍ରତିଦିନ ପରିଷ୍କାର ହୋଇପାରନ୍ତା। ଏଥିରେ ଅଧିକା ବ୍ୟୟ ହୁଅନ୍ତା ସତ୍ୟ ମାତ୍ର ମିଉନିସିପାଲିଟୀ ବା ଲଜିଂ ହାଉସଫଣ୍ଡର ଟଙ୍କା ତହିଁପାଇଁ ନିଅଣ୍ଟ ହେଲେ ଗବର୍ଣ୍ଣମେଣ୍ଟ ସାହାଯ୍ୟ ଦେବାକୁ କୁଣ୍ଠିତ ହୁଅନ୍ତେ ନାହିଁ। କାରଣ ଦୟାବାନ୍ ଇଂରାଜ ଗବର୍ଣ୍ଣମେଣ୍ଟ ଲୋକଙ୍କର ସ୍ୱାସ୍ଥ୍ୟରକ୍ଷା ପ୍ରତି ସର୍ବଦା ମନୋଯୋଗୀ ଏବଂ ସେ ବିଷୟରେ ବ୍ୟୟ କାତର ନୁହନ୍ତି। ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ସହଯୋଗିଙ୍କର ଉପରଲିଖିତ ପ୍ରବନ୍ଧମାନ ଗବର୍ଣ୍ଣମେଣ୍ଟ ଏବଂ ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିବ ଏବଂ ଭବିଷ୍ୟତ୍‌ରେ ଯାତ୍ରିଙ୍କର ଏପରି ଦୁର୍ଦ୍ଦଶା ନ ଘଟିବାର ବିହିତ ଉପାୟ ଅବଲମ୍ବିତ ହେବ। ରେଲବାଟ ଓଡ଼ିଶାକୁ ଫିଟିବାଦ୍ୱାରା ଅନ୍ୟ କିଛି ଫଳ ହେଉ ବା ନ ହେଉ ପୁରୀକି ଅନେକ ଯାତ୍ରି ଆସିବେ ଏଥିରେ ସନ୍ଦେହ ନାହିଁ ଏବଂ ତହିଁପରେ ବିଶେଷ ବନ୍ଦୋବସ୍ତ କରିବା ଏକାନ୍ତ ଆବଶ୍ୟକ।

*ଉତ୍କଳ ଦୀପିକା-୧୮୯୯: ପୃଷ୍ଠା ସଂଖ୍ୟା-୩୩୯*

# ପୁରୀଯାତ୍ରୀଙ୍କର କ୍ଲେଶ

ପୁରୀକୁ ରେଳ ବାଟ ଫିଟିବାରୁ ଭାରତର ଚତୁର୍ଦ୍ଦିଗର ଯାତ୍ରୀ ବିଶେଷ ପରିମାଣରେ ଆସୁଅଛନ୍ତି ଏବଂ ଶିକ୍ଷିତ ଲୋକଙ୍କର ସଂଖ୍ୟା ମଧ୍ୟ ଅନେକ ବଢ଼ିଅଛି। ସୁତରାଂ ପୁରୀ ମନ୍ଦିରର କାର୍ଯ୍ୟକଳାପ ସାଧାରଣ ଆନ୍ଦୋଳନର ବିଷୟ ହୋଇ ଅଳ୍ପଦିନ ହେଲା ଏ ସମ୍ବନ୍ଧରେ ଖଣ୍ଡିଏ ପ୍ରେରିତ ପତ୍ର 'ପାୟୋନିଅର'ନାମକ ଏଲାହାବାଦର ଇଂରାଜୀ ଦୈନିକ ସମ୍ବାଦପତ୍ରରେ ବାହାରିଥିଲା। ତାହା ବଙ୍ଗ ଦେଶର କେତେକ ସମ୍ବାଦପତ୍ରରେ ଆଂଶିକ ବା ସମ୍ପୂର୍ଣ୍ଣ ଉଦ୍ଧୃତ ହେବାର ଦେଖିଲୁଁ। ଏଥିରୁ ସ୍ପଷ୍ଟ ଜଣା ଯାଉଅଛି କି ପ୍ରେରିତପତ୍ର ଲିଖିତ ବିଷୟମାନ ଅନେକ ଲୋକ ଅନୁମୋଦନ କରନ୍ତି ଏବଂ ମନ୍ଦିରର ତତ୍ତ୍ୱାବଧାନର ସୁବ୍ୟବସ୍ଥା ଶୀଘ୍ର ଆବଶ୍ୟକ। ପତ୍ରପ୍ରେରକ ତିନୋଟି ବିଷୟ ପ୍ରତି ସାଧାରଣ ମନୋଯୋଗ ଆକର୍ଷଣ କରିଅଛନ୍ତି। ଯଥା; ମହାପ୍ରସାଦ, ଆଲୋକ ଏବଂ ବସାଘର। ମହାପ୍ରସାଦ ସମ୍ବନ୍ଧରେ ସେ କହିଅଛନ୍ତି ପ୍ରତ୍ୟହ ପ୍ରାୟ ୨୦,୦୦୦ ଲୋକର ଖାଦ୍ୟ ମହାପ୍ରସାଦ ପ୍ରସ୍ତୁତ ହୋଇ ବିକ୍ରୟ ହୁଅଇ। ମାତ୍ର ସେ ସବୁ ସଜ କି ବାସି ଏବଂ ସ୍ୱାସ୍ଥ୍ୟକର କି ଅସ୍ୱାସ୍ଥ୍ୟକର ତାହା ଦେଖିବାକୁ କେହି ନାହିଁ। ତାହାଙ୍କର ପ୍ରସ୍ତାବ ଏହି ଯେ ଜଣେ ହିନ୍ଦୁ ଇନ୍‌ସ୍ପେକ୍ଟର ମହାପ୍ରସାଦ ପରୀକ୍ଷା ନିମନ୍ତେ ନିଯୁକ୍ତ ହେବ ଏବଂ ସେ ପଚା ଓ ଅସ୍ୱାସ୍ଥକର ମହାପ୍ରସାଦ ବିକ୍ରୟ କରିବାକୁ ନ ଦେଇ ନଷ୍ଟ କରିବେ। ମନ୍ଦିରର ଆୟରୁ ସେ ବେତନ ପାଇବେ। ମନ୍ଦିରର ଆୟ ଅଳ୍ପ ନୁହେ। ସେବା ନିମନ୍ତେ ଖଞ୍ଜା ହୋଇଥିବା ସମ୍ପତ୍ତିର ଆୟ ଛଡ଼ା ଯାତ୍ରିମାନଙ୍କର ଭେଟି ଇତ୍ୟାଦି ଦ୍ୱାରା ଅନେକ ଆୟ ହୁଅଇ। ସ୍ୱର୍ଗୀୟ ହଣ୍ଟାର ସାହେବ ବାର୍ଷିକ ୬୮୦୦୦ ପାଉଣ୍ଡ (ପ୍ରାୟ ୧୦ ଲକ୍ଷ ଟଙ୍କା) ଅନୁମାନ କରିଥିଲେ। ଏଣିକି ଆହୁରି ବଢ଼ିଅଛି। ଯେ ସ୍ଥଳେ ଅଳ୍ପ ଦିନ ତଳେ ମନ୍ଦିର ମଧ୍ୟରେ ଅତ୍ୟନ୍ତ ଭିଡ଼ରେ ୨/୩ ଲୋକ ମରା ପଡ଼ିବାରୁ ମାଜିଷ୍ଟ୍ରେଟ ସାହେବ ସରକାରୀ ପୁଲିସ ନିଯୁକ୍ତ କରି ଦର୍ଶନର ସମୟ ବାନ୍ଧ ଦେଇଅଛନ୍ତି ଏବଂ ତହିଁରେ କେତେ ଯାତ୍ରିର ଦର୍ଶନର ଅସୁବିଧା ହେଉଅଛି ସେ ସ୍ଥଳେ ଯାତ୍ରିମାନଙ୍କ ଖାଇବାର ମହାପ୍ରସାଦ ଅନ୍ନାଦି ସ୍ଥିତି ହାକିମମାନଙ୍କର କଟକଣା ନ କରିବେ କାହିଁକି? ଏଥିରେ ଧର୍ମ ପ୍ରତି ହସ୍ତକ୍ଷେପ କରିବାର କଥା ନାହିଁ ଏବଂ ହିନ୍ଦୁମାନେ ଯେବେ ନିଜେ ଭଲ ବନ୍ଦୋବସ୍ତ ନ କରିବେ ତେବେ ମନ୍ଦିରର ଆୟଦ୍ୱାରା ସରକାରଙ୍କୁ ତାହା କରିବାକୁ ହେବ।

ଆଲୁଅ ବିଷୟରେ ସେ ଲେଖିଅଛନ୍ତି କି ମନ୍ଦିର ମଧ୍ୟରେ ଏପରି ଅନ୍ଧକାର ଯେ ଦିନ ବେଳେ ପ୍ରଦୀପ ବିନା ମହାପ୍ରଭୂଙ୍କର ଦର୍ଶନ ହୁଅଇ ନାହିଁ। ପୁଣି ରାତ୍ରରେ ଦର୍ଶକମାନେ ଚନ୍ଦନଗଡ଼ାରୁ ବାହାର ପାଖରୁ ଦର୍ଶନ କରିବାର ଥିବାରୁ ଆହୁରି କଷ୍ଟ ହୁଅଇ। ଯେବେ ବିଦେଶୀୟ ଆଲୋକଧାର ଏବଂ କିରାସିନତେଲ ମନ୍ଦିର ମଧ୍ୟରେ ବ୍ୟବହାର ହୋଇ ନ ପାରେ ତେବେ ପ୍ରଚୁର ପରିମାଣରେ ଦେଶୀ ତୈଳର ପ୍ରଦୀପମାନ ବସାଇ ଦେଲେ ଉତ୍ତମ ଆଲୁଅ ହେବ ଏବଂ ତଦ୍ୱାରା ଦୁର୍ଘଟନା ନିବାରଣ ହୋଇ ପାରିବ। ଯାତ୍ରିମାନେ ଦୂରରେ ଛିଡ଼ା ହୋଇ ସୁଦ୍ଧା ପ୍ରଭୂଙ୍କର ଦର୍ଶନ କରି ପାରିବେ। ଏ ବିଷୟରେ ମଧ୍ୟ ମନ୍ଦିରର କାର୍ଯ୍ୟ ନିର୍ବାହକ ମନୋଯୋଗୀ ନ ହେଲେ ସରକାରଙ୍କର ହସ୍ତକ୍ଷେପ ଆବଶ୍ୟକ ହେବ।

ବସାଘର ଆଇନର ବିଧାନମାନ ଉତ୍ତମ ଅଟେ। ମାତ୍ର ରେଲ ଷ୍ଟେସନ ନିକଟରେ ଏବଂ ସହର ମଧ୍ୟରେ ଧର୍ମଶାଳାର ଅଭାବ ହେତୁ ଅନେକ ଯାତ୍ରିର କଷ୍ଟ ହେଉଅଛି। ଯାତ୍ରିମାନେ ଆଟିକା ବନ୍ଧା ନାମରେ କେତେ ଟଙ୍କା ପଣ୍ଡାମାନଙ୍କୁ ଦେଉଅଛନ୍ତି ଏବଂ ବଡ଼ଲୋକମାନେ ଏହି ସକାଶେ ଶତ ଶତ ବା ସହସ୍ର ୨ ଟଙ୍କା ପଣ୍ଡାମାନଙ୍କୁ ଦେଉଅଛନ୍ତି ବାସ୍ତବରେ ଏ ଟଙ୍କାରେ ପଣ୍ଡା ପୋଷା ଭିନ୍ନ ଆଉ କିଛି ହୁଅଇ ନାହିଁ। ଯଦ୍ୟପି ଧନାଢ଼୍ୟ ହିନ୍ଦୁମାନେ ମନୋଯୋଗୀ ହୋଇ ସହର ମଧ୍ୟରେ କେତେଟା ଧର୍ମଶାଳା ନିର୍ମାଣ କରିଦେବେ ଏବଂ ତହିଁ ମଧ୍ୟରୁ ଅନ୍ତତଃ ଗୋଟାଏ ଧର୍ମଶାଳା ରେଳ ଷ୍ଟେସନ ନିକଟରେ ରହିବ ତେବେ ଯାତ୍ରିମାନଙ୍କର ଅପାର ସୁବିଧା ହେବ। ଆଟିକାବନ୍ଧାରେ ଖରଚ କରିବା ଅପେକ୍ଷା ଧର୍ମଶାଳାରେ ଟଙ୍କା ଖରଚ କରିବା ଦ୍ୱାରା ଅଧିକ ପୁଣ୍ୟ ସଞ୍ଚୟ ହେବ ଏହା ବୁଝିବା ଲୋକ ମାତ୍ରେ ଅନାୟାସରେ ବିଚାର କରି ପାରିବେ।

ପତ୍ରପ୍ରେରକଙ୍କର ପ୍ରସ୍ତାବମାନ ଯୁକ୍ତିସଙ୍ଗତ ଅଟେ ଏବଂ ଆମ୍ଭମାନେ ଆଶା କରୁଁ କି ମନ୍ଦିରର ସୁପ୍ରଣ୍ଟେଣ୍ଟ ଅର୍ଥାତ୍ ପୁରୀର ରାଜା ତହିଁର ସୁବିଚାର କରିବେ। ନିକଟରେ ଯେଉଁ ଦୁର୍ଘଟନା ମନ୍ଦିରରେ ହୋଇ ଯାଇଅଛି ତାହା ସାମାନ୍ୟ ନୁହେଁ ଏବଂ ତହିଁରେ ତାହାଙ୍କର ଦାୟିତ୍ୱ କିଛି ନାହିଁ ଏହା କିଏ ବୋଲିବ? ସେ ବିଷୟରେ କି ଅନୁସନ୍ଧାନ ହେଉଅଛି ଆମ୍ଭେମାନେ ଅବଗତ ହୋଇ ନାହୁଁ। ମାତ୍ର ଗୋବିନ୍ଦଦ୍ୱାଦଶୀର ଦୁର୍ଘଟନା ଯେପରି ସହଜରେ ଛିଡ଼ି ନ ଥିଲା ଏଥର ସେହିପରି କିଛି ନ ହୋଇ ଯିବ ନାହିଁ। ମନ୍ଦିର ସୁପ୍ରଣ୍ଟେଣ୍ଟଙ୍କର ଦାୟିତ୍ୱ ଦିନକୁ ଦିନ ବଢ଼ୁଅଛି ଏବଂ ତହିଁ ସଙ୍ଗେ ତାହାଙ୍କର କାର୍ଯ୍ୟ ଶୃଙ୍ଖଳାର ଦୋଷ ଗୁଣ ବିଚାର କରିବାକୁ ଲୋକ ଅଧିକ ପ୍ରବୃତ୍ତ ହେଉଅଛନ୍ତି। ସେ ମନ୍ଦିରର କାର୍ଯ୍ୟ ସର୍ବ ପ୍ରକାରରେ ଉତ୍ତମରୂପେ ନିର୍ବାହର କି ବନ୍ଦୋବସ୍ତ କରୁଅଛନ୍ତି ଶୀଘ୍ର ତାହା ଜନସାଧାରଣରେ ପ୍ରକାଶ କରି ସମସ୍ତଙ୍କୁ ସନ୍ତୋଷ କରନ୍ତୁ। ନୋହିଲେ ମନ୍ଦିରର କାର୍ଯ୍ୟ ସମ୍ବନ୍ଧରେ ଯେତେ ପ୍ରତିକୂଳ ମତ ବାହାରିବ ତେତେ ତାହାଙ୍କର ଅନିଷ୍ଟ ହେବ ଏବଂ ଅଗତ୍ୟା ସରକାର ଅନ୍ୟ ବିଧାନ କରିବେ।

*ଉତ୍କଳ ଦୀପିକା-୧୯୦୧: ପୃଷ୍ଠା ସଂଖ୍ୟା-୪୨୭*

ପୁରୀର ରଥଯାତ୍ରା ଶେଷ ହେଲାପରେ ସେଠା ଫେରନ୍ତି ଯାତ୍ରିମାନେ ଓଲାଠାରୋଗ ଚତୁର୍ଦ୍ଦିଗରେ ବିସ୍ତୃତ କରୁଅଛନ୍ତି। ସତ୍ୟବାଦୀରେ ଏହି ଉତ୍ପାତ ଉପସ୍ଥିତ ହେତୁ ସେଠା ବିଦ୍ୟାଳୟର ଭାରପ୍ରାପ୍ତ ବାବୁ ନୀଳକଣ୍ଠ ଦାସ ଏମ, ଏ, ମହୋଦୟ ରୋଗିମାନଙ୍କୁ ହୋମିଓପାଥିକ ଔଷଧ ଦେଇ ଚିକିତ୍ସା ଓ ଶୁଶ୍ରୁଷା କରିବାକାରଣ ଗୋଟିଏ ସେଚ୍ଛାସେବକ ଦଳ ସୃଷ୍ଟି କରିଅଛନ୍ତି। ଏମାନେ କୋଶେ ୨ ବାଟ ଦୂରକୁ ଯାଇ ସେବାଆଦି କରିବା ଅତୀବ ଆନନ୍ଦର ବିଷୟ। ଗତ ବର୍ଷ ଏଠାରେ ଓଲାଉଠା ଲାଗିଥିବା ସମୟରେ ଅଧ୍ୟାପକ ହେମଚନ୍ଦ୍ର ସରକାର ମହାଶୟ ଏହିପରି ସୌଖୀନ ଦଳ ଗଢ଼ିଥିଲେ। ନୀଳକଣ୍ଠ ବାବୁ ଯେମନ୍ତ ସହୃଦୟ ତେମନ୍ତ ଚରିତ୍ରବାନ୍ ଅଟନ୍ତି। ଈଶ୍ୱର ତାଙ୍କର ଚେଷ୍ଟା ସଫଳ କରି ଦେଶର ମୁଖୋଜ୍ଜ୍ୱଳ କରନ୍ତୁ। ଦେଶରେ ଏପରି ଲୋକ ଯେତେ ଅଧିକ ହେବେ ଉନ୍ନତିର ମାର୍ଗ ତେତେ ପରିଷ୍କୃତ ହେବ।

*ଉତ୍କଳ ଦୀପିକା-୧୯୧୨: ପୃଷ୍ଠା ସଂଖ୍ୟା-୧୫୬*

# ଯାତ୍ରୀଙ୍କ ମରା ପଡ଼ିବା

ରଥଯାତ୍ରାରେ ଅନେକ ସ୍ଥଳରେ ଲୋକ ମରା ପଡ଼ିବାର ବିଗତ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବ ରଥଟଣା ଉଠାଇଦେବାକୁ ଗବର୍ଣ୍ଣମେଣ୍ଟ ଇଣ୍ଡିୟାରେ ପ୍ରସ୍ତାବ କରିଥିଲେ ମାତ୍ର ତାହା ମାନ୍ୟବର ଲର୍ଡ ନର୍ଥ ବୃକଙ୍କ ସୁବିଚାରରୁ ହିନ୍ଦୁଧର୍ମପ୍ରତି ସେରୂପ ହସ୍ତକ୍ଷେପଣ କରିବାର ବ୍ୟବସ୍ଥା ହେଲା ନାହିଁ। ଦୂର୍ଭାଗ୍ୟର ବିଷୟ ଯେ ଗତ ଯାତ୍ରାରେ ଭୁବନେଶ୍ୱର ଠାରେ ରଥ ଚକରେ ଏକଜଣର ହତ ଓ ଏକଜଣ ଆହତ ହେଲା। ଆମ୍ଭେମାନେ ଶୁଣିଅଛୁଁ ଯେ ଏଦୁହିଙ୍କର ଗୋଡରେ ଚକ ଚାଲିଯାଇ ଅତଏବ ସମ୍ଭବକୁ ଆସଇ କି ଯେବେ ଇଂରାଜୀ ଚିକିତ୍ସକ କେହି ସେଠାରେ ଉପସ୍ଥିତ ଥାନ୍ତା ତେବେ ମୃତ୍ୟୁ ଘଟନା ହୋଇ ନ ଥାନ୍ତା। ଭୁବନେଶ୍ୱରଠାରେ କେହି ଚିକିତ୍ସକ କିମ୍ବା ସରକାରୀ ଚିକିତ୍ସାଳୟ ନାହିଁ ଓ କଟାକଟି କର୍ମକୁ ଦେଶୀୟ ବୈଦ୍ୟ ସମ୍ପୂର୍ଣ୍ଣରୂପେ ଅକ୍ଷମ ସୁତରାଂ କୌଣସି ଆଶୁ ପ୍ରତୀକାର ନ ହେବାରୁ ଲୋକଟି ମରାପଡ଼ିଲା। ଏଥିପାଇଁ ଆମ୍ଭେମାନେ ଏମନ୍ତ ପ୍ରସ୍ତାବ କରୁନାହୁଁ ଯେ ଭୁବନେଶ୍ୱରଠାରେ ଗୋଟିଏ ସରକାରୀ ଚିକିତ୍ସାଳୟ ହେଉ। ଅବଶ୍ୟ ବୋଲିବାକୁ ହେବ କି ଯେବେ ପ୍ରତି ଗ୍ରାମରେ ଗୋଟିଏ ଲେଖାଁଏ ସରକାରୀ ଚିକିତ୍ସାଳୟ ବସନ୍ତା ତେବେ ପ୍ରଜାଙ୍କର ବିଶେଷ ମଙ୍ଗଳ ହୁଅନ୍ତା କିନ୍ତୁ ତାହା ହେବା ଗବର୍ଣ୍ଣମେଣ୍ଟଙ୍କ ଆୟ ବ୍ୟୟର ବ୍ୟବସ୍ଥା ସଙ୍ଗେ ସମ୍ପର୍କ ରଖେ କିନ୍ତୁ ଆମ୍ଭେମାନେ ଏହି ପ୍ରସ୍ତାବ କରୁଁ ଯେ ମଫସଲରେ ଯେତେବେଳେ ଯେଉଁଠାରେ କୌଣସି ବୃହତ୍ ମେଳା କି ଯାତ୍ରା ହୁଅଇ ଓ ଚତୁର୍ଦ୍ଦିଗର ଅନେକ ଯାତ୍ରି ଆସି ଜମା ହୁଅନ୍ତି ସେଠାକୁ ଶାନ୍ତିରକ୍ଷା ନିମିତ୍ତ ଯେମନ୍ତ ପୁଲିସ ପଠାଯାଏ ସେହିପରୂପ ଅକସ୍ମାତ୍ ପୀଡା ଓ ଦୁର୍ଘଟନା ନିମିତ୍ତ ଜଣେଲେଖାଁଏ ଡାକ୍ତର ପଠାଗଲେ ଭଲ ହୋଇପାରେ ଭାରୀ ଯାତ୍ରା ହେଲେ ପ୍ରାୟ ଏକ ସପ୍ତାହରୁ ଅଧିକକାଳ ରହଇ ନାହିଁ ଓ ଅନେକ ଯାତ୍ରା ଏକଦିନରେ ଶେଷ ହୁଅଇ ସଦରମୁକାମ କିମ୍ବା ସବ୍‌ଡିବିଜନରୁ ଜଣେ ନେଟିବ ଡାକ୍ତର କିମ୍ବା ତହିଁରୁ ଉଚ୍ଚ କର୍ମଚାରିକୁ ଏହି ଅଳ୍ପକାଳ ନିମିନ୍ତେ ଯାତ୍ରାସ୍ଥାନକୁ ପଠାଇଦେଲେ ଗବର୍ଣ୍ଣମେଣ୍ଟ ବିଶେଷ ବ୍ୟୟଗ୍ରସ୍ତ ହେବେ ନାହିଁ ଅଥଚ ଯାତ୍ରିଙ୍କର ପରମୋପକାର ହେବ।

*ଉତ୍କଳ ଦୀପିକା-୧୮୭୪: ପୃଷ୍ଠା ସଂଖ୍ୟା-୧୭*

## ପୁରୀ

୧୪ ତାରିଖ ଜୁଲାଇ ମଙ୍ଗଳବାର- ରାଜାଙ୍କ ପଛେ ଯେଉଁ ଭିଡ଼ ମନ୍ଦିରକୁ ପଶିଗଲା ତହିଁରେ ତିନିଜଣ ସ୍ତ୍ରୀ ଓ ଜଣେ ପିଲା ଚପାପଡ଼ିଥିଲେ। ଦିଯୋଟି ସ୍ତ୍ରୀ ଆରୋଗ୍ୟ ଲାଭ କରି ଅଛନ୍ତି ଓ ଅନ୍ୟ ସ୍ତ୍ରୀ ଓ ପିଲାଟି ଅବଧି ହାସପାତାଳରେ ଅଛନ୍ତି ମାତ୍ର ଭଲ ହେଉ ଅଛନ୍ତି। ଏ ଗୋଳମାଳ ହେବାରୁ ମନ୍ଦିର ଦ୍ବାର ସବୁ ବନ୍ଦ ହେଲା ଓ ଯାତ୍ରୀମାନେ ଓ ମହାପ୍ରସାଦ ପ୍ରାୟ ଦିନଯାକ ବନ୍ଦ ହୋଇ ରହିଲା ଓ ରାତ୍ର ଘ୮ଣ୍ଟା ସମୟରେ ବାବୁ ରାମପ୍ରସାଦ ସିଂହ ଉତ୍ତମ ବନ୍ଦୋବସ୍ତରେ ଏକଦ୍ବାର ଫିଟାଇ ଦେବାରୁ ଯାତ୍ରିମାନେ ବାହାରି ଆସିଲେ ଓ ଦାଣ୍ଡଲୋକେ ମହାପ୍ରସାଦ ପାଇ କ୍ଷୁଧା ନିବାରଣ କଲେ।

୧୫ ତାରିଖ ବୁଧବାର- ମନ୍ଦିରର ଚାକରମାନେ କାଳକର ଅଳସୁଆ ଓ ଅସାବଧାନ ସୁତରାଂ ପହୁଣ୍ଡିବିଜେର କିଛି ଚିନ୍ତା ନାହିଁ ସରକାରୀ କର୍ମକାରକମାନେ ଧମକ ଚମକ କରିବାରୁ ସୂର୍ଯ୍ୟାସ୍ତ ସରିକି ପହଣ୍ଡିବିଜେ ହେଲା ଓ ସିଂହଦ୍ବାରରେ ଭାରୀ ଭିଡ଼ ହେତୁରୁ କିଛିକାଳ ଅଟକି ରହି ରାତ୍ର ଘ୮ଣ୍ଟା ସମୟରେ ଠାକୁରମାନେ ରଥରେ ବସିଲେ। ମାଜିଷ୍ଟ୍ରେଟ୍‌ଙ୍କଠାରେ ଅମଲା ଓ ପୁଲିସ ସୁପରିଣ୍ଟେଣ୍ଡଙ୍କଠାରୁ କନଷ୍ଟବଲ ପର୍ଯ୍ୟନ୍ତ ସରକାରୀ କର୍ମକାରକମାନେ ଉପସ୍ଥିତ ରହି ସାହାଯ୍ୟ କରିଥିଲେ। ରାତ୍ର ଶେଷ ପର୍ଯ୍ୟନ୍ତ ଯାତ୍ରିମାନେ ଦର୍ଶନ କରିଥିଲେ।

୧୬ ତାରିଖ ଗୁରୁବାର- ସକାଳ ଘ୮ଣ୍ଟା ସମୟରେ ପୁଲିସସାହେବଙ୍କ ସାକ୍ଷାତରେ ଏକା ଯାତ୍ରିମାନେ ପ୍ରାୟ ବଡ଼ଠାକୁରଙ୍କ ରଥ ଅତି ବେଗରେ ଟାଣି ନେଇ ଘ ୧୦ଣ୍ଟା ସମୟରେ ଗୁଣ୍ଡିଚାମନ୍ଦିରଠାରୁ କିଛି ଦୂରରେ ରଖିଲେ। ଏହିଦିନ କେହି ଚେଷ୍ଟା କରିଥିଲେ ଆଉ ଦୁଇ ରଥ ମଧ୍ୟ ଟଣା ହୋଇଥାନ୍ତା।

୧୭ ତାରିଖ ଶୁକ୍ରବାର- ସୁଭଦ୍ରାଙ୍କ ରଥକୁ ଅଧିକାଂଶରେ ଯାତ୍ରୀମାନେ ଟାଣି ନେଇ ପୂର୍ବ ରଥ ନିକଟରେ ରଖିଲେ।

୧୮ ତାରିଖ ଶନିବାର- ଶ୍ରୀଜଗନ୍ନାଥଙ୍କ ରଥକୁ ଅଧିକାଂଶରେ ଯାତ୍ରିମାନେ ଟାଣି  ନେଇ ଗୁଣ୍ଡିଚାମନ୍ଦିରଠାରେ ରଖିଲେ।

୧୯ ତାରିଖ ରବିବାର- ଏଦିନ ବିଶ୍ରାମ କିଛି କାର୍ଯ୍ୟ ହୋଇ ନାହିଁ।

୨୦ ତାରିଖ ସୋମବାର- ବଳଭଦ୍ର ଓ ସୁଭଦ୍ରାଙ୍କ ରଥମାନ ଗୁଣ୍ଡିଚା ମନ୍ଦିର ନିକଟକୁ ଟଣା ହେଲା ଓ ତହିଁ ଉତ୍ତାରୁ ଠାକୁରମାନେ ଗୁଣ୍ଡିଚା ମନ୍ଦିରରେ ପ୍ରବେଶ କଲେ।

କୌଣସି ଦିନ କିଛି ଦୁର୍ଘଟଣା ହୋଇ ନାହିଁ ଓ ପୁଲିସସାହେବ ପୁଲିସସୁପରିଣ୍ଟେଣ୍ଡେଣ୍ଟ ପ୍ରଥମ ଦିନ ପରି ପରିଶ୍ରମ କରିଥିଲେ ସବୁ ରଥଯାକ ସେଦିନ କିମ୍ବା ତହିଁ ଆରଦିନ ଗୁଣ୍ଡିଚାମନ୍ଦିରଠାରେ ପହୁଞ୍ଚିଥାନ୍ତେ।

ଦୁଇଜଣ ବୈଷ୍ଣବ ରଥ ଦୌଡ଼ି ଧରି ଟାଣିବା ଅଭିପ୍ରାୟରେ ରଥର ଏତେ ନିକଟକୁ ଯାଇଥିଲେ କି ତହିଁରେ ବିପଦ ଘଟିପାରେ। ପୁଲିସ୍‌ସାହେବ ତାଙ୍କୁ ଆତ୍ମହତ୍ୟାର ଚେଷ୍ଟା କରିବା ଅପରାଧରେ ଚାଲାନ କରିବାରୁ ମାଜିଷ୍ଟ୍ରେଟ୍ ସାହେବ ଏକଜଣ ଉପରେ ଟ ୨ଙ୍କା ଅର୍ଥଦଣ୍ଡ ବିଧାନ କଲେ ଓ ମୌଲବୀ ଅବଦୁଲ କାଦିର ଅପର ବ୍ୟକ୍ତି ଉପରେ ଦଣ୍ଡ ବିଧିର ଦ୧୮୮ଫାନୁସାରେ ଦୁଇଅଣା ଅର୍ଥଦଣ୍ଡ କଲେ। ପୁଲିସସାହେବଙ୍କ ବିଦ୍ୟା ଅବାଧ ବୋଲିବାକୁ ହେବ।

ଓଲାଉଠା ରୋଗ ପ୍ରଥମରେ ପ୍ରାୟ ନ ଥିଲା କିନ୍ତୁ କ୍ରମଶଃ ବୃଦ୍ଧି କି ପାଇ ପ୍ରାୟ 300 ଜଣଙ୍କରୁ ଅଧିକ ଲୋକର ପ୍ରାଣନାଶ କରିଅଛି ଗତ ମଙ୍ଗଳବାର ସରିକି ପ୍ରତିଦିନ ଜ ୧୫।୨୦ଣ ମରିଥିଲେ। ଯାତ୍ରିଙ୍କ ସଂଖ୍ୟା ଆନୁମାନିକ ବିଦେଶୀ ପଚାଶ ହଜାର ଏବଂ ଦେଶୀୟ ତିରିଶ ହଜାର ସର୍ବସୁଦ୍ଧା ଅଶୀହଜାର ହୋଇପାରେ। ଏଥିମଧ୍ୟରୁ 300 ମରିବା ବଡ଼ ବିଚିତ୍ର ନୁହଇ ବରଂ ଏ ଅବସ୍ଥାରେ ରୋଗ ଦୁର୍ବଳ କରାଯାଇ ପାରେ କିନ୍ତୁ ଆମ୍ଭେମାନେ ଶୁଣିଲୁଁ ଯେ ଚିକିତ୍ସାର ଉତ୍ତମ ହୋଇ ନଥିବାରୁ ଏପରି ଘଟିଅଛି। ବିସୂଚିକା ବଟିକା ଉତ୍ତମ ଗୁଣ କରିବାର ଦେଖା

ଯାଇଅଛି। ମାତ୍ର ସେସବୁ ହାସ୍‌ପାତାଳ ଇତ୍ୟାଦିରେ ପଡ଼ି ରହିଲା। ଯେବେ ତାହା ଭଡ଼ାଘରର ମାଲିକମାନଙ୍କୁ ବାଣ୍ଟି ଦିଆଯାଇଥାନ୍ତା ଯେ ଯାହା ଯାତ୍ରିମାନଙ୍କୁ ସମୟ ବେଳେ ଦିଅନ୍ତେ ଓ ପଦାରେ ପଡ଼ି ରହିବା ଯାତ୍ରିଙ୍କୁ ବାଣ୍ଟିବା ସକାଶେ ଜ ୧୦।୧୨ଣ ସାମାନ୍ୟ ଚିକିତ୍ସକ ଯଥା କମ୍ପାଉଣ୍ଡର ପ୍ରଭୃତି ଶ୍ରେଣୀର ଲୋକ ନିଯୁକ୍ତ ହୋଇ ଚାରିଆଡ଼େ ବୁଲି ୨ ଓଷଧ ବାଣ୍ଟିବା କାରଣ ନିଯୁକ୍ତ ହୋଇଥାନ୍ତେ ତେବେ ମୃତ୍ୟୁ ସଂଖ୍ୟା ଏତେ ସୁଦ୍ଧା ହୁଅନ୍ତା ନାହିଁ ଘରଭଡ଼ା ଟାକ୍ସ ହେତୁରୁ ଟଙ୍କାର ଅଭାବ ନାହିଁ ଓ କମିଟୀ ଏବଂ ସ୍ୱାସ୍ଥ୍ୟରକ୍ଷକ ଯତ୍ନ କଲେ ଅନେକ ଭଲ କରିପାରନ୍ତେ। ଏରୂପ କିଛି ନ ହେବା ସ୍ଥଳେ ଘରଭଡ଼ା ଟାକ୍ସକୁ ଅନାବଶ୍ୟକୀୟ ଓ ଅନର୍ଥକର ଟାକ୍ସ ବୋଲିବାକୁ ହେବ। ଜ୍ୱରରୋଗର ମଧ୍ୟ କିଛି ୨ ପ୍ରାଦୁର୍ଭାବ ଦେଖାଯାଏ।

ଜଗନ୍ନାଥ ବଲ୍ଲଭ ମଠର ପୂର୍ବ ଅଧିକାରୀ ମଠର ଅନେକ ଟଙ୍କା ରତ୍ନାଦି ଘେନି ସ୍ୱଦେଶକୁ ଯାଇ ଆଉ ଫେରି ନ ଆସିବାରୁ କମିଟୀ ତାହାଙ୍କୁ ପଦଚ୍ୟୁତ କରିବାରୁ ମିରଜାପୁର ମଠର ଏକ ବ୍ୟକ୍ତି ଅଧିକାରୀ ପଦରେ ନିଯୁକ୍ତ ହେବା ଲାଗି ଆସିଅଛି ଶୁଣିବାରେ ଏ ବ୍ୟକ୍ତି ସଂସ୍କୃତ ଭାଷାରେ ପଣ୍ଡିତ, ଶାସ୍ତ୍ରଜ୍ଞ ଭକ୍ତିବନ୍ତ ଏବଂ ଦାନଶୀଳ ଅଟଇ ଏରୂପ ହେଲେ ଅବଶ୍ୟ ସେ ଅଧିକାରୀ ପଦର ପ୍ରକୃତ ଅଧିକାରୀ ଅଟଇ ଓ କମିଟୀ ଏସବୁ ପରିଚୟ ନିଯୁକ୍ତ କରି ପାରନ୍ତି। ଏପରି ଲୋକ ଯେବେ ମଠସବୁ ସକାଶେ ପାୟାଯାଏ ତେବେ ମଠଦ୍ବାରା ଦେଶର ସାମାନ୍ୟ ଉପକାର ହେବ ନାହିଁ।

*ଉତ୍କଳ ଦୀପିକା, ୧୮୭୪, ପୃଷ୍ଠା- ୬୦*

## ଗୋବିନ୍ଦ ଦ୍ୱାଦଶୀ ପର୍ବ ଉପଲକ୍ଷରେ ଅପମୃତ୍ୟୁ

ଏହି ମହତୀ ଦ୍ବାଦଶୀ ଅନେକ ବର୍ଷ ଉତ୍ତାରେ ଗତ ଫାଲ୍‌ଗୁଣମାସ ୧୬ ଦିନ ରବିବାରରେ ପଡ଼ିଥିଲା। ଏଥିନିମନ୍ତେ ତୀର୍ଥମାନଙ୍କରେ ଅସଂଖ୍ୟ ଯାତ୍ରୀ ଉପସ୍ଥିତ ହୋଇଥିଲେ। ପୁରୀରେ ଜଗନ୍ନାଥଦେବଙ୍କ ନୂଆ କଳେବର ଧାରଣ-ରଥଯାତ୍ରାରେ ଯେତେ ଯାତ୍ରୀଙ୍କର ସମାଗମ ହୁଏ, ଏହି ପର୍ବରେ ତହୁଁ ବଳି ଯାତ୍ରୀ ହୋଇଥିଲେ। କାଶୀ ଏବଂ ଅଯୋଧ୍ୟାର ସରଯୂରେ ଯାତ୍ରୀଙ୍କ ସମାଗମ ଏପରି ହୋଇଥିଲା ଯେ, ସାଧାରଣ ପର୍ବରେ କସ୍ମିନ୍ କାଳରେ ଏପରି ଦେଖା ଯାଇନାହିଁ। ଗୋମତୀ, ନର୍ମଦା, ସିନ୍ଧୁ, ଗୋଦାବରୀ, ଗଙ୍ଗା, କାବେରୀ ପ୍ରଭୃତି ତୀର୍ଥରେ ସହିପରି ଜନତା ହୋଇଥିଲା।

ଏହି ଜନତାରେ ଅନେକ ଯାତ୍ରୀ ଚପାପଡ଼ି ନଷ୍ଟ ହୋଇଅଛନ୍ତି। ଦୀପିକାରୁ ଅବଗତ ହେଲୁ ଯେ, ବଡ଼ ଦେଉଳରେ କେତେଜଣ ଯାତ୍ରୀ ମରା ପଡ଼ିଅଛନ୍ତି। ସରଯୂରେ ୧୬୬ ଜଣ ମଡ଼ାମଡ଼ିରେ ନଷ୍ଟ ହୋଇ ଥିବାର ମୁଣ୍ଡ ମିଳିଅଛି। ସୁଲତାନପୁରର କାଶୀ ପାଲକୀ ସହିତ ଚପାପଡ଼ି ମରିଅଛନ୍ତି। ଅନ୍ୟାନ୍ୟ ତୀର୍ଥରେ ଏହିପରି ଘଟନାରେ କେତେ ନଷ୍ଟ ହୋଇଅଛନ୍ତି ତାହା ଅବଧି ଜଣାପଡ଼ି ନାହିଁ। ଏହାଛଡ଼ା ଓଲାଉଠାରେ ଅନେକ ମହାପ୍ରାଣୀ ମରା ପଡ଼ିଅଛନ୍ତି ଜଗନ୍ନାଥ ସଡ଼କରେ ଅନେକ ନଷ୍ଟ ହୋଇଅଛନ୍ତି। ପୁରୀରେ ଓଲାଉଠା ଅଧିକ ଲାଗିଥିବାର ସମ୍ବାଦ ଆସୁଅଛି। ଏହି ରୋଗ ସଂକ୍ରାମକ ରୂପେ ଅନେକଙ୍କୁ ଅକାଳରେ ଯମପୁରକୁ ଟାଣୁଅଛି, କଟକରେ ଏହାର ଭୟାନତା ଦେଖା ଯାଇଅଛି। ଭଦ୍ରକ,

ବାଲେଶ୍ୱର ଓ ମେଦିନପୁର ପ୍ରଭୃତି ନଗରରୁ ଅନେକ ଲୋକ ମରା ପଡ଼ୁଅଛନ୍ତି। ତେବେ କି ଯାତ୍ରୀମାନେ ବାହାରି ଗଲେଣି ତଥାଚ ଏମାନଙ୍କ ଶରୀର ଜାତ ସଂକ୍ରାମକ ରୋଗ ଦେଶବ୍ୟାପୀ ହୋଇ ପଡ଼ିଅଛି।

ଧର୍ମବିଶ୍ୱାସ ଠାରୁ ବିଶ୍ୱାସ ଆଉ ନାହିଁ। କେବଳ ଧର୍ମକୁ ବିଶ୍ୱାସ କରି ଲୋକେ ମାସେ ଦୁଇମାସ କାଳର ବାଟ ଲଂଘି ତୀର୍ଥକୁ ଆସୁଅଛନ୍ତି, ମଧ ଧନରେ ପ୍ରାଣରେ କଷ୍ଟ ହେଉଅଛନ୍ତି; ତଥାଚ ଧର୍ମ ପ୍ରତି ବିଶ୍ୱାସ ଅନେକଙ୍କର ଅଟଳ ରହିଅଛି। ହିନ୍ଦୁ ବୋଲ, ଖ୍ରୀଷ୍ଟାନ ବୋଲ ବା ବ୍ରାହ୍ମ ବୋଲ ଧର୍ମ ପ୍ରତି ବିଶ୍ୱାସ ଅଟଳ ଥିବା ଭଲ। ଆମ୍ଭମାନଙ୍କ ଭାରତବର୍ଷରେ ଯେତେ ୨ ତୀର୍ଥ ଅଛି ସେହି ୨ ତୀର୍ଥକୁ ଦର୍ଶନ ବଳରେ ଯେତେ ୨ ଯାତ୍ରୀଙ୍କର ସମାଗମ ହୁଏ ଏବଂ ଯେତେ ଯାତ୍ରୀ ନଷ୍ଟ ହୁଅନ୍ତି ଏପରି ପୃଥିବୀର ଅନ୍ୟାନ୍ୟ ଦେଶରେ ଘଟେ ନାହିଁ, ଅନ୍ୟାନ ଦେଶରେ ଯାତ୍ରୀଙ୍କ ସ୍ୱାସ୍ଥ୍ୟ ନିମନ୍ତେ ସେହି ୨ ଦେଶର ସରକାର କିପରି ବନ୍ଦୋବସ୍ତ କରିଅଛନ୍ତି ତାହା ଆମ୍ଭେମାନେ କହି ନପାରୁ, ଭାରତ ବର୍ଷରେ ତୀର୍ଥଯାତ୍ରୀଙ୍କ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ଭାରତବର୍ଷୀୟ ଗବର୍ଣ୍ଣମେଣ୍ଟ ଆଶାନୁରୂପେ ବନ୍ଦୋବସ୍ତ କରି ନାହାନ୍ତି। ଏହା ଅତ୍ୟନ୍ତ ଦୁଃଖର ବିଷୟ। କେବଳ ସ୍ୱାସ୍ଥ୍ୟରକ୍ଷାର ପୂର୍ବବନ୍ଦୋବସ୍ତ ନ ଥିବାରୁ ଏତେ ମହାପ୍ରାଣୀ ନଷ୍ଟ ହେଉଅଛନ୍ତି। ପୁରୀରେ ଘର ଉପରେ ଯେପରି ଯାତ୍ରୀଙ୍କ ଟେକସ୍ ଧାର୍ଯ୍ୟ ହୋଇଅଛି ଯାତ୍ରିଙ୍କ ସ୍ୱାସ୍ଥ୍ୟରକ୍ଷାପ୍ରତି ସେପରି ଭଲ ବନ୍ଦୋବସ୍ତ ହୋଇ ନାହିଁ, ଏହା ଆହୁରି ଦୁଃଖର ବିଷୟ ଅଟେ। ଆମ୍ଭେମାନେ ସଦ୍ୟଦମ ବ୍ରିଟିଶ ଜାତିଙ୍କ ପ୍ରଜା, ଏଥକୁ ଆମ୍ଭମାନଙ୍କ ନାନା ବିଷୟର ସୁବିଧା ନିମନ୍ତେ ବ୍ରିଟିଶ ଶାସକମାନଙ୍କ ଉପକାର ପାଇବାର ଆଶା କରୁଁ।

*ବାଲେଶ୍ୱର ସମ୍ବାଦ ବାହିକା, ୧୮୭୭, ପୃଷ୍ଠା- ୩୯୧*

ଗୋବିନ୍ଦ ଦ୍ୱାଦଶୀ ପର୍ବ ଉପଲକ୍ଷରେ ଜଗନ୍ନାଥଦେବଙ୍କ ଦେଉଳରେ କେତେକ ଜଣ ମନୁଷ୍ୟ ଚପାପଡ଼ି ମରି ଯାଇଥିବାରୁ ସରକାର ବାହାଦୁର, ସେ ବିଷୟ ବିଶେଷରୂପେ ତଦାରଖ କରିବା ନିମନ୍ତେ ଆମ୍ଭେମାନଙ୍କ କମିଶନର ମହାତ୍ମା ବିମ୍‌ଶ ସାହେବଙ୍କ ପ୍ରତି ଆଦେଶ କରିଥିଲେ। ଦୀପିକାରୁ ଜ୍ଞାତ ହେଲୁଁ, କମିଶନର ମହୋଦୟ ପୁରୀକୁ ଯାଇ ରୀତିମତ ଇଜଲାସ କରି ଜିଲାର ସୁପରିଣ୍ଟେଣ୍ଡେଣ୍ଟ, ଇନସ୍ପେକଟର ପ୍ରଭୃତି ପୋଲିସର କର୍ମଚାରୀ, ଡେଃ ମାଜିଷ୍ଟ୍ରେଟ୍, ଦେବରାଜ ଓ ଦେଉଳର କେତେ ଜଣ କର୍ମଚାରୀଙ୍କଠାରୁ ଜମାନବନ୍ଦୀ ନେଇ ଅଛନ୍ତି। କମିଶନର ମହୋଦୟଙ୍କ କହିବା ମତେ ଜିଲାର ମାଜିଷ୍ଟ୍ରେଟ୍ ସାହେବ ମଧ କୈଫିୟତ ଦେଇଅଛନ୍ତି। ତଦାରଖରେ କି ହେଲା ଅବଧି ଜଣା ପଡ଼ିନାହିଁ।

*ବାଲେଶ୍ୱର ସମ୍ବାଦ ବାହିକା, ୧୮୭୭, ପୃଷ୍ଠା-୪୦୭*

ପୁରୀର ଗତ ରଥଯାତ୍ରା ସଙ୍କ୍ରାନ୍ତରେ ହିନ୍ଦୁପେଟ୍ରିଅଟ ବୋଲନ୍ତି ମୁସଲମାନ କନଷ୍ଟବଲମାନେ ଓ ପୁଲିସର ଅଶିଷ୍ଟାଣ୍ଟ ସାହେବମାନେ ରଥକୁ ଛୁଇଁବାରେ ହିନ୍ଦୁମାନଙ୍କର ମନୋବେଦନା ଜାତ ହୋଇଅଛି ଓ ପ୍ରଧାନ କର୍ମଚାରୀ ଏହା କିପରି କରାଇଦେଲେ ଆଶ୍ଚର୍ଯ୍ୟର

ବିଷୟ। ହିନ୍ଦୁଯାତ୍ରାର ଭାର କାହିଁକି ଦୁଇଜଣ ନବଯୁବକ ଇଙ୍ଗରେଜଙ୍କ ହସ୍ତେ ଦିଆଗଲା ବୁଝା ଯାଉ ନାହିଁ। ଆର୍ମଷ୍ଟ୍ରଂସାହେବ ନୂତନ ନୁହନ୍ତି ସେ ତାଙ୍କ ଚାକରିର ଅର୍ଦ୍ଧସମୟ ପୁରୀରେ ଅତିବାହିତ କରିଅଛନ୍ତି। ଗତବର୍ଷ ସେ ଉତ୍ତମ ବନ୍ଦୋବସ୍ତ କରିଥିଲେ ଏ ବର୍ଷ କାହିଁକି ଏଡ଼େ ଅମନୋଯୋଗୀ ହେଲେ। ବର୍ଦ୍ଧମାନର କମିଶନର ରାବନସା ସାହେବ ସ୍ୱୟଂ ମହେଶ ରଥଯାତ୍ରାରେ ଉପସ୍ଥିତ ଥିଲେ ପୁରୀର ମେଜେଷ୍ଟର ଘରେ ନିଶ୍ଚିନ୍ତ ବସିଲେ। ଦୁଇ ତିନିବର୍ଷ ପୂର୍ବେ ଏହି ମେଜଷ୍ଟରଙ୍କ ସମୟରେ ସିଂହଦ୍ୱାରେ କେତେଜଣ ଯାତ୍ରୀ ମଡାଦଳାରେ ମରି ଯାଇ ଥିଲେ ଏ ବର୍ଷ ରଥତଳେ ତିନି ଜଣଙ୍କର ପ୍ରାଣ ଗଲା। ଶ୍ରୀ ଜଗନ୍ନାଥପ୍ରଭୂଙ୍କ ଯାତ୍ରାହେତୁ ପୁରୀ ପ୍ରଧାନ ଅତଏବ ଯାତ୍ରାସମୟର ମେଜଷ୍ଟରଙ୍କର ବିଶେଷରୂପେ ସାବଧାନ ହେବାର ଉଚିତ। ଯେଉଁ ମେଜଷ୍ଟର ଆପଣାର ଦାୟୀତ୍ୱ ଜାଣି ଏପରି ଘଟନାରେ କର୍ତ୍ତବ୍ୟକର୍ମରେ ତ୍ରୁଟି କରନ୍ତି ସେ କର୍ମର ଉପଯୁକ୍ତ ନୁହନ୍ତି। ଆମ୍ଭେମାନେ ମଧ୍ୟ କହିଥିଲୁଁ ରଥ ତଳେ ମନୁଷ୍ୟ ପଡ଼ିବାର ଗୋଟିଏ କାରଣ ହାକିମମାନଙ୍କ ତରତରିଆପଣ ଅଟଇ। ଏତେ ତରତରରେ ରଥ ଟାଣିନେବାର କିଛି ଆବଶ୍ୟକ ନ ଥିଲା। ଏହେତୁ ହିନ୍ଦୁପେଟ୍ରିଅଟ କହନ୍ତି ଭାରପ୍ରାପ୍ତ କର୍ମଚାରିମାନେ ରଥଟଣା କାର୍ଯ୍ୟ ଶୀଘ୍ର ସାରି କ୍ଳେଶରୁ ପାର ପାଇବା ଉଦ୍ଦେଶ୍ୟରେ ଲୋକଙ୍କ ଧର୍ମ ଓ ଅଭିପ୍ରାୟପ୍ରତି ଆସ୍ଥା ନ କରି ତରତରରେ କର୍ମ କରିଥିବାର ବୋଧ ହେଉଅଛି। ଉକ୍ତ ପତ୍ରିକା ରାମରାଓ ସବ୍‌ଇନ୍‌ସ୍ପେକ୍ଟରଙ୍କର ପ୍ରଶଂସା କରି ବୋଲନ୍ତି ସେ ସେ ଭୟଙ୍କର ସମୟରେ ସାହାସ ପ୍ରକାଶ କରି ନ ଥିଲେ ଆହୁରି କେତେ ଜଣଙ୍କର ପ୍ରାଣ ନାଶ ହୋଇଥାନ୍ତା।

*ଉତ୍କଳ ଦୀପିକା-୧୮୭୯: ପୃଷ୍ଠା ସଂଖ୍ୟା-୧୩୭*

## ରଥଯାତ୍ରିଙ୍କ ଅବସ୍ଥା

ଏବର୍ଷ ପୁରୀରେ ଯେମନ୍ତ ବିସ୍ତର ଯାତ୍ରୀ ହୋଇଥିଲେ, ବାରିପଦାରେ ମଧ୍ୟ ଅନୁପାତରେ ତେମନ୍ତ ଯାତ୍ରୀ ଜାଣିଥିଲେ। ଏବର୍ଷ ବାରିପଦାକୁ ଅନେକ ବଙ୍ଗାଳୀ ଯାତ୍ରୀ ଆସିଥିଲେ। ସମସ୍ତ ଯାତ୍ରିଙ୍କ ସଂଖ୍ୟା ୫୦ ହଜାର କି ତହିଁରୁ ଅଧିକ ହେବ। (ଶୁଣି ଆନନ୍ଦିତ ହେଲୁଁ, ମେନେଜର ସାହେବ ଓ ତାଙ୍କ ଅଧୀବସ୍ଥ କର୍ମଚାରୀଙ୍କ ସୁବନ୍ଦୋବସ୍ତ ହେତୁରୁ ବାରିପଦାର ରଥଯାତ ନିର୍ବିଘ୍ନରେ ସମ୍ପନ୍ନ ହୋଇଅଛି) ବାରିପଦାର ରଥଯାତ୍ରୀ କେତେ ନଷ୍ଟ ହୋଇ ଅଛନ୍ତି ତାହା ଜଣା ଯାଇ ନାହିଁ; କିନ୍ତୁ ପୁରୀକୁ ଯାଇଥିବା, ବଙ୍ଗାଳୀ ଯାତ୍ରୀ ଅନେକ ନଷ୍ଟ ହୋଇ ଅଛନ୍ତି ଏବଂ ହେଉ ଅଛନ୍ତି। ବଙ୍ଗ ଦେଶର ପ୍ରତି ଜିଲ୍ଲାରୁ ସହସ୍ର ୨ ଯାତ୍ରୀ ଆସିଥିଲେ। ମୟୂରଭଞ୍ଜ କିଲାରୁ, ସମୁଦାୟ କେତେ ଯାତ୍ରୀ ଆସିଥିଲେ ଜଣା ନାହିଁ, (କେବଳ ଗୋଟିଏ ଦିନରେ ତିନିଶହ ଯାତ୍ରୀ ଆସିଥିବାର ଶୁଣିଲୁ। ସେହି ତିନିଶହ ଯାତ୍ରିଙ୍କ ମଧ୍ୟରୁ କେବଳ ୨୮ ଜଣ ଯାତ୍ରୀ ଦେଶକୁ ଲେଉଟି ଗଲେ ଅବଶିଷ୍ଟ ନଷ୍ଟ ହୋଇଥିବାର ଶୁଣି ଅତ୍ୟନ୍ତ ଦୁଃଖିତ ହେଲୁଁ। ଉଦରଖ ଠାରୁ ଏଣିକି ସଡ଼କରେ ବଜାରମାନଙ୍କରେ ଅନେକ ଯାତ୍ରିଙ୍କ ଶବ ପଡ଼ିପାରେ।

ରଥ ସମୟରେ ଅଧିକ ଯାତ୍ରୀ ନଷ୍ଟ ହେବାର ନାନା କାରଣ ଅଛି - ପ୍ରଥମ, ସରାଇମାନଙ୍କର ଅବସ୍ଥା ବଡ଼ ମନ୍ଦ ଏବଂ ପାନୀୟ ଜଳ ନିତାନ୍ତ ଦୁଷିତ। ୨ୟ ମୋଦିମାନେ ପଣେ ଲଭର

ଆଶାରେ ଭଲ ଚାଉଳ ନ ରଖି ବଗଡା ଚାଉଳ ଏବଂ ଅକାଣ୍ଡିଆ ଚୂଡ଼ା ରଖି ଥାନ୍ତି। ଗୁଡ଼ିଆମାନେ ଉଖୁଡ଼ା ମିଠାଇ ବୋଲି ଯାହା ସମ୍ପାଦି ଥାନ୍ତି, ସେମାନେ ଆଖିରେ କେହି ଦେଖିବ ନାହିଁ। ଦଦରା ଶୁଖୁଆରେ ଗଣପଣିଆ ମାଛି ଯେରୁପେ ବେଢ଼ି ଥାନ୍ତି, ଉଖୁଡ଼ା, କାଳିଆଗୁଡ଼ ଏବଂ ଚାଉଳିଆ ମିଠାଇରେ ସେହିରୂପ ଗଣପଣିଆ ମାଛି ଘେରିଥାନ୍ତି। ଏହା ଅସମ୍ଭମ ନୋହେ ଯେ, ସେହି ମାଛି କେତେବେଳେ କଲେରା ରୋଗିଙ୍କ ମଏଲା ଏବଂ ଶବରୁ ଉଡ଼ିଆସି ମିଶୁଥିବେ। ୩ୟ ବଙ୍ଗାଳୀ ଯାତ୍ରିଙ୍କ ଅପରିଚ୍ଛନ୍ନତା ଏବଂ ବାଟରେ ଯାହା ଦେଖିଲେ ତାହା କିଣି ଅଣ୍ଟିରେ ପକାଇ ଦାଣ୍ଡେ୨ ପେପିମାଙ୍କଡ଼ ପରି ପାଟୀ ବୁଲାଉଥିବା ୪ର୍ଥ ଅତିରିକ୍ତ ପରିଶ୍ରମ - "ତୁମି କହିଲେ ରଥେ, ଆମି ଚଲିଲାମ ପଥେ, ଏହା କହି ଗୁଣ୍ଡିଚା ଦିନରେ ପୁରୀରୁ ଲେଉଟି ଚଞ୍ଚଳ ଘରେ ପହୁଞ୍ଚିବା ନିମନ୍ତେ ଖରା ବର୍ଷା ନ ମାରି ଚାଲି୨ଥକି ପଡ଼ିବା। ପଞ୍ଚମ ଗ୍ରୀଷ୍ମକାଳ।

ଆମ୍ଭେମାନେ ସରାଇମାନଙ୍କର ଇତ୍ୟାଦି ସମ୍ବନ୍ଧରେ ଏଥିପୂର୍ବେ ଆନେକ ଲେଖିଅଛୁଁ। ଅତିଶୟ ଦୁଃଖ ଯେ, ସରକାର ବାହାଦୁର କିମ୍ବା ମୋଦିମାନେ ଏବିଷୟରେ ଆଶାନୁରୂପ ଚେଷ୍ଟା ନାହିଁ। ରଥ ସମୟରେ କେବଳ ଯାତ୍ରିମାନେ ଜଗନ୍ନାଥ ସଡ଼କର ବିଶେଷତଃ ସରାଇମାନଙ୍କରେ ଯେବେ ଗ୍ରାମ ଥାଏ ଓଲାଉଠାରେ ବିହନ ବୁଣି ଯାଏ; ଅନେକ ଗୃହସ୍ଥ ନଷ୍ଟ ହୁଅନ୍ତି। ପୁଣି ଯାତ୍ରୀ ଲେଉଟିବା ସମୟରେ ଅନ୍ୟାମାନେ ଜଗନ୍ନାଥ ସଡ଼କରେ ବାଟ ଚାଲିବାର ବଡ଼ ଭୟ କରନ୍ତି; ଏହାମଧ ଦେଖା ଯେ, କେତେ୨ ଦେଣ୍ଟଆଡ଼ା ଲୋକ ସମୟରେ ଜଗନ୍ନାଥ ସଡ଼କରେ ଚାଲୁ ଚାଲୁ ଉଲାଉଠାରେ ନଷ୍ଟ ସେଥିର ଗୋଟିଏ ଦୃଷ୍ଟାନ୍ତ ଏହା।

ଗତ ସପ୍ତାହରେ ୧୮ ବର୍ଷ ବୟସଟିଏ ପିଲା ଝଙ୍କଡ଼ରୁ ବାଲେଶ୍ୱର (...........ପୁର) ରେ ଆସି ପହୁଞ୍ଚିଲା; କିନ୍ତୁ ସେ ପହୁଞ୍ଚିବା ........... ଓଲାଠାର ........ ମିଶି ଯାଇଥିଲା, ତିହିଁ ଅରଥାତ୍ ରାଜ-ଗୁରୁବାର ରାତି ୮ ଘଣ୍ଟା ...................। ତହୁଁ ଦୁଇଦିନ ଅନ୍ତେ ଦିନ ଭୋର ତାହା ପିଉସାପୁଅ ଭାଇଧର ମାହାନ୍ତି। (ବିଦ୍ୟାଧର ଏନଗରରେ .......)ଙ୍କର ଏକମାତ୍ର ନବଯୁକ୍ତା ............. ......... ହୋଇ ରାନ୍ଧିକି ମାନ ସମ୍ବରଣ କଲା। ଜଜ ସାହେବଙ୍କ ମୁନ୍ସୀ .....................ଙ୍କ ଯୁଆର (................. କଳାକାର ଏସିଷ୍ଟେଣ୍ଟ କମିଶନର ବଙ୍କ ଅଫିସରେ କିରାଣିକର୍ମ କରୁଥିଲେ ମଧ ସେହି ଶନିବାର ଦିନ କଲେରାରେ ହୋଇ ପାଠ ଦଶଘଣ୍ଟା ମଧରେ ମାନ ସମ୍ବରଣ କଲେ। ଏହି ଦୁଇଜଣଙ୍କ ଅନେକେ ଦୁଃଖିତ ଅଛନ୍ତି।

ଏହିରୂପେ ରଥ ଯାତ୍ରିଙ୍କ ହେତୁ କେତେ୨ ଅନିଷ୍ଟ ଘଟୁଅଛି, ........... ସେଥିର ନାହିଁ। ବଙ୍ଗଳା ଯାତ୍ରିମାନେ ........ ସମୟରେ ପୁରୀକୁ ନ ଆସି ଥାନ୍ତେ କି, ସେମାନଙ୍କ ଉପରୋକ୍ତ ପ୍ରକାର ଅନିଷ୍ଟମାନ ........। ପଶ୍ଚିମା ଯାତ୍ରିମାନେ ................ ପର୍ଯ୍ୟନ୍ତ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ........... ସେହି ସମୟରେ ଓଲାଉଠାରେ ଭୟ ............. ପୁଣି ସେମାନେ ବଙ୍ଗାଳୀ ଯାତ୍ରିଙ୍କ .............. ................. ନାହିଁ।

*ବାଲେଶ୍ୱର ସମ୍ବାଦବାହିକା-୧୮୮୬: ପୃଷ୍ଠା ସଂଖ୍ୟା-୧୨୮*

ପୁରୀଠାରୁ ଆସିଥିବା ସମ୍ବାଦମାନଙ୍କରୁ ପ୍ରକାଶ ଯେ ଏ ବର୍ଷ ସ୍ନାନଯାତ୍ରା ଓ ରଥଯାତ୍ରାରେ ଯାତ୍ରୀ ହୋଇ ନାହାନ୍ତି ଓ ଏବର୍ଷ ଯାତ୍ରୀ ନୋହିବାର ଯେରୂପ ଦେଖାଗଲା ଏପରି ଅନେକ ଦିନରୁ ଦେଖାଯାଇ ନ ଥିଲା ଗତ ବର୍ଷ ଜାହାଜ ବୁଡ଼ିଯିବାରୁ ଏପରି ଘଟିବାର ଲୋକେ ଅନୁମାନ କରନ୍ତି, ଏଠାରେ ଆଜିକାଲି ସବୁ ଦେଶର ଲୋକେ ପ୍ରାୟ ୨୦୦୦ ଯାତ୍ରୀ ଅଛନ୍ତି। ଯେସ୍ଥଳେ ୨୦/୨୫ ହଜାର ଯାତ୍ରୀ ଥିଲେ ସୁଦ୍ଧା ଯାତ୍ରୀ ବୋଲି ଜଣାଯାଏ ନାହିଁ, ସେସ୍ଥଳେ ଦୁଇ ସହସ୍ରର ଲୋକରେ ଯାତ୍ରୀ ଆଦୌ ନ ଥିଲାପରି ବୋଧ ହେଉଅଛି। ଆମ୍ଭମାନଙ୍କର ସମ୍ବାଦଦାତା ଆହୁରି ଲେଖିଅଛନ୍ତି ଯେ, ଯାତ୍ରିମାନେ ଆସିଲେ ଓଲାଉଠା ଆଉ ଖାଦ୍ୟଦ୍ରବ୍ୟର ମହାର୍ଘ ହୁଏ ସତ୍ୟ କିନ୍ତୁ ଯାତ୍ରା ହେଲେ ଏ ଦେଶରେ ଅନେକ ଗୁଡ଼ିଏ ଟଙ୍କା ରହିଯାଏ। ବ୍ୟବସାୟୀ ଓ ବ୍ରାହ୍ମଣ ସେବକମାନେ ଟଙ୍କା ପାଇ ସୁଖରେ କାଳଯାପନ କରନ୍ତି ତାହା ନୋହିବାରୁ କଷ୍ଟ ଏବଂ ବୃଷ୍ଟି ନୋହିବାରୁ ଗଜାମରୁଡ଼ିର ଡାକ ପଡ଼ି ଆସୁଅଛି। ଏପରି ଘଟନାରେ ଏଠା ଲୋକ ଏବର୍ଷ ଯେ କିପରି ଚଳିବେ ଭାବନାରେ ଦିନ ସରୁ ନାହିଁ।

ଯାତ୍ରିମାନଙ୍କ ସକାଶେ ଅନେକ ଗୁଡ଼ିଏ ଘର ପାଶ ହେଲେ ହେଲ୍ଥ ଅଫିସର ଅନେକ ଗୁଡ଼ିଏ ଟଙ୍କା ଜମା ହୋଇଯାଏ ସେ ଏବର୍ଷ ତହିଁରୁ ବଞ୍ଚିତ ହେଲେ।

*ଉତ୍କଳ ଦୀପିକା-୧୮୮୮: ପୃଷ୍ଠା ସଂଖ୍ୟା-୨୨୬*

## ପୁରୀ ଦେଉଳରେ ଦୁର୍ଘଟନା

ଏ ବର୍ଷ ତ୍ରୈଲୋକ୍ୟ ଜନନୀଙ୍କ କୃପାରୁ ପୂଜା ମହୋତ୍ସବ ନିର୍ବିଘ୍ନରେ ସମାଧା ହୋଇଅଛି। ବୃଷ୍ଟ୍ୟାଦି ପ୍ରତିବନ୍ଧକ ଅଭାବେ ଆମୋଦ ପ୍ରମୋଦରେ କୌଣସି ପ୍ରତ୍ୟାବାୟ ଘଟି ନ ଥିଲା। କିନ୍ତୁ ମହାଷ୍ଟମୀ ଦିନ କି ଦୁର୍ଯୋଗରେ ପ୍ରଭାତ ହୋଇଥିଲା ଯେ ସର୍ବଦା ଭୀଷଣ ମୃତ୍ୟୁ ଘଟନା ପ୍ରଚାରିତ ହୋଇ ସମସ୍ତ ମୁଖରୁ ହାହାକାର ରବ ଉଥିତ ହୋଇଥିଲା। ପ୍ରାୟ ଏକ ମାସ ହେଲା ଶ୍ରୀଜିଉଙ୍କର ଦର୍ଶନାକାଙ୍କ୍ଷୀ ଅନେକ ..................... ଗୟା ଯାତ୍ରୀ ଓ ତ୍ରହୁତ, ସମ୍ବଲପୁର, ବୈଦ୍ୟନାଥ ଓ ବଙ୍ଗଳାର କେତେକ ଜିଲାର ଯାତ୍ରିଗଣ ଏଠାରେ ଉପସ୍ଥିତ ହେଉଅଛନ୍ତି। ପ୍ରତ୍ୟହ ପ୍ରାତଃ ଓ ସାୟଂ କାଳରେ ଏବଂ ନିଶାର ଅର୍ଦ୍ଧ ଭାଗରେ ରେଳ ଯୋଗେ ସେହି ସମାଗତ ଯାତ୍ରିଗଣର ଭକ୍ତି ଏବଂ ସେହି କରୁଣରସପୂରିତ "ଜୟ ଜଗନ୍ନାଥ" ଏହି ଆନନ୍ଦଧ୍ୱନିରେ ନଗରଟି ସମୁଦ୍ରର ଗମ୍ଭୀର ଗର୍ଜନକୁ ତିରସ୍କୃତ କରୁଅଛି ମାତ୍ର ଏହି ଆନନ୍ଦ ମହାଷ୍ଟମୀ ଦିନ ନିରାନନ୍ଦରେ ପରିଣତ ହୋଇ ପଡ଼ିବାରୁ ଅଦ୍ୟାବଧି ସେଥିଲାଗି ଅନେକ ଚିନ୍ତିତ ଅଛନ୍ତି।

ଏ ଦିନ ମନ୍ଦିରରେ ଶ୍ରୀଜିଉଙ୍କ ପ୍ରଭାତ ଆଳତି ପରେ ସାଧାରଣ ଦର୍ଶନ (ସାହାଣ ମେଲା) ସମୟରେ ଯାତ୍ରିମାନଙ୍କ ଦ୍ୱାରା ଏପରି ଭିଡ଼ ହେଲା ସେ ପ୍ରଭୁଙ୍କ ରତ୍ନସିଂହାସନ ସନ୍ନିକଟ ପୋଖରିଆ ମଧ୍ୟରେ ଅନେକ ଲୋକ ପଡ଼ିଯାଇଥିଲେ ଏମାନଙ୍କ ମଧ୍ୟରେ ଶ୍ରୀଜିଉଙ୍କ ସେବକ ସୂଆର ସାହୀ ନିବାସୀ ରଘୁନାଥ ମହାପାତ୍ର ଓ ଏକଜଣ ଗୁମାସ୍ତା ଆପଣା ଆପଣା ଯାତ୍ରିମାନଙ୍କୁ ଦର୍ଶନ କରାଇବା ସମୟେ ଭୂମିସାତ୍ ହେବାରୁ ସେ ଦୁହିଙ୍କ ଉପରେ ଅନେକ ଲୋକ କୁଦି ମାଡ଼ି ଚାଲି ଯାଇଥିଲେ। ପରେ ଦେଖାଇଲେ ଯେ ଉଭୟଙ୍କର ପ୍ରାଣବାୟୁ ନିଃଶେଷ ହୋଇଅଛି। ଆଉ

ତିନି ଜଣ ଯାତ୍ରୀ ପଡ଼ିଯାଇ ବିଷମ ଆଘାତ ପ୍ରାପ୍ତ ହୋଇଥିବାରୁ ତତ୍‌କ୍ଷଣାତ୍ ହାସପିଟାଲକୁ ପ୍ରେରିତ ହୋଇଥିଲେ। ଏକ ଜଣ ଯାତ୍ରୀ ଯାଉଁ ଯାଉଁ ରାସ୍ତାରେ ମୃତ ହୋଇଥିବାର ଶୁଣାଯାଏ। ଅବଶିଷ୍ଟ ଦୁଇଜଣ ଆରୋଗ୍ୟ ଲାଭ କରିଅଛନ୍ତି।

ଆଜିକାଲି ରେଳ ପ୍ରସାଦରୁ ଯେପରି ଯାତ୍ରୀ ଆସୁଅଛନ୍ତି ତାହା ଦେଖିଲେ ପ୍ରତ୍ୟେହ ଗୁଣ୍ଡିଚା ଯାତ୍ରା ପରି ଜଣା ଯାଉଅଛି। ଭାରତବର୍ଷର ସକଳ ପ୍ରଦେଶୀୟ ଯାତ୍ରିରେ ପୁରୀ ନଗରୀ ସର୍ବଦା ପରିପୂର୍ଣ୍ଣ। ଏରୂପ ଅବସ୍ଥାରେ ସାହାଣ ମେଲା ସମୟରେ ମନ୍ଦିର କର୍ମଚାରିମାନଙ୍କର ବିଶେଷ ସାବଧାନତା ସହିତ ଯାତ୍ରୀ ଦର୍ଶନର ସୁବ୍ୟବସ୍ଥା କରାଇଦେବା ଉଚିତ। ପଣ୍ଡା ଓ ଦର୍ଶନାର୍ଥୀମାନଙ୍କୁ ମଧ୍ୟ ଭିତରେ ଦର୍ଶନ ବେଳେ ବିଶେଷ ସତର୍କତା ଆବଶ୍ୟକ।

ସେହି ଦିନଠାରୁ ଦୁଇ ଏକ ଦିନ ସାହାଣ ମେଳା ଦର୍ଶନ ବନ୍ଦ ରହି ପରେ ପୁଲୀସ ପ୍ରହରୀ ନିଯୁକ୍ତ ଥାଇ ଯାତ୍ରିମାନଙ୍କର ସାହାଣ ମେଳା ଦର୍ଶନ ହେଲା। ଏକ ରାସ୍ତାରେ ପରିମିତ ଯାତ୍ରୀ ପ୍ରବେଶ କରାଇ ଅପରଦ୍ୱାରରେ ଛାଡ଼ି ଦେବାଦ୍ୱାରା ପୁଲୀସ ଯେଉଁ ସୁବ୍ୟବସ୍ଥା କରିଅଛନ୍ତି ତାହା ବହୁ ସମୟ ସାପେକ୍ଷ ହେଲେହେଁ ଦର୍ଶନରେ କୌଣସି ଅସୁବିଧା ହେଉ ନାହିଁ।

ପ୍ରୋକ୍ତ ପ୍ରକାରର ଦୁର୍ଘଟନା ବହୁକାଳ ହେବ ଘଟି ନ ଥିଲା। ସନ ୧୮୭୭ ମସୀହା ଗୋବିନ୍ଦ ଦ୍ୱାଦଶୀ ଉପଲକ୍ଷରେ ପୁରୀରେ ଅନେକ ଯାତ୍ରୀ ହୋଇଥିଲେ। ସେହି ସମୟରେ ମନ୍ଦିରର ଭିତର ବାହାରେ ଅନେକ ଲୋକ ମଡାଦଳାରେ ପ୍ରାଣ ହରାଇଥିଲେ। ସେହି ସମୟରୁ ଦେଉଳ କାର୍ଯ୍ୟର ସୁବିଧାଜନକ ବନ୍ଦୋବସ୍ତ ହୋଇ ଥିବାରୁ ଏପରି ଭୀଷଣ ଦୁର୍ଘଟନା ଉପସ୍ଥିତ ହୋଇ ନ ଥିଲା। ଆମ୍ଭେମାନେ ଆଶା କରୁଁ ଏ ଶୋଚନୀୟ ବ୍ୟାପାରର କାରଣ ତଦାରଖ ହୋଇ ଭବିଷ୍ୟତ୍ ଦୁର୍ଘଟନା ନିବାରଣ ନିମନ୍ତେ ବିଶେଷ ନିୟମ ନିରୂପିତ ହେବ।

*ଉତ୍କଳ ଦୀପିକା-୧୯୦୧: ପୃଷ୍ଠା ସଂଖ୍ୟା-୩୫୯*

# ଚନ୍ଦନଯାତ୍ରା

## ପୁରୁଷୋତ୍ତମର ଚନ୍ଦନଯାତ୍ରା

ଓଡ଼ିଶାର ଯେତେ ସ୍ଥାନରେ ଚନ୍ଦନଯାତ୍ରା ହୁଅଇ ସବୁଠାରୁ ପୁରୀର ଚନ୍ଦନଯାତ୍ରା ଉତ୍କୃଷ୍ଟ ବୋଲି ବହୁକାଳରୁ ଏଠା ଲୋକଙ୍କୁ ଜଣା ଅଛି ମାତ୍ର ପୁରୁଷୋତ୍ତମରେ ବାରମାସରେ ତେର ଯାତ୍ରା ଯଥାବିଧି ଅନୁସାରେ ହେଉଥିବା ପ୍ରତ୍ୟକ୍ଷେ ବିଶେଷରେ ରଥଯାତ୍ରା ସମୟରେ ଏକ ଏକ ବର୍ଷ ଲକ୍ଷାବଧି ଯାତ୍ରୀ ଆଗମନ ହେତୁ ତାହା ସବୁଠାରୁ ଅଧିକ ସମାରୋହର ପର୍ବ ହେଉଥିବା ପ୍ରତ୍ୟକ୍ଷେ ଚନ୍ଦନଯାତ୍ରା କାହିଁକି ଉତ୍କୃଷ୍ଟତା ଲଭିଲା ବୋଧ ହୁଅଇ ତହିଁର କାରଣ ବହୁତ ଲୋକଙ୍କୁ ଜଣା ନ ଥିବ ଓ ଅନେକ ଲୋକ ରଥଯାତ୍ରାକୁ ପୁରୀର ବଡ଼ ଯାତ୍ରା କହିବାକୁ ପାରନ୍ତି। ବାସ୍ତବରେ ଚନ୍ଦନଯାତ୍ରା ପୁରୁଷୋତ୍ତମର ସବୁ ଯାତ୍ରାଠାରୁ ବଡ଼ ଅଟଇ ଓ ଏପରି ଚନ୍ଦନଯାତ୍ରା ଆଉ କୌଣସି ସ୍ଥଳରେ ହେବାର ଅନୁମାନକୁ ଆସୁ ନାହିଁ। ଆମ୍ଭେମାନେ ଆଲୋଚନା କରି ଦେଖିଅଛୁଁ ଯେ ପୁରୁଷୋତ୍ତମର ଅନ୍ୟାନ୍ୟ ଯାତ୍ରାରେ

କେବଳ ଶ୍ରୀ ଜଗନ୍ନାଥଙ୍କର ବ୍ୟୟ ହୁଅଇ ଓ ସେଠା ନିବାସିମାନେ ଧନ ଅର୍ଜନ କରନ୍ତି କିନ୍ତୁ ଚନ୍ଦନଯାତ୍ରାରେ ଯେମନ୍ତ ଶ୍ରୀ ଜଗନ୍ନାଥଙ୍କର ଅର୍ଥ ବ୍ୟୟ ହୁଅଇ ସେହିପରି ସେଠା ଲୋକମାନେ ବ୍ୟୟକରି ଆମୋଦ ପ୍ରମୋଦରେ ମଗ୍ନ ହୁଅନ୍ତି। ଯେଉଁ ସମୟରେ ଲୋକେ ରୋଜଗାର ଧନ୍ଦା ଛାଡ଼ି ଆମୋଦ ପ୍ରମୋଦରେ ପ୍ରବୃତ୍ତ ହୁଅନ୍ତି ତାହାକୁ ଯଥାର୍ଥ ଉତ୍ସବର ସମୟ ବୋଲିବାକୁ ହେବ ସନ୍ଦେହ ନାହିଁ ଓ ଏହି ହେତୁରୁ ଚନ୍ଦନଯାତ୍ରା ସବୁଠାରୁ ଉତ୍କୃଷ୍ଟ ଅଟଇ କାରଣ ଏକାଳରେ ଦେବତା ଠାରୁ ମନୁଷ୍ୟ ପର୍ଯ୍ୟନ୍ତ ସମସ୍ତେ ଆନନ୍ଦରେ ମାତି ରହି ଥାନ୍ତି। ଚନ୍ଦନଯାତ୍ରାର ଆମୋଦକୁ ପୁରୀଲୋକେ ମୌଜ କହନ୍ତି ଓ ଛୋଟ ବଡ଼ ସମସ୍ତଲୋକ ଏ ମୌଜ କରୁଥିବାର ଯାତ୍ରାଟି ଏଡ଼େ ପ୍ରସିଦ୍ଧ ହୋଇଅଛି।

କେବଳ ଠାକୁରଙ୍କ ଯାତ୍ରା ସମ୍ପର୍କରେ ପୁରୀର ଚନ୍ଦନଯାତ୍ରାକୁ ଭାରୀ ଉତ୍ସବ ବୋଲା ଯାଇ ନ ପାରେ କାରଣ ଭାରି ସମାରୋହ ପୂର୍ବକ ଯାତ୍ରା ନିର୍ବାହ ହେବାର ଉପକରଣମାନ ଯଦ୍ୟପି କି ଅତିସୁନ୍ଦରରୂପେ ପୂର୍ବରୁ ଖଞ୍ଜା ହୋଇଅଛି ମାତ୍ର ପୁରୀରାଜାଙ୍କର ଅଯୋଗ୍ୟତା .................. ତତ୍ତ୍ୱାବଧାରଣରେ ତ୍ରୁଟି ପ୍ରଯୁକ୍ତ .................................................... କାର୍ଯ୍ୟ ଚଳୁ ନାହିଁ ସୁତରାଂ ଏକା .............................. କାହିଁକି ଠାକୁରଙ୍କ ସବୁ ସେବାର ........................ ................ ତନୀୟ ବିଶୃଙ୍ଖଳ ଘଟିଅଛି ଓ ଏବିଷୟ ଅତ୍ରତ୍ୟ ହିନ୍ଦୁ ସମାଜପ୍ରତି ଭାରି କଳଙ୍କ ଅଟଇ। ତେବେ ଯେ ପୁରୀର ଚନ୍ଦନଯାତ୍ରା ଉତ୍କୃଷ୍ଟ ହୋଇଅଛି ତାହା କେବଳ ଲୋକଙ୍କ ଯତ୍ନ ଓ ବିଶୁଦ୍ଧ ଆମୋଦର ଚର୍ଚ୍ଚା ହେତୁରୁ ଅଟଇ। ପୁରୀନିବାସିମାନେ ଆପଣା ଆପଣା ସାହିରେ ଗୋଟିଏ ଲେଖାଁଏ ଆଖଡ଼ାଘର କି ତାହାକୁ ସେଠାଲୋକେ ଯାଗା କହନ୍ତି ଭେଦାଦ୍ୱାର ନିର୍ମାଣ ଓ ରକ୍ଷା କରିଅଛନ୍ତି। ସେଠାରେ ସାହିର ଲୋକମାନେ ପ୍ରତିଦିନ ସମବେତ ହୁଅନ୍ତି। ଆପଣା ଆପଣା ଅବସରର କାଳକୁ ନାନାଦି ଆମୋଦରେ ଅତିବାହିତ କରନ୍ତି। ମଲ୍ଲସାଧନ ଓ ସଙ୍ଗୀତ ଚର୍ଚା ଏଠାର ପ୍ରଧାନ ବ୍ୟବସାୟ। ଆଖଡ଼ାଦ୍ୱାରା ଯେମନ୍ତ ସାହିଲୋକଙ୍କ ମଧ୍ୟରେ ସଦ୍ଭାବ ଓ ଐକ୍ୟତାର ବୃଦ୍ଧି ହୁଅଇ ତେମନ୍ତ ମଲ୍ଲସାଧନ ଓ ସଙ୍ଗୀତ ଏ ଦୁଇ ବିଶୁଦ୍ଧ ଆମୋଦର ଶିକ୍ଷା ହୁଅଇ। ଏଥିପାଇଁ ଆଖଡ଼ାର ନିୟମଟି ଆମ୍ଭେମାନେ ପ୍ରଶଂସା କରୁଁ ଓ ଯଦ୍ୟପି କି ଅପରିମିତ ଭାଙ୍ଗପାନ ପ୍ରଭୃତି କେତେ ଗୁଡ଼ିଏ ମନ୍ଦ ପ୍ରଥା ଇଦାନୀଂ ଜାତ ହୋଇ ହୋଇଥିବାରୁ କେତେକ ଲୋକ ଆଖଡ଼ାକୁ ନିନ୍ଦା କରନ୍ତି ତାହା ଅନ୍ୟାୟ ଅଟଇ କାରଣ ସେସବୁ ଆଖଡ଼ାର ଉଦ୍ଦେଶ୍ୟ ନୁହଇ କେବଳ ନିଷ୍କର୍ମ ମନ୍ଦଲୋକଙ୍କର କାର୍ଯ୍ୟ ଅଟଇ ଭଲଲୋକମାନେ ଆଖଡ଼ାକୁ ଯାତାୟାତ କଲେ ସେସବୁ ଅନ୍ତର୍ଦ୍ଧାନ ହୋଇପାରେ। ଯାହା ହେଉ ଏହି ଆଖଡ଼ାବାଲାମାନେ ଚନ୍ଦନଯାତ୍ରା ସମୟରେ ସମାରୋହପୂର୍ବକ ବାହାରିବାରୁ ଯାତ୍ରାଟି ଅତିଶୟ ଆନନ୍ଦପ୍ରଦ ହୁଅଇ। ପ୍ରତ୍ୟେକ ଆଖଡ଼ାର ଲୋକଙ୍କ ମଧ୍ୟରୁ କେହି କେହି ମଲ୍ଲ ସାଧନ କରୁଥାନ୍ତି କେହି ଗୋଟିପୋ ପିଲା ନଚାଉଥାନ୍ତି ଓ କେହି କେହି ଆପେ ସଙ୍ଗୀତ କରୁଥାନ୍ତି ବିଶୁଦ୍ଧ ଆମୋଦସବୁ ଏକତ୍ରେ ରହିବାରୁ ଆଖଡ଼ାବାଲାଙ୍କୁ ଦେଖିବାରେ ବଡ଼ ଆନନ୍ଦଜାତ ହୁଅଇ ଓ ଏମାନେ ଆପେ ଦର୍ଶକଙ୍କର ଆନନ୍ଦପ୍ରଦ ହୁଅନ୍ତି। ସଙ୍ଗୀତଚର୍ଚ୍ଚା ପ୍ରାୟ ସବୁଠାରେ ଲୋପ ହେବାର ଦେଖାଯାଏ କିନ୍ତୁ ପୁରୀରେ ତାହା ଆଖଡ଼ା ହେତୁରୁ ଅବଧି ଜୀବିତ ଅଛି ଓ ଯେବେ ଏଥିର କୌଣସି ଉନ୍ନତି ହେଉ ନାହିଁ ତହିଁର କାରଣ ଏହି

ଯେ ଉଚ୍ଚଶ୍ରେଣୀର ଲୋକମାନେ କେଉଁମାନେ ଶିକ୍ଷାଲାଭଦ୍ୱାରା କାହାରିକୁ କହନ୍ତି ଜାଣିଅଛନ୍ତି ସେମାନେ .................. ପଥପ୍ରଦର୍ଶକ ହେଉ ନାହାନ୍ତି। ତାହା ............................. କିପରି ଏ ଶ୍ରେଣୀର ଲୋକଙ୍କ ମଧ୍ୟରୁତ ଏପ୍ରକାର ବିଶୁଦ୍ଧ ଆମୋଦ ଉଠିଯିବାର କୁହାଯାଇପାରେ ତେବେ ଏମାନେ ଯାହାଙ୍କୁ ବଜାରି ବା ନିମ୍ନଶ୍ରେଣୀର ଲୋକ ବୋଲନ୍ତି ସେମାନେ ଯେ କୌଣସିରୂପେ ସଙ୍ଗୀତ ବିଦ୍ୟାର ଚର୍ଚ୍ଚା ରଖିଅଛନ୍ତି ଏଥିପାଇଁ ସେମାନଙ୍କୁ ପ୍ରଶଂସା କରିବାକୁ ହେବ। ଓଡ଼ିଶାର ଆଉ କୌଣସି ସ୍ଥଳରେ ଏଥିର ଚର୍ଚ୍ଚା ଦେଖାଯାଉ ନାହିଁ।

*ଉତ୍କଳ ଦୀପିକା-୧୮୭୫: ପୃଷ୍ଠା ସଂଖ୍ୟା-୯୪*

# ମନ୍ଦିରରୁ ପଥର ଖସିବା

## ପୁରୀ

ଆମ୍ଭେମାନେ ଗତସପ୍ତାହରେ ପୁରୀର ଯାତ୍ରା ବିଷୟରେ ସଂକ୍ଷେପ ବିବରଣ ଲେଖିଥିଲୁ ସମ୍ପ୍ରତି ତହିଁର ସବିଶେଷ ବିବରଣ ଅବଗତ ହୋଇ ପାଠକମାନଙ୍କୁ ଜଣାଉ ଅଛୁଁ। ଯାତ୍ରୀ ଏ ବର୍ଷ ଊଣା ହେବାର କାରଣ ଗତବର୍ଷ ଦୁର୍ଭିକ୍ଷ ଅଟଇ। ଗତବର୍ଷ ଦୁର୍ଭିକ୍ଷ ହେତୁରୁ ଅଧିକ ବଙ୍ଗାଳିଯାତ୍ରୀ ଆସି ନ ଥିଲେ ଓ ଏବର୍ଷ ମଧ ଲୋକଙ୍କର ଅବସ୍ଥା ଭଲ ହୋଇ ନ ଥିବାରୁ ଆସି ପାରିଲେ ନାହିଁ।

ରଥଯାତ୍ରା ସମ୍ପର୍କରେ ଯଦ୍ୟପି ବି ମନ୍ଦିରର କାର୍ଯ୍ୟକାରକମାନେ ନିୟମିତରୂପେ ଅମନୋଯୋଗ ଓ ଅଳସପଣିଆ ଦେଖାଇ ଅଛନ୍ତି କିନ୍ତୁ ଆମ୍ଭେମାନେ ଆନନ୍ଦିତ ହୋଇ ଶୁଣିଲୁଁ ଯେ ଡେପୁଟିକଲ୍‌ଟର ବାବୁ ନବୀନକୃଷ୍ଣ ସରକାରଙ୍କ ବିଶେଷ ଯତ୍ନରେ ଗୁଣ୍ଡିଚାଯାତ୍ରାର କାର୍ଯ୍ୟମାନ ଏମନ୍ତ ତତ୍ପରରୂପେ ନିର୍ବାହ ହୋଇଅଛି କି ସେଠା ଲୋକଙ୍କ କହିବାରୁ ଜଣାଯାଏ ଓଲକିସନ୍ ସାହେବଙ୍କ ଅମଳଠାରୁ ଅବଧି ସେରୂପ ଦେଖା ନ ଥିଲା। ପୁରୀର କଲେକ୍‌ଟର ଶ୍ରୀଯୁକ୍ତ ଆର୍ମଷ୍ଟ୍ରଂ ସାହେବ ନବୀନବାବୁଙ୍କୁ ଏ କର୍ମର ଭାର ଦେଇ ପ୍ରଶଂସାର କାର୍ଯ୍ୟ କରିଅଛନ୍ତି। ଅନ୍ୟାନ୍ୟ ବର୍ଷରେ ଗୁଣ୍ଡିଚାଦିନ ରାତ୍ର ଘ୮/୯ଣ୍ଟା ପର୍ଯ୍ୟନ୍ତ ଠାକୁରଙ୍କର ରଥକୁ ପହଣ୍ଡିବିଜେ ହେବାର ଦସ୍ତର ଥିଲା। ଏ ବର୍ଷ ନବୀନବାବୁ ପୂର୍ବରୁ ସତର୍କ ହୋଇ ମନ୍ଦିରର କର୍ମକାରକଙ୍କ ଦ୍ୱାରା ଶୀଘ୍ର ଶୀଘ୍ର ନୀତି ବଢ଼ାଇ ଅପରାହ୍ନ ଘ୩ଣ୍ଟା ସମୟରେ ଠାକୁରମାନଙ୍କୁ ରଥରେ ବସାଇଦେଲେ। ପ୍ରାଚୀନକାଳର ନିୟମାନୁସାରେ ମନ୍ଦିର କାର୍ଯ୍ୟ ପ୍ରାତଃକାଳରେ ଶେଷ ହୋଇ ଠାକୁରମାନେ ରଥକୁ ବିଜେକରିଥିଲେ ଓ ସେହିଦିନ ରଥ ଟଣା ହୋଇ ଗୁଣ୍ଡିଚାମନ୍ଦିରରେ ପହୁଞ୍ଚିଥିଲେ ଏ ବର୍ଷ ତେତେଦୂରଯାଏ ନ ହେଉ ତଥାଚ ଠାକୁରମାନେ ଦିନ ଥାଉଁ ଥାଉଁ ରଥରେ ବସିବାରୁ ଖଣ୍ଡେଦୂରଯାଏ ରଥ ଟଣା ହେଲା ଓ ତହିଁ ଆରଦିନ ଗୁଣ୍ଡିଚାଘରଠାରେ ପହୁଞ୍ଚି ଥାନ୍ତେ କେବଳ ନିୟମିତ ସଂଖ୍ୟାର ରଥଦଉଡ଼ି ରାଜା ପ୍ରସ୍ତୁତ କରି ରଖି ନ ଥିବାରୁ ଅଳ୍ପ ଅଳ୍ପ ପରିମାରରେ ରଥ ଟଣା ହୋଇ ଚତୁର୍ଥଦିନର ସାୟଂକାଳରେ ଗୁଣ୍ଡିଚାଘରଠାରେ ତିନିରଥ ଏକତ୍ରେ ପ୍ରବେଶ ହେଲେ ଓ ସେହି ରାତ୍ରରେ ପହଣ୍ଡିବିଜେ ହୋଇ ଠାକୁରମାନେ ସିଂହାସନରେ ବସିଲେ ରଥଟଣାକାର୍ଯ୍ୟ

ଅଧିକାଂଶ ଯାତ୍ରିମାନଙ୍କ ଦ୍ୱାରା ନିର୍ବାହିତ ହୋଇଅଛି। ଗୁଣ୍ଡିଚାଦିନ ବହୁତ ଦିନ ହେଲା ରଥ ଟଣା ହେଉ ନ ଥିଲା ଏ ବର୍ଷ ତାହା ହେବାରୁ ଯାତ୍ରିମାନେ ବଡ଼ ଆନନ୍ଦିତ ହେଲେ। ବାବୁ ନବୀନକୃଷ୍ଣ ସରକାର ବରାବର ରଥ ସଙ୍ଗରେ ଉପସ୍ଥିତ ଥିଲେ ବାହୁଡ଼ାଦିନ ଠାକୁରମାନେ ରଥକୁ ବିଜେ କରିବାର ସମସ୍ତ ଉଦ୍ୟମ ହୋଇଥିଲା ମାତ୍ର ରଥସବୁର ମୁହଁ ଫେରି ନ ଥିବାରୁ ତାହା ହୋଇପାରିଲା ନାହିଁ। ପ୍ରାଚୀନ କାଳରେ ନିୟମାନୁସାରେ ନବଦିନମଧ୍ୟରେ ଠାକୁରମାନଙ୍କର ମନ୍ଦିରକୁ ଫେରି ଆସିବାର ଉଚିତ କାର୍ଯ୍ୟ କଲେ ତାହା ଯେ ନ ହେବ ଏମନ୍ତ କିଛି ହେତୁ ନାହିଁ।

ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ସମ୍ପର୍କରେ ଆମ୍ଭେମାନେ ଆଉ ଗୋଟିଏ କଥା ଶୁଣିଅଛୁଁ। ଠାକୁରମାନେ ଯେତେବେଳେ ଅଣସରଘରେ ଥିଲେ ତେତେବେଳେ ଶ୍ରୀମନ୍ଦିରର ଭିତରପାଖରେ ଛାତରୁ ଗୋଟିଏ ଭାରୀ ପଥର ଖସି ପଡ଼ିଲା। ସିଂହାସନର ସମ୍ମୁଖରେ ଯେଉଁଠାରେ ଭୋଗ ରହଇ ଓ ପୂଜା ଇତ୍ୟାଦି ହୁଅଇ ସେହିସ୍ଥାନରେ ତାହା ପଡ଼ିଅଛି। ସୌଭାଗ୍ୟର ବିଷୟ ଯେ ଏଥିରେ କୌଣସି ଦୁର୍ଘଟନା ଘଟି ନାହିଁ। ଏହାକୁ ଉଠାଇ ବସାଇଦେବା ନିମିତ୍ତ ଜଣେ ହିନ୍ଦୁ ଓବରସିଅର ସକାଶେ ସେଠାର ମାଜିଷ୍ଟ୍ରେଟ କମିଶନର ସାହେବ ନିକଟକୁ ଲେଖି ଅଛନ୍ତି। ଶୁଣାଯାଏ ପୂର୍ବେ ଥରେ ଏହିରୂପ ହୋଇଥିଲା ଯେ ଜଣେ ଓବରସିଆର ଯାଇ ଜୀର୍ଣ୍ଣସଂସ୍କାର କରିଥିଲା। ଆମ୍ଭେମାନେ ଭରସା କରୁଁ ଯେ ଜଣେ ଉପଯୁକ୍ତ ଓବରସିଅର ଏ କର୍ମରେ ପ୍ରେରିତ ହେବେ ଓ ଯେଉଁଠାରେ ଭାଙ୍ଗିଯାଇ ଅଛି ତାହା ମରମତ କରିବା ଛଡ଼ା ମନ୍ଦିରର ଅବସ୍ଥା ଭଲରୂପେ ପରୀକ୍ଷା କରି ଆସିବେ କାରଣ ଯେବେ ମନ୍ଦିର ଅତ୍ୟନ୍ତ ପୁରାତନ ହେବାରୁ ତହିଁର ନାନାସ୍ଥାନ ଦୁର୍ବଳ ଓ ଶିଥିଳ ହୋଇ ଯାଇଥିବ ତେବେ ଭବିଷ୍ୟତ ଦୁର୍ଘଟନା ନିବାରଣ ସକାଶେ ମନ୍ଦିରକୁ ସମ୍ପୂର୍ଣ୍ଣରୂପେ ସଂସ୍କାର କରିବାକୁ ହେବ ମନ୍ଦିର ମଧ୍ୟ ଯେରୂପ ଅନ୍ଧକାରମୟ ତହିଁରେ କଦାଚ ସମ୍ଭବ ନୁହଇ ଯେ ମନ୍ଦିରର କୌଣସିଠାରେ କିଛି ଭଙ୍ଗାଚୁରା ଥିଲେ ତାହା କାହାରି ନା କାହାରି ଦୃଷ୍ଟିପଥରେ ପଡ଼ିବ ସୁତରାଂ କେତେବେଳେ ବିପଦ ଘଟିବାର ସମ୍ଭାବନା। ଏଥିପାଇଁ ମନ୍ଦିରକୁ ପ୍ରତିବର୍ଷ ପରୀକ୍ଷା କରିବାର ଉଚିତ ଶୁଣାଯାଏ ଯେ ଛାତକୁ ଟେକିଧରିବା ସକାଶେ ଖମ୍ବମାନ ନିର୍ମାଣ କରିବାକୁ ରାଜା କଳ୍ପନା କରିଅଛନ୍ତି।

*ଉତ୍କଳ ଦୀପିକା-୧୮୭୫: ପୃଷ୍ଠା ସଂଖ୍ୟା-୧୨୩*

# ପୁରୀ

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରୁ ପଥର ଖସିବା ବିଷୟ ଘେନି ଗତ ସପ୍ତାହରେ ଏଠାରେ ଏକ ଆନ୍ଦୋଳନ ହୋଇ ଯାଇଅଛି ସେ ବିଷୟରେ ସର୍ବସାଧାରଣଙ୍କ ମନ ଆକୃଷ୍ଟ ହୋଇଥିବାରୁ ଆମ୍ଭେମାନେ ତହିଁର କେତେକ ବିବରଣ ଏଠାରେ ଲେଖୁଅଛୁଁ। ଜଗନ୍ନାଥଙ୍କ ମନ୍ଦିର ଭାରୀ ଉଚ୍ଚ ଓ ପ୍ରାଚୀନକାଳର କୀର୍ତ୍ତି ବୋଲି ସମସ୍ତେ ଜାଣନ୍ତି ଏହାକୁ ରାଜା ଅନଙ୍ଗଭୀମଦେବ ବ୧୪ର୍ଷରେ ନିର୍ମାଣ କରାଇଥିଲେ ସନ୍ ୧୧୯୮ ମସିହାର ଏହାର କାର୍ଯ୍ୟ ଶେଷ ହୋଇଥିଲା। ମାତ୍ର ମନ୍ଦିରର ବାହାରୁ ଯାହା ଦେଖାଯାଏ ତାହାଛଡ଼ା ଏହାର ଭିତର ପାଖ ବି ରୂପ ତାହା କାହାରିକି ଜଣା ନାହିଁ। ତହିଁର କାରଣ ଏହି ଯେ ମନ୍ଦିରର ଭିତର ପାଖ ଅତିଶୟ ଅନ୍ଧକାର ଦିନବେଳେ

ଗୋ୫/୬ଟା ପ୍ରଦୀପର ଆଲୋକରେ ଠାକୁରମାନଙ୍କ ଦର୍ଶନ ଭିନ୍ନ ମନ୍ଦିରର ଗଠନ ପ୍ରଣାଳୀ ବିଷୟରେ କିଛି ଜଣା ପଡ଼ଇ ନାହିଁ। ସମ୍ପ୍ରତି ପଥର ଖସିପଡ଼ିବାରୁ ମନ୍ଦିର ଭିତରର ବ୍ୟାପାରସବୁ ଦେଖିବା ଆବଶ୍ୟକ ହେଲା ଓ ଗବର୍ଣ୍ଣମେଣ୍ଟରୁ ପ୍ରେରିତ ହୋଇଥିବା ଇଞ୍ଜିନିୟର ଭିନ୍ନ ରାଜାଙ୍କର ବା ମନ୍ଦିରର କର୍ମଚାରୀଙ୍କ ମଧ୍ୟରୁ କେହି କେହି ମସାଲ ଜାଳି ଭିତରର ଅବସ୍ଥା ସବୁ ଦେଖି ଅଛନ୍ତି ଓ ମନ୍ଦିରର ଭିତର ପାଖ ଖ୪ଣ୍ଡ ଚିତ୍ରପଟ୍ଟ ମଧ୍ୟ ପ୍ରସ୍ତୁତ କରିଥିବାର ବୋଧ ହୁଅଇ ନୋହିଲେ ସେରୂପ ଚିତ୍ରପଟ ଏ ନଗରକୁ ଆସିବାର ସମ୍ଭାବନା ନ ଥିଲା। ଯେଉଁ ଚିତ୍ରପଟ ଘେନି ଏଠାଲୋକେ ମନ୍ଦିରର ଗଠନ ଦେଖି ଅଛନ୍ତି ଆମ୍ଭେମାନେ ଶୁଣିଲୁ ଯେ ତାହା ପୁରୀ ରାଜାଙ୍କ ଦ୍ୱାରା ବାବୁ ବିଚିତ୍ରାନନ୍ଦ ଦାସଙ୍କ ନିକଟକୁ ପ୍ରେରିତ ହୋଇଥିଲା ତହିଁରୁ ଏଠାଲୋକମାନେ ଅନେକ ପ୍ରସ୍ତ ପ୍ରତିଲିପି ନେଇଅଛନ୍ତି। ସେ ଚିତ୍ରପଟରୁ ଜଣାଯାଏ ଯେ ମନ୍ଦିରଟି ଚାରି ମହଲା କୋଠାପରି ଅର୍ଥାତ୍ ରତ୍ନ ସିଂହାସନ ଉପରେ ଯେପରି ଗୋଲାକୃତି ଛାତ ଅଛି ସେହିପରି ଉପରକୁ ଆହୁରି ଦୁଇ ପ୍ରସ୍ତ ଛାତ ଥାଇ ତହିଁ ଉପରେ ମନ୍ଦିରର ଚୂଡ଼ା ନିର୍ମିତ ହୋଇଅଛି। ମନ୍ଦିରର ପୂର୍ବ ପାଖରେ ଉପରକୁ ଯିବାକୁ ପାହାଚ ଅଛି ଯେ ତାହା ଦେଇ ଉପରର ତିନି ପ୍ରସ୍ତ ଘରେ ପ୍ରବେଶ ହେବାର ସୁବିଧା ଅଛି ଓ ସର୍ବୋଚ୍ଚ ପ୍ରସ୍ତରୁ ମନ୍ଦିରର ବାହାରପାଖକୁ ବାହାରିଯିବାପାଇଁ ମଧ୍ୟ ଚାରିଟା ବାଟ ଅଛି। ଏ ଛଡ଼ା ବାହାରପାଖରୁ ଆଉକିଛି ବାଟ ଦେଖାଯାଏ ନାହିଁ। ଚିତ୍ରପଟରେ ଆହୁରି ଲେଖା ଅଛି ଯେ ଦ୍ୱିତୀୟ ପ୍ରସ୍ତରେ ଅର୍ଥାତ୍ ସିଂହାସନ ଉପରେ ଯେଉଁ ଛାତ ଅଛି ତହିଁ ଉପରେ ଥିବା କୋଠରିରେ ଜଗନ୍ନାଥ ପ୍ରଭୂଙ୍କର ଅନୁରୂପରେ ଚତୁର୍ଦ୍ଧାମୂର୍ତ୍ତି ବସିଅଛନ୍ତି। ଏପରି ଗୁପ୍ତ ଭାବରେ ଚାରିମୂର୍ତ୍ତି ମନ୍ଦିରରେ ଥିବାର କେବେ ଶୁଣାଯାଇ ନାହିଁ ଓ ତାପୂର୍ଯ୍ୟ ମଧ୍ୟ କିଛି ପ୍ରକାଶ ପାଉ ନାହିଁ ବିଶେଷତଃ ପାହାଚ ଏମନ୍ତ ଭୟଙ୍କର ଅବସ୍ଥାରେ ଅଛି ଯେ ତହିଁରେ ଚଢ଼ିଯିବାର ବର୍ତ୍ତମାନକୁ କଠିନ ଓ ପୂର୍ଣ୍ଣବାବୁ ସେଥିଉପରେ ଚଢ଼ି ଏରୂପ ଦେଖି ନାହାଁନ୍ତି ସୁତରାଂ ଏ କଥାରେ ସମସ୍ତଙ୍କର ବିଶ୍ୱାସ ହେବାର ଜଣାଯାଉନାହିଁ। ପୂର୍ଣ୍ଣବାବୁଙ୍କ ଅନୁସନ୍ଧାନ ବିଷୟରେ ଯାହା ଶୁଣାଯାଏ ତହିଁରୁ ଅନୁମାନ ହୁଅଇ ସେ ପ୍ରଥମ ପ୍ରସ୍ତ ଅର୍ଥାତ୍ ଯହିରେ ଠାକୁରମାନଙ୍କୁ ବିରାଜମାନ ହେବାର ଲୋକେ ଦେଖୁଅଛନ୍ତି କେବଳ ସେହି ପ୍ରସ୍ତର ତଦନ୍ତ କରି ଅଛନ୍ତି। ଏହି ପ୍ରସ୍ତର ଉପରଭାଗ ହା୨୬ତ ଉର୍ଦ୍ଧ୍ୱରୁ ଚାରିଖଣ୍ଡ ପଥର ଖସିପଡ଼ି ଅଛି ଓ ଆଉ କେତେସ୍ଥାନରେ ମଧ୍ୟ ଫାଟସବୁ ବାହାରିଅଛି ଗୋଟିଏ ଗୋଟିଏ ଫାଟ ଚାରି ପାଞ୍ଚହାତ ଲମ୍ବା ଓ ୨/୩ ଆଙ୍ଗୁଳ ମେଲାହୋଇ ଯାଇଅଛି। ଲୁହାର କଡ଼ି ଓ ବରଗାସବୁ ମୁର୍ଚ୍ଚା ଖାଇ ଯାଇଅଛି ଓ ପଥର ଦେହରେ ଥିବା ଲୁହାର ବନ୍ଧନୀମାନ କ୍ଷୟ ହୋଇ ଯାଇଅଛି ଏ ସବୁ କାରଣରୁ ମନ୍ଦିରର ଅବସ୍ଥା ନିତାନ୍ତ ମନ୍ଦ ହୋଇଅଛି ଓ ତହିଁ ମଧ୍ୟରେ ପ୍ରବେଶ କରିବା ବିପଦଜନକ ଅଟଇ। ଏପରି ଦୁରବସ୍ଥା ଘଟିବାର ନାନାଦି କାରଣ ଲୋକେ କହନ୍ତି ମାତ୍ର ତହିଁ ମଧ୍ୟରେ ଯୁକ୍ତିଯୁକ୍ତ କାରଣ ଏହି ଯେ ଯେଉଁସ୍ଥାନରୁ ପଥର ଖସି ପଡ଼ିଅଛି ଦୁଇବର୍ଷ ତଳେ ସେଠାରେ ବଜ୍ରପାତ ହୋଇଥିଲା ଓ ମନ୍ଦିର ଉପରେ ନା ନା ସ୍ଥାନରେ ଗଛମାନ ହେବାରୁ ତହିଁର ଚେର କ୍ରମଶଃ ଭିତରକୁ ପଶିଯାଇ ପଥର ଯୋଡ଼ ସବୁକୁ ଢ଼ିଲା କରି ଦେଇଅଛି ଏବଂ ଲୁହା ବନ୍ଧନୀ ସବୁ କ୍ଷୟ ଓ କଡ଼ି ବରୁଗାମାନ ମରିଚା ଯୋଗୁଁ ଦୁର୍ବଳ ହୋଇଅଛି।

ପଥର କୌଣସିରୂପେ କ୍ଷୟ ବା ଜୀର୍ଣ୍ଣ ହୋଇ ନାହିଁ । ଏଥିରେ ବୋଧ ହୁଅଇ ଯେ ଫାଟ ସ୍ଥାନମାନ ଭାଙ୍ଗି ନୂତନ ଲୁହାର ବନ୍ଧନୀ ଓ କଡ଼ି ଇତ୍ୟାଦି ଲଗାଇ ମନ୍ଦିରକୁ ସଂସ୍କାର କରିଦେଲେ ପୂର୍ବ ପ୍ରାୟ ମନ୍ଦିର ଦୃଢ଼ ହୋଇଯିବ। ଏପରି ଜୀର୍ଣ୍ଣସଂସ୍କାର ଅଳ୍ପଦିନ ମଧ୍ୟରେ ହେବାର ନୁହଇ। ଏଥିପାଇଁ ଦୁଇଚାରିମାସ ବା ଅଧିକକାଳ ଲାଗିପାରେ ତେତେଦିନ ଠାକୁରମାନେ କେଉଁଠାରେ ରହିବେ ଏକଥା ଘେନି ଅନେକ ତର୍କ ଲାଗିଅଛି କିଛି ନିଶ୍ଚୟ ହୋଇ ନାହିଁ। ଏ ସମ୍ପର୍କରେ ଆମ୍ଭେମାନେ ଆପଣା କଥା ନ କହି ପୁରୀର ଜଣେ ପତ୍ରପ୍ରେରଙ୍କଠାରୁ ପାଇଥିବା ପତ୍ରରୁ ତଳଲିଖିତ ଅଂଶକୁ ଉଧୃତ କଲୁଁ ପାଠକମାନେ ତହିଁରୁ ସବିଶେଷ ଜାଣିପାରିବେ।

"ମନ୍ଦିରର ଜୀର୍ଣ୍ଣସଂସ୍କାର ସ୍ଥିର ହୁଅନ୍ତେ ଶ୍ରୀମହାରାଜ ଅତ୍ରତ୍ୟ ଯାବତୀୟ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ନିକଟକୁ ନିଜର ସ୍ୱାକ୍ଷରିତ ଆହ୍ୱାନପତ୍ର ପଠାଇଲେ। ସମସ୍ତ ସଭ୍ୟବୃନ୍ଦ ମନ୍ଦିରରେ ସମବେତ ହେଲେ। ଏପରି ମନ୍ଦିରବିଷୟକ ସଭା ଆମ୍ଭେମାନେ ଅଦ୍ୟାବଧି ଦେଖି ନ ଥିଲୁଁ ଏହା ଅଧିକତର ଆନନ୍ଦର ବିଷୟ ଯେ ଶ୍ରୀମହାରାଜା ସ୍ୱକୀୟ କୌଳିକାଭିମାନ ପରିହାରପୂର୍ବକ ତନ୍ମଧ୍ୟରେ ସାଧାରଣ ସଭ୍ୟପରି ଉପବିଷ୍ଟ ହେଲେ ପ୍ରଥମତଃ ଶ୍ରୀମହାରାଜ ମହାଶୟ ସଭ୍ୟମହୋଦୟ ମାନଙ୍କୁ ସମ୍ବୋଧନପୂର୍ବକ ପ୍ରଶ୍ନ କଲେ ଯେ ମନ୍ଦିରର ଜୀର୍ଣ୍ଣୋଦ୍ଧାର ବିଧେୟ କି ନା? ତାହାହେଲେ ମହାପ୍ରଭୂ ତଦବଧି କେଉଁଠାରେ ଅବସ୍ଥିତ ହେବେ? ଏଥିରେ ଶ୍ରୀଯୁକ୍ତ ମହନ୍ତ ନାରାୟଣ ଦାସ ଓ ପଣ୍ଡିତବର ମାରକଣ୍ଡେୟମହାପାତ୍ର ଉଭୟବ୍ୟକ୍ତି ମହାରାଜାଙ୍କ ପ୍ରଶ୍ନ ମନୋଭାବର ବ୍ୟାଖ୍ୟାପକ ହୋଇଥାନ୍ତି। ଆମ୍ଭେମାନେ ପଣ୍ଡିତମହାଶୟଙ୍କ ଯୁକ୍ତିବାଦ ଶୁଣି ସନ୍ତୁଷ୍ଟ ହେଲୁଁ ଶୁଣିଅଛୁଁ ମହାରାଜା ମଧ୍ୟ ତାଙ୍କ ଉପରେ ପ୍ରୀତ ଅଛନ୍ତି। ପରିଶେଷେ ମହାପ୍ରଭୂଙ୍କର ଅବସ୍ଥିତ ବିଷୟରେ ମତ ଦ୍ୱୈଧ ଜନ୍ମିଲା । ଶ୍ରୀଶ୍ରୀମହାରାଜା ଓ ଶ୍ରୀଯୁକ୍ତ ମହନ୍ତ ନାରାୟଣଦାସ ଏବଂ ପଣ୍ଡିତ ଶ୍ରୀ ଗୋପିନାଥ ମିଶ୍ର ପ୍ରଭୃତି କତିପୟ ସଭ୍ୟମାନେ ଅବଧାରଣ କଲେ ଯେ ଜୀର୍ଣ୍ଣସଂସ୍କାର ସମ୍ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ଠାକୁରମାନେ ଜଗନ୍ମୋହନରେ ଅବସ୍ଥାନ କରିବେ ଏହାର ବିରୋଧୀ ହୋଇ ଅପର ମହନ୍ତ ଓ ଜଗନ୍ନାଥଙ୍କ ସେବକମାନେ ଏକ ବାକ୍ୟରେ କହିଲେ ଯେ, ଠାକୁରମାନେ ସିଂହାସନରେ ଅବସ୍ଥିତ କରି ଏହି କାର୍ଯ୍ୟ ସମ୍ପର୍ଣ୍ଣ ହେବ। ଏଥିର ସୌକାର୍ଯ୍ୟାର୍ଥ ସେମାନେ ମହାପ୍ରଭୂଙ୍କ ଶିରୋଭାଗୋପରି ଏକ ଭାଡ଼ି ନିର୍ମାଣ କରିବେ ଓ ଭୋଗ ଶୀଘ୍ର ଅର୍ଥାତ୍ ଦିବା ଦଶ ଘଣ୍ଟା ମଧ୍ୟରେ ସମାପନ କରିବେ। ଆମ୍ଭମାନଙ୍କ ବିବେଚନାରେ ଏହି ପ୍ରସ୍ତାବଟି ପରିଣାମରେ ଶୁଭଫଳଦାୟୀ ହେବ ନାହିଁ। କାରଣ ଯଦ୍ୟପି ଦୈବାତ୍ କାର୍ଯ୍ୟ ସମୟରେ ଉପରିଷ୍ଟାତ୍ କୌଣସି ଶିଳା ଭଙ୍ଗ ହୁଏ ତେବେ ଏହା ଭାଡ଼ି ଚୂର୍ଣ୍ଣକରି ଅଧୋଭାଗରେ କିଦୃଶ ଅନିଷ୍ଟୋତ୍ପାଦନ କରିବ ବୋଲାଯାଇ ନ ପାରେ। ପଣ୍ଡା ପଡ଼ିହାରିମାନଙ୍କର ଏତଦ୍ୱିଷୟକ ଦୁରାଗ୍ରହର କାରଣ ଏକମାତ୍ର ସ୍ୱାର୍ଥପରତା ଅଟଇ ସେମାନଙ୍କର ଆଶଙ୍କା ଏହି ଯେ ଯଦ୍ୟପି ପାଶ୍ଚାତ୍ ନିର୍ବୋଧ ଯାତ୍ରୀମାନଙ୍କ ମନରେ କୌଣସି ଭାବାନ୍ତର ହୁଅଇ ତେବେ ସେମାନଙ୍କର ପ୍ରତାରଣା ସାଫଲ୍ୟ ହେବ ନାହିଁ ଏବଂ ସୁତରାଂ ବୃତ୍ତିଚ୍ଛେଦ ହେବାର ସମ୍ଭାବନା। ଏତାଦୃଶ ପ୍ରସ୍ତାବରେ ମହାରାଜ ହଠାତ୍ ସମ୍ମତ ନ ହୋଇ କହିଲେ ଯେ ତୁମ୍ଭେମାନେ ଗବର୍ଣ୍ଣମେଣ୍ଟରୁ

ଏହାର ଆଦେଶ ନ ଆଣିଲେ ଆମ୍ଭେ ତୁମ୍ଭମାନଙ୍କୁ ଠାକୁରଙ୍କୁ ସିଂହାସନରେ ସ୍ଥାପନ କରିବାକୁ ଅନୁମତି ଦେବୁଁ ନାହିଁ। ଏଥିରେ ସେମାନେ ଶ୍ରୀଯୁକ୍ତ କଲେକ୍ଟରସାହେବଙ୍କୁ ଆବେଦନ କରି ଅଛନ୍ତି କିନ୍ତୁ ଅବଧି କିଛି ଉତ୍ତର ମିଳି ନାହିଁ। ଦଦ୍ଦିନାବଧି ଏମାନେ ଶ୍ରୀମହନ୍ତ ନାରାୟଣଦାସଙ୍କୁ ଧର୍ମ୍ମ ବିରୋଧୀ ବୋଲୁଅଛନ୍ତି। ଏହା ଅତୀବ ଭୟାବହ ବ୍ୟାପାର ଅଟଇ। ଉପସଂହାରରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ ଆମ୍ଭେମାନେ ଶ୍ରୀମହାରାଜଙ୍କର ଯାଦୃଶ ବାକ୍ଚାତୁରୀ ଓ ସୁଶୀଳତା ଅବଲୋକନ କଲୁଁ ତାହା ଅତୀବ ଆଶାତୀତ ଅଟଇ। ଏଥିରେ ଆମ୍ଭେମାନେ ଜାଣିଲୁଁ ଯେ ରାଜେନ୍ଦ୍ର ଶ୍ରୀଦିବ୍ୟସିଂହଦେବ ମହାରାଜଙ୍କର ବିମଳଜ୍ୟୋତ୍ସ୍ନା ପାର୍ଶ୍ୱଦିରୂପ ରାହୁ ଗ୍ରସ୍ତ ହେବାର କିଛିହିଁ ପ୍ରକାଶ ପାଉ ନାହିଁ ଯାହାହେଉ ଆମ୍ଭେମାନେ ଆଶା କରୁଁ ମହାରାଜା ଶନୈଃ ସଭ୍ୟତା ପଦବିରେ ପଦାର୍ପଣ କରି ଆମ୍ଭମାନଙ୍କୁ ବାଧିତ କରିବେ।"

ଏଥିରୁ ପୁରୀର ରାଜା ଏବଂ ଅନ୍ୟାନ୍ୟ ପ୍ରାଚୀନ ମନ୍ଦିରର ଅଧିକାରିମାନେ ଜାଣିପାରିବେ ଯେ ମନ୍ଦିର ଉପରେ ଗଛ ଉଠିବା କେତେ ଭୟାବୟ ବ୍ୟାପାର ଅଟଇ। ଗଛ ଉଠି ବଡ ହୋଇଗଲେ ତାହାକୁ ଉପରୁ କାଟିଦେବା ମଧ୍ୟ ଯଥେଷ୍ଟ ନୁହଇ ତହିଁର ମୂଳ ପର୍ଯ୍ୟନ୍ତ ତାଡିଦେବାର ଉଚିତ ଓ କ୍ଷୁଦ୍ରଗଛ ହେଲାମାତ୍ରକେ ତାହାକୁ ମୂଳରୁ ଉପାଡ଼ି ପକାଇବା ମନ୍ଦିରସବୁ ରକ୍ଷାକରିବାର ସର୍ବୋପେକ୍ଷା ଭଲ ଉପାୟ ଅଟଇ।

*ଉତ୍କଳ ଦୀପିକା-୧୮୭୫: ପୃଷ୍ଠା ସଂଖ୍ୟା-୧୩୭*

## ପୁରୀ

ଶ୍ରୀ ଜଗନ୍ନାଥ ମନ୍ଦିରର କଥା ଆଜିକାଲି ଓଡ଼ିଶାର ପ୍ରଧାନ ବିଷୟ ହୋଇଅଛି। ସବୁଠାରେ ଲୋକଙ୍କୁ ଏଥିର ଚର୍ଚ୍ଚା କରିବାକୁ ଦେଖାଯାଏ। ପୁରୀରୁ କେହି ଆସିଲେ ସର୍ବାଗ୍ରେ ମନ୍ଦିରର କଥା ତାହାକୁ ପ୍ରଶ୍ନ ହୁଅଇ ଓ ଯାହା ମନକୁ ଯାହା ଆସେ ସେ ତାହା କହିବାରୁ ନାନାପ୍ରକାର ସତ ମିଛ କଥା ରଚନା ହୋଇଅଛି। ଗୁପ୍ତକଥା ଶୁଣିବା ଏଠାଲୋକଙ୍କର ସ୍ୱଭାବସିଦ୍ଧ ସ୍ୱଷ୍ଟ ଓ ପ୍ରକାଶ୍ୟ ବିଷୟ ତାଦୃଶ ମନୋରଞ୍ଜନ ହେବାର ଦେଖା ନ ଯାଏ ଏଥିକି ଚାହିଁ ଚତୁରଲୋକମାନେ ଗୋଟିଏ ଗୋଟିଏ ନିଗୂଢ଼ କଥା ରଚନା କରନ୍ତି ଓ ତାହା ସତ୍ୟ ହେଉ ବା ମିଥ୍ୟା ହେଉ ତହିଁର ଅନୁସନ୍ଧାନ କେହି ନ କରି ଭକ୍ତିପୂର୍ବକ ସେସବୁକୁ ବିଶ୍ୱାସ କରନ୍ତି ଏହି ହେତୁରୁ ଲୋକପ୍ରସୁଖାତ୍ ପରସ୍ପର ବିରୁଦ୍ଧ ପ୍ରକାରର ଅନେକ କଥା ଶୁଣା ଯାଏ ଅତଏବ ସେସବୁ ଜନରବର ବୃତ୍ତାନ୍ତ ପରିତ୍ୟାଗ କରି ଆମ୍ଭେମାନେ ପ୍ରକୃତ ଘଟନା ଯାହା ଶୁଣିଅଛୁଁ ଏଠାରେ ଲେଖୁଅଛୁଁ ତାହା ଏହି ଯେ ଠାକୁରମାନେ ରଥରୋହଣରେ ସିଂହଦ୍ୱାରକୁ ଫେରି ଆସିଲାରୁ ସେମାନଙ୍କୁ କେଉଁଠାରେ ରଖି ପୂଜା ହେବ ଏଥର ତର୍କ ଉପସ୍ଥିତ ହେଲା। ପୁରୀର ରାଜା ସମସ୍ତ ସନ୍ଥ ମହନ୍ତ ପଣ୍ଡିତ ପଣ୍ଡା ପ୍ରଭୃତି ଭଦ୍ରଲୋକଙ୍କୁ ଆହ୍ୱାନକରି ଶ୍ରୀ ଲକ୍ଷ୍ମୀଠାକୁରାଣିଙ୍କ ମନ୍ଦିର ସମ୍ମୁଖରେ ଏକ ସଭା ରଚନା କଲେ ଅନେକ ତର୍କ ଓ ଶାସ୍ତ୍ରର ପ୍ରସଙ୍ଗ ଉଠାରୁ ମହନ୍ତ ନାରାୟଣଦାସ ଓ ଅନ୍ୟ କେତେକ ପଣ୍ଡିତ ମତ ଦେଲେ ଯେ ଅଣସର ବେଦୀର ନିକଟରେ ଠାକୁରମାନଙ୍କୁ ବସାଇଲେ ସେଠାରେ ଅନ୍ନ ଭୋଗ ହୋଇ ପାରିବ ମାତ୍ର ଦଣ୍ଡିମାନେ ଏଥିରେ ସମ୍ମତ ହେଲେ ନାହିଁ ତାଙ୍କର ଆପତ୍ତି ଏହି

ଯେ ସିଂହାସନ ଛଡ଼ା ଆଉ କୌଣସି ସ୍ଥାନରେ ଅନ୍ନ ଭୋଗ ହେବାର ସ୍ପଷ୍ଟବିଧାନ ଶାସ୍ତ୍ରରେ ନାହିଁ। ଏ ଆପତ୍ତି ଖଣ୍ଡନ ନିମିତ୍ତ ମାଦଳାପାଞ୍ଜିରୁ ଏକ ଉଦାହରଣ ବାହାରିଲା ଯେ ବର୍ତ୍ତମାନ ମନ୍ଦିର ନିର୍ମାଣ ପୂର୍ବ ଏକ ସମୟରେ ମନ୍ଦିର ଜୀର୍ଣ୍ଣ ହେବାରୁ ତହିଁର ସଂସ୍କାର ପର୍ଯ୍ୟନ୍ତ ଠାକୁରମାନେ ବୃକ୍ଷନିକଟରେ ରହିଥିଲେ ସେଠାର ଅନ୍ନଭୋଗ ଦଣ୍ଡିମାନେ ଗ୍ରହଣ ନ କରିବାରୁ ମହାପ୍ରଭୁଙ୍କ ଆଜ୍ଞାକ୍ରମେ ଜଣେ ଗୁଙ୍ଗା ଏକ ଶ୍ଳୋକ ପଢ଼ି ଦଣ୍ଡିଙ୍କର ପ୍ରତ୍ୟୟ ଜନ୍ମାଇ ଥିଲା ଶ୍ଳୋକଟି ପତି ପୁନର୍ବାର ସେବ୍ୟକ୍ତ ଗୁଙ୍ଗାହୋଇ ଦଣ୍ଡିମାନେ ଏକଥାକୁ ମାନି କଲେ ହେଁ ତାହା ଶାସ୍ତ୍ରୋକ୍ତ ନୁହଇ ବୋଲି ଆପଣା ପୂର୍ବମତ ପରିତ୍ୟାଗ ନ କଲେ। ଯାହା ହେଉ ରାଜା ଏକପ୍ରକାର ବୁଝିଲେ ଯେ ଅଣସରବେଦୀ ନିକଟରେ ଠାକୁରଙ୍କ ରହିବା କଥାରେ ସମସ୍ତେ ସମ୍ମତ ହେଲେ ସୁତରାଂ ସେ ଉକ୍ତପ୍ରକାର ଆଜ୍ଞା ଦେଲେ ମାତ୍ର ଆଶ୍ଚର୍ଯ୍ୟର ବିଷୟ ଯେ କେହି ତାହା ମାନିଲେ ନାହିଁ। ରାଜା ଆପଣା ଅଧିକାର ବ୍ୟର୍ଥ ହେବାର ଦେଖି ଅକର୍ତ୍ତବ୍ୟ ହୋଇ ଆପଣା ମୁକ୍ତାରକୁ ମାଜିଷ୍ଟ୍ରେଟ ସାହେବଙ୍କ ନିକଟ ଖୋରଧାମୁକାମକୁ ପଠାଇଲେ। ତହିଁରେ କି ଫଳ ହେଲା ଅବଧି ଜଣାପଡ଼ି ନାହିଁ। ସେବକମାନଙ୍କ ଇଚ୍ଛା ଯେ ନିତାନ୍ତ ପକ୍ଷରେ ଯେମନ୍ତ ଶ୍ରୀଗୁଣ୍ଡିଚାମନ୍ଦିରଠାରେ ଜଗମୋହନରେ ବନ୍ଧା ହୋଇଥାନ୍ତି ସେହିପରି ଠାକୁରମାନେ ଶ୍ରୀମନ୍ଦିର ସମ୍ମୁଖ ଜଗମୋହନରେ ବନ୍ଧା ହୋଇ ରହିବେ। ଅନ୍ୟତ୍ରରେ ରହିଲେ ପୁନର୍ବାର ରଥଯାତ୍ରା ପର୍ଯ୍ୟନ୍ତ ଆଉ କୌଣସି ସ୍ଥାନକୁ ବିଜେ ହୋଇ ପାରିବେ ନାହିଁ। ରାଜା ଏଥିରେ ମଧ୍ୟ ସମ୍ମତ ହେବାର ଶୁଣାଯାଏ ମାତ୍ର ଏହି ନିୟମରେ କି ଠାକୁରମାନେ ପୃଥକ ପୃଥକ ବନ୍ଧା ନ ହୋଇ ଏକତ୍ରରେ ଜଗମୋହନରେ ବସିବେ ଓ ମନ୍ଦିରର ମରାମତି କାର୍ଯ୍ୟ ଶେଷ ହେଲେ ସିଂହାସନକୁ ବିରାଜମାନ ହେବେ। ଏଥିରେ ସୁଦ୍ଧା ସେବକମାନେ ସମ୍ମତ ନୁହନ୍ତି ସୁତରାଂ ଦେଖାଯାଏ ଯେ ସେବକଙ୍କ ପ୍ରତି ରାଜାଙ୍କର କୌଣସି ଅଧିକାର ନାହିଁ ବରଂ ସେବକମାନେ ତାହାକୁ ଆପଣା ଅଧୀନରେ ରଖିବାକୁ ସର୍ବପ୍ରକାରରେ ଚେଷ୍ଟା କରୁଅଛନ୍ତି।

ଉପରଲିଖିତ ବିଷୟ ଲେଖାହେଲା ଉତ୍ତାରୁ ଆମ୍ଭେମାନେ ପୁରୀରୁ ସମ୍ବାଦ ପାଇଲୁଁ ଯେ ରାଜାଙ୍କର ମୁକ୍ତାର ଖୋରଧାକୁ ଯିବାର ଦେଖି ସେବକମାନେ ଏକ ଦରଖାସ୍ତ ପଠାଇଲେ ଓ ମାଜିଷ୍ଟ୍ରେଟ ସାହେବ ଏଦୁଇ ଦରଖାସ୍ତ ଦେଖି ଆଜ୍ଞା ଦେଲେ କି ମନ୍ଦିରରେ ରାଜାଙ୍କର ସମ୍ପୂର୍ଣ୍ଣ ଅଧିକାର ସେ ଯେଉଁଠାରେ ମହାପ୍ରଭୁଙ୍କୁ ବସାଇବେ ଓ ଯାହା କରିବେ ସେବକମାନେ ତାହା ପ୍ରତିପାଳନ କରିବେ ନୋହିଲେ ମାଜୁଲ୍ ହେବେ। ଏ ଆଜ୍ଞାରେ କର୍ମଚାରିମାନେ ଆପଣା କର୍ମ ଯିବା ଭୟରେ ଯେ ଯାହା କର୍ମରେ ଉପସ୍ଥିତ ହେଲେ। ଏଥି ମଧ୍ୟରେ ଗତ ରବିବାରଦିନୁ ଠାକୁରମାନେ ପହଣ୍ଡିବିଜେ ହୋଇ ରାଜାଙ୍କର ନିର୍ଦ୍ଦିଷ୍ଟ ସ୍ଥାନ ଅର୍ଥାତ ପ୍ରାଚିନ ଭଣ୍ଡାରର ସମ୍ମୁଖ ଓ ଚନ୍ଦନକାଷ୍ଠର ବାହାରେ ଅବସ୍ଥିତ କଲେ। ଓ ସେବକମାନେ ଅସମ୍ମତ ଥିବା ବେଳେ ଦୁଇ ଏକ ଦିନ ରାଜା ଅନ୍ୟାନ୍ୟ ବ୍ରାହ୍ମଣ ଦ୍ୱାରା ସେବା ନୀତିମାନ ଚଳାଇ ନେଇଥିଲେ ପରେ ସେବକମାନେ ଆପଣା କର୍ମରେ ଉପସ୍ଥିତ ହେଲେ କିନ୍ତୁ ଯେଉଁ ଅନ୍ନ ପ୍ରସାଦ ହେଉଅଛି ତାହା ସମସ୍ତ ଶ୍ରେଣୀର ଲୋକ ଗ୍ରହଣ କରୁ ନାହାନ୍ତି କେବଳ ରାଜାଙ୍କର ଅନୁଚର ଓ ଯାବତୀୟ କଙ୍ଗାଳ ଯାତ୍ରୀ ପ୍ରଭୃତି ତାହା ସେବନ

କରୁଅଛନ୍ତି। ଫଳତଃ ଦେଖାଯାଏ ଯେ ରାଜାଙ୍କର ବ୍ୟବସ୍ଥାରେ କେବଳ ଦଣ୍ଡି ଓ ସେବକ କାହିଁକି କି ପଣ୍ଡିତ ଓ ଭଦ୍ରଲୋକ ଅଧିକାଂଶ ବିରୁଦ୍ଧମତ ରଖିବାର ଦେଖାଯାଏ ଓ ଯେବେ ମହାପ୍ରସାଦ ସର୍ବତ୍ର ପ୍ରଚଳିତ ନ ହୁଅଇ ତେବେ ବଡ଼ ଦୁଃଖର ବିଷୟ ହେବ। ଯେରୁପ ଅବସ୍ଥା ଘଟିଅଛି ତହିଁରୁ ଜଣାଯାଏ ଯେ ଜଗନ୍ନାଥଙ୍କ ମନ୍ଦିର ଓ ନୀତି ସମ୍ପର୍କରେ ରାଜାଙ୍କର କିପର୍ଯ୍ୟନ୍ତ ଅଧିକାର ଅଛି ଏକ ପ୍ରକାର ସ୍ଥିର ହେବ। ସମସ୍ତ ହିନ୍ଦୁଧର୍ମାବଲମ୍ବିଙ୍କୁ ଏ ବିଷୟ ପ୍ରତି ଦୃଷ୍ଟି ରଖିବାର ଉଚିତ।

*ଉତ୍କଳ ଦୀପିକା-୧୮୭୫: ପୃଷ୍ଠା ସଂଖ୍ୟା-୧୪୧*

# ମହାପ୍ରସାଦ

## ପୁରୀ

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଅନ୍ନ ମହାପ୍ରସାଦ ବିଷୟରେ ପୂର୍ବେ ଆମ୍ଭେମାନେ ଯାହା ପାଠକଙ୍କୁ ଜଣାଇଅଛୁଁ ତହିଁର କିଛିମାତ୍ର ବ୍ୟତିକ୍ରମ ଘଟି ନାହିଁ। ସେବିଷୟରେ ତର୍କ ବିତର୍କ ଲାଗି ରହିଅଛି। ଦଣ୍ଡି ଓ ପଣ୍ଡିତମାନେ ଶାସ୍ତ୍ରର ମତ ସହିତ ଆପଣା ଅଭିପ୍ରାୟ ଲେଖୁଅଛନ୍ତି। ଲେଖା ଶେଷ ହେଲେ ସର୍ବସାଧାରଣଙ୍କର ମତ ଜାଣିବା ସକାଶେ ନାନାସ୍ଥାନରେ ତାହାର ପ୍ରଚାରିତ ହେବ। ଅତଏବ ଓଡ଼ିଶାର ସକଳସ୍ଥାନର ପଣ୍ଡିତମାନଙ୍କୁ ଏବିଷୟରେ ପୂର୍ବରୁ ପ୍ରସ୍ତୁତ ହେବାର ଆବଶ୍ୟକ ମହାପ୍ରସାଦ ଘେନି ଜଗନ୍ନାଥ କ୍ଷେତ୍ରର ପ୍ରଧାନ ମହାତ୍ମ୍ୟ ଯେବେ ସେ ବିଷୟରେ ମତଭେଦ ହେଲା ତେବେ ପୁରୁଷୋତ୍ତମକ୍ଷେତ୍ରର ଆଉ କି ମହିମା ରହିଲା।

ଏଣେ ଶୁଣାଯାଏ ଯେ ଅଶିଷ୍ଟଣ୍ଟ ଇଞ୍ଜିନିଅର ବାବୁ ପୂର୍ଣ୍ଣଚନ୍ଦ୍ରଙ୍କର ରିପୋର୍ଟରେ ଏକଯିକ୍ୟୁଟିବ ଇଞ୍ଜିନିୟର ବଣ୍ଡ ସାହେବ ଆପଣା ମତ ଲେଖି ଗବର୍ଣ୍ଣମେଣ୍ଟଙ୍କୁ ପଠାଇଅଛନ୍ତି। ତାହାଙ୍କ ମତରେ ମନ୍ଦିରଟି ସମ୍ପୂର୍ଣ୍ଣରୂପେ ବିପଦଜନକ କୌଣସିରୂପେ ବ୍ୟବହାର ହୋଇ ନ ପାରେ। ଯାତ୍ରିମାନଙ୍କୁ ମନ୍ଦିର ମଧ୍ୟକୁ ଯିବାକୁ ନିଷେଧ କରିବାପାଇଁ ସେ ପ୍ରସ୍ତାବ କରିଅଛନ୍ତି ଫଳତଃ ବିପଦର ଆଶଙ୍କା ଥିବାରୁ ଏପରି ଆଜ୍ଞା ପ୍ରଚାର ହେବା ବିଷୟରେ କିଛି ସନ୍ଦେହ ନାହିଁ। ତାହା ହେଲେ କିଛି କାଳ ଏଠାକୁ ଯାତ୍ରୀ ଆସିବାର ବନ୍ଦ ହେବ ଓ ତହିଁରେ ଯେ ଓଡ଼ିଶା ଲୋକଙ୍କର ବିଶେଷରେ ପୁରୀବାସିଙ୍କର କି ପରିମାଣରେ କ୍ଷତି ହେବ ତାହା କୁହାଯାଇ ନ ପାରେ। ଏମନ୍ତ ଅବସ୍ଥାରେ ଆମ୍ଭମାନଙ୍କ ବିବେଚନାରେ ପୁରୀ ରାଜାଙ୍କର ନିତାନ୍ତ କର୍ତ୍ତବ୍ୟ ହେଉଅଛି ଯେ କାଳବିଳମ୍ବ ନ କରି ଗବର୍ଣ୍ଣମେଣ୍ଟଠାରୁ ଜଣେ ଉପଯୁକ୍ତ ହିନ୍ଦୁ ଇଞ୍ଜିନିୟରର ସାହାଯ୍ୟ ନେଇ ମନ୍ଦିର ଜୀର୍ଣ୍ଣସଂସ୍କାର କାର୍ଯ୍ୟାରମ୍ଭ କରନ୍ତୁ ଓ ଯେତେ ଶୀଘ୍ର ହୋଇପାରେ ତାହା ଶେଷ କରାଉନ୍ତୁ। ତାହା ନ କଲେ ତାହାଙ୍କର ସାମାନ୍ୟ କ୍ଷତି ହେବ ନାହିଁ।

ମନ୍ଦିରର ଏରୂପ ଦୁର୍ଗତିକଥା ଶୁଣି ଓଡ଼ିଶାର ନାନାସ୍ଥାନରେ ଲୋକମାନେ ଭାରୀ ଉତ୍ପାତ ଓ ବିପଦର ଆଶଙ୍କା କରି ବଡ଼ କାତର ଅଛନ୍ତି। ଯାଜପୁରଠାରୁ ସମ୍ବାଦ ପାଇଅଛୁଁ ଯେ ଲୋକମାନେ ତହିଁରୁ ଉଦ୍ଧାର ହେବାପାଇ ଗ୍ରାମ ଗ୍ରାମରେ ମହାପ୍ରଭୁଙ୍କ ନାମକୁ ଆଶ୍ରୟ କରି

ଭାଗବତ ରାମାୟଣ ମହାଭାରତାଦି ପୁରାଣପାଠ ହେଉଅଛି ଓ ଆଷାଢ଼ ସଂକ୍ରାନ୍ତିପରି ତିନିଦିନ ରଜ ପାଳି ଥିଲେ ତହିଁରେ କିଛି କର୍ମ କରିବାର ତେଣିକି ଥାଉ ଲୋକେ ଅନ୍ନ ସୁଦ୍ଧା ରାନ୍ଧି ଖାଇ ନାହାନ୍ତି। ଏହି ସୁଯୋଗରେ ଧାମନଗର ଗୋହିରାଟିକରିଠାରେ ଜଣେ ବୈଷ୍ଣବ ମହାପ୍ରଭୁଙ୍କର ବୟାଳିଶ ଅବତାର ଛବି ନିର୍ମାଣ ଓ ମୂର୍ତ୍ତି ପ୍ରତିଷ୍ଠା କରି ପୂଜା କରୁଅଛି। କାର୍ତ୍ତିକମାସରେ ପୂଜା ଶେଷ କରି ଏକ ମହାଯାଗ କରିବ ଯେ ତହିଁପାଇ ଚାରିଆଡୁ ପଇସା ଓ ଘିଅ ମାଗଣ ହେଉଅଛି। ଏ ଯାଗରେ ବୋଧ ହୁଅଇ ଲୋକଙ୍କର ସମସ୍ତ ବିପଦ କ୍ଷୟ ହେବ ତେଣିକି ଜଗନ୍ନାଥଙ୍କ ମନ୍ଦିର ଥାଉ କି ନ ଥାଉ ଲୋକଙ୍କର କିଛି କ୍ଷତି ହେବ ନାହିଁ!!!

*ଉତ୍କଳ ଦୀପିକା-୧୮୭୫: ପୃଷ୍ଠା ସଂଖ୍ୟା-୧୪୮*

## ପୁରୀରୁ ଜଣେ ପତ୍ର ପ୍ରେରକ ଲେଖିଅଛନ୍ତି ଯଥା:-

୧ ଆମ୍ଭେ ଏଥିପୂର୍ବେ ପାଠକମାନଙ୍କୁ ଜଣାଇଥିଲୁଁ ଯେ ମହାପ୍ରସାଦ ସର୍ବସମ୍ମତ ହୋଇ ନାହିଁ କେବଳ ଯାବତୀୟ କାଙ୍ଗାଳ ଓ ପେଟାର୍ଥୀ ଓ ରାଜାଙ୍କ ଅନୁଚରମାନେ ସେବନ କରୁଅଛନ୍ତି। ତାହାର ପ୍ରତ୍ୟକ୍ଷ ପ୍ରମାଣ ଦେଖାଗଲା। ଏଠାରେ ଷୋଳଶାସନ ବ୍ରାହ୍ମଣମାନଙ୍କର ଏପରି ପ୍ରଥା ଅଛି ଯେ ସେମାନେ କାର୍ତ୍ତିକମାସ ଶୁକ୍ଳପକ୍ଷ ସପ୍ତମୀଦିନ ଆପଣା ମଧ୍ୟରେ ଚାଁଦା କରି ହଜାର ବାରଶ ଟଙ୍କାର ଖଟଣି କରି ସମସ୍ତେ ଏକତ୍ରେ ମନ୍ଦିରମଧ୍ୟରେ ଭୋଜନ କରନ୍ତି ଏସନ ମହାପ୍ରସାଦ ଶାସ୍ତ୍ର ଅସମ୍ମତ ଥିବାରୁ ତାହା ନ ପାଇ ମିଷ୍ଟାନ୍ନ ଓ ଚୂଡ଼ାଘସା ଓଗେର କରି ପ୍ରାୟ ପାଞ୍ଚହଜାର ବ୍ରାହ୍ମଣ ଚୌଧୁରୀ ବିଶ୍ୱନାଥ ଦାସଙ୍କ ଖରିଦ ନୂତନ କୋଠା ଘୁମସର ମଠଠାରେ ଭୋଜନ କଲେ। ବିଦ୍ୟାସାଗରଙ୍କର ବିଦ୍ୟାବାଗେଥିତ ବ୍ୟବସ୍ଥା ଏଥିପକ୍ଷେ ଖଟିଲା ନାହିଁ କି? ଯେତେବେଳେ ସେ ଆପଣା ବ୍ୟବସ୍ଥାକୁ ଆପଣା ଘରେ ଖଟାଇ ପାରି ନାହାନ୍ତି ଅନ୍ୟଠାରେ କିପରି ହୋଇପାରେ।

୨ ଏସ୍ୱପଞ୍ଚକ ଯାତ୍ରାରେ ପ୍ରାୟ ପଞ୍ଚାଶହଜାର ଉତ୍କଳୀୟ ଓ ଦକ୍ଷିଣୀ ଯାତ୍ରୀହୋଇଥିଲେ ମାତ୍ର ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଓ ମନ୍ଦିର କର୍ମଚାରୀଙ୍କ ଶୈଥିଳତା ଓ କର୍ମ ଅପଟୁତା ହେତୁ ଯାତ୍ରିମାନଙ୍କର ଦର୍ଶନ ଓ ଆହାର ପକ୍ଷେ ବିଶେଷ କ୍ଲେଶ ହୋଇଥିଲା। ମାତ୍ର ସ୍ଥାନୀୟ ହାକିମମାନେ ତାହା କିଛି ବୁଝିଲେ ନାହିଁ।

*ଉତ୍କଳ ଦୀପିକା-୧୮୭୫: ପୃଷ୍ଠା ସଂଖ୍ୟା-୨୦୦*

## ପ୍ରାପ୍ତ

ଗତବରଷରେ ଶ୍ରୀ ଜଗନ୍ନାଥ ଦେବ ରତ୍ନ ସିଂହାସନରୁ ଅନ୍ୟ ସ୍ଥାନରେ ଅବସ୍ଥିତ କରି ଉକ୍ତ ଦେବଙ୍କର ନିବେଦିତ ଅନ୍ନାଦିମାନଙ୍କୁ ଯେଉଁ ବ୍ରାହ୍ମଣମାନେ ଭୋଜନ ଓ ସେବନ କରିଥିଲେ ସେହି ବ୍ରାହ୍ମଣମାନଙ୍କୁ ସୋହଳ ଶାସନସ୍ଥ ପଣ୍ଡିତ ଓ ଶିଷ୍ଟଦଣ୍ଡୀ ବ୍ରହ୍ମଚାରିମାନେ ସଭାରୁ ପଂକ୍ତି ବାହ୍ୟ କରିଥିଲେ ସେମାନେ ଏହି ଅପରାଧରୁ ମଧ୍ୟ ଅପମାନ ଓ ଆପାଣାର ଅଜ୍ଞତା ସ୍ୱୀକାର କରି ଭୋଜନ ଆଶାରେ ମାତ୍ର କାଳଯାପନ କରି ଆସିଲେ ବର୍ତ୍ତମାନ ଶ୍ରୀ ଜଗନ୍ନାଥପ୍ରଭୁ ସ୍ୱସିଂହାସନରେ

ଅବସ୍ଥିତ କରିବାରୁ ଉକ୍ତ ଷୋହଳଶାସନ ପଣ୍ଡିତ ବ୍ରାହ୍ମଣ ଓ ଶିଷ୍ଟଦଣ୍ଡୀ ବ୍ରହ୍ମଚାରୀ ଏମାନେ ଆନନ୍ଦପୂର୍ବକ ନିର୍ବିବାଦ ରୂପେ ମହାପ୍ରସାଦ କରି ଭୋଜନ ଓ ସେବନ କରୁଅଛନ୍ତି ପୁନଶ୍ଚ ଯେଉଁ ବ୍ରାହ୍ମଣମାନେ ପଂକ୍ତି ବାହ୍ୟ ହୋଇଥିଲେ ସେମାନେ ପଣ୍ଡିତ ଓ ଦଣ୍ଡି ବ୍ରହ୍ମଚାରୀ ଏମାନଙ୍କୁ ବହୁତ ପ୍ରାର୍ଥନା କରିବାରୁ ପଣ୍ଡିତ ଓ ବ୍ରହ୍ମଚାରୀ ଅନୁଗ୍ରହପୂର୍ବକ ଏକ ଶିକ୍ଷା ଦେଲେ ସେହି ଶିକ୍ଷାନୁସାରେ ପଂକ୍ତି ବହିଷ୍କୃତ ଓ ଭୋଜନମାତରେ କାଳଯାପନ କରିଥିବା ବ୍ରାହ୍ମଣମାନେ ସ୍ୱ ସ୍ୱ ଗ୍ରାମଦେବତାଙ୍କ ପାଇଁ ଗୁଣାଗାରି ଦେଇ ଓ ଗାୟତ୍ରୀ ମନ୍ତ୍ରାଦି ଜପକରି ସମାଜରେ ମିଳିଗଲେ।

*ଉତ୍କଳ ଦୀପିକା-୧୮୭୬: ପୃଷ୍ଠା ସଂଖ୍ୟା-୧୭୮*

## ଅନ୍ନମହାପ୍ରସାଦ

ଅନ୍ନମହାପ୍ରସାଦ ପୁରୀ ଜଗନ୍ନାଥ କ୍ଷେତ୍ରର ବିଶେଷତ୍ୱ ଅଟେ। ଭାରତର ଅନ୍ୟ କୌଣସି ତୀର୍ଥ ସ୍ଥାନରେ ଯେତେ ଇଚ୍ଛା ତେତେ ଅନ୍ନ ବ୍ୟଞ୍ଜନାଦି କିଣିଆଣି ପାରିବା ଏବଂ ଅନ୍ୟାନରେ ପାଇବାର ବିଧି ଓ ସୁବିଧା ନାହିଁ। ଅଧିକାଂଶ ଯାତ୍ରୀ ପ୍ରସାଦ ଭିନ୍ନ ଅନ୍ୟ ଅନ୍ନ ଭୋଜନ କରନ୍ତି ନାହିଁ ଏବଂ ପୁରୀର ଗରୀବ କଙ୍ଗାଳମାନଙ୍କର ନିର୍ବାହର ଏକମାତ୍ର ଉପାୟ ଅନ୍ନମହାପ୍ରସାଦ ଅଟେ। ସେଥିପାଇଁ ଦାତାମାନେ ଏକ ଏକ ମଠ ତଳେ ଦୈନିକ ଏତେ ଲେଖାଏଁ ଅନ୍ନ ବ୍ୟଞ୍ଜନାଦି ଭୋଗ କରି ବିତରଣ କରିବାର ଖଞ୍ଜା କରିଦେଇଅଛନ୍ତି। ମହାପ୍ରସାଦ କେବଳ ଶ୍ରୀ ମନ୍ଦିରର ବେଢ଼ାସ୍ଥିତ ରୋଷଘରେ ସୁଆରଙ୍କଦ୍ୱାରା ପ୍ରସ୍ତୁତ ହୋଇ ଶ୍ରୀ ଜୀଉଙ୍କଠାରେ ଭୋଗ ହେଲା ଉତ୍ତାରୁ ଦାଣ୍ଡକୁ ବାହାରିବ ଏହାଇ ବିଧି ଅନ୍ୟତ୍ର ପାକ ହେଲେ ମହାପ୍ରସାଦ ହେବ ନାହିଁ। କେତେକ ଦିନରୁ ମନ୍ଦିରସ୍ଥ ରୋଷଘର ଜୀର୍ଣ୍ଣତା ଯୋଗେ ବନ୍ଦ ହୋଇଅଛି ଏବଂ ସୁଆରମାନେ ଆପଣା ଆପଣା ମଧ୍ୟରେ ବିବାଦ କରି ମୋରଦା ରୋଷଘର ନାମକ ଛୋଟ ରୋଷଘରେ ଥିବା ୫/୬ ଗୋଟା ମାତ୍ର ଚୁଲ୍ଲିରେ କେବଳ ଶ୍ରୀ ଜୀଉଙ୍କର ଦୈନିକ କୋଠଭୋଗ ପ୍ରସ୍ତୁତ କରୁଅଛନ୍ତି। ଅନ୍ୟ କାହାରି ଖଟନି ହେଉ ନାହିଁ। ଏଥିଯୋଗେ ପୁରୀରେ ଅନ୍ନମହାପ୍ରସାଦର ଏକାନ୍ତ ଅଭାବ ହୋଇଅଛି ଓ ଜନସାଧାରଣଙ୍କର ବିଶେଷ କଷ୍ଟ ହୋଇଅଛି ଏହା ବୋଲିବା ଅଧିକ ଅଟେ। କୋଠଭୋଗ ସଙ୍ଗେ ସୁଆରମାନେ ସାମାନ୍ୟ ଯାହା ରାନ୍ଧୁଅଛନ୍ତି ତାହା ଅତ୍ୟନ୍ତ ଦୁର୍ମୂଲ୍ୟରେ ବିକ୍ରୟ ହେଉଅଛି ଓ ତହିଁରେ ମଧ କେହି ଭାଗ୍ୟବାନର କପାଳକୁ ମିଳୁଅଛି। ଏକକଥାରେ ପୁରୀରେ ଅନ୍ନମହାପ୍ରସାଦର ଦୁର୍ଭିକ୍ଷ ପଡ଼ିଅଛି ଏବଂ ସେ ହେତୁ ଜନସାଧାରଣଙ୍କର ଅଶେଷ କଷ୍ଟ ହେଉଅଛି। ଏ ପର୍ଯ୍ୟନ୍ତ ରୋଷଘରର ଜୀର୍ଣ୍ଣସଂସ୍କାର ଆରମ୍ଭ ହୋଇ ନାହିଁ ଏବଂ ଶୀଘ୍ର ହେବାର କିଛି ଆଶା ଦେଖାଯାଉ ନାହିଁ। ନିକଟରେ ଏମାର ମଠଠାରେ କେତେକ ସନ୍ଥ ମହନ୍ତ ପଣ୍ଡା ପ୍ରଭୃତିଙ୍କର ରୋଷଘର ନିର୍ମାଣର ବ୍ୟୟ ନିର୍ବାହାର୍ଥେ ଅର୍ଥ ସଂଗ୍ରହ ଉପଲକ୍ଷରେ ଏକ ସଭା ହୋଇଥିଲା ମାତ୍ର ଶେଷ ନିଷ୍ପତ୍ତି କିଛି ହୋଇ ପାରିଲା ନାହିଁ ବଡ଼ ଦୁଃଖର ବିଷୟ ଅଟେ। ସେତେବେଳେ ପ୍ରତିଦିନ ନିରୁପିତ ପରିମାଣ ଅନ୍ନମହାପ୍ରସାଦ କରି ବିତରଣ କରିବା ମଠଧାରିଙ୍କର ଖଞ୍ଜା ଅଛି ଓ ସେହି ସେବା ନିର୍ବାହ ସକାଶେ ଏକ ଏକ ମଠତଳେ ନିର୍ଦ୍ଦିଷ୍ଟ ସଂଖ୍ୟକ ଚୁଲ୍ଲି ଅଛି ତେତେବେଳେ ରୋଷଘରର ରକ୍ଷଣାବେକ୍ଷଣ ସକାଶେ ସେମାନେ ଦାୟୀ ନୁହନ୍ତି ଏମନ୍ତ ବୋଲାଯାଇ ନ ପାରେ। ସମ୍ଭବତଃ

ସେମାନଙ୍କର ଦାୟିତ୍ୱ ବୋଧ ଜନ୍ମାଇ କର୍ତ୍ତବ୍ୟକର୍ମ କରିବାକୁ ବାଧ୍ୟ କରିବା କାରଣ ମନ୍ଦିରର ମାନେଜର ରୋଷଘଣ ନିର୍ମାଣରେ ବିଳମ୍ବ କରୁଅଛନ୍ତି। ନତୁବା ଜଗନ୍ନାଥଙ୍କର ନିତ୍ୟ ସେବାଠାରୁ ରଥାଦି ବଡ଼ ବଡ଼ ଯାତ୍ରାମାନ ଯଥା ନିୟମରେ ସୁନ୍ଦରରୂପେ ନିର୍ବାହ କରି ଅଳ୍ପକାଳରେ ଅତ୍ୟନ୍ତ ପ୍ରଶଂସାଭାଜନ ହୋଇଅଛନ୍ତି ସେ ଲୋକଙ୍କର ଅନ୍ନମହାପ୍ରସାଦ ନ ପାଇବାର ଦେଖି ତହିଁର ପ୍ରତିକାର ବିଷୟରେ ଅମନୋଯୋଗୀ ହୋଇଅଛନ୍ତି। ଏହା ବିଶ୍ୱାସ ହେଉ ନାହିଁ। ସେ ଅବଶ୍ୟ ପ୍ରତିକାର ଚିନ୍ତା କରୁ ଅଛନ୍ତି। ମାତ୍ର ବିଷୟଟି ଅତ୍ୟନ୍ତ ଗୁରୁତର ବୋଲିବାକୁ ହେବ। ମଠଧାରୀ ଓ ପଣ୍ଡାମାନେ ଯେବେ ସହଜରେ ସୁବାଟକୁ ନ ଆସିବେ ତେବେ ସେମାନଙ୍କୁ ବାଧ୍ୟ କରିବାକୁ ହେବ ଏବଂ ବୋଧ କରୁଁ ମନ୍ଦିରର ନିୟମାବଳୀରେ ତହିଁର ଉପାୟ ଅଛି। ଅନ୍ତତଃ ମନ୍ଦିରର ପକ୍ଷରୁ ମାନେଜର ରୋଷଘର ଚାରିମାସ ସକାଶେ ସାମାନ୍ୟ ମରାମତ କରାଇ ରୋଷାଇର ବନ୍ଦୋବସ୍ତ କରି ଦେଲେ ଓ ତହିଁ ସକାଶେ ପ୍ରତି ହାଣ୍ଡିରେ ମାସୁଲ ବସାଇଲେ କାର୍ଯ୍ୟ ଚାଲି ପାରିବ। ଯେ ଯେତେ ହାଣ୍ଡି ବା କୁଡୁଆ ରନ୍ଧାଇବାକୁ ଚାହିବ ସେ ତହିଁର ଜିନିଷପତ୍ର ଯେମନ୍ତ ଆଗେ ହେବ ତହିଁ ସଙ୍ଗେ ମାସୁଲ ମଧ୍ୟ ଦାଖଲ କରିବ। ତାହା ହେଲେ ଅନ୍ନପ୍ରସାଦ ଅଭାବ ଘୁଞ୍ଚିଯିବ।

*ଉତ୍କଳ ଦୀପିକା-୧୯୦୩: ପୃଷ୍ଠା ସଂଖ୍ୟା-୩୧୩*

# ଗଜପତି ମହାରାଜା

## ପୁରୀ ରାଜା

ପୁରୀରାଜାଙ୍କ କଲିକତା ବ୍ୟପାର ଗତ ସପ୍ତାହରେ ସଂକ୍ଷେପରେ ଲେଖା ଯାଇଥିଲା ମାତ୍ର ସେ ବିଷୟରେ ସର୍ବସାଧାରଣଙ୍କର ବିଶେଷ ଆନ୍ଦୋଳନ ଦେଖି ଆମ୍ଭେମାନେ ତାହା ବହୁଳରୂପେ ଲେଖିବାକୁ ପ୍ରବୃତ୍ତ ହୋଇଅଛୁଁ ଲେଫ୍ଟନେଣ୍ଟ ଗବର୍ଣ୍ଣର ସାହେବଙ୍କର ଉଦ୍ୟାନରେ ଯୁବରାଜଙ୍କ ସଙ୍ଗେ ପୁରୀରାଜା ଆପଣା ଇଚ୍ଛାମତେ ଏକାକୀ ସାକ୍ଷାତ୍ କରିବାର ଯେ ଲେଖିଥିଲୁଁ ତାହା ଠିକ୍ ନୁହେ। ସାହେବ ପ୍ରଶଂସିତ ଯୁବରାଜ ଏବଂ ମହାରାଜା ରାଜା ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ ବି ସେମାନଙ୍କର ସଂଖ୍ୟା ଦୁଇ ହଜାର ହେବ ନିମନ୍ତ୍ରଣ କରିଥିଲେ ଓ ପୁରୀର ରାଜାଙ୍କୁ ମଧ୍ୟ ନିମନ୍ତ୍ରଣ ଥିଲା କିନ୍ତୁ ସେ ସ୍ୱଇଚ୍ଛାରେ ଯାଇନାହାନ୍ତି ସାହେବ ପ୍ରଶଂସିତ ତାଙ୍କୁ ଫିଡ଼ିୟନ ସାହେବଙ୍କ ଦ୍ୱାରା ଡକାଇ ନେଇ ଗଲେ ଓ ଉଦ୍ୟାନରେ ଯୁବରାଜଙ୍କ ସଙ୍ଗେ ପରିଚୟ କରାଇ ଦେଲେ। ଏ ସାକ୍ଷାତ ତାଦୃଶ ମାନନୀୟ ନୁହେ। ବେଲଗଛିଆଠାରେ ଯେ ଯୁବରାଜଙ୍କର ଅର୍ଚ୍ଚନା ହୋଇଥିଲା ପୁରୀରାଜା ଟ୩୦୦/-ଙ୍କା ଭେଦା ଦେଇ ସୁଦ୍ଧା ସେଠାକୁ ଯାଇ ନାହାନ୍ତି। ଦରବାର ଓ ଲେଭିସଭାକୁ ଯାଇ ନ ଥିବାର ପୂର୍ବେ ଲେଖିଅଛୁଁ। ଯଦ୍ୟପି କୌଣସି ଠାରୁ ଗଲେ ସେ କି ସକାଶେ ଏତେ ବ୍ୟୟ କରି ଓ କଷ୍ଟ ସହି କଲିକତା ଗଲେ ଆମ୍ଭେମାନେ ବୁଝି ପାରୁ ନାହୁଁ। କେବଳ ଥରେ ମହାମାନ୍ୟ ଲାଟସାହେବଙ୍କ କୋଠିକୁ ଓ ଦୁଇଥର ଗଙ୍ଗାସ୍ନାନକୁ ଯାଇଥିଲେ ଯେଉଁଦିନ କଲିକତାରେ ପ୍ରବେଶ ହେଲେ ସେଦିନ ପାଲିକିରେ ବସି ବାଜା କୁଲି ଛତ୍ର ସହିତ ଗଙ୍ଗାକୂଳରୁ

ବସାକୁ ଯିବାରୁ ସେଠା ଲୋକେ ଦେଖି ଉପହାସ କଲେ ଓ କହିଲେ କି "ଏକ୍‌ଟା ଉଡେ ରାଜା ଏସେଛେ"କୌତୁକ ବା ଶ୍ରଦ୍ଧା ହେତୁ ପ୍ରତ୍ୟେହ ଅନେକ ଇତର ଲୋକ ତାଙ୍କୁ ଦେଖିବା ପାଇଁ ତାଙ୍କ ବସାଠାକୁ ଆସୁଥିଲେ ଓ ଅନେକ କଙ୍ଗାଳି କିଛି ପାଇବା ଆଶାରେ ସେଠାରେ ସମବେତ ହେଉଥିଲେ ମାତ୍ର ସମସ୍ତେ ନିରାଶ ହୋଇ ବାହୁଡୁଥିଲେ କାରଣ ରାଜା ଘରମଧ୍ୟରୁ ବାହାରୁ ନ ଥିଲେ। କଲିକତାକୁ ଅନେକ ରାଜା ଆସିଥିଲେ ସେମାନେ କେହି କିମ୍ବା ସେଠାର କେହି ଭବ୍ୟଲୋକ ରାଜାଙ୍କ ନିକଟକୁ ଆସି ନାହାନ୍ତି କେବଳ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବଙ୍କ ଉଦ୍ୟାନରେ ମଧୁପୁରର ରାଜା ପୁରୀରାଜାଙ୍କୁ ନେଇ ଅନ୍ୟ ମହାରାଜା ଓ ରାଜାଙ୍କ ସଙ୍ଗେ ସାକ୍ଷାତ ଓ ପରିଚୟ କରାଇ ଦେଇଥିଲେ। କଲିକତାରୁ ବାହୁଡ଼ିବା ସମୟରେ ପୁରୀରାଜା ଲାଟସାହେବ ଓ ଛୋଟ ଲାଟସାହେବଙ୍କ ସଙ୍ଗେ ସାକ୍ଷାତ କରି ବିଦାୟ ହୋଇ ଆସି ନାହାନ୍ତି। ସେ କଲିକତା ନଗରୀର କିଛି ହିଁ ନ ଦେଖି କିମ୍ବା ସେଠାରେ କିଛି ହିଁ କାମ ନ କରି ପଳେଇ ଆସିଲା ତୁଲ୍ୟ ଫେରି ଆସି ଅଛନ୍ତି। ଅତଏବ ଦେଖାଯାଏ ଯେ ତାଙ୍କର କଲିକତା ଯିବା ସମ୍ପୂର୍ଣ୍ଣରୁପେ ନିଷ୍ଫଳ ହୋଇଅଛି। ପୁରୀରାଜା କି ସକାଶେ ଦରବାର ଇତ୍ୟାଦି ସ୍ଥାନକୁ ନ ଗଲେ ତାହା ବୁଝିବାର ଆବଶ୍ୟକ ସେ ଓ ତାଙ୍କର ଚାଟୁକାରମାନେ ମନେ କରନ୍ତି ଯେ ସେ ସମସ୍ତ ରାଜାଙ୍କ ଅପେକ୍ଷା ଅଧିକ ପ୍ରଧାନ ଓ ମାନନୀୟ। ପୁଣି ଚାଟୁକାରମାନେ ଅର୍ଥାତ୍ ଖୋସାମଦିଆମାନେ ଓ ଅଜ୍ଞଲୋକ କହନ୍ତି ଯେ ସେ "ଲକ୍ଷେ ରାଜାରେ ମଉଡ଼ମଣି" ଏଥକୁ ବର୍ତ୍ତମାନତ ପୁରୀରାଜାଙ୍କ ଅବସ୍ଥା ଅତି ଶୋଚନୀୟ ଯେତେବେଳେ ତାଙ୍କ ପୂର୍ବପୁରୁଷ ଓଡ଼ିଶାଧିପତି ହୋଇ ତ୍ରିବେଣୀ ଜଗନ୍ନାଥ ଘାଟ ପର୍ଯ୍ୟନ୍ତ ରାଜତ୍ୱ ବିସ୍ତାର କରିଥିଲେ ଓ ଓଡ଼ିଶାର ଅନ୍ୟରାଜାମାନେ (ଜ୩୦ଣରୁ ଅଧିକ ନୁହନ୍ତି) ତାଙ୍କର ଅଧୀନ ଥିଲେ ତେତେବେଳେ ଯେ ଲକ୍ଷେ ରାଜାରେ ମଉଡ଼ମଣି ପଦର ଭାଜନ ନ ଥିଲେ। ତାହା କେବଳ ଚାଟୁଉକ୍ତି (ଖୋସାମଦକଥା) ଭିନ୍ନ ଅନ୍ୟ କିଛି ନୁହେ। ପୃଥିବୀରେ ଓଡ଼ିଶା ଅପେକ୍ଷା ଅଧିକ ବୃହତ୍ ଓ ଧନବନ୍ତ ରାଜ୍ୟ ଅନେକ ଅଛି ଓ ଅନେକ ପ୍ରତାପଶାଳୀ ରାଜାଧିରାଜ ଅଛନ୍ତି। ଦରିଦ୍ର ଦେଶ ଓଡ଼ିଶାର ରାଜା ସେମାନଙ୍କ ମଧ୍ୟରେ ମଉଡ଼ମଣି ହେବା ଦୂରେ ଥାଉ ସେମାନଙ୍କ ସଙ୍ଗେ କୌଣସିରୂପେ ସରି ହେଉ ନ ପାରନ୍ତେ। ତେବେ ଓଡ଼ିଶା ରାଜାଙ୍କ ସମୁଚିତ ମାନ୍ୟ ଥିଲା। ବର୍ତ୍ତମାନ ତାଙ୍କର ରାଜତ୍ୱ ନାହିଁ ଆଉ ସେ ମାନ୍ୟ କାହୁଁ ହବ। ମୋଗଲ ଓଡ଼ିଶା ଆକ୍ରମଣ କରି ଖୋରଦା ଜିଲା ବ୍ୟତିତ ଅନ୍ୟ ରାଜ୍ୟସବୁ କିଣିଥିଲେ ଓ ସେସବୁ ସେହି ହେତୁ ମୋଗଲବନ୍ଦୀ ବୋଲାଏ। ରାଜାଙ୍କ ପ୍ରଥମ ରାଜତ୍ୱରେ ମୁକୁନ୍ଦଦେବ ବିଦ୍ରୋହ ଆଚରଣ କରିବାରୁ ଖୋରଧାକୁ ସୁଦ୍ଧା ହରାଇଲେ ଓ ଏଠାରେ ବନ୍ଦି ହୋଇ ମୃତ୍ୟୁ ଲଭିଲେ। ବର୍ତ୍ତମାନ ପୁରୀରାଜା କେବଳ ପେନସନ ଭୋଗୀ। ଯେବେ ଆପଣା ଅକ୍ଷମତା ହେତୁ ରାଜତ୍ୱ ରଖି ନ ପାରିଲେ ତେବେ ପୁରୀରାଜା ଓଡ଼ିଶାରାଜ ବଂଶୀୟ ବୋଲି ତାଙ୍କର କେତେକ ମାନ୍ୟ ଅଛି ଓ ଗବର୍ଣ୍ଣମେଣ୍ଟ ସେରୂପ ମାନ୍ୟକରୁଅଛନ୍ତି ସେପକ୍ଷରେ କିଛି ତ୍ରୁଟି ନାହିଁ।

ପୁରୀ ରାଜା ଶ୍ରୀ ଜଗନ୍ନାଥମନ୍ଦିର ତତ୍ତ୍ୱାବଧାରକ ଥିବାରୁ ହିନ୍ଦୁ ଜନସାଧାରଣରେ ଠାକୁର ରାଜା ବୋଲାନ୍ତି ଓ ବିଶେଷ ମାନ୍ୟ ପାନ୍ତି କିନ୍ତୁ ଏହା କେବଳ ସାମାଜିକ ମାନ୍ୟ ରାଜମାନ୍ୟ

ନୁହେ। ହିନ୍ଦୁମାନେ ଜଗନ୍ନାଥଙ୍କ ପଣ୍ଡାଙ୍କୁ ମଧ୍ୟ ବଡ଼ ମାନନ୍ତି ଓ ହିନ୍ଦୁସମାଜରେ ବ୍ରାହ୍ମଣ ପଣ୍ଡିତମାନେ ଅଗ୍ରଗଣ୍ୟ ଓ ଅଧିକ ମାନ୍ୟବର ଏ ଘେନି କଚେରୀ ଦରବାରରେ ସେମାନଙ୍କର ତାଦୃଶ ମାନ୍ୟ ହୋଇ ନ ପାରେ। ଯଦ୍ୟପି କେହି ବ୍ରାହ୍ମଣ ପଣ୍ଡିତ କଚେରୀ ଦରବାରରେ ସେରୂପ ମାନ୍ୟ ଚାହିଁବ ତେବେ ତାକୁ ଅବିବେକ ଭିନ୍ନ ଅନ୍ୟ କିଛି କୁହା ନ ଯିବ। ସେହିପରି ପୁରୀରାଜାଙ୍କ ଶ୍ରୀ ଜଗନ୍ନାଥ ସଂକ୍ରାନ୍ତରେ ଯେ ବିଶେଷ ମାନ୍ୟ ତାହା କେବଳ ହିନ୍ଦୁସମାଜରେ ହୋଇପାରେ କଚେରୀ ଦରବାରରେ କିମ୍ବା ନବ୍ୟ ସମ୍ପ୍ରଦାୟରେ ହୋଇ ନ ପାରେ।

କେତେକ ଲୋକ କହନ୍ତି କି ଯେବେ ପୁରୀ ରାଜା ସମସ୍ତଙ୍କଠୁଁ ବଡ଼ ନୁହନ୍ତି ତେବେ ଅନ୍ୟ ରାଜାମାନେ ପୁରୀକୁ ଆସିଲେ ତାଙ୍କୁ କିପରି ଭେଟି ଦିଅନ୍ତି। ଏଥକୁ ରାଜାମାନେ ଅଥବା ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଜଗନ୍ନାଥଙ୍କ ଦର୍ଶନକୁ ଆସନ୍ତି ଓ ଜଗନ୍ନାଥଙ୍କର ଚାମର ସେବା ଦେଉଳଶୋଧ ଇତ୍ୟାଦି କରିବାକୁ ଓ ମନ୍ଦିର ମଧ୍ୟକୁ ମସାଲ ଇତ୍ୟାଦି ନେବାକୁ ଚାହାନ୍ତି କିନ୍ତୁ ସରକାର ପୁରୀ ରାଜାଙ୍କୁ ମନ୍ଦିରର ତତ୍ତ୍ୱାବଧାରକ କରିଥିବାରୁ ତହିଁରେ ତାଙ୍କର ସମ୍ପୂର୍ଣ୍ଣ କ୍ଷମତା, ତାଙ୍କ ବିନା ଅନୁମତିରେ କିଛି ହୋଇ ନ ପାରେ ଓ ସେ କିଛି ନ ପାଇଲେ ଅନୁମତି ନ ଦେବେ ସୁତରାଂ ସେମାନେ ତାଙ୍କୁ ଶତ ଶତ ଟଙ୍କା ଦିଅନ୍ତି ପୁଣି ଆପଣା ଅବିବେକତା ହେତୁ ଅଧିକ ଡଣ୍ଡରେ ପଡ଼ନ୍ତି। ଯାହା ହେଉ ସେ ଲାଞ୍ଚ ଅଟେ ରାଜଭେଟ ନୁହେ ଓ ସାମାନ୍ୟ ଅମଲାକୁ ସୁଦ୍ଧା ଲାଞ୍ଚ ଦିଆଯାଏ। ସେ ରାଜାମାନେ ପଣ୍ଡା ଇତ୍ୟାଦିଙ୍କୁ ମଧ୍ୟ ଅନେକ ଟଙ୍କା ଦିଅନ୍ତି ଏଯୋଗୁଁ କି ପଣ୍ଡାଙ୍କ ମାନ୍ୟ ରାଜାଙ୍କ ଅପେକ୍ଷା ଅଧିକ ହେବ।

କେତେକ ଲୋକ ପୁରୀ ରାଜାଙ୍କୁ ଚଳନ୍ତି ବିଷ୍ଣୁ ବୋଲି କହନ୍ତି ବା ମଣନ୍ତି। ଏହା କେବଳ ଅଜ୍ଞତା ମୂଢ଼ତା ଓ କୁସଂସ୍କାର ଭିନ୍ନ ଅନ୍ୟ କିଛି ନୁହେ। କୌଣସି ଲୋକକୁ ବିଶେଷତଃ କଳିକାଳର ପାପୀ ଲୋକଙ୍କୁ ବିଷ୍ଣୁମଣିବା ପ୍ରକୃତ ବିଷ୍ଣୁଙ୍କର ଅପମାନ କରିବା ଅଟଇ ଓ ଏପରି ମାଡିବା ଅପରାଧ ଅଟେ। ରାଜାଙ୍କୁ ଦେବତୁଲ୍ୟ ମାନିବାର ଶାସ୍ତ୍ରରେ ଉକ୍ତ ଅଛି କିନ୍ତୁ ତାହା ଦେଶାଧିପତି ରାଜାଙ୍କପ୍ରତି ଖଟଇ ସାମାନ୍ୟ ନାମିକ ରାଜାଙ୍କପ୍ରତି ନୁହଇ ଓ ରାଜ୍ୟଭ୍ରଷ୍ଟ ରାଜାଙ୍କ ପକ୍ଷରେତ କଦାପି ଖଟି ନ ପାରେ। ଭ୍ରଷ୍ଟପ୍ରତିମା ଅର୍ଥାତ୍ ବିଘ୍ନ ଦେବମୂର୍ତ୍ତି ଯେପରି ଅପୂଜନୀୟ ରାଜଂଭ୍ରଷ୍ଟ ରାଜା ମଧ୍ୟ ସେହିପରି ଅପୂଜନୀୟ।

ଆମ୍ଭେମାନେ ଯେତେରୂପେ ବିଚାର କରୁଅଛୁଁ କୌଣସିମତେ ପୁରୀରାଜା ତାଙ୍କ ଇଚ୍ଛାମତ ମାନ୍ୟତ୍ ଭାଜନ ଥିବାର ଦେଖୁ ନାହୁଁ। ଶ୍ରୀଯୁତ କମିଶ୍ନରର ସାହେବ ତାଙ୍କ ସକାଶେ ଗବର୍ଣ୍ଣମେଣ୍ଟଙ୍କୁ ଲେଖିଥିବାରୁ ଗବର୍ଣ୍ଣମେଣ୍ଟ ଅନୁଗ୍ରହ କରି ଦରବାରରେ ତାଙ୍କୁ ଭଲସ୍ଥାନ ଦେଇଥିଲେ କିନ୍ତୁ ସେ ପୁରୀର ପୀଡ଼ିତ ଥିବା ଛଳନାରେ ଦରବାର ଅଥବା ସଭାକୁ ନ ଗଲେ। ନ ଯିବାରେ ତାଙ୍କର ମାନ୍ୟ ରକ୍ଷା ହୋଇ ନାହିଁ ବରଂ ଅପମାନ ହୋଇଅଛି କାରଣ ତାଙ୍କୁ କେହି ନ ପଚାରିଲେ।।

ତାଙ୍କ ଅଭିମାନ ତାଙ୍କରିଠାରେ ରହିଲା। ଯେବେ ସରକାରରେ ଓ ପ୍ରଧାନ ରାଜମଣ୍ଡଳୀରେ ମାନ୍ୟ ନ ହେଲା ତେବେ ଆପଣା ଘରେ ଆପଣାକୁ ବଡ଼ ମଣିବାର କି ଫଳ? ଏପରି ବଡ଼ କିଏ ଆପଣାକୁ ମଣି ନ ପାରେ? ଆପଣା ଅବସ୍ଥା ଅପେକ୍ଷା ଅଧିକ ମାନ୍ୟ ଚାହିଁଲେ ଅପମାନ

ପାଇବାକୁ ହୁଏ। ସେ କଲିକତାରେ ବିବେକତାପୂର୍ବକ କାର୍ଯ୍ୟ କରିଥିଲେ। ତାଙ୍କର ମାନ୍ୟ ଓ ନାମ ହୋଇଥାନ୍ତା। ସନ୍ଦେହ ନାହିଁ। ସେ ବାବୁ ହରିବଲ୍ଲଭ ବୋଷଙ୍କୁ ସଙ୍ଗରେ ଘେନି ଯାଇଥିଲେ କିନ୍ତୁ ତାଙ୍କର ସତ୍ପରାମର୍ଶରେ ନ ରହିଲେ। ବାବୁ ତାରାକାନ୍ତ ବିଦ୍ୟାସାଗର ସେଠାରେ ମିଳିଲେ ତାଙ୍କର ଓ ଚାଟୁକାର ଚାକରଙ୍କର ପରାମର୍ଶରେ ରାଜା ସମସ୍ତ କାର୍ଯ୍ୟ କଲେ। ରାଜା ଯଦି ଏତାଦୃଶ ମାନାଭିଳାସୀ ଅଟନ୍ତି ତବେ ସଦ୍‌ଗୁଣ ପ୍ରକାଶ କରନ୍ତୁ ଓ ମହତ୍ କାର୍ଯ୍ୟମାନ କରନ୍ତୁ ଯେ ସେ ସର୍ବଠାରେ ଆଦରଣୀୟ ହେବେ। ରାଜା ଚାଟୁକାରଙ୍କ କଥା ................................ ..କଙ୍କୁ ବସିବାପାଇଁ ଆସନ ନ ଦେବା ଇତ୍ୟାଦି କେତେ କୁପ୍ରଥା ପରିତ୍ୟାଗ କରି ଭଦ୍ରମଣ୍ଡଳୀଙ୍କୁ ସର୍ବଦା ଗ୍ରହଣ କରନ୍ତୁ ତାଙ୍କର ସବୁ ଉତ୍ତମ ହେବ।

*ଉତ୍କଳ ଦୀପିକା-୧୮୭୬: ପୃଷ୍ଠା ସଂଖ୍ୟା-୧୨*

ପୁରୀରାଜାଙ୍କୁ ଘେନି ଏସପ୍ତାହରେ ଗୋଟିଏ ଅପୂର୍ବ କାଣ୍ଡ ହୋଇଗଲା। ରାଜା ଦରବାରକୁ ଆସି ଯେମନ୍ତ ବିଦ୍ୟା ଦେଖାଇ ଯାଇଥିଲେ ତାହା ଆମ୍ଭେମାନେ ଗତସପ୍ତାହରେ କହିଅଛୁଁ। ସେହି ଅପମାନ ହେତୁରୁ ହେଉ ବା ସ୍ୱାଭାବିକ ମୂର୍ଖପଣିୟାରୁ ହେଉ ରାଜା କମିଶ୍ନର ସାହେବଙ୍କ ଠାରୁ ବିଦାୟ ନ ହୋଇ ଚଞ୍ଚଳ ପୁରୀକୁ ବାହୁଡ଼ି ଗଲେ ଯେପରି କି ତାହାଙ୍କ ବିନା ପୁରୀର କାର୍ଯ୍ୟ ଦଣ୍ଡେ ଚାଲିପାରୁ ନ ଥିଲା। ଯେତେବେଳେ ରାଜା ଓ ଭଦ୍ରଲୋକଙ୍କର ପଦ ପାଇବାର ସମ୍ବାଦ ଆସିଲା ତେତେବେଳେ କମିଶ୍ନର ତାହାଙ୍କୁ ଖୋଜି ନ ପାଇ ଫେରାଇ ଆଣିବା ପାଇଁ ଚର ପଠାଇଲେ ମାତ୍ର ଦେବରାଜ ତାହା ଶୁଣିଲେ ନାହିଁ। ପୁରୀରେ ପହୁଞ୍ଚି ବୋଧ ହୁଅଇ ଠାକୁର ସଙ୍ଗେ ପରମର୍ଶ କରି ପୁନର୍ବାର କଟକକୁ ଆଦି କମିଶ୍ନର ସାହେବଙ୍କ ସାକ୍ଷାତ୍ ଲୋଡ଼ିଲେ ମାତ୍ର ପ୍ରତ୍ୟୁତ୍ତର ପାଇଲେ ଯେ ଅଗ୍ରେ ମାନବ ରାଜା ମାନଙ୍କଠାରେ କ୍ଷମା ପ୍ରାର୍ଥନା କରିବେ ଓ ସେମାନଙ୍କ ସାକ୍ଷାତରେ କମିଶ୍ନର ସାହେବଙ୍କ ନିକଟରେ ଅପରାଧ ସ୍ୱୀକାର କରି ସ୍ତୁତି ବାକ୍ୟଦ୍ୱାରା ତୁଷ୍ଟ କଲେ ତାହାଙ୍କର ଦୋଷ ମାର୍ଜନା ହେବ। ତେତେବେଳେ ଦେବରାଜ ଜାଣିପାରିଲେ ଯେ ସେ ମର୍ତ୍ତ୍ୟଭୂମିରେ ଅଛନ୍ତି ସୁତରାଂ ଏଠାରେ ଦେବତ୍ୱ ଖଟିବ ନାହିଁ କେବଳ ମନୁଷ୍ୟତାର ପ୍ରୟୋଜନ। ଏହି ଜ୍ଞାନବଳରେ ସେ ଆପଣା ଶ୍ରେଷ୍ଠତ୍ୱର ଅହଙ୍କାରକୁ ତ୍ୟାଗ କରି ଗତ ବୁଧବାର କମିଶ୍ନର ସାହେବଙ୍କ କୋଠିରେ ଢ଼େଙ୍କାନାଳ ମୟୂରଭଞ୍ଜ ଓ କେଉଁଝଡ଼ ମହାରାଜାଙ୍କ ନିକଟରୁ କ୍ଷମା ପ୍ରାପ୍ତ ହୋଇ ସେମାନଙ୍କ ସହିତରେ କମିଶ୍ନରଙ୍କ ଦର୍ଶନ ଲାଭ କଲେ। ଏ ଉତ୍ତାରୁ ତାହାଙ୍କର ମୁକ୍ତି ହେଲା ବୋଲିବା ଅନାବଶ୍ୟକ। ମହାରାଜା ପଦ ପାଇବାର ସମ୍ବାଦ ଶୁଣି ଆନନ୍ଦଚିତ୍ତରେ ତହିଁ ଆରଦିନ ପୁରୀକୁ ଚାଲିଗଲେ। ପଦ ପାଇଲେ ବୋଲି ଏହାଙ୍କୁ ପୁରୀରେ ମହାରାଜା ବୋଲାଯାଇ ନ ପାରେ କାରଣ ସେ ପଦଟି ଚିରସ୍ଥାୟୀ ନୁହେଁ କେବଳ ତାହାଙ୍କୁ ମିଳିଅଛି। ଯାହା ହେଉ ଆମ୍ଭେମାନେ କମିଶ୍ନରଙ୍କର ଏକାର୍ଯ୍ୟରେ ବଡ଼ ସନ୍ତୁଷ୍ଟ ହୋଇଅଛୁଁ। ଦେବରାଜଙ୍କର ଦେବତ୍ୱ ଛଡ଼ାଇବା ବଡ଼ ବିଷମ କଥା ଥିଲା ଓ ଏପରି ଘଟନା ହୋଇ ନ ଥିଲେ ଦିବ୍ୟସିଂହଙ୍କର ଦିବ୍ୟଜ୍ଞାନ ପ୍ରାୟ ହୁଅନ୍ତା ନାହିଁ। ଆମ୍ଭେମାନେ ଭରସା କରୁଁ ଯେ ଏଥର ତାହାଙ୍କୁ ଯେ ଶିକ୍ଷା ମିଳିଲା ତାହା କଦାଚ ପାସୋରିବେ ନାହିଁ ଓ ଗବର୍ଣ୍ଣମେଣ୍ଟ ଯେମନ୍ତ ପ୍ରସନ୍ନ ହୋଇ ତାହାଙ୍କୁ ମହାରାଜା ପଦ ଦେଇଅଛନ୍ତି ତେମନ୍ତ

ସେ ତହିଁର ଯୋଗ୍ୟ ହୋଇ ଦୀର୍ଘକାଳ ତାହା ଭୋଗ କରିବେ ଓ ଆମ୍ଭେମାନେ ସର୍ବଦା ତାହାଙ୍କର ସୁଖ୍ୟାତ ଜନସମାଜରେ ପ୍ରକାଶ କରିବାକୁ ସମର୍ଥ ହେବୁଁ।

*ଉତ୍କଳ ଦୀପିକା- ୧୮୭୭: ପୃଷ୍ଠା ସଂଖ୍ୟା-୬*

## ପୁରୀର ରାଜାଙ୍କ ମକଦ୍ଦମା

ଆମ୍ଭେମାନେ ଶୁଣି ଦୁଃଖିତ ହେଲୁଁ ଯେ ପୁରୀର ମହାରାଜା କିଛି ଗୁରୁତର ଅପରାଧ କରି ହାଜତରେ କଏଦ ଅଛନ୍ତି, ସେ ଯେପରି ଘୃଣିତ ଓ ନିଷ୍ଠୁର କାର୍ଯ୍ୟ କରିଥିବାର କଥିତ ହୁଅଇ ତାହା ଶ୍ରବଣମାତ୍ରକେ ଶରୀର କମ୍ପିତ ହେଉଅଛି। ତହିଁର ବୃତ୍ତାନ୍ତ ଏହି - ଗତମାସ ତା ୨୩ରିଖ ରାତ୍ରରେ ସେ ଜଣେ ବୈଷ୍ଣବକୁ ଡକାଇ ନଅର ମଧ୍ୟକୁ ଘେନି ଗଲେ ଓ ତାକୁ ଅନେକ ମାଡ ମାରି ତାହା ଦେହରେ ଅନେକ ସ୍ଥାନରେ ଚିଁଆ ଦେଲେ ଏତିକିରେ ରାଜାଙ୍କର ନିଷ୍ଠୁରତା ଶେଷ ହେଲା ନାହିଁ ସେ ତାହା ପୁରୁଷାଙ୍ଗ ରନ୍ଧ୍ର ମଧ୍ୟରେ ଚୂନ ପୂରାଇ ଲୁହାଗଜ ଗୁଞ୍ଜିଲେ ଓ ମଳଦ୍ୱାରରେ ସୋଲ ପୁରାଇ ତହିଁରେ ନିଆଁ ଲଗାଇଲେ ଓ ତାହା ମୁହଁ ମଧ୍ୟରେ ବିଷ୍ଠା ପୁରାଇଲେ। ସେ ମୃତବତ୍ ହେଲାରୁ ତାକୁ ନଅର ପାଚେରୀ ଡିଆଁଇ ଫୋପାଠି ଦେଲେ। ସେ ରାତ୍ରଯାକ ସେହିପରି ଅବସ୍ଥାରେ ପଡିରହିଲା ପ୍ରଭାତରେ ତାକୁ ଜଣେ କନଷ୍ଟବଲ ଦେଖି ହସପତାଳକୁ ଘେନି ଗଲା ସେ ଉପରଉକ୍ତ ବୃତ୍ତାନ୍ତମାନ କହିବାରୁ ତଦନ୍ତ ଲାଗିଲା ଓ ମେଜଷ୍ଟର ସାହେବ ସ୍ୱୟଂ ନଅର ମଧ୍ୟକୁ ଯାଇ ତଦନ୍ତ କଲେ ସେହି ଦିନ ଅବା ତା ୨୫ରିଖ ରାଜା ଚଲାଣ ହୋଇ ହାଜତ ଗଲେ। ଡାକ୍ତର ପ୍ରପୀଡ଼ିତ ବ୍ୟକ୍ତିକୁ ପରୀକ୍ଷା କରି କହିଲେ ଯେ ତାହାର ବଞ୍ଚିବାର ଆଶା ନାହିଁ ଓ ସେ ବର୍ତ୍ତମାନ ଜୀବଦଶାରେ ଅଛି କି ନା ଆମ୍ଭେମାନଙ୍କୁ ଗୋଚର ନାହିଁ।

ଯେଉଁ ବ୍ୟକ୍ତି ଆପଣାକୁ ଦେବତା ମଣି ଓ ଭାରୀ ଅଭିମାନ କରି ମନୁଷ୍ୟସଭାକୁ ଆସିବାର ଅପମାନ ବୋଧ କରନ୍ତି ଓ ଯାହାଙ୍କୁ ମୁର୍ଖଲୋକେ ଚଳନ୍ତି ବିଷ୍ଣୁ କହନ୍ତି ସେ ସାମାନ୍ୟ ମନୁଷ୍ୟଠାରୁ ହୀନ ହୋଇ ଏପରି ପଶୁବତ୍ ବ୍ୟବହାର କଲେ ଅତି ଆଶ୍ଚର୍ଯ୍ୟର ବିଷୟ ଅଟେ। ଓହୋ ହୋ ସେ କି ନିଷ୍ଠୁରାଚରଣ ନ କଲେ! କାଳର କି ଗତି! କାହାର ବୃଥା ଅଭିମାନ ଓ ଅହଙ୍କାର ରଖି ଦିଏ ନା। ଦୁଇମାସ ପୂର୍ବେ ସେଠାରେ କଲେକ୍‌ଟର ସାହେବ ଭାରତେଶ୍ୱରୀଙ୍କ ବାର୍ଷିକଉତ୍ସବ ଉପଲକ୍ଷରେ ସେଠାରେ ଏକ ମହାନ୍‌ସଭା କରି ରାଜାଙ୍କୁ କେତେ ଆଦରପୂର୍ବକ ଆହ୍ୱାନ କଲେ କିନ୍ତୁ ରାଜା ବୃଥା ଗାରିମାରେ ସଭାକୁ ଯିବାର ଅପମାନ ମଣି ସଭାକୁ ବିଜେ କଲେ ନାହିଁ ଏବେ ହାଜତରେ ବନ୍ଦୀ ହୋଇ ବସିଅଛନ୍ତି। ସେ ଯାହା ହେଉ ଓ ମୂର୍ଖଲୋକେ ତାଙ୍କୁ ଯେପରି ମଣନ୍ତୁ ସେ ଓଡ଼ିଶାର ରାଜବଂଶୀୟ ଥିବାରୁ ତାଙ୍କୁ ପ୍ରଧାନ ଓ ମାନନୀୟ ବ୍ୟକ୍ତିସ୍ୱରୁପ ମାନିବାକୁ ହେବ। ଏପରି ବ୍ୟକ୍ତିର ଏପରି କୁବ୍ୟବହାର ଓ ଏପରି ଦୁର୍ଦ୍ଦଶା ବଡ଼ ଦୁଃଖର ବିଷୟ ସନ୍ଦେହ ନାହିଁ।

ରାଜା କାହିଁକି ଏପରି ଦୁଷ୍କର୍ମରେ ପ୍ରବୃତ୍ତ ହେଲେ ଅନେକ ଲୋକ ପ୍ରଶ୍ନ କରୁଅଛନ୍ତି। ଆମ୍ଭେମାନେ ଶୁଣିଅଛୁଁ ଯେ ସେ ବୈଷ୍ଣବ ଆପଣାର ଅଲୌକିକ ମହିମାର ଠକବୃତ୍ତିର ବ୍ୟବସାୟୀ ଅଟେ। ରାଜା କୁସଂସ୍କାର ଓ ଅଜ୍ଞାନତାବଶତଃ ମନୁଷ୍ୟର ମିଥ୍ୟା ମହିମାରେ ବିଶ୍ୱାସ କରି ଆପଣା କାମନା ସିଦ୍ଧି ସକାଶେ ତାକୁ ନଅରକୁ ଏଥିପୂର୍ବେ ଡକାଇଥିଲେ ଓ ସେ ଅନେକଥର ନଅରକୁ

ଗତାୟାତ କରିଥିଲା ସେ ନଅର ମଧ୍ୟରେ କି ଅପରାଧ କଲା ତାହା ପ୍ରକାଶ ହୋଇ ନାହିଁ। ଲୋକେ ନାନାଦି କାରଣ ନିର୍ଦ୍ଦିଷ୍ଟ କରୁଅଛନ୍ତି। ସେ ଯାହା ହେଉ ରାଜା ଏପରି ଘୃଣିତ ଓ ହୃଦୟବିଦାରକ କାର୍ଯ୍ୟ କରିବାର ଉଚିତ ନ ଥିଲା। ରାଜା ଯେବେ ଆପେ ଦେବତା ଥିବାର ଗାରିମା କରନ୍ତି ତେବେ ଭଣ୍ଡବାବାଜୀର ଅନୁସରଣ କଲେ କାହିଁକି ଓ ତାହାର ଭଣ୍ଡାଚରଣ ଜାଣି ପାରି ଆପଣାକୁ ଶାସ୍ତି ନ ଦେଇ ତାକୁ ଏତେ ଶାସ୍ତି ଦେଲେ କାହିଁକି? କୁସଂସ୍କାର କେଡେ ଅନିଷ୍ଟକର! କେବେ ତାହା ଦୂରୀକୃତ ହେବ ଓ କେବେ ଏଦେଶୀୟ ଲୋକଙ୍କର ଜ୍ଞାନ ଉଦୟ ହେବ!

*ଉତ୍କଳ ଦୀପିକା-୧୮୭୮: ପୃଷ୍ଠା ସଂଖ୍ୟା-୪୫*

ପୁରୀର ମହାରାଜା ଚଳିତମାସ ତା୧୧ରିଖରେ ଦୌରା ସୁପୋର୍ଦ୍ଦ ହୋଇଅଛନ୍ତି। କେଉଁଠାରେ କେବେ ଦୌରାର ବିଚାର ହେବ କିଛି ସ୍ଥିର ହୋଇ ନାହିଁ। ଚଳିତ ମାସରେ କଟକ ଓ ପୁରୀର ଦୌରା ହେବାର ଥିଲା ତାହା ହୋଇ ଯାଇଅଛି ପୁଣି ଆଗାମୀ ମେ ମାସରେ ଦୌରା ହେବ। ତେତେକାଳ ଅବଶ୍ୟ ମହାରାଜାଙ୍କୁ ହାଜତରେ ବସି ଅପେକ୍ଷା କରିବାକୁ ହେବ। ମାତ୍ର ଆମ୍ଭେମାନେ ଶୁଣୁଅଛୁଁ ଯେ ଏହି ମାସରେ ବିଶେଷ ଦୌରା ବସାଇ ଏ ମକଦ୍ଦମା ବିଚାର କରିବାର ଯତ୍ନ ହେଉଅଛି ଯଦି ତାହା ସିଦ୍ଧି ହୁଅଇ ତେବେ ମହାରାଜଙ୍କୁ ଅଧିକ ଦିନ ଚିନ୍ତିତ ରହିବାକୁ ହେବ ନାହିଁ ଯାହା ହେବାର ଗୋଟାଏ ଶୀଘ୍ର ହୋଇଯିବ। ଅପରାଧଟି ବଡ କଠିନ ହୋଇଅଛି। ପ୍ରଥମେ ମହାରାଜାଙ୍କ ଉପରେ ଦଣ୍ଡବିଧିର ୩୨୬ ଧାରା ଅପରାଧର ଅଭିଯୋଗ ହୋଇଥିଲା। ଏଥି ମଧ୍ୟରେ ଚଳିତ ମାସ ତା୧୦ରିଖରେ ଗୁରୁତର ହୋଇ ମହାରାଜାଙ୍କ ଉପରେ ୩୦୨ଧାରା ଅନୁସାରେ ଅଭିଯୋଗ ହୋଇଅଛି। ମହାରାଜାଙ୍କ ସହିତ ଆହୁରି ଜ୯ଣ ଦୌରାସୁପୋର୍ଦ ହୋଇଅଛନ୍ତି।

ଏପ୍ରସ୍ତାବ ଲେଖାହେଲା ଉତ୍ତାରୁ ଅବଗତ ହେଲୁଁ ଯେ ଏହି ମାସ ତା୨୬ରିଖରେ କଟକରେ ଦୌରା ହେବାର ସ୍ଥିର ହୋଇଅଛି। ମହାରାଜାଙ୍କ ପକ୍ଷରେ ଜଣେ ବାରିଷ୍ଟର କଲିକତାରୁ ଅଣାଇବାର ବନ୍ଦୋବସ୍ତ ହେଉଅଛି।

*ଉତ୍କଳ ଦୀପିକା-୧୮୭୮: ପୃଷ୍ଠା ସଂଖ୍ୟା-୫୫*

ବିଶେଷ ଦୌରାର ଅଧିବେଶନ ଅନେକ କାଳରୁ ଦେଖାଯାଇ ନ ଥିଲା ପୁରୀର ମହାରାଜାଙ୍କ ବିଚାର ସକାଶେ ସମ୍ପ୍ରତି ତାହା ଦେଖାଗଲା କିନ୍ତୁ ବର୍ତ୍ତମାନ ଦୌରାଟି କେବଳ ଅସମୟରେ ହେବାରୁ ଏପରି ହୋଇଅଛି ଏମନ୍ତ ନୁହେ ଦୌରାର ନିୟମିତ ସମୟରେ ଏ ମୋକଦ୍ଦମା ପଡ଼ିଥିଲେ ସୁଦ୍ଧା ଏହା ବିଶେଷ ଦୌରା ବୋଲି ବାଚ୍ୟ ହୋଇଥାନ୍ତା। ବାସ୍ତବରେ ଏପରି ଦୌରାମିଶଲ ଏ ନଗରରେ କେବେ ଦେଖାଯାଇ ନାହିଁ ବୋଲି ପୁରାତନ ଲୋକମାନେ ସୁଦ୍ଧା କହୁଅଛନ୍ତି। ଏ ବିଶେଷ ଦୌରା ଅଧିବେଶନର ସମସ୍ତ ବନ୍ଦୋବସ୍ତ ବିଶେଷ ପ୍ରକାରର ହୋଇଅଛି। ଦୌରାମିଶାଲର ବିଶେଷ ବନ୍ଦୋବସ୍ତ ବିଶେଷ ପୁଲୀସ ନିଯୋଗ ବିଶେଷ ଦର୍ଶକଙ୍କର ଭିଡ଼। ଶ୍ରୀମତୀ ଭାରତେଶ୍ୱରୀଙ୍କ ପକ୍ଷରୁ ମୋକଦ୍ଦମା ଚଳାଇବା ପାଇଁ ସରକାର

ଉକିଲ ଛଡ଼ା ଏଠାରେ ପୁଲୀସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ଗ୍ରେବ୍ସ ସାହେବ ନିଯୁକ୍ତ ହୋଇଅଛନ୍ତି ଏପର ପୁରୀର ଡେପୁଟି କଲେକ୍ଟର ବାବୁ ନବୀନଚନ୍ଦ୍ର ସେନ ଏବଂ ଫୌଜଦାରୀ ସିରସ୍ତାଦାର ବାବୁ କ୍ଷେତ୍ରମୋହନ ବୋଷ ଶ୍ରୀଯୁକ୍ତ ଗ୍ରେବ୍ସ ସାହେବଙ୍କ ସାହାଯ୍ୟ ସକାଶେ ଆସି ଅଛନ୍ତି। ମହାରାଜା ଓ ତାହାଙ୍କ ସଙ୍ଗୀ ଅପରାଧିଙ୍କ ସକାଶେ ଶ୍ରୀଯୁକ୍ତ ଇବାନ୍ସ ସାହେବ ଓ ହାଣ୍ଡଲୀ ସାହେବ ବାରିଷ୍ଟରମାନେ ଆସିଅଛନ୍ତି ଏବଂ ସରକାରୀ ଉକୀଲ ଛଡ଼ା ଏଠା ବଡଅଦାଲତର ସମସ୍ତ ଉକୀଲ ନିଯୁକ୍ତ ହୋଇଅଛନ୍ତି ସୁତରାଂ ଫରିୟାଦୀ ପକ୍ଷରେ ଚାରିଜଣ ଓ ଆସାମିଙ୍କ ପକ୍ଷରେ ଉକୀଲ ମୁକ୍ତାର ହୋଇ ଜ୧୦ଣ ନିଯୁକ୍ତ ଅଛନ୍ତି। ଏପରି ଦୁଇ ଆଡ଼େ ଜ୧୪ଣ ହାକୀମ ଓ ଅମଲା ଜ୪ଣ ଆସେସର ଦୁଇଜଣ ଓ ଆସାମି ଜ୧୦ଣ ଓ ଚପରାସି କନେଷ୍ଟବଲ ଘେନି ମିଶଲ ଉପରେ ପ୍ରାୟ ଜ୪୦ଣ ବସୁଅଛନ୍ତି। ମହାରାଜା ଏକଖଣ୍ଡ ଚୌକୀରେ ବସୁଅଛନ୍ତି ଏବଂ ଦୁଇ ଚାରିଜଣ ଭଦ୍ରଇଂରାଜ ଦର୍ଶକ ମଧ ଆସୁଅଛନ୍ତି। ଭଦ୍ର ଲୋକଙ୍କଠାରୁ ନିତାନ୍ତ ନୀଚଲୋକ ପର୍ଯ୍ୟନ୍ତ ଏ ମୋକଦ୍ଦମାର ଫଳ ଜାଣିବାକୁ ବ୍ୟସ୍ତ ଓ ବିଚାରର କୌତୁକ ଦେଖିବାକୁ ଆସୁଅଛନ୍ତି।

ପ୍ରଥମ ଦୌରାର ବୈଠକ ଚଳିତ ମାସ ତା୨୬ରିଖରେ ହେଲା। ସେଦିନ ବେଳ ଘ୯ଣ୍ଟା ସମୟରୁ କଚେରିକୁ କର୍ମଚାରୀ ଛଡ଼ା ନାନାପ୍ରକାର ଦର୍ଶକଙ୍କର ଆସିବାର ଆରମ୍ଭ ହେଲା। ଅନେକ ଲୋକ କଚେରିକୁ ନ ଯାଇ ଜେଲଖାନା ସମ୍ମୁଖରେ ବସି ରହିଲେ ଯେ ହାଜତକୁ ଯିବା ବେଳେ ରାଜାଙ୍କର ଦର୍ଶନ କରିବେ। ସମସ୍ତଶ୍ରେଣୀର ଲୋକର ସମାନରୂପ ଉତ୍ସାହ ଜନ୍ମିଥିଲା। ଆମ୍ଭେମାନେ ଦେଖିଲୁ ଯେ ଅନେକ ଦୋକାନୀ ମୂଲିୟାପ୍ରଭୃତି ଆପଣା ବୋଝ ପସରା ଇତ୍ୟାଦି ଉହ୍ଲାଇ ରଖି ରାଜାଙ୍କ ବାଟକୁ ଚାହିଁ ରହିଥିଲେ ଓ ଏହି ଅବସ୍ଥାରେ ଏକ ଘଣ୍ଟାରୁ ଅଧିକ କାଳ ରହିଲେ ସୁଦ୍ଧା କାହାରି ବାହାରି ଯିବାକୁ ମନ ବଳିଲା ନାହିଁ। ଯେତେବେଳେ ରାଜାଙ୍କର ପାଲକୀ ଅଦାଲତକୁ ଯାଉଥିଲା ଲୋକେ ଚାରିଆଡୁ ବେଢ଼ି ଉଚ୍ଚସ୍ୱରରେ ହରିବୋଲ ଧ୍ୱନି କରି ପଛରେ ଦୌଡ଼ିଥିଲେ। ରାଜାଙ୍କ ପାଲକୀ ସଙ୍ଗେ୨ ପ୍ରାୟ ପାଞ୍ଚହଜାର ଲୋକ ଅଦାଲତର ଚାରିଦିଗରେ ବେଢ଼ିଗଲେ। ଶାନ୍ତିରକ୍ଷା ସକାଶେ କେତେଗୁଡ଼ିଏ ଅଧିକା ପୁଲିସ କର୍ମଚାରୀ ଆସିଥିଲେ କିନ୍ତୁ ଲୋକଙ୍କୁ ସମ୍ଭାଳି ଅନ୍ତରରେ ରଖିବା ବଡ଼ କଠିନକର୍ମ ହୋଇଥିଲା। କେତେବେଳ ଯାଏ ହରିବୋଲ ଧ୍ୱନି କରି ପୁଲୀସର ପୁନଃ୨ ତାଡ଼ନାରେ ଲୋକେ ସ୍ଥିର ହେଲେ କିନ୍ତୁ ଅଧିକାଂଶ ଲୋକ ଖରାରେ ସେହିଠାରେ ପଡ଼ିରହି କୂଅର ପାଣି ଶୁଖାଇଲେ ତଥାଚ ଘରକୁ ଗଲେ ନାହିଁ। କଚେରୀ ଭାଙ୍ଗିବା ସମୟରେ ଏହିପରି ଭିଡ଼ ହୋଇଥିଲା ଓ ସମସ୍ତେ ରାଜାଙ୍କର ମୁକ୍ତିପ୍ରାର୍ଥନା କରୁଥିଲେ। ପୁରୀର ମହାରାଜାଙ୍କୁ ଓଡ଼ିଶାର ମହାରାଜା ବୋଲାଯାଏ ଓ ଯଦ୍ୟପି କି ଅନେକବର୍ଷ ହେଲା ସେ ରାଜ୍ୟଶୂନ୍ୟ ରାଜା ହୋଇଅଛନ୍ତି କିଛିମାତ୍ର ଊଣା ହୋଇ ନାହିଁ ତହିଁର ଅଭ୍ରାନ୍ତ ଉଦାହରଣ ଏହି ଦୌରା ମିଶଲରୁ ମିଳୁଅଛି। ଅପରାଧଟି କେମନ୍ତ ଗୁରୁତର ଓ ମହାରାଜା ତାହା କରି ଅଛନ୍ତି କି ନାହିଁ ତହିଁର ବିଚାର ଦିଗକୁ ଲୋକଙ୍କର ମନ ଯାଉ ନାହିଁ କେବଳ ମହାରାଜାଙ୍କର ବର୍ତ୍ତମାନ ଦୁରବସ୍ଥା ସମସ୍ତଙ୍କୁ ଅସହ୍ୟ ବୋଧ ହେଉଅଛି ବୋଲି ତହିଁରୁ ରାଜା ମୁକ୍ତ ହେଉନ୍ତୁ ଏହିକଥା ସମସ୍ତେ ମନାସୁ ଅଛନ୍ତି। ବାସ୍ତବରେ ଓଡ଼ିୟାମାନଙ୍କର ରାଜଭକ୍ତିକୁ ପଟ୍ଟାନ୍ତର ନାହିଁ।

ପ୍ରଥମ ଦିନର ଭିଡ଼ ଅନ୍ୟାନ୍ୟ ଦିନର ମିଶଲରେ ନ ଥିଲା ତଥାଚ ମହାରାଜାଙ୍କର ଯିବା ଆସିବା ସମୟରେ ପ୍ରତିଦିନ ଦୁଇ ତିନିଶତ ଲୋକରୁ ଊଣା ହୋଇ ନାହିଁ। ଜଜ ସାହେବ ଯେବେ ପୂର୍ବରୁ ସତର୍କ ନ ହୋଇ ଅଧିକା ପୁଲିସ ପହରା ଅଣାଇ ନ ଥାନ୍ତେ ତେବେ ଲୋକର ଭିଡ଼ରେ ମିଶଲରେ ବସି ମୋକଦ୍ଦମା କରିବା କଠିନ ହୁଅନ୍ତା।

ଆମ୍ଭେମାନେ ଆଶା କରୁଁ ଯେ ଏ ବିଶେଷ ଦୌରାର ବିଶେଷ ସମାରୋହର ପରିଚୟ ଉପରଲିଖିତ ବର୍ଣ୍ଣନାରୁ ପାଠକମାନେ ଜାଣି ପାରିବେ। ଏଥର ବିଚାରର କଥା କହୁଅଛୁଁ।

ତା ୨୬ରିଖ ବେଳ ଘ ୧୧ଣ୍ଟା ସମୟରେ ମୋକଦ୍ଦମାର ବିଚାର ଆରମ୍ଭ ହେଲା। ପ୍ରଥମେ ଫରିୟାଦୀ ପକ୍ଷରୁ ଶ୍ରୀଯୁକ୍ତ ଗ୍ରେବସ୍ ସାହେବ ମୋକଦ୍ଦମା ଆରମ୍ଭ କରି ସଂକ୍ଷେପ ବିବରଣ ଓ ଯେ ସମସ୍ତ ପ୍ରମାଣଦ୍ୱାରା ତାହା ସାବ୍ୟସ୍ତ କରିବେ ତାହା ଅଦାଲତଙ୍କୁ ଜଣାଇଲେ। ତହୁଁ ପ୍ରଥମ ସାକ୍ଷିର ଯୋବାନବନ୍ଦୀ ନିଆଗଲା। ଏ ସାକ୍ଷୀ ପୁରୀ ଚିକିତ୍ସାଳୟର ଜଣେ କମ୍ପାଉଣ୍ଡର, ସେ କହିଲା ଯେ ଶିବୁଦାସ ବାବାଜିକୁ ଏକ ପାଲକିରେ ପକାଇ ପୁଲିସ ହାସପାତାଳକୁ ଆଣିଲେ ସେ ଦିନ ତାହା ଗୁହ୍ୟଦ୍ୱାର ବାଟେ ଖ୩୪ଣ୍ଡ ସୋଲ ବାହାରିଲା। ଦୁଇଦିନ ଉତ୍ତାରୁ ଯୋଲାବ ଦେବାର ଆହୁରି ପାଞ୍ଚଖଣ୍ଡ ସୋଲ ବାହାରିଲା ଶିବୁଦାସର ଭାରୀ ପୀଡ଼ା ଓ ଯନ୍ତ୍ରଣା ହୋଇଥିଲା ସେହି ପୀଡ଼ାରେ ସେ ଚଳିତମାସ ତା ୧୦ରିଖରେ ମରିଗଲା। ଯେଉଁ ସୋଲ ସବୁ ବାହାରିଥିଲା ସେସବୁ ମେହେତର ଜିମା ଥିଲା ତାହାଠାରୁ ମାଜିଷ୍ଟ୍ରେଟଙ୍କ ନିକଟକୁ ଆସି ସେଠାରେ ବୋତଲରେ ବନ୍ଦ ହୋଇଥିଲା ଦୌରାମିସଲରେ ତାହାକୁ ସେ ଚିହ୍ନିଲା ଓ ଖଣ୍ଡେ ବଡ଼ ସୋଲକୁ ସେ ବିଶେଷ ରୂପେ ଚିହ୍ନିଥିଲା।

୨ୟ ସାକ୍ଷୀ ପୁରୀ ରୋଡ଼ସେସ୍ ଇଲାକାର ଡିଷ୍ଟ୍ରିକ୍ଟ ଇଞ୍ଜିନିୟର ବେକ ସାହେବ। ସେ ରାଜାଙ୍କର ନଅରର ଖଣ୍ଡେ ନକ୍ସା ମାଜିଷ୍ଟ୍ରେଟଙ୍କ ଆଜ୍ଞାନୁସାରେ ପ୍ରସ୍ତୁତ କରି ଆଣିଥିଲା ଅଦାଲତରେ ତାହା ଦାଖଲ ତସଦିକ କଲା। ମୃତ ବ୍ୟକ୍ତିକୁ ନଅର ମଧ୍ୟରେ ଯେଉଁ ସ୍ଥାନରେ ଯେପ୍ରକାର ପୀଡ଼ା ଦିଆଯାଇଥିଲା ତାହା ସବୁ ପୁଲିସ ଇନ୍ସ୍ପେକ୍ଟରଠାରୁ ଅବଗତ ହୋଇ ନକ୍ସାରେ ଚିହ୍ନିତ କରିଥିବାର ସେ ବ୍ୟକ୍ତକଲା।

ଏଥିଉତ୍ତାରୁ ଗ୍ରେବସ୍ ସାହେବ ତିନିଖଣ୍ଡ ଦଲୀଲ ଦାଖଲ କଲେ ଓ ସେ ସମସ୍ତ ଅଳ୍ପ ତର୍କ ବିତର୍କ ଉତ୍ତାରୁ ଅଦାଲତରେ ଗୃହୀତ ହେଲା। ସେ ସବୁ ମୃତ ବ୍ୟକ୍ତିର ଇଜହାର ଅଟଇ କି ଯାହା ହାସପାତତାଳରେ ସ୍ୱୟଂ ମାଜିଷ୍ଟ୍ରେଟ ସାହେବ ତାହାଠାରୁ ନେଇଥିଲେ। ତହିଁରେ ସେ ଲେଖାଇଅଛି ଯେ ରାଜା ତାହାକୁ ଭଗବାନପୁର ମଠଠାରୁ ଡକାଇ ଆଣି ନଅର ମଧ୍ୟସ୍ଥିତ ଯାଗାଘରେ ସ୍ୱୟଂ ଓ ଆପଣା ଲୋକଦ୍ୱାରା (ଯେଉଁମାନେ ଆସାମୀ ହୋଇ ଅଛନ୍ତି) ମାଡ଼ ମାରି ଗୁହ୍ୟଦ୍ୱାରରେ ସୋଲ ଇନ୍ଦ୍ରିରେ ଚୂନ ଖଡ଼ିକା ପୂରାଇ ମଶାଲରେ ଦେହର ନାନାସ୍ଥାନ ପୋଡ଼ି ଦେଇ ମେହତର ଦ୍ୱାରା ବିଷ୍ଠା ଓ ମୂତ ଖୁଆଇ ଖିଡ଼କୀ ବାଟେ ଦାଣ୍ଡକୁ ବାହାର କରି ଦେଇଥିଲେ। ରାଜା କାହିଁକି ଏ ପ୍ରକାର ପୀଡ଼ା ଦେଲେ ତହିଁର ହେତୁ ସେ କହି ନାହିଁ। ଏଥପୂର୍ବେ ରାଣୀଙ୍କ ଡକାଇବା ଅନୁସାରେ ସେ ଏକଥର ନଅରକୁ ଆସିଥିଲା ଓ ରାଜାଙ୍କ ଦେହ ଆରୋଗ୍ୟ କରିବା ପାଇଁ ରାଣୀ ତାହାକୁ କହିଥିଲେ। ଆସାମିମାନଙ୍କ ମୁହଁ ଦେଖି ମାଜିଷ୍ଟ୍ରେଟ ସାହେବଙ୍କୁ

ଚିହ୍ନାଇ ଦେଇଥିଲା କାହାରି ନାମ କହି ପାରି ନ ଥିଲା। ଏହି ତିନିଖଣ୍ଡ ଇଜହାର ମଧ୍ୟରୁ ଏକଖଣ୍ଡ ବିଷୟରେ ଆଇନଘଟିତ ତର୍କ ହେବାରୁ ସବ୍‌ଇନ୍‌ସପେକ୍ଟର ରାମରାଓ ତାହା ଆପଣା ସାକ୍ଷ୍ୟଦ୍ୱାରା ତସଦିକ କଲା।

ଚତୁର୍ଥ ସାକ୍ଷୀ ଗୋପୀ ସିଂହ ଆପଣା ଯୋବନବନ୍ଦିରେ କହିଲା କି ସେ ରାଜାଙ୍କ ନଅରର ଠିକା ଚପରାସୀ ଥିଲା। ସେଜିୟାପଟ ତାହାକୁ କହିଲା ଯେ ନାରାୟଣ ବାବନପତି କହିଲେ ଯେ ପୁନାଙ୍ଗତୋଟା ବାବାଜିକୁ ଡାକିଆଣ। ଏହା ଶୁଣି ସେ ଦୁହେଁ ପୁନାଙ୍ଗତୋଟା ବାବାଜିଙ୍କ ନିକଟକୁ ଯାଇ ରାଜା ଡାକୁଅଛନ୍ତି କହିବାରେ ସେ କହିଲା 'ମୁଁ ନୁହେଁ ଭଗବାନପୁର ବାବାଜିକୁ ଡାକୁଥିବେ' ଏହା କହି ସେ ବାବାଜିକୁ ଚିହ୍ନାଇ ଦେବାରୁ ଗୋପୀ ସିଂହ ଓ ସେଜିୟାପଟ ବାବାଜିକୁ ସଙ୍ଗେ ଘେନି ଆସିଲେ। ବାଟରେ ଚାରିଜଣ ଲୋକ ତାହା ସଙ୍ଗେ ମିଶିଲେ। ଏପରି ଜ୭ଣ ସଙ୍ଗ ହୋଇ ଆସିଲେ। ବାଟରେ ବାବାଜୀ ଭାଙ୍ଗ ଓ ଗଞ୍ଜେଇ ଖାଇ ସନ୍ଧ୍ୟଉତ୍ତାରୁ ପୁରୀରେ ଆସି ପହୁଞ୍ଚିଲେ। ବାଟରେ ଥାନାଠାରେ ଗିରିଧାରୀ ଲାଲ ସବ୍ ଇନ୍‌ସପେକ୍ଟରଙ୍କ ସହିତ ସାକ୍ଷାତ୍ ହୋଇଥିଲା। ନଅରଦ୍ୱାରରେ ପ୍ରବେଶ ହୁଅନ୍ତେ ବାବାଜୀ ଓ ତାହାଙ୍କ ସଙ୍ଗିମାନେ ସେଠାରେ ବସିଲେ ସେଜିୟାପଟ ନଅର ଭିତରକୁ ଗଲା। ଗୋପୀସିଂହ ପହରାବାଲାକୁ ତଲବାର ଦେଇ ଆପଣା ବସାକୁ ଚାଲିଗଲା। ନଅରଦ୍ୱାରରେ ପହୁଞ୍ଚିବାବେଳେ ଦାଣ୍ଡ ବାରନ୍ଦାରେ କଚେରୀ ଲାଗିଥିଲା ତହସିଲଦାର ବସି କଚେରୀ କରୁଥିଲେ। ଏ ଗୁହା ଉପରେ ଅନେକ ଯେରା ସବାଲ ହୋଇଥିଲା ତହିଁରେ ରାଜାଙ୍କ ନଅରର ଅନେକ କଥା ମଧ୍ୟରେ ଏ ଗୁହାର କହିବାରୁ ଜଣାଗଲା ଯେ ରାଜାଙ୍କ ନଅରର ସମସ୍ତ ପାଇଖାନାର ଦ୍ୱାର ଦାଣ୍ଡ ଦିଗକୁ ଅଛି ମେହତର ଦାଣ୍ଡ ଆଡୁ ପାଇଖାନା ଝାଡ଼ିନେଇ ଯାଏ। ନଅର ଭିତରକୁ ହାଡ଼ିଗଲେ ଅଥବା ବିଷ୍ଠା ଆସିଲେ ଘର ମାରୁଯିବ। ରାଜାଙ୍କ ନଅରରେ ଏସବୁ କଥାର ବଡ଼ ଧରୋଟ ଇତ୍ୟାଦି।

ତା୨୭ରିଖରେ ଗୋପୀ ସିଂହ ଉପରେ ଯେରା ସବାଲ ହେଲା ଉତ୍ତାରୁ ପଞ୍ଚମଗୁହା ନୀଳା ବେହେରା କହିଲା କି ସେ ଜାନକାଦେଇପୁର ବଜାରରରେ ପାନ ଗୁଆ କିଣୁଥିଲା ଏମନ୍ତ ସମୟରେ ଦେଖିଲା ଯେ ବାବାଜୀ ଓ ତାହାଙ୍କ ସଙ୍ଗେ ପତିତ ନାଏକ ବାଲୁଙ୍କି ମିଶ୍ର ଓ ନିଧି ମିଶ୍ର ଗୋପୀ ସିଂହ ଚପରାସି ଓ ମହାରଥା ଆସୁଅଛନ୍ତି। ବାବାଜୀ କହିଲା ପୁରୀ ରାଜାଙ୍କ ଡାକରା ଆସିବାରୁ ଯାଉଅଛନ୍ତି 'ତୁ ସଙ୍ଗେ ଆସିବୁତ ଆ' ସେଠାରୁ ସେ(ନୀଳା) ତାହାଙ୍କ ସଙ୍ଗରେ ଗଲା। ପୁରୀ ସଦରଥାନା ଠାରେ ବାବାଜୀ ଗିରିଧାରି ବାବୁଙ୍କ ସହିତ କଥାବାର୍ତ୍ତା କରି ନଅରଦ୍ୱାରକୁ ଗଲେ। ବାବାଜୀ ବାରନ୍ଦାରେ ବସିଲେ ସଙ୍ଗିମାନେ ତଳେ ବସିଲେ ମାହାରଥା ଭିତରକୁ ଯାଇ ପୁଣି ଲେଉଟି ଆସି ଏକା ବାବାଜୀକୁ ଭିତରକୁ ଘେନି ଗଲା ଓ ଗୋପୀ ସିଂହ ତାହାଙ୍କ ପାଖରେ ବସି ରହିଲା। ବିଳମ୍ବ ହେବାରୁ ତାହାଙ୍କୁ ନିଦ ମାଡ଼ିଲା ତହୁଁ ପହରାବାଲା ଜଣକୁ କହି ସେହି ବାରନ୍ଦାରେ ସେମାନେ ଶୋଇଲେ। ବାବାଜୀ ଘରୁ ଆସିବା ବେଳେ ଖଣ୍ଡେ ଲୁଗା ଅଣ୍ଟାରେ ବେଢ଼ାଇଥିଲେ ଓ ଖଣ୍ଡେ କାନ୍ଧରେ ପକାଇଥିଲେ। ତିନିଥର ମାଳି ତାହାଙ୍କ ବେକରେ ଥିଲା। କଚେରିକୁ ଆସିଥିବା ମାଳିକୁ ବାବାଜିଙ୍କର ବେକର ମାଳି ବୋଲି ଚିହ୍ନିଲା। ରାତ୍ର ଦୁଇପ୍ରହର

ବେଳେ ବାବାଜିଙ୍କ ଡାକ ଶୁଣି ତାହାର (ନୀଳାର) ନିଦ ଭାଙ୍ଗିଲା ବାବାଜୀ ଡାକୁଥିଲେ 'ନୀଳାରେ ପତିତରେ ଧାଇଁ ଆସ ମୁଁ ମରିଗଲି' ସେ ଏପରି ଡାକ ଶୁଣି ସଙ୍ଗିମାନଙ୍କୁ ଉଠାଇ ଦେଇ ବାରନ୍ଦାରୁ ଡେଇଁ ପଡ଼ି ବାବାଜିଙ୍କ ନିକଟକୁ ଗଲା ଆଉ ଲୋକମାନେ ତାହା ପଛେ୨ ଗଲେ। ଦେଖିଲା ବାବାଜୀ ଲଙ୍ଗଳା ହୋଇ ମାଟିରେ ପଡ଼ିଅଛନ୍ତି ଗାଣ୍ଡିରୁ ସୋଲ ବାହାର କରୁଅଛନ୍ତି। ଦେହର ନାନା ସ୍ଥାନ ପୋଡ଼ି ଯାଇ ଫୋଟକା ହୋଇଅଛି ସେ ଆପଣା ଚାଦର ମାଟିରେ ପକାଇ ଦେଲା ବାବାଜୀ ତହିଁ ଉପରେ ଲୋଟୁଥିଲେ। ପାଣି ମାଗନ୍ତେ ପଇଡ଼ ପାଣି ଆଣି ଦେଲା ବାବାଜୀ ପିଇଲା ଉତ୍ତାରୁ ନୀଳା ଯାଇଁ ଗିରିଧାରି ବାବୁଙ୍କୁ ଥାନାରୁ ଡାକି ଆଣିଲା। ଗିରିଧାରୀ ବାବୁ କନଷ୍ଟବଲ ସଙ୍ଗେ ନେଇ ଆସି ଆଲୁଅ ଜାଳି ବାବାଜିଙ୍କ ଅବସ୍ଥା ଦେଖି କୃପାସିନ୍ଧୁ ବାବୁ ସବ୍ଇନ୍ସ୍ପେକ୍ଟରଙ୍କୁ ଡାକିବା ଲାଗି ଜଣେ କନଷ୍ଟବଲ ପଠାଇଲେ। କୃପାସିନ୍ଧୁ ଆସି ଖଣ୍ଡେ ପାଲିକି ଅଣାଇ ବାବାଜିଙ୍କୁ ଥାନାକୁ ଘେନି ଗଲା ସେଠାରେ ଇଜହାର ନେଇ ଡାକ୍ତରଖାନାକୁ ଘେନିଗଲା ଓ କଳାଡାକ୍ତର ସମ୍ବାଦ ପାଇ ତତ୍କ୍ଷଣାତ୍ ଆସି ତାହାକୁ ଔଷଧ ଦେବାରେ ୩୨|୩୩ଖଣ୍ଡ ସୋଲ ବାହାରିଲା ସେ ଚାରି ଦିନ ବାବାଜିଙ୍କ ନିକଟରେ ରହି ଘରକୁ ଗଲା ନଅରଦ୍ୱାର ଆଠଘଣ୍ଟା ବେଳେ ସେମାନେ ପହୁଞ୍ଚିଥିଲେ। କେବଳ ଚାରି ପାଞ୍ଚଜଣ ପହରାବାଲା ଦ୍ୱାରଠାରେ ଥିଲେ ବାରନ୍ଦାରେ କେହି ନ ଥିଲେ କି କିଛି କଚେରୀ ହେଉ ନ ଥିଲା ଏ ଗୁହା ଉପରେ ଅନେକ ଜେରାସବାଲ ହୋଇଥିଲା ତହିଁରେ ଶେଷକୁ ଏ ଉତ୍ତର ନ ଦେଇ କହିଲା ମୁଁ ପିଲା ମୋତେ ଆଉ କିଛି ପଇଟୁ ନାହିଁ ଯାହା ଜାଣିଥିଲି କହିଲି ଆଉ କିଛି ପାରିବି ନାହିଁ। ଏଥକୁ ବାରିଷ୍ଟର ପଚାରିଲେ କି ତୁ ଯେବେ ବ୩୨ର୍ଷ ବୟସ ଥିବା ପ୍ରତ୍ୟକ୍ଷେ ପିଲା ହେଲୁ ତେବେ କେବେ ମନୁଷ୍ୟ ହେବୁ ବୋଲି ଆଶା ରଖୁ ଏଥିର ଉତ୍ତରରେ ମଧ୍ୟ ସେ କହିଲା କି ମୁଁ ପିଲା ଅଟେଁ।

ଏହି ଦିନ ଅପରାହ୍ନ କାଳରେ ପତିତ ନାୟକର ଯୋବାନବନ୍ଦୀ ହେଲା ସେ କହିଲା କି ଆପଣା ଘରଠାରେ ଥିଲା ବାବାଜୀ ଡାକିବାରୁ ତାହାଙ୍କ ସଙ୍ଗେ ଆସିଲା। ଜାନକାଦେଇପୁରଠାରେ ନୀଳବେହେରା ସଙ୍ଗେ ଦେଖା ହେଲା। ସେଠାରୁ ବାବାଜିଙ୍କର ଡାକ୍ତରଖାନାରେ ରହିବା ପର୍ଯ୍ୟନ୍ତ ସମସ୍ତ ଯେମନ୍ତ ନୀଳାବେହେରା କହିଅଛି ସେହିପରି କହିଲା। ଏ ଲୋକର କହିବାମତେ ଯେଉଁଠାରେ ପ୍ରଥମେ ସେ ବାବାଜିକୁ ଦେଖିଥିଲା ସେଠାରେ ବାବାଜୀ ପାଲିକିରେ ବସି ନ ଥିଲେ। ସେମାନେ ବାବାଜିଙ୍କି ପାଲିକିଖାନା ପାଖକୁ ଟେକି ଆଣିଲେ ସେଠାରୁ ବାବାଜୀ ପାଲିକିରେ ଗଲେ। ଜେରା ସବାଲାରେ ଏହାକୁ ପଚରା ଗଲା କି ଯଖମିବ୍ୟକ୍ତି ପାଖକୁ ପାଲକି ଘେନି ଯିବା ନା ପାଲକି ପାଖକୁ ଯଖମିକୁ ଘେନି ଆସିବା ବୁଦ୍ଧିର କାର୍ଯ୍ୟ। ତହିଁରେ ସେ ଉତ୍ତର ଦେଲା କି ଉଭୟ ବିଧି ସମାନ। ଏ ଗୁହା ମଧ୍ୟ ଜେରାସବାଲରେ କିଞ୍ଚିତ ଅସ୍ତବ୍ୟସ୍ତ ହୋଇଥିଲା।

ତା୨୮ରିଖରେ ନିଧିମିଶ୍ର ଓ ବାଳକୃଷ୍ଣ ମିଶ୍ରଙ୍କର ଯୋବାନବନ୍ଦୀ ହେଲା। ଏମାନେ ଗ୍ରାମଠାରୁ ବାବାଜିଙ୍କ ସଙ୍ଗେ ଆସିବାର ଓ ନୀଳା ବେହେରା ସଙ୍ଗେ ଭେଟ ହେବା ସମୟଠାରୁ ଡାକ୍ତରଖାନାରେ ବାବାଜିଙ୍କର ରହିବା ପର୍ଯ୍ୟନ୍ତ ସବୁକଥା ଉପରେ ଲେଖା ପ୍ରାୟ କହିଲେ। ଜେରା ସବାଲରେ ନିଧିମିଶ୍ର କହିଲା କି ସେ ଏକା ଆପଣା ଗ୍ରାମରୁ କଟକକୁ ଆସିଥିଲା ଏକା

ବସା କରି ରହିଥିଲା କୌଣସି ଗୁହା କି କନେଷ୍ଟବଲ ତାହା ସଙ୍ଗେ ନ ଥିଲା। କିନ୍ତୁ ବାଳକୃଷ୍ଣ ଉପରେ ଜେରାସବାଲ ହେବାରେ ସେ କହିଲା କି ନିଧିମିଶ୍ର ତାହାର ଭାଇ ହୁଅଇ। ଦୁହେଁ ଏବଂ ତାହା ଗ୍ରାମର ଅନ୍ୟ ଗୁହାମାନେ ସଙ୍ଗ ହୋଇ କଟକକୁ ଆସିଲେ। ନିଧିମିଶ୍ର ଓ ସେ (ବାଳକୃଷ୍ଣ) ଏକା ବସାରେ ରହି ଏକା ରୋଷାଇରେ ଖାଉଥିଲେ ଓ ସେହି ଖଞ୍ଜାରେ ନାରାୟଣ ମହାନ୍ତି ଓ ଦରଶନ ସିଂହ କନଷ୍ଟବଲମାନେ ଥିଲେ ହାସପାତାଳରେ ଥିଲାବେଳେ ନିଧିମିଶ୍ର ଆପେ ମହାପ୍ରସାଦ ମନ୍ଦିରରୁ କିଣିଆଣି ଖାଇଥିବାର କହିଥିଲା। ବାଳକୃଷ୍ଣ କହିଲା ସେ କିମ୍ବା ନିଧିମିଶ୍ର ମହାପ୍ରସାଦ କିଣିବାକୁ ଯାଇ ନ ଥିଲା। ପତିତ ନାୟକ ନାମରେ ଜଣେ ବ୍ୟକ୍ତି ତାହା କିଣିଆଣିଲା। ଏ ପତିତ ଗୁହା ଛଡ଼ା ଆଉ ଜଣେ ଅଟେ ତାହାର ଘର ସେହି ଗ୍ରାମରେ। ଚାରି ପାଞ୍ଚ ପତିତ ସେହି ଗ୍ରାମରେ ଥିବାର ବାଳକୃଷ୍ଣ କହିଲା। ଏ ପତିତ ଆରଦିନ ସକାଳେ ଡାକ୍ତରଖାନାରେ ଆସି ମିଳିଲା। ଏହି ନୂଆ ପତିତ ଓ ଗୁହା ପତିତ ଘେନି ବାଳକୃଷ୍ଣ ଉପରେ ଅନେକ ସବାଲ ହେଲା ଓ ତାହା ଶୁଣିବାକୁ ବଡ଼ କୌତୁକ ହେଇଥିଲା।

ଏହି ଦିନ ଅପରାହ୍ନରେ ନାରାୟଣ ମହାନ୍ତି ଓ ଦର୍ଶନ ସିଂହ କନଷ୍ଟେବଲମାନଙ୍କର ଯୋବାନବନ୍ଦୀ ହେଲା। ନାରାୟଣ ସିଂହ କହିଲା କି ରାତ୍ର ଘ ୧୦ଣ୍ଟାଠାରୁ ଦୁଇ ଘଣ୍ଟା ପର୍ଯ୍ୟନ୍ତ ତାହାର ବିଟ ଥିଲା। ମନ୍ଦିର ସିଂହଦ୍ୱାର ଠାରେ ତାହାର ଓ ଦର୍ଶନ ସିଂହର ବିଟ ମିଶି ଅଛି। ଏଗାର ଘଣ୍ଟା ସମୟରେ ସେ ଦୁହେଁ ସେଠାରେ ଛିଡ଼ା ହୋଇ କଥାବାର୍ତ୍ତା କରୁଥଲେ ଏମନ୍ତ ସମୟରେ ବାପାଲୋ ମାଲୋ ବୋଲି ଡକାପାଡ଼ି ବାବାଜୀ ନହବତଖାନା ପାଖରେ ପଡ଼ିଗଲା ସେମାନେ ଧାଇଁ ଯାଇ ପଚାରିବାରେ ସେ କହିଲା 'ମୋତେ ପାଣି ଦେଲେ ମୁଁ କହିବି।' ଅଧଘଣ୍ଟାଯାଏ ପାଣି ଖୋଜିଲେ ଦୋକାନ ପଡ଼ି ଯାଇଥିବାରୁ ପାଣି ମିଳିଲା ନାହିଁ ତହୁଁ କନଷ୍ଟେବଲ ଦୁହେଁ ବାବାଜିର ଦୁଇ ଡେଣା ଧରି ଥାନାଆଡ଼କୁ ଚଳାଇ ନେଇଗଲେ ରଥଗଡ଼ାଠାରେ ବାବାଜୀ ପହୁଞ୍ଚି ନୀଳା ଓ ପତିତକୁ ଡାକିବାରେ ସେମାନେ ନଅରଦ୍ୱାର ବାରନ୍ଦାରୁ ଡେଇଁ ପଡ଼ି ଦୌଡି ଆସିଲେ ତହିଁଉତ୍ତାରୁ ନୀଳା ବେହେରା ଇତ୍ୟାଦିଙ୍କର କହିବାମତେ ପୁଲିସ ହେଡ଼ କନଷ୍ଟେବଲ ଓ ସବ୍ ଇନ୍‌ସପେକ୍ଟର ଆସି ପାଲକିରେ ଘେନି ଗଲେ ନାରାୟଣ ମହାନ୍ତି ସେହିଠାରୁ ରହିଲା ଓ ଦର୍ଶନ ସିଂହ ବାବାଜିକୁ ଥାନାରେ ଛାଡ଼ି ରାଜାଙ୍କ ନଅର ପହରା ଦେବାକୁ ଆସିଲା। ନାରାୟଣ ସିଂହ ଜେରାସବାଲରେ ବଡ଼ ହଡ଼ବଡ଼ାଇ ଗଲା। ସମୟ ବିଷୟରେ କେତେ କଅଣ କହିଲା କିଛି ସ୍ଥିର ରହିଲା ନାହିଁ ତାହା କହିବା ଅନୁସାରେ ପ୍ରାୟ ଏକଘଣ୍ଟାକାଳ ଏକ୨ ଘଡ଼ିରେ ବାରଟା ବାଜୁଥିଲା। ପ୍ରଥମେ ବକସୀଖାନା ଘଡ଼ିରେ ବାର ବାଜିଲା ତହିଁ ଅଧଘଣ୍ଟାରେ ନଅର ଘଡ଼ିରେ ବାର ବାଜି ପୁଣି କେତେବେଳେ ଜେଲ୍ଖାନା ଘଡ଼ିରେ ବାର ବାଜିଁଲା ପୁରୀର ଘଡ଼ିମାନ ଏହିପରି ଆଗ ପଛ ହୋଇ ବାଜୁଥାଏ। ଘ ୧୦ଣ୍ଟା ସମୟରେ ରାଜାଙ୍କ ନଅରଦ୍ୱାର ବାରନ୍ଦାରେ କଚେରୀ ହେଉଥିବାର ଓ ସେଠାରେ ନୀଳା ବେହେରା ଓଗେର କାହାରିକୁ ଦେଖି ନ ଥିବାର ମଧ କହିଲା ନାରାୟଣ ସିଂହ କହିଲା ବାବାଜୀ ଥରେ ବାପାଲୋ ମାଆଲୋ କହିଥିଲା ରଥଗଡ଼ା ପର୍ଯ୍ୟନ୍ତ ଆଉ କିଛି କହି ନ ଥିଲା। ମାତ୍ର ଦର୍ଶନ ସିଂହ କହିଲା କି ନହବଢ଼ଖାନାଠାରୁ ରଥଗଡ଼ା ପର୍ଯ୍ୟନ୍ତ ଅନୁକ୍ଷଣେ ବାପାଲୋ ମାଆଲୋ କହୁ ଥିଲା।

ତା୨୯ରିଖରେ ପ୍ରଥମେ ଗରିଧାରୀ ଲାଲ ଦାସ ହେଡ କନେଷ୍ଟବଲର ଯୋବାନବନ୍ଦୀ ହେଲା ସେ କହିଲା କି ତା୨୩ରିଖ ଫେବୃଆରୀ ସନ୍ଧ୍ୟା ସମୟରେ ବାବାଜିଙ୍କୁ ତାହାଙ୍କ ସଙ୍ଗୀ ଚାରିଜଣ ଓ ରାଜାଙ୍କ ଚପରାସୀ ଓ ଆଉ ଜଣେ ଚାକର ସହିତ ଥାନାଦ୍ୱାରଠାରେ ଦେଖି ଥିଲା ବାବାଜୀ କଥାବାର୍ତ୍ତା କରି ନଅର ଦିଗକୁ ଗଲେ। ସେହି ରାତ୍ର ଘ ୧୨ଣ୍ଟା ସମୟରେ ସେ ନିଦ୍ରାରୁ ଉଠି ଥାନା ବାରନ୍ଦାରେ ବସିଥିଲା ନୀଳବେହେରା ଆସି ବାବାଜୀ କଥା କହିବାରୁ ସେ କନେଷ୍ଟବଲ ସଙ୍ଗେ ଘେନି ରଥଗଡ଼ାପଦାକୁ ଯାଇ ବାବାଜୀ ଓ ସଙ୍ଗଲୋକଙ୍କୁ ଏବଂ କନେଷ୍ଟବଲଙ୍କୁ ଦେଖିଲା। ଦିୟାସଲାଇ ଜାଳି ବାବାଜିଙ୍କ ହାଲ ଦେଖି କୃପାସିନ୍ଧୁ ସବ୍ ଇନ୍ସେପ୍କଟରଙ୍କୁ ଡକାଇ ପଠାଗଲା। କୃପାସିନ୍ଧୁ ଆସି ବାବାଜିଙ୍କୁ ତଦାରକ କରି ଖଣ୍ଡେ ପାଲକି ଅଣାଇ ବାବାଜିଙ୍କୁ ଥାନାକୁ ଘେନି ଗଲା। ସେଠାରେ ବାବାଜିର ଇଜହାର ନିଆଗଲା ତହୁଁ ସେ (ଗିରିଧାରୀ) ବାବାଜୀଙ୍କୁ ସେହି ପାଲକିରେ ହାସପାତାଳକୁ ଘେନି ଗଲା। ସଙ୍ଗରେ କୃପାସିନ୍ଧୁ ବାବାଜିଙ୍କ ସଙ୍ଗୀ ଚାରିଜଣ ଏବଂ କନେଷ୍ଟବଲମାନେ ଥିଲେ କୃପାସିନ୍ଧୁ ଡାକ୍ତରଙ୍କୁ ବସାରୁ ଡାକିଆଣି ବାବାଜିଙ୍କୁ ତାହାଙ୍କ ଚିକିତ୍ସାରେ ରଖି ଦେଲେ। ଜେରାସବାଲରେ ଗିରିଧାରୀ କହିଲା କି ପ୍ରଥମ ଇତ୍ତଲାର ରିପୋର୍ଟ ଆପଣା ହାତରେ ଲେଖିଥିଲା। ଉକ୍ତ ରିପୋର୍ଟ ଆଦ୍ୟପ୍ରାନ୍ତ ବାବାଜୀ ସମ୍ମୁଖରେ ବାବାଜୀ ପାଲକି ସହିତ ଥାନାଦ୍ୱାରରେ ଥିବା ସମୟରେ ଲେଖିଥିଲା। ସେ ରିପୋର୍ଟରେ ନୀଳା ବେହେରାର ଯେ କଥା ଲେଖାଅଛି ତାହା ସେ (ଗିରିଧାରୀ) ଆପଣା ମନରୁ ଲେଖିଥିଲା। ଅର୍ଥାତ୍ ପୂର୍ବେ ନୀଳାବେହେରା ଯାହା କହିଥିଲା ତାହାକୁ ମନେ ରଖି ଲେଖିଥିଲା ଆଉ ବାବାଜିର କଥା ଯାହା ଲେଖାଅଛି ତାହା ବାବାଜୀ ଇଜହାର ଦେବା ସମୟରେ ବାବାଜିଙ୍କ କଥା କୃପାସିନ୍ଧୁ ଯେମନ୍ତ ବତାଇ ଦେଉଥିଲା ସେହିପରି ସେ (ଗିରିଧାରୀ) ଲେଖିଥିଲା।

ଏଥିଉତ୍ତାରୁ କୃପାସିନ୍ଧୁ ଦାସ ସବ୍‌ଇନ୍ସିପେକ୍ଟର ଯୋବାନବନ୍ଦୀ ହେଲା ଏଗୁହା ଗିରିଧାରିର ଡାକରାମମତେ ବାବାଜିଙ୍କ ନିକଟକୁ ଆସିବାଠାରୁ ହାସପାତାଳରେ ବାବାଜିଙ୍କୁ ପହୁଞ୍ଚାଇ କଳା ଡାକ୍ତରଙ୍କ ଜିମା କରିବା ପର୍ଯ୍ୟନ୍ତ ସବୁ ବୃତ୍ତାନ୍ତ ଉପରେ ଯେମନ୍ତ ଲେଖାଅଛି ସେହିପରି କହିଲା। ଜେରା ସବାଲରେ କହିଲା ଯେ ସେ ବାବାଜିଙ୍କୁ ଘେନି ଥାନାକୁ ଆସି ଇଜହାର ନେବା ସମୟରେ ପ୍ରଥମ ଇତ୍ତଲାଇ ରିପୋର୍ଟ କେତେଦୂର ଲେଖା ହୋଇଥିବାର ଦେଖିଥିଲା ତହିଁ ତଳକୁ ଗିରିଧାରୀ ଲାଲ ବାବାଜିଙ୍କ ଇଜହାର ଲେଖିଲା। ସେ(କୃପାସିନ୍ଧୁ) ପଚାରୁ ଥାଏ ବାବାଜୀ ଯାହା ଉତ୍ତର ଦେଉଥାଏ ଗିରିଦାରୀ ତାହା ଶୁଣି ଲେଖୁଥାଏ ସେ ନିଜେ ଗିରିଧାରିକୁ ବତାଇ ଦେଇ ନାହିଁ। ଯେଉଁଦିନ ଡାକ୍ତରଖାନାରେ ଆସାମିମାନଙ୍କୁ ବାବାଜି ମାଜିଷ୍ଟ୍ରେଟଙ୍କୁ ଚିହ୍ନାଇ ଦେଲା ସେ ଦିନ ସକାଳ ବେଳେ ସେ ଜ୧୫ଣ ରାଜାଙ୍କର ଚାକର ସେଠାକୁ ଘେନି ଯାଇଥିଲା ସେମାନଙ୍କୁ ବାବାଜିଙ୍କ ସମ୍ମୁଖରେ ଛିଡ଼ା କରିଦେବାର ବାବାଜୀ ତହିଁରୁ ଚାରିଜଣଙ୍କୁ ଚିହ୍ନାଇ ବାକୀ ଜ୧୧ଣ ମଧ୍ୟରେ କେହି ଅପରାଧୀ ନ ଥିବାରୁ ସେମାନେ ଫେରିଗଲେ। ମାଜିଷ୍ଟ୍ରେଟ ସାହେବ ଯୋବନବନ୍ଦୀ ଫାରମରେ କିମ୍ବା ସାଦା କାଗଜରେ ବାବାଜିର ଇଜହାର ଲେଖୁଥଲେ ତାହା ସେ ଠିକ କରି କହି ପାରିଲା ନାହିଁ।

ଏଥି ଉତ୍ତାରୁ ରାମରାଓ ଇନ୍ସ୍‌ପେକ୍ଟରର ଯୋବାନବନ୍ଦୀ ହେଲା। ଏ ଗୁହା ନଅରର ନକ୍ସା ଦେଖି ଯେଉଁ ସ୍ଥାନରେ ଯେସମସ୍ତ ଘଟନା ହେବାର ବାବାଜୀ ଚିହ୍ନାଇ ଦେଇଥିଲେ ସେସବୁ ଅଦାଲତରେ ଚିହ୍ନାଇ ଦେଲା ଓ ଆସାମୀ ଚିହ୍ନୋଟ ହେବା ଦିନ ମାଜିଷ୍ଟ୍ରେଟଙ୍କ ସାକ୍ଷାତକୁ ଆଠଜଣ ହିନ୍ଦୁ ଓ ଜ୬ଣ ହାଡି ଘେନି ଯାଇଥିବା ଓ ତହିଁ ମଧ୍ୟରୁ ଜ୫ଣକୁ ବାବାଜୀ ଚିହ୍ନାଇ ଦେଇଥିବାର କହିଲା। ଜେରାସବାଲରେ କହିଲା କି ବାବାଜୀ ଚିହ୍ନାଇ ଦେବା ସମୟରେ ହଲଫ କରିଥିଲେ କି ନାହିଁ ସେକଥା ତାହାକୁ ଜଣା ନାହିଁ। ଯେଉଁ୨ ଆସାମିଙ୍କୁ ବାବାଜୀ ଚିହ୍ନାଇ ଦେଇଥିଲା ସେମାନଙ୍କୁ ଅଦାଲତରେ ଉପସ୍ଥିତ ଥିବା ଆସାମିମାନଙ୍କ ମଧ୍ୟରୁ ବାଛି ଚିହ୍ନାଇ ଦେଲା। ଏଗୁହା ଉପରେ ନକ୍ସା ଏବଂ ଆସାମିଙ୍କ ଚିହ୍ନୋଟ ବିଷୟରେ ଅନେକ ଜେରାସବାଲ ହୋଇଥିଲା ମାତ୍ର କିଛି କୌତୁକ ଜନକ କଥା ବାହାରି ନ ଥିଲା।

ଏ ଉତ୍ତାରୁ ବିଦ୍ୟାଧର ଜୟସିଂହର ଯୋବାନବନ୍ଦୀ ହେଲା। ଏ ଗୁହା କେବଳ କପାସିଆ ଗଳିରେ ଖିଡକିଦ୍ୱାର ସାମନାରେ ତିନିହାର ମାଳି ବିଷ୍ଟା ଓ ଧୂଳିମିଶ୍ରିତ ହୋଇ ପଡିଥିବାର ଦେଖି ଭଲଲୋକଙ୍କ ସାକ୍ଷାତରେ ତାହାକୁ ଉଠାଇ ଆଣି ଥାନାରେ ଦେବାର କହିଲା ଓ ସେହି ମାଳି ଅଦାଲତରେ ଦେଖି ଚିହ୍ନିଲା। ଜେରାସବାଲରେ ଏ ଗୁହା କହିଲା କି ରବିବାର ସକାଳେ ନାରାୟଣ ବାବନପତିକୁ ନଅରଭିତରୁ ବାହାରି ନିକଟରେ ଥିବା ଗୋଟାଏ କୋଠା ଭିତରକୁ ଯିବାର ଦେଖିଥିଲା କିନ୍ତୁ ମାଜିଷ୍ଟ୍ରେଟଙ୍କ କଚେରିରେ ଯୋବାନବନ୍ଦୀ ଦେବା ବେଳେ ସେ କଥା କହି ନ ଥିଲା ଏବଂ ନାରାୟଣ ବାବନ ପତିକୁ କଚେରିରେ ଦେଖିଥିଲା କି ନାହିଁ ମନେ ନାହିଁ।

ଏହି ଦିନ ଶେଷ କଚେରିରେ ବାବୁ ନସିରାମ ଘୋଷାଲ ନୋଟିବ ଡାକ୍ତରଙ୍କ ଯୋବାନବନ୍ଦୀ ହେଲା। ଏ ଡାକ୍ତର କହିଲେ ଯେ ଶିବଦାସ ବାବାଜୀ ଦେହରେ ମାଡ଼ର ଚିହ୍ନ ଥିଲା। ଦେହ ସ୍ଥାନ୨ରେ ପୋଡ଼ି ଯାଇଥିଲା ଏବଂ ଗାଣ୍ଡିରୁ ରକ୍ତ ଓ ସୋଲ ବାହାରୁଥିଲା। ନାଡୀ ଦୂର୍ବଳ ଥିଲା ଓ ବଡ଼ ଦୁଃଖ ପାଉଥିଲା। ସେ(ଡାକ୍ତର) ତିନି ଚାରିଥର ଔଷଧ ଦେବାରେ ସକାଳ ବେଳକୁ କିଞ୍ଚିତ୍ ଭଲ ହୋଇଥିଲା। ପତିତ ଛଡ଼ା ଆଉ ତିନିଜଣ ସଙ୍ଗୀ ବାବାଜିଙ୍କ ସଙ୍ଗରେ ଡାକ୍ତରଖାନାକୁ ଆସି ସେବା କରୁଥିଲେ। ତହିଁଉତ୍ତାରୁ ପ୍ରତିଦିନ ଅନେକ ଲୋକ ମୋଫସଲରୁ ବାବାଜିଙ୍କ ନିକଟକୁ ଯିବା ଆସିବା କରୁଥିଲେ। ବାବାଜିଙ୍କୁ ଡାକ୍ତର ପଚାରିବାରେ ସେ ସେହି ରାତ୍ରରେ ସଂକ୍ଷେପରେ କହିଥିଲା ଯେ ରାଜା ତାହାକୁ ଏପରି କଷ୍ଟ ଦେଇଅଛନ୍ତି।

ବେଳ ନ ଅଣ୍ଟିବାରୁ ଏ ଦିନ ଏ ଗୁହା ଉପରେ ଜେରାସବାଲ ହୋଇପାରିଲା ନାହିଁ।

*ଉତ୍କଳ ଦୀପିକା-୧୮୭୮_ପୃଷ୍ଠା ସଂଖ୍ୟା-୬୫*

ଗତ ରବିବାର ପୁରୀ ମହାରାଜା ହାଜତକଇଦୀ ଅବସ୍ଥାରେ ଏ ନଗରରେ ପ୍ରବେଶ ହେଲେ ପୁରୀଠାରୁ କାଠଯୋଡିକୂଳପର୍ଯ୍ୟନ୍ତ ପାଲକିରେ ଆସିଥିଲେ ସେଠାରୁ ମୁନ୍‌ସି ଅଜିଜ ଖାନ୍ ଇନ୍‌ସ୍ପେକ୍ଟର ଓ କେତେଜଣ କନଷ୍ଟବଲ ମହାରାଜାଙ୍କୁ ଏକ ଭଡ଼ାଗାଡ଼ିରେ ବସାଇ ସନ୍ଧ୍ୟା ସମୟରେ ଜେଲଖାନାକୁ ଘେନି ଆସିଲେ। ମହାରାଜା ଆସିବା ବେଳେ ବିସ୍ତର ଲୋକ ତାହାଙ୍କୁ ବାଟରେ ଦେଖୁଥିଲେ ଓ ଜେଲଖାନା ସମ୍ମୁଖରେ ଏତେଲୋକ ଜମା ହୋଇଗଲେ ଯେମନ୍ତ

ଯାତ୍ରା ଲାଗିଥିବା ପ୍ରାୟ ଦିଶିଲା। ଓଡ଼ିଶାର ସର୍ବପ୍ରଧାନ ମାନ୍ୟବ୍ୟକ୍ତିର ଏ ପ୍ରକାର ଦୁରବସ୍ଥା ଦେଖି ସମସ୍ତେ ସନ୍ତାପିତ ହେଉଥିଲେ। ଜେଲଖାନା ଭିତରେ ମହାରାଜାଙ୍କୁ ଗୋଟିଏ ପୃଥକ୍ କୋଠରି ଦିଆଯାଇଅଛି ଓ ଏକଜଣ ପାଚକ ଓ ଜଣେ ଚାକର ତାହାଙ୍କ ସେବାନିମିତ୍ତ ଦିଆଯାଇଅଛି।

*ଉତ୍କଳ ଦୀପିକା-୧୮୭୮: ପୃଷ୍ଠା ସଂଖ୍ୟା-୫୯*

## ପୁରୀ ଦେବରାଜ ମନୁଷ୍ୟ କି?

ସାଧାରଣ ଅଜ୍ଞ ଲୋକଙ୍କ ବିବେଚନାରେ ଠାକୁର ରାଜା ମନୁଷ୍ୟ ନୋହନ୍ତି, 'ସେ ସ୍ୱୟଂ ଚଳନ୍ତି ବିଷ୍ଣୁ ଓ ଲକ୍ଷେ ରାଜାର ମଉଡମଣି'। ଆମ୍ଭେମାନେ ଚଳନ୍ତି ବିଷ୍ଣୁଙ୍କର ସାମାଜିକତା ସମ୍ବନ୍ଧରେ ଅନେକଥର ଅନେକ କଥା ଶୁଣିଥାଉଁ। ବର୍ତ୍ତମାନର ଚଳନ୍ତିବିଷ୍ଣୁଙ୍କର ପୂର୍ବପୁରୁଷ କୌଣସି ୨ ଚଳନ୍ତିବିଷ୍ଣୁ ଏକ ସମୟରେ ଯେଉଁ କୀର୍ତ୍ତିମାନ କରି ଯାଇ ଅଛନ୍ତି ତାହା ନିତାନ୍ତ ନରରାକ୍ଷସ ନୋହିଲେ ଯେପରି କର୍ମ କେହି କରିବ ନାହିଁ। ଅନେକ ପାଠକ ଅବଗତ ଥିବେ ଯେ, ପୂର୍ବକଳାରେ ଜଣେ ଚଳନ୍ତିବିଷ୍ଣୁଙ୍କର ପାନ ବାଗୁଲେଇ ଦିନକରେ ପାନରେ ଟିକିଏ ଅଧିକ ଚୂନ ଦେଇ ଥିଲା, ବିଷ୍ଣୁଙ୍କ କଳରେ ଚୂନ ଲାଗିଯିବାରୁ ସେ ବାଗୁଲେଇକୁ ସେତେ ଚୂନ ଖୁଆଇଲେ। ଏହିରୂପେ ଜଣ ଜଣଙ୍କର କୀର୍ତ୍ତି ବର୍ଣ୍ଣନା କଲେ ପତ୍ର ବଢ଼ିଯିବ। ବର୍ତ୍ତମାନ ବର୍ତ୍ତମାନର ଚଳନ୍ତିବିଷ୍ଣୁଙ୍କର ଗୋଟିଏ କୀର୍ତ୍ତି ପାଠକମାନଙ୍କୁ ଜଣାଉଅଛୁଁ।

ଦୀପିକା ଓ କେତେକ ବନ୍ଧୁଙ୍କ ପତ୍ରରୁ ଅବଗତ ହେଲୁଁ ଯେ, ଗତମାସ ୨୦ ତାରିଖ ରାତ୍ରରେ ଚଳନ୍ତିବିଷ୍ଣୁ, ଜଣେ ବାବାଜିକୁ ନଅରକୁ ଡକାଇ ନେଇ ଅନେକ ମାଡ଼ ମାଇଲେ, ଦେହରେ ନିଆଁଚେଙ୍କା ଦେଲେ, ଏଥିରେ ବିଷ୍ଣୁଙ୍କର ରାଗ ଶାନ୍ତି ନୋହିବାରୁ ବାବାଜିଙ୍କ ଅଣ୍ଡପ୍ରଣାଳୀରେ ଚୂନ ପୁରାଇ ଲୁହାରଡ଼ରେ ଖୁଞ୍ଚିଲେ, ମଳଦ୍ୱାରରେ ସୋଲ ପୁରାଇ ତହିଁରେ ନିଆଁ ଲଗାଇଲେ ଏବଂ ମୁହଁରେ ବିଷ୍ଠା ପୁରାଇଲେ। ଏଥିରେ ବାବାଜି ମଳାତୁଲ୍ୟ ହେଲାରୁ ତାହାକୁ ପାଚେରୀ ଡିଆଇଁ ନଳା ବାହାରକୁ ଫୋପାଡ଼ି ଦେଲେ। ସେ ରାତିଯାକ ସେହିପରି ଅବସ୍ଥାରେ ପଡ଼ିରହିଲା, ସକାଳ ହୁଅନ୍ତେ ଜଣେ କନଷ୍ଟବଲ ବାବାଜିକୁ ପାଇ ହସପିଟାଲକୁ ଘେନିଗଲା। ବାବାଜୀ ଉପରୋକ୍ତ ବିଷୟମାନ କହିବାରୁ ତଦନ୍ତ କରାଗଲା ମଧ୍ୟ ସ୍ୱୟଂ ଆର୍ମଷ୍ଟ୍ରଂ ସାହେବ ନଅର ମଧ୍ୟକୁ ଯାଇ ତଦନ୍ତ କଲେ। ତଦନ୍ତରେ ଅପରାଧ ସାବ୍ୟସ୍ତ ହେବାରୁ ଚଳନ୍ତିବିଷ୍ଣୁ ପୂଜା ପାଇବା ନିମନ୍ତେ ଶ୍ରୀମନ୍ଦିରକୁ (ହାଜିର) ବିଜେ କରିଅଛନ୍ତି। ଡାକ୍ତରସାହେବ ବାବାଜିର ଶରୀର ପରୀକ୍ଷା କରି କହିଅଛନ୍ତି ଯେ, ବାବାଜିର ପ୍ରାଣରହିବା ସଂଶୟ। ଏଥିରୁ ଜଣା ଯାଉଅଛି ଯେ, ବାବାଜି ଏପର୍ଯ୍ୟନ୍ତ ବଞ୍ଚି ଅଛି କିନା ସନ୍ଦେହ।

ପୁରୀର ଦେବରାଜ କାହିଁକି ଏପରି ଦୁଷ୍କର୍ମ କଲେ ଅବଧି ତାହା ନିଶ୍ଚୟରୂପେ ଜଣାଯାଇ ନାହିଁ। ଲୋକେ ଅନୁମାନ କରୁଅଛନ୍ତି ଯେ, "ରାଜା ଆପଣା ମନସ୍କାମନା ପୂର୍ଣ୍ଣ ହେବା ନିମନ୍ତେ ବାବାଜିଦ୍ୱାରା ନଅର ମଧ୍ୟରେ କୌଣସି ପ୍ରକାର କିମିଆଁ କରାଇଥିଲେ। ଏଥିରେ ବାବାଜି ସୁବିଧା ପାଇ ନଅରମଧ୍ୟରେ ଅପରାଧ ଘଟିତ ନାଟକର ଅଭିନୟ କରିଥିଲେ। ଏଣୁ ରାଜା ତାଙ୍କର ଏପରି ବ୍ୟବହାର କରିଅଛିନ୍ତି। ଲୋକଙ୍କ ଅନୁମାନ କେତେଦୂର ସତ୍ୟ ତାହା ଆମ୍ଭେମାନେ କହି ନ ପାରୁ। କିନ୍ତୁ ରାଜାଙ୍କର ବାବାଜିପ୍ରତି

ଏପରି ନିର୍ଦ୍ଦୟ ବ୍ୟବହାରରୁ ଲୋକମାନଙ୍କ ଅନୁମାନ  ଆମ୍ଭମାନଙ୍କ ମନକୁ ଘେନୁଅଛି।

ଏହି ଦେବରାଜ ସେଦିନ ଖୋରଧାଗଡ଼ ଫେରି ପାଇବା ନିମନ୍ତେ ସର୍‌ରିଚାର୍ଡ ଟେମ୍ପଲ ମହୋଦୟଙ୍କ ଛାମୁରେ ଦରଖାସ୍ତ ଦେଇଥିଲେ, ମଧ୍ୟ କେହି ୨ ପତ୍ରପ୍ରେରକ ତାଙ୍କ ସପକ୍ଷରେ ସଂବାଦପତ୍ରିକାରେ ଆପଣାର ମନ୍ତବ୍ୟ ପ୍ରକାଶ କରିଥିଲେ, ଏତେବେଳେ ସେହି ୨ ପତ୍ରପ୍ରେରକ ମହାଶୟମାନେ ମନେ ୨ ବିଚାର କରିବେ ଯେ, ବର୍ତ୍ତମାନର ଦେବରାଜ ପ୍ରକୃତ ରାଜ ପଦର ବାଚ୍ୟ କି ନା? ତାଙ୍କର ଏପରି ନିର୍ଦ୍ଦୟ ବ୍ୟବହାର ଅବଗତ ହୋଇ ଆମ୍ଭେମାନେ ପ୍ରଶ୍ନ କରୁଁ, ଆମ୍ଭମାନଙ୍କର ଦେବରାଜ ମନୁଷ୍ୟ କି?

ଓଡ଼ିଶାର ଯେଉଁ ଗଜପତିବଂଶର ପୂର୍ବପୁରୁଷ ଅନଙ୍ଗଭୀମ, ବୀରକେଶରୀ, ଲଲାଟେନ୍ଦୁ କେଶରୀ, ପ୍ରଭୃତି ରାଜାମାନେ ଭାରତ ବିଖ୍ୟାତ ଥିଲେ ଆଜି ସେହି ଗଜପତିବଂଶର କୁଳାଙ୍ଗାର ବର୍ତ୍ତମାନର ରାଜା ଦେଶ, କାଳ, ପାତ୍ର ବିବେଚନା ନ କରି ଏପରି ଗର୍ହୀତ କର୍ମ କଲେ ଓ ସେଥି ମନ୍ତେ ହାଜତରେ ରହିଲେ ଏହା ଅତ୍ୟନ୍ତ ଦୁଃଖର ବିଷୟ ଅଟେ। ପୁଣି ଯେଉଁ ଦେବରାଜ ଗତ ଶନିବାର ଦିନ କଟକ ନଗରରେ ମହାରାଜା ଉପାଧିର ଚିହ୍ନ ଧାରଣ କରିଥାନ୍ତେ ଆଜି ସେହି ରାଜା ନୀଜଦୋଷରୁ ସାମାନ୍ୟ ବେଶରେ ଜେଲ୍‌ଖାନାରେ ବନ୍ଦୀ ହୋଇ ରହିଲେ ଏହା ଆହୁରି ଦୁଃଖର କଥା।

*ବାଲେଶ୍ୱର ସମ୍ବାଦବାହିକା-୧୮୭୮: ପୃଷ୍ଠା ସଂଖ୍ୟା-୩୫*

## ପୁରୀର ଦେବରାଜ

ଅତ୍ୟନ୍ତ ଦୁଃଖର ସହିତ ପ୍ରକାଶ କରୁଅଛୁଁ ଯେ, ଦେବରାଜ ପୁଣି ହାଜତରେ ବନ୍ଦୀ ହୋଇଅଛନ୍ତି। ୧୦ ତାରିଖରେ ବାବାଜୀଙ୍କର ମୃତ୍ୟୁ ହେବା ସେଥିର ହେତୁ ୧୧ ତାରିଖରେ ବିଚାରର ଦିବସ ଧାର୍ଯ୍ୟ ହୋଇଥିଲା, ସେହି ନିରୂପିତ ଦିବସରେ ଦେବରାଜ ଦଉରା ସୁପର୍ଦ୍ଦ ହୋଇଅଛନ୍ତି। ପ୍ରଥମେ ଦଣ୍ଡବିଧିର ୩୨୬ ଧାରା ଅନୁସାରେ ଦେବରାଜଙ୍କ ଉପରେ ଅଭିଯୋଗ ହୋଇଥିଲା; ଏଥିମଧ୍ୟରେ ବାବାଜୀ ମରିଯିବାରୁ ୩୦୨ ଧାରାଅନୁସାରେ ଅଭିଯୋଗ ହେଲା। କେବଳ ଦେବରାଜ ଯେ ଦଉରା ସୁପୋର୍ଦ୍ଦ ହୋଇଅଛନ୍ତି ଏମନ୍ତ ନୋହେ, ତାଙ୍କ ସହିତ ଆଉ ୯ ଜଣ (ବୋଧ ହୁଏ ତାଙ୍କ ଅନୁଚର) ଦଉରା ସୁପୋର୍ଦ୍ଦ ହୋଇ ଅଛନ୍ତି।

ପୁରୀଜିଲାର ଦଉରା ବିଚାର ଅଳ୍ପଦିନ ତଳେ ହୋଇ ଯାଇଥିଲା, ଏଣୁ ଅନେକେ ମନେ କରୁଥିଲେ ଯେ, ପୁଣି ଦଉରା ବସିବାପର୍ଯ୍ୟନ୍ତ ରାଜା ହାଜତରେ ରହିବେ, କିନ୍ତୁ ସୁଖର ବିଷୟ ଯେ, ଦେବରାଜାଙ୍କ ନିମନ୍ତେ ଦଉରାର ବିଶେଷ ଇଜଲାସ ଏହିମାସ ୨୬ ତାରିଖରେ ବସିବାର ସ୍ଥିର ହୋଇଅଛି। ଦେବରାଜଙ୍କ ପକ୍ଷସମର୍ଥନ କରିବା ନିମନ୍ତେ ବାରିଷ୍ଟର ଆସିବେ। ଦେବରାଜାଙ୍କ କପାଳରେ କି ଅଛି ତାହା ତ୍ରିକାଳଦର୍ଶୀ ଭଗବାନ ଜାଣନ୍ତି। କିନ୍ତୁ ସାଧାରଣ କର୍ମରୁ ଅପରାଧଟି ଗୁରୁତର ବୋଲି ଶୁଭୁଅଛି।

*ବାଲେଶ୍ୱର ସମ୍ବାଦବାହିକା-୧୮୭୮: ପୃଷ୍ଠା ସଂଖ୍ୟା-୪୩*

## ବିବିଧ ସଂବାଦ

ପୁରୀର ଦେବରାଜ ବିଚାର ଦିନ ପର୍ଯ୍ୟନ୍ତ କଟକ ଜହେଲଖାନାରେ ରହିବା ନିମନ୍ତେ ପୁରୀରୁ ଚାଲାଣ ହୋଇ କଟକକୁ ଆସିଅଛନ୍ତି। ଦେବରାଜ ଯେତେବେଳେ ଜହେଲଖାନା ଭିତରେ ପଶିଲେ ସେତେବେଳେ ଜଏଲଖାନା ସାମନାରେ ଯାତ୍ରାପରି ଲୋକଙ୍କର ଜନତା ହୋଇଥିଲେ, ସମସ୍ତେ ସନ୍ତାପ କରିଥିଲେ। ଦେବରାଜଙ୍କ ରହିବା ନିମନ୍ତେ ଗୋଟିଏ ସ୍ୱତନ୍ତ୍ର କୋଠରୀ ଏବଂ ତାଙ୍କ ସେବା ନିମନ୍ତେ ଜଣେ ପୁଝାରୀ ଓ ଜଣେ ଚାକର ଦିଆ ଯାଇଅଛି।

x x x x x x

ଦେବରାଜଙ୍କ ମୋକଦ୍ଦମା ଚଳାଇବା ପାଇଁ କଲିକତାରୁ ଜଣେ ସାହେବ ବାରିଷ୍ଟର ଆସୁଅଛନ୍ତି, ସେ ବାଟ ଖରଚ ଛଡ଼ା ଦିନକୁ ହଜାରେ ଟଙ୍କା ନେବେ। କଲିକତାରୁ ବାହାରି ପୁଣି କଲିକତାରେ ପହୁଞ୍ଚିବା ପର୍ଯ୍ୟନ୍ତ ଯେତେ ଦିନ ଲାଗିବ, ତେତେ ହଜାର ଟଙ୍କା ଦେବରାଜ ଦେବେ।

x x x x x x

*ବାଲେଶ୍ୱର ସମ୍ବାଦବାହିକା-୧୮୭୮: ପୃଷ୍ଠା ସଂଖ୍ୟା-୪୭*

## ଦେବରାଜଙ୍କ ମୋକଦ୍ଦମା

ଗତ ୩୦ ତାରିଖରେ ନେଟିଭ ଡାକ୍ତରଙ୍କ ଉପରେ ଜେରାସଓ୍ୱାଲ ହୋଇଥିଲା। ସେଥିରେ ଡାକ୍ତର ଯାହା କହିଥିଲେ ସେଥିର ମର୍ମ ଏହି; - ପୋଡ଼ାଘା ଦ୍ୱାରା ଶରୀର ଦୁର୍ବଳ ହୋଇଯିବାରୁ ଧନୁଷ୍ଟାଙ୍କାରବାତ ଜନ୍ମିଥିଲା, ସେଥିରେ ଶିବଦାସ ବାବାଜିର ମୃତ୍ୟୁ ହେଲା ଇତ୍ୟାଦି। ଏଥିଉତ୍ତାରୁ ପୁରୀର ସିବିଲ ସର୍ଜନ ବି, ଏମ୍ ଗୁପ୍ତଙ୍କର ଜବାନବନ୍ଦୀ ହେଲା। ସେ ସାକ୍ଷ୍ୟ ଦେଇଅଛନ୍ତି ଯେ, ବାବାଜି ଯେଉଁ ଅବସ୍ଥାରେ ହସ୍‌ପିଟାଲକୁ ଆସିଥିଲା, ସେଥିରେ ମରିବାର ସମ୍ଭାବନା ଅଧିକ ଜଣା ପାଉଥିଲା। ଧନୁଷ୍ଟଙ୍କାର ବାତ ଜନ୍ମିବାରୁ ତାହାର ପ୍ରାଣ ବାୟୁ ବାହାରିଗଲା। ଜେରା ସଓ୍ୱାଲରେ ସେ କହିଲେ ଯେ, ପୃଥକ ୨ ପୀଡ଼ା, ଭିନ୍ନ ୨ ହୋଇ ଗୁରୁତର ନ ଥିଲା; କିନ୍ତୁ ସମସ୍ତ ମିଶି ସାଙ୍ଘାତିକ ହୋଇଥିଲା। ଯନ୍ତ୍ରଣା ମଧ୍ୟରେ ପୋଡ଼ାଘା ଅତ୍ୟନ୍ତ ଗୁରୁତର ଥିଲା।

ଏହିଦିନ ବେଳଓଳି ମୁଦଲାଙ୍କଠାରୁ ଜବାବ ନିଆଗଲା। ସେମାନେ ମେଜଷ୍ଟରୀରେ ଯାହା କହିଥିଲେ ସେହିଥିରେ ହିଁ ଭରିବାରୁ ଆଉ ଅଧିକ ନିଆ ନ ଗଲା।

ସୋମବାର ୧ ତାରିଖରେ ଶ୍ରୀଯୁକ୍ତ ଇଭାନ୍‌ସ ସାହେବ ଆସାମିଙ୍କ ପକ୍ଷରୁ ବକ୍ତୃତା କରିଥିଲେ। ଏହି ବକ୍ତୃତା ଶୁଣିବା ନିମନ୍ତେ କଲେକ୍ଟର ସାହେବ, ଆଲା ସାହେବ ପ୍ରଭୃତି ଇଂରେଜମାନେ ଏବଂ ଦେଶୀୟ ଅନେକ ଭଦ୍ରଲୋକ ଉପସ୍ଥିତ ହୋଇଥିଲେ। ବାରିଷ୍ଟର ସାହେବ କ୍ରମାଗତ ସାଢ଼େ ତିନି ଘଣ୍ଟା ପର୍ଯ୍ୟନ୍ତ ବକ୍ତୃତା କରିଥିଲେ। ତଦନ୍ତର ଆସାମିଙ୍କ ପକ୍ଷରୁ ସଫାଇ ଗୋହାଙ୍କ ଜବାନବନ୍ଦୀ ହେଲା। ସମସ୍ତ ଗୋହାଙ୍କ ଜବାନବନ୍ଦୀ ଓ ଜେରାରେ ପ୍ରାୟ ୩ ଦିନ ଗତ ହେଲା। ଆସାମିମାନଙ୍କ ପକ୍ଷର ସାକ୍ଷିମାନଙ୍କ ଜବାନବନ୍ଦୀ ଶେଷ ହେଲାରୁ ବୁଧବାର ଦିନ ଶେଷ କଚେରିରେ ଇଭାନ୍‌ସ ସାହେବ ପୁଣି ବକ୍ତୃତା କଲେ। ତାଙ୍କ ବକ୍ତୃତାର ମର୍ମ ଏହି ଯେ, ବାଦିଙ୍କ ପକ୍ଷର ସାକ୍ଷିମାନେ ପୋଲିଶ ଦ୍ୱାରା ଶିକ୍ଷିତ ଓ ବାବାଜି ଅନ୍ତକାଳରେ ଯେଉଁ ଇଜହାର

ଦେଇଥିଲା, ସେଥିରେ ଅନେକ ପ୍ରଭେଦ ଅଛି ଇତ୍ୟାଦି। ଆସାମିଙ୍କ ପକ୍ଷରୁ ଉତ୍ତମ ସଫାଇ ହୋଇଅଛି ଇତ୍ୟାଦି। ଅତଏବ ଆସାମିମାନେ ଦଣ୍ଡ ପାଇବାର ଯୋଗ୍ୟ ନୋହନ୍ତି।

ତହିଁ ଆରଦିନ ଗୁରୁବାର ପ୍ରଥମ କଚେରିରେ ଶ୍ରୀଯୁକ୍ତ ଗ୍ରେସ୍ ସାହେବ ବାରିଷ୍ଟର ସାହେବଙ୍କ ବକ୍ତୃତାର ଉତ୍ତର ଦେଲେ। ଏଦିନ ଉଭୟ ପକ୍ଷରୁ ତର୍କ ବିତର୍କ ହୋଇଥିଲା; ଏଥିରେ ମଧ୍ୟ ଅଘେଇ ଘଣ୍ଟା କାଳ ଗତ ହେଲା। ଆସେସରମାନେ ଏହି ଦିନରେ ଦୋଷୀମାନଙ୍କୁ ନିର୍ଦ୍ଦୋଷୀ ବୋଲି ରାୟ ଦେଲେ। ଶେଷରେ ଜଜ୍ ସାହେବ ଶନିବାର ବା ସୋମବାର ଦିନ ହୁକୁମ ଦେବାକୁ କହି ମିସଲ ବରଖାସ୍ତ କଲେ। ପାଠକେ! 'ସତଶୁକ୍ଳ, ମିଛକଳା, ପାଞ୍ଚୁଟା ଆଙ୍ଗୁଳି ଚାରିଟା ଜଳା।' ଗତ ସୋମବାର ଦେବରାଜଙ୍କ ଭାଗ୍ୟ ପରୀକ୍ଷା ହେଲା। ଏହି ଦିନରେ ବାରିଷ୍ଟରଙ୍କ ବକ୍ତୃତା ଆସାମିମାନଙ୍କର ସଫାଇ, ଆସେସରମାନଙ୍କ ରାୟ ସବୁ ବୃଥା ହୋଇଗଲା।

ଆମ୍ଭେମାନେ ପୂର୍ବେ ବୋଲିଥିଲୁଁ ଯେ, 'ସାଧାରଣଙ୍କ କର୍ଣ୍ଣକୁ ଅପରାଧଟି ଗୁରୁତର ବୋଲି ଶୁଣୁଅଛୁ' ଫଳରେ ରାଜାଙ୍କ କପାଳରେ ସେହିପରି ଗୁରୁଦଣ୍ଡ ଘଟିଲା। ଗତ ସୋମବାରଦିନ ଦଉରା ଇଜଲାସରେ ଦେବରାଜ ଏବଂ ତାହାଙ୍କର ଆଉ ୩ ଜଣ ସହଚର ଯାବଜୀବନ ନିମନ୍ତେ କାରାବାସର ଦଣ୍ଡାଜ୍ଞା ପାଇଅଛନ୍ତି। ଶୁଣିଲୁଁ ଦେବରାଜ ହାଇକୋର୍ଟରେ ଅପିଲ କରୁଅଛନ୍ତି। ଅପିଲରେ ଯାହା ହେବ ତାହା ପାଠକମାନଙ୍କୁ ପରେ ଜଣାଇବୁଁ।

*ବାଲେଶ୍ୱର ସମ୍ବାଦବାହିକା-୧୮୭୮: ପୃଷ୍ଠା ସଂଖ୍ୟା-୫୦*

## ପୁରୀର ଦେବରାଜ ଓ ଓଡ଼ିଶ୍ୟା

x x x ଗଜପତିବଂଶ ଓଡ଼ିଶ୍ୟାରେ କେମନ୍ତ ଖ୍ୟାତିପନ୍ନ ଓ କ୍ଷମତାବାନ୍ ଥିଲେ ଏବଂ ସେମାନଙ୍କ ଜୟଧ୍ୱଜା ଓଡ଼ିଶ୍ୟା ଛଡ଼ା ଉତ୍ତରେ ତ୍ରିବେଣୀ ଓ ଦକ୍ଷିଣେ ଗୋଦାବରୀ ପର୍ଯ୍ୟନ୍ତ କେମନ୍ତ ଫରହର ହୋଇ ଉଡୁଥିଲା ତାହା ଅନେକଙ୍କୁ ଗୋଚର, ଇତିହାସ ଏବଂ ଠାବେ ୨ ଗଜପତି ବଂଶର କୀର୍ତ୍ତି ସେଥର ପରିଚୟ ଦେଉଅଛି। ବର୍ତ୍ତମାନ ଗଜପତି ବଂଶର ସେଦିନ ନାହିଁ, ସେ ଗୌରବ, ସେ କ୍ଷମତା ନାହିଁ। କେବଳ ଦେବରାଜ ବୋଲି ହିନ୍ଦୁ ସମାଜରେ ଯାହା କିଛି ଆଦର। ଯେଉଁଦିନୁ ଲଲାଟବାନ୍ ଲଲାଟେନ୍ଦ୍ର କେଶରୀ ଗତାୟୀ ହେଲେଣି, ଯେଉଁଦିନୁ ମୁସଲମାନ ଜୟପତାକା ଓଡ଼ିଶ୍ୟାର ଉଡ୍ଡୀନ ହେଲା, ସେହିଦିନୁ ଗଜପତି ବଂଶର ରାଜଶ୍ରୀ କ୍ରମେ ୨ ହତ ହୋଇ ଗଲାଣି ଗୋଟିଏ କଥା ଅଛି "ବଂଶବୁଡ଼ିବା ବେଳକୁ ଘୋଡ଼ାମୁହାଁ ପୁଅ ଜନ୍ମେ" ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶ୍ୟା ଜୟ କଲା ଉତ୍ତାରୁ ଗଜପତିବଂଶର ଶେଷ ରାଜା ମୁକୁନ୍ଦଦେବ ଯେବେ ଅପରିଣାମଦର୍ଶୀ ଅମାତ୍ୟ ବୁଦ୍ଧିରେ ପଡ଼ି ନ ଥାନ୍ତେ, ତେବେ ଗଜପତି ବଂଶର ଶେଷ ସତ୍ତ୍ୱ ଖୋରଧାଗଡ଼ କସ୍ମିନ କାଳେ x x x ହୋଇ ନ ଥାନ୍ତା। ସେ ଯାହା ହେଉ "ଗତସ୍ୟ ଶୋଚନ ନାସ୍ତି, ଶେଷଷ୍ୟ ରକ୍ଷଣଂ କୁରୁ" ଅତ୍ୟନ୍ତ ଦୁଃଖର ବିଷୟ ଯେ, ଆମ୍ଭମାନଙ୍କ ବର୍ତ୍ତମାନର ଦେବରାଜ ନିଜ ଦୋଷରୁ "ଶେଷ" ଅର୍ଥାତ୍ ହିନ୍ଦୁ ସମାଜରେ ଗଜପତି ବଂଶର ଯେଉଁ ଆଦର ଥିଲା, ତାହା ହରାଇ ବସିଲେ!!! ହିନ୍ଦୁ ସମାଜରେ ଗଜପତି ବଂଶର ଯେଉଁ ଆଦର ଥିଲା ସେଥିରେ ସାଧାରଣଙ୍କର କିଛି ଫଳଶ୍ରୁତି ନ ଥିଲା; କେବଳ ଗଜପତିବଂଶର ମହତ

ଉପକାର ହେଉଥିଲା, ପଶ୍ଚିମାବାସୀ କି ରାଜା କି ସାଧାରଣ ଲୋକେ ଦେବରାଜାଙ୍କୁ ବିପୁଳ ଅର୍ଥ ଦେଉଥିବା ସେଥିର ମହତ ଦୃଷ୍ଟାନ୍ତ ଅତ୍ୟନ୍ତ ଦୁଃଖର ବିଷୟ ଯେ ବର୍ତ୍ତମାନରେ ଦେବରାଜଙ୍କ ଅମଳଦାରୀରେ ତାହା ବ୍ୟତିକ୍ରମ ଘଟିଲା।

ପୂର୍ବେ ରାଜାମାନେ ଅସଂଖ୍ୟ ନରହତ୍ୟା କରୁଥିଲେ, କଥା କଥାରେ ମିଛ ମାଛି ମାରିଲାପରି ମହାପ୍ରାଣୀ ମନୁଷମାନଙ୍କୁ ଚିପି ଦେଉଥିଲେ, ଆଜି କି ସେଦିନ ଅଛି? ବର୍ତ୍ତମାନର x x x ଲୋକଙ୍କୁ ଅବଶ୍ୟ ପ୍ରଭୁ ମହାରାଜା ବୋଲିବାକୁ ହେବ, ଯେଉଁ ରାଜାମାନଙ୍କ ଦପ୍ତରରେ ସାକ୍ଷାତ୍ ସମ୍ବନ୍ଧରେ ପ୍ରଜା ପାଳନର ଭାର ଅଛି ସେମାନେ ସେସ୍ଥଳେ x x x କରି ପାରୁନାହାନ୍ତି ସେସ୍ଥଳେ x x x ରାଜାଙ୍କର x x x ରହିବ କିଏ? ତଥାଚ ଦେବରାଜଙ୍କର ବର୍ତ୍ତମାନ ଅବସ୍ଥାରେ ଅନେକ ଲୋକ ସହାନୁଭିତି ଦେଖାଇଥିଲେ, ସେହି ସହାନୁଭୂତି ଦେଖାଇଥିଲେ, ସେହି ସହାନୁଭୂତି କେବଳ ବ୍ୟକ୍ତିବିଶେଷ ନିମନ୍ତେ ନୋହେ, ଗଜପତି ବଂଶ ନିମନ୍ତେ ଅଟେ।

ପ୍ରକୃତ କଥା ବୋଇଲେ କେହି ଦୋଷ ଦେଇ ପାରିବେ ନାହିଁ। ବାସ୍ତବରେ ଗଜପତି ବଂଶ ଅନେକ ଦିନରୁ ଲୋପ ହେଲାଣି। ସେହି ବଂଶର ଜଣେ ଅମାତ୍ୟ ଗୋବିନ୍ଦ ବିଦ୍ୟାଧର ୧୫୦୩ ମଶୀହାରେ ଗଜପତି ସିଂହାସନର ଉତ୍ତରାଧିକାରୀ ଗଙ୍ଗାବଂଶର ଶେଷରାଜା ବିଖ୍ୟାତ ପ୍ରତାପରୁଦ୍ରଙ୍କର ପୁଅମାନଙ୍କୁ ବଧ କରି ଆପେ ରାଜା ହୋଇଥିଲେ, ତଦନ୍ତର ତେଲଙ୍ଗା ମୁକୁନ୍ଦଦେବ କିଛିଦିନ ରାଜତ୍ୱ କରିଥିଲେ। ଶେଷରେ ଦିନେଇ ବିଦ୍ୟାଧର ଶେଷରାଜାଙ୍କୁ ହତ କରି ନିଜ ପୁତ୍ରକୁ ରାଜା କରାଇ ଥିଲେ, ଫଳତଃ ବର୍ତ୍ତମାନ ଖୋର୍ଦ୍ଧା ରାଜଗଣର ଆଦିପୁରୁଷ ଦନେଇ ଥିଲେ। ସାରକଥା ଏତିକି ବର୍ତ୍ତମାନ ରାଜାଙ୍କ ପୂର୍ବପୁରୁଷମାନେ ଗଜପତି ସିଂହାସନର ଉତ୍ତରାଧିକାରୀ ଥିବା ହେତୁରୁ ଦେବରାଜା ବୋଲି ବୋଲାଇ ଆସୁଥିଲେ, ଅତ୍ୟନ୍ତ ଦୁଃଖ, ଅତ୍ୟନ୍ତ ପରିତାପ ଓ ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ, ବର୍ତ୍ତମାନର ଦେବରାଜାଙ୍କ ସମୟରେ ସେହିବଂଶରେ କାଳୀ ଲାଗିଲା!!!!

*ବାଲେଶ୍ୱର ସମ୍ବାଦବାହିକା-୧୮୭୮: ପୃଷ୍ଠା ସଂଖ୍ୟା-୫୧*

ଆମ୍ଭେମାନେ ଗତ ପତ୍ରିକାରେ ଦେବରାଜ ଓ ତାହାଙ୍କର ତିନିଜଣ ଅନୁଚର ଦଣ୍ଡ ପାଇଥିବା କଥା ଲେଖିଥିଲୁଁ, ମାତ୍ର ଦୀପିକାରୁ ଅବଗତ ହେଲୁଁ ଯେ ଦେବରାଜ ଦିବ୍ୟସିଂହ ଦେବ ଓ ରାଜାଙ୍କ ଚାକରଙ୍କ ମଧ୍ୟରୁ ଚାରିଜଣ ଅର୍ଥାତ୍ ସୁର୍ଜନଉପାଧ୍ୟା ଜମାଦାର, ଗୋପୀ ରାଉତରା, ଗୋପାଳଦାସ ହାକିମେଣ୍ଟ ଏବଂ ନାରାୟଣ ବାମନପତି ପୁରୋହିତ ଏରୂପ ପାଞ୍ଚଜଣ ଯାବଜ୍ଜୀବନ ଦୀପାନ୍ତର ବାସର ଦଣ୍ଡାଜ୍ଞା ପାଇଅଛନ୍ତି।

ଉକ୍ତ ମୋକଦମାର ବିଚାରପତି ଶ୍ରୀଯୁକ୍ତ ଡିକିନ୍‌ସସାହେବ ଗତ ବୃହସ୍ପତିବାର କଟକରୁ ଯାତ୍ରା କରିଅଛନ୍ତି।

*ବାଲେଶ୍ୱର ସମ୍ବାଦବାହିକା-୧୮୭୮: ପୃଷ୍ଠା ସଂଖ୍ୟା-୫୩*

# ଦେବରାଜଙ୍କ ମୋଦଦ୍ଦମା

ଆମ୍ଭେମାନେ ପୂର୍ବେ ବୋଲି ଥିଲୁଁ ଯେ, ଦେବରାଜଙ୍କ ମୋକଦ୍ଦମା ଯେଶନ ଅଦାଲତରେ ବିଚାର ହେବାକୁ ଯେତେଦିନ ଲାଗିଥିଲା, ଉଚ୍ଚତମ ଅଦାଲତରେ ତେତିକି ଦିନ ଲାଗିବ, ବାସ୍ତବରେ ତାହି ହେଲା। ଗତ ୬ ତାରିଖ ସୋମବାରଠାରୁ ବିଚାରକାର୍ଯ୍ୟ ଆରମ୍ଭ ହେଲା, ତା ୧୩ରିଖରେ ବିଚାର ଶେଷ ହେଲା। ଜଷ୍ଟିଶ ଏସ୍‌ସେଲି, ଜଷ୍ଟିଶ ଜେକ୍‌ଶନ ଏବଂ ଚିଫ୍ ଜଷ୍ଟିଶ ଗାର୍ଥ ମହୋଦୟ ପର୍ଣ୍ଣାଧିବେଶନରେ ମୋକଦ୍ଦମା ବିଚାର କରିଥିଲେ। ଦେବରାଜଙ୍କ ପକ୍ଷରୁ ଶ୍ରୀଯୁକ୍ତ କଭାନ୍‌ସ ସାହେବ ଓ ଶ୍ରୀଯୁକ୍ତ ବ୍ରାନ୍‌ଶନ ସାହେବ ଏବଂ ଅନ୍ୟାନ୍ୟ ଆସାମିଙ୍କ ପକ୍ଷରୁ ବାବୁ ମନୋମୋହନ ଘୋଷ ବାରିଷ୍ଟର ନିଯୁକ୍ତ ହୋଇ ଥିଲେ। ଲିଗଲ ମେମ୍ବରେନସର ଏବଂ ଏଡ୍‌ଭୋକେଟ ଜନରଲ ଉଭୟେ ସରକାରବାହାଦୁରଙ୍କ ଦକ୍ଷ ସମର୍ଥନ କରିଥିଲେ। ଏ ଉଭୟଙ୍କୁ ମୋକଦମାର ସୁତ୍ର ଦେଖାଇ ଦେବା ନିମନ୍ତେ ପୂର୍ବୋକ୍ତ ଡେଃ ମାଃ ଓ ଡେଃ କଲେକ୍‌ଟର ପୁରୀରୁ ପ୍ରେରିତ ହୋଇ ଥିଲେ। ବିଚାରପତି ଏବଂ ବାରିଷ୍ଟରମାନଙ୍କ ମଧ୍ୟରେ ଯେପରି ତର୍କ ବିତର୍କ ହୋଇଥିଲା, ସେଥିର ସାରାଂଶ ଇଂଲିଶମେନରେ ପ୍ରକାଶିତ ହୋଇ ଅଛି। ଆମ୍ଭମାନଙ୍କର ଏହି କ୍ଷୁଦ୍ର ପତ୍ରିକା ବାହକ ସେହି ସାରାଂଶର ସାରାଂଶକୁ ସୁଦ୍ଧା ବହନ କରିବାକୁ ଅକ୍ଷମ। ଏଣୁ ଆମ୍ଭେମାନେ ସେଥିରୁ ନିବୃତ୍ତ ହେଲୁଁ, କେବଳ ମୋକଦମାର ବିଚାର ଫଳ ପାଠକମାନଙ୍କୁ ଜଣାଉ ଅଛୁଁ ; -

ଆମ୍ଭେମାନେ ପ୍ରଥମେ (ତହତ ଅଦାଲତରେ ମୋକଦମା ଥିବା ସମୟରେ) ବୋଲି ଥିଲୁଁ ଯେ, "ସାଧାରଣଙ୍କ କର୍ଣ୍ଣକୁ ଅପରାଧଟି ଗୁରୁତର ବୋଲି ଶୁଭୁଅଛି" ଫଳେ ସେଶନ ଅଦାଲତରେ ରାଜାଙ୍କ କପାଳରେ ସେହିପରି ଦଣ୍ଡ ଘଟିଥିଲା। ଉଚ୍ଚତମ ଅଦାଲତଙ୍କ ବିବେଚନାରେ ମଧ ତାହି ହେଲା। କେବଳ ଦେବରାଜାଙ୍କର ଦୁଇଜଣ ଚାକର ଖଲାସ ପାଇ ଅଛନ୍ତି।

ଏତେବେଳେ ସେଥି ନିମନ୍ତେ ଆମ୍ଭମାନଙ୍କର (ଓଡ଼ିଆମାନଙ୍କର) ଆଉ ଭାଳିବା ଉଚିତ ନୋହେ। ଦେବରାଜଙ୍କର କମାଣି ଯାହାଥିଲା କପାଳରେ ତାହି ଘଟିଲା। ଦେବରାଜଙ୍କ ସ୍ତ୍ରୀ ଏବଂ ପୁତ୍ର ନିମନ୍ତେ ଆମ୍ଭମାନଙ୍କ ମନରେ ଅତ୍ୟନ୍ତ ଦୁଃଖ ହେଉଅଛି; କିନ୍ତୁ ଉକ୍ତ ଦେବରାଜ ନିମନ୍ତେ ଆମ୍ଭମାନଙ୍କ ମନରେ ତାଦୃଶ ଦୁଃଖଜାତ ହେଉ ନାହିଁ; କାରଣ ରାଜା ଦିବ୍ୟସିଂହଦେବ ମୁର୍ଖ ଓ ଚାଟୁବାଦୀ ଅମାତ୍ୟମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ଯେରୁପ ଆଚାର ବ୍ୟବହାର ଶିକ୍ଷା କରିଥିଲେ ପରିଣାମରେ ତାଙ୍କର ସେହିପରି ଫଳ ହେଲା। ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ।

ଶେଷ କଥା ଏହି; - "ଓଡ଼ିଶ୍ୟା ବା ଖୋରଧାର ସ୍ୱାଧୀନ ଏବଂ ଶେଷ ରାଜା ମୁକୁନ୍ଦ ଦେବ ବୀରତ୍ୱ ଦେଖାଇ ବନ୍ଦୀ ହୋଇଥିଲେ, ସେହି ବଂଶର ପେନ୍‌ଶନ ଭୋଗୀ ରାଜା ଦିବ୍ୟସିଂହ ଦେବ ବାବାଜିକୁ ହତ୍ୟା କରି ବନ୍ଦୀ ହେଲେ" ଓଡ଼ିଶ୍ୟାର ଇତିହାସରେ ଚିରକାଳ ନିମନ୍ତେ ଏହା ଲେଖା ହୋଇ ରହିବ।

*ବାଲେଶ୍ୱର ସମ୍ବାଦବାହିକା-୧୮୭୮: ପୃଷ୍ଠା ସଂଖ୍ୟା-୬୨*

ଦୀପିକାରୁ ଅବଗତ ହେଲୁଁ ଯେ, ଗତ ତା ୨ ୩ରିଖ ଗୁରୁବାର ଦିନ ପ୍ରାତଃକାଳରେ ଦେବରାଜ ବନ୍ଦୀ ଅବସ୍ଥାରେ ବତିଘର ଦେଇ ଷ୍ଟୀମର ଯୋଗେ କଲିକତାକୁ ଗଲେ। ନଗରବାସୀମାନେ ନ ଉଠଉଣୁ ପୋଲିଶ ଦେବରାଜଙ୍କୁ ଘୋଡ଼ାଗାଡ଼ିରେ ଚଢ଼ାଇ ଜେଲଖାନା ଠାରୁ ଯୋବରାଘାଟ ପର୍ଯ୍ୟନ୍ତ ଘେନିଗଲେ। ତହୁଁ ରାଜା ଦିବ୍ୟସିଂହଦେବ ଷ୍ଟୀମରରେ ଚଢ଼ି ବତିଘରକୁ ଗଲେ। ଯେତେବେଳେ ରାଜା ଦିବ୍ୟସିଂହଦେବ ପୋଲିଶ ପ୍ରହରୀଦ୍ୱାରା ବେଷ୍ଟିତ ହୋଇ ଷ୍ଟୀମର ଉପରେ ବତିଘର ଆଡ଼କୁ ଗଲେ, ତେତେବେଳେ ତତ୍ରସ୍ଥ ଲୋକେ ଉକ୍ତ ବିଷୟ ଜାଣିପାରିଲେ।

ସରକାରବାହାଦୂର ଦିନ ବେଳରେ ରାଜାଙ୍କୁ ଜେହେଲଖାନାରୁ ନ ନେଇ ଭୋର ସମୟରେ କାହିଁକି ନେଲେ ସେଥିର କାରଣ ଅବଧି ଜଣା ପଡ଼ି ନାହିଁ। ଦିନ ବେଳରେ ଘେନିଗଲେ ଦର୍ଶକମାନଙ୍କ ମନରେ କଷ୍ଟ ହେବ ଏହା ଭାଳି ଯେବେ ସରକାର ବାହାଦୂର ଭୋର ସମୟରେ ଘେନିଯିବାର ଆଦେଶ କରିଥାନ୍ତି, ତେବେ ବଡ଼ ସୁଖର କଥା; ନଚେତ୍ ଆଉ କୌଣସି କଥା ମନରେ ପାଞ୍ଚି ଏଭଳି କରିଥାନ୍ତି, ତେବେ ବଡ଼ ଦୁଃଖର ବିଷୟ। କାରଣ ଓଡ଼ିଆମାନଙ୍କ ପରି ରାଜଭକ୍ତ, ବିଶ୍ୱସ୍ତ, ସହିଷ୍ଣୁ ଓ ଆଜ୍ଞାଧୀନ ଜାତି ଭାରତବର୍ଷରେ ଆଉ କୌଣସି ଜାତି ଅଛନ୍ତି କି ନା ସନ୍ଦେହ। ଏମନ୍ତ ସ୍ଥଳେ ସରକାରବାହାଦୂର ଯେବେ ଦିନ ବେଳରେ ରାଜାଙ୍କୁ ନେବା ବିଷୟରେ କୌଣସି ବୃଥା ପାଞ୍ଚି ଥାଆନ୍ତି, ତେବେ ସେହି ପଞ୍ଚ ଓଡ଼ିଆମାନଙ୍କୁ ଅପମାନ ଓ ଅବିଶ୍ୱାସ କରିବା ଭିନ୍ନ ଆଉ କିଛି ନୋହେ। ଫଳ କଥା ଏହି, ଓଡ଼ିଆମନଙ୍କର ଆଉ କୌଣସି ଅଧିକ ଗୁଣ ଥାଉ ଅବା ନ ଥାଉ, ରାଜଭକ୍ତି, ଆଜ୍ଞାଧୀନତା, ବିଶ୍ୱସ୍ତତା ଓ ସହିଷ୍ଣୁତା ଗୁଣରେ ଏମାନେ ଅଳଙ୍କିତ।

ବାସ୍ତବରେ ରାଜା ଦିବ୍ୟସିଂହଦେବଙ୍କ ଅଭାବରେ ଓଡ଼ିଶ୍ୟାର କିଛି କ୍ଷତି ହେବ ନାହିଁ କି ତାହାଙ୍କ ବର୍ତ୍ତମାନରେ ଓଡ଼ିଶ୍ୟାର କୌଣସି ଉପକାର ହେଉ ନ ଥିଲା। ତେବେ ଧର୍ମସ୍ଥାନର ଅଧିକାରୀ ବୋଲି ତାହାଙ୍କର ଯେଉଁ ମାନ୍ୟ ଥିଲା ସେହି ମାନ୍ୟଦ୍ୱାରା କେବଳ ତାଙ୍କର ଉପକାର ହେଉଥିଲା, ସେଥିରେ ସାଧାରଣଙ୍କର ଉପକାର କି ଅପକାର କିଛି ହେଉ ନ ଥିଲା। ଏମନ୍ତସ୍ଥଳେ ଓଡ଼ିଆମାନେ ଆପଣାର ପାଳନକର୍ତ୍ତା ସରକାର ବାହାଦୂରଙ୍କ ବିରୁଦ୍ଧରେ ଓ ରାଜାଙ୍କ ସପକ୍ଷରେ ମନମଧରେ ଯେ ଆଉ କିଛି ପାଞ୍ଚନ୍ତେ ଏହା ନିତାନ୍ତ ଅସମ୍ଭବ।

ରାଜା ଦିବ୍ୟସିଂହଦଦେବ ଆଣ୍ଡାମାନ ଦ୍ୱୀପପୁଞ୍ଜରେ କେଉଁ ଦ୍ୱୀପରେ ଓ କି ଅବସ୍ଥାରେ ରହିବେ ତାହା ଅବଧି ଜଣା ଯାଇ ନାହିଁ। ଏତେବେଳେ ରାଜା ଦିବ୍ୟସିଂହଦେବଙ୍କର ଆଉ କୌଣସି ଉପାୟ ନାହିଁ। ସରକାର ବାହାଦୂରଙ୍କର କେବଳ ଅନୁଗ୍ରହ ତାଙ୍କ ନିସ୍ତାରର ଏକ ମାତ୍ର ଉପାୟ। ସରକାର ବାହାଦୂର ତାଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କଲେ ଅନ୍ୟାୟ ହେବ ନାହିଁ। ଯେବେ ସରକାର ବାହାଦୂର ଅନୁଗ୍ରହ କରି ରାଜାଙ୍କୁ ଖଲାସ କରି ଦେବେ, ତେବେ ଓଡ଼ିଆମାନେ ଅବଶ୍ୟ ଆନନ୍ଦିତ ହେବେ ଓ ଚିରକାଳ ସରକାର ବାହାଦୂରଙ୍କର ଏହି ଅନୁଗ୍ରହକୁ ପାସୋରିବେ ନାହିଁ, ରାଜା ଓ ରାଜାପରିବାରଙ୍କର କୃତଜ୍ଞତିର ସୀମା ରହିବ ନାହିଁ।

*ବାଲେଶ୍ୱର ସମ୍ବାଦବାହିକା-୧୮୭୮: ପୃଷ୍ଠା ସଂଖ୍ୟା-୬୮*

# ପୁରୀରାଜାଙ୍କ ମୋକଦ୍ଦମାରେ
# ହାଇକୋର୍ଟର ନିଷ୍ପତ୍ତି

ମୋକଦ୍ଦମାର ସମସ୍ତ ବିବରଣ ଏଥିପୂର୍ବେ ଲେଖା ଯାଇଅଛି। ବର୍ତ୍ତମାନ କେବଳ ହାଇକୋର୍ଟର ଜଜମାନଙ୍କର ନିଷ୍ପତ୍ତିର ସାରାଂଶ ପ୍ରକାଶ କରୁଅଛୁଁ। ଯଥା;-

ବିଚାରପତି ସର ରିଚାର୍ଡ ଗାର୍ଥ - ଆମ୍ଭ ବିବେଚନାରେ ତିନିଜଣ ଆସାମିଙ୍କ ସମ୍ପର୍କରେ ସେସନଜଜଙ୍କ ବିଚାର ବାହାଲ ରହିବାର ଉଚିତ। ଶିବୁଦାସ ପଞ୍ଚାନନ ଗ୍ରାମରେ କେତେବର୍ଷ ହେଲା ବାସ କରୁଥିଲା। ଏ ଲୋକ ଅତି ପବିତ୍ର ଥିଲା ଓ ସହସ୍ର୨ ଲୋକ ଆରୋଗ୍ୟ ଲାଭ କରିବା କାରଣ ଏହା ନିକଟକୁ ଯାଉଥିଲେ। ବିଚାରପତି (ଏହିଠାରେ ଶିବଦାସ ମଠରୁ ବାହାରିବାଠାରୁ ମରିଯିବା ପର୍ଯ୍ୟନ୍ତ ଯେ ସମସ୍ତ ଘଟନା ଯୋବାନବନ୍ଦିରୁ ପ୍ରକାଶ ପାଇଅଛି ସେ ସମସ୍ତ ବର୍ଣ୍ଣନ କରି) କହିଅଛନ୍ତି କି ଶିବୁଦାସର ଯୋବାନବନ୍ଦୀ ତାହାର ଚାରିଜଣସଙ୍ଗୀ ଓ ଗୋପିସିଂହର ଗୁହାଇଦ୍ୱାରା ସମସ୍ତ ପ୍ରଧାନ ବିଷୟରେ ପୋଷକତା ହୋଇଅଛି ଓ ତାହା ଅବିଶ୍ୱାସ କରିବାର କୌଣସି କାରଣ ନାହିଁ। ବ୍ରାନ୍ସନ୍ ସାହେବ ତର୍କ କରନ୍ତି କି ପୁରୀରାଜାଙ୍କ ପରି ଜଣେ ପବିତ୍ର ଓ ମହତ୍ ଲୋକଠାରେ ଏପରି ଅପରାଧ ହେବା ଅସମ୍ଭବ। ଆମ୍ଭେ ଏକଥାରେ ଐକ୍ୟଅଛୁଁ ଓ ଆମ୍ଭେ ଏହା ଅସମ୍ଭବ ଜ୍ଞାନ କରନ୍ତୁ ଯଦ୍ୟପି କି ରଜାଙ୍କର ସ୍ୱଭାବ ଦୟାଶୀଳ ଏବଂ ଧାର୍ମିକ ଥିବାର ପ୍ରମାଣ ହୋଇଥାନ୍ତା ଯେ ପ୍ରମାଣର ଆବଶ୍ୟକ ହୁଅନ୍ତା ନାହିଁ। ଆସାମୀ ପକ୍ଷରୁ ଜଣେ ବଙ୍ଗପ୍ରଦେଶର ବିଖ୍ୟାତ ବାରିଷ୍ଟର ନିଯୁକ୍ତ ହୋଇଥିଲେ ସେ ରାଜଗୁରୁ ଅଥବା ଅନ୍ୟଗୁହାଙ୍କୁ ରାଜାଙ୍କ ଚରିତ୍ର ବିଷୟରେ ପ୍ରଶ୍ନ କରିଥାନ୍ତେ ଅଥବା ସ୍ୱତନ୍ତ୍ର ସାକ୍ଷୀ ଦେଇଥାନ୍ତେ। ତାହା ନ କରିବା ବଡ଼ ଭାରୀ କଥା ଅଟଇ ଓ ଏଥିରୁ ଅନେକ ଅର୍ଥ ହୋଇପାରେ। ରାଜା ପବିତ୍ର ଲୋକ ବୋଲି ଏପରି ଅପରାଧ କରିବା ଅସମ୍ଭବ କାରଣ ଏଥିରେ ଲୋକଙ୍କଠାରେ ତାହାଙ୍କର ମର୍ଯ୍ୟାଦା ନଷ୍ଟ ହୁଅନ୍ତା। କିନ୍ତୁ ଏମନ୍ତ ହୋଇପାରେ ଯେ ରାଜା ଆପଣା ପବିତ୍ରତା ଏବଂ ଲୋକଙ୍କର ବିଶ୍ୱାସର ଗର୍ବରେ ମନେ କରିଥିବେ ଯେ ସେ ଏପରି ଅପରାଧ କଲେ କେହି ତାହା ବିଶ୍ୱାସ କରିବେ ନାହିଁ ସୁତରାଂ ନିର୍ଭୟରେ ଆପଣାର କୁପ୍ରବୃତ୍ତିକୁ ଚିରତାର୍ଥ କରିଥିବେ। ବ୍ରାନ୍ସନ୍ ସାହେବଙ୍କ ଦ୍ୱିତୀୟ ଆପତ୍ତି ଏହି ଯେ ଅପରାଧ ବିଷୟରେ ଏକା ଶିବୁ ଦାସର ସାକ୍ଷ ଅଛି। ମାତ୍ର ଆମ୍ଭ ବିବେଚନାରେ ତାହା ନୁହେ। ଶିବୁଦାସର ଦେହରେ ଥିବା ଚିହ୍ନମାନ ତାହାର ହାସପାତାଳରେ ପଡ଼ି ରହିବା ଏବଂ ଡାକ୍ତର ଓ ତାହାର ସଙ୍ଗୀ ଏବଂ ଅନ୍ୟାନ୍ୟ ପ୍ରମାଣରୁ ଶିବୁଦାସର କଥା ସତ୍ୟ ବୋଲି ନିଃସନ୍ଦେହ ଜଣା ଯାଉଅଛି। ରାଜା ତାହାକୁ ପୀଡ଼ା ଦେଇ ନଥିଲେ କଦାଚ ତାହାଙ୍କ ନାମରେ ଏମନ୍ତ ଅଭିଯୋଗ କରନ୍ତା ନାହିଁ। ବ୍ରାନ୍ସନ୍ ସାହେବ ବୋଲନ୍ତି ଯେ କାହା ଦ୍ୱାରା କିପରି ଶିବୁଦାସର ଏ ଅବସ୍ଥା ହେଲା ତାହା ଆସାମିମାନେ କହିବାକୁ ବାଧ ନୁହନ୍ତି ମାତ୍ର ବାବାଜୀ ପ୍ରାୟ ଧାର୍ମିକ ଲୋକ କାହିଁକି ମୃତ୍ୟୁକାଳରେ ଏପରି କହିବ ତହିଁର କିଛି କାରଣ ପ୍ରଦର୍ଶିତ ନ ହେବା ସ୍ଥଳେ ଅବଶ୍ୟ ତାହାର କଥାକୁ ବିଶ୍ୱାସ କରିବାକୁ ହେବ। ବାରିଷ୍ଟରମାନେ ଆହୁରି କହିଛନ୍ତି କି ବାବାଜିର ସଙ୍ଗିମାନେ ବିଶ୍ୱାସଯୋଗ୍ୟ ନୁହନ୍ତି କାରଣମାନେ ଶୋଇଥିବା

ବାରନ୍ଦାରେ କଚେରୀହେବା କଥାକୁ ଅସ୍ୱୀକାର କରିଅଛନ୍ତି। ଆମ୍ଭ ବିବେଚନାରେ ଏ ଆପତ୍ତି ଗୁରୁତର ନୁହଇ ଯେହେତୁ ୫୬ ଫୁଟ ଲମ୍ବା ବାରନ୍ଦାର ଏକ ପାଖରେ ଗୋଟିଏ ସାମାନ୍ୟ ବଇଠା ଆଲୁଅରେ ଚାରି ପାଞ୍ଚଜଣ ବସି କଚେରୀ କରିବା କଥା ଏମନ୍ତ ପ୍ରଧାନ ବ୍ୟାପାର ନୁହଇ ଯେ ତାହା ସମସ୍ତଙ୍କର ମନକୁ ଆକର୍ଷଣ କରିବ। ବିଶେଷ ସେଦିନ କଚେରୀ ଭାରୀ ନ ଥିଲା ଦୁଇ ତିନିଜଣ ଲୋକ ଆସିଥିଲେ ଓ ଟ୪୦/୪୫ଙ୍କା ମୋଟରେ ଆଦାୟ ହୋଇଥିଲା ଏଥିପାଇଁ ରାତ୍ର ଘ୧୧ଣ୍ଟା ପର୍ଯ୍ୟନ୍ତ କଚେରୀ ହେବା ମନକୁ ଆସୁ ନାହିଁ। ଇଭାନ୍ସ୍ ସାହେବ ବୋଲନ୍ତି କି ପୁଲିସ ଷଡଯନ୍ତ୍ର କରି ରାଜାଙ୍କ ନାମରେ ଏ ମୋକଦ୍ଦମା କରିଅଛନ୍ତି ମାତ୍ର ଆମ୍ଭ ବିବେଚନାରେ ତାହା ନିତାନ୍ତ ଅମୂଳକ। ପୁଲିସ ସଙ୍ଗେ ରାଜାଙ୍କର ଶତ୍ରୁତା ଥିବାର ପ୍ରକାଶ ନାହିଁ ଓ ରାଜାଙ୍କ ପରି ଦାନଶୀଳ ଲୋକଙ୍କ ନାମରେ ପୁଲିସ ମିଥ୍ୟା ଅଭିଯୋଗ କଲେ ନଗରବାସୀ ସମସ୍ତେ ପୁଲିସ ଉପରେ ଖଡ୍ଗହସ୍ତ ହୁଅନ୍ତେ ଏପରି ଶଙ୍କା ପୁଲିସ ଅବଶ୍ୟ କରନ୍ତେ। ଅତଏବ ଆମ୍ଭ ବିବେଚନାରେ ରାଜାଙ୍କ ଉପରେ ଅପରାଧ ପ୍ରମାଣ ହେଉଅଛି। ନ୨ମ୍ବର ଆଗାମୀ ସୁରଜନ ଉପାଧ ଉପରେ ମଧ ବଳିଷ୍ଠ ପ୍ରମାଣ ଅଛି। ସେ ଲୋକ ଡେଙ୍ଗା ଓ ବଳବାନ୍ ଏବଂ ତାହାର ଚେହେରା ଇହୁଦୀ ପ୍ରକାର ଅଟଇ। ବାବାଜୀଙ୍କ ନଅର ମଧକୁ ଯିବା ବେଳେ ତାହାକୁ ଦେଖି ଥିଲା ପୀଡା ସମୟରେ ତାହାକୁ ଦେଖିଲା ପୂନର୍ବାର ସେହି ରାତ୍ରରେ ବାରନ୍ଦାରେ ସେ ଶୋଇଥିଲା ଓ ଗୋଳମାଳ ଶୁଣି ତାହା ବୁଝିବାକୁ ଗଲା ନାହିଁ। ଅତଏବ ଏବ୍ୟକ୍ତିକୁ ଚିହ୍ନିବା ବିଷୟରେ କିଛି ସନ୍ଦେହ ନାହିଁ ନ୬ମ୍ବର ଆସାମୀ ନାରାୟଣ ବାହାନପତି ବ୬୯ର୍ଷର ବୁଢ଼ା ଦାଢି ଓ ମୁଣ୍ଡବାଳ ପାଚି ଯାଇଅଛି ଏହାର ଚେହେରା ମଧ ଚିହ୍ନିତ ପ୍ରକାର ଅଟଇ। ବାବାଜୀ ଏହାକୁ 'ଏହି ବୁଢା' ବୋଲି ଚିହ୍ନିଲା ଓ ଏହାର ସଫାଇ କିଛି କାର୍ଯ୍ୟର ନୁହଇ ବରଂ ସକାଳେ ନଅର ଭିତରରୁ ବାହାରି ଯିବାର ଦେଖା ଯାଇଥିଲା। ଅତଏବ ଏହାର ଚିହ୍ନିତ ବିଷୟରେ ସନ୍ଦେହ ନାହିଁ। ଅନ୍ୟ ଦୁଇଜଣ ଆସାମିଙ୍କୁ ଆମ୍ଭେ ଦୋଷୀ କରନ୍ତୁ ମାତ୍ର ଆମ୍ଭର ସଙ୍ଗୀ ବିଚାରପତିଙ୍କ ସନ୍ଦେହ ହେବାରୁ ସେମାନଙ୍କୁ ଛାଡ଼ି ଦେଉଅଛୁଁ। ପରିଶେଷରେ ବକ୍ତବ୍ୟ ଏହି ଯେ ଆସାମିମାନେ ଶିବୁଦାସକୁ ବଧ କରିବାର ମନସ୍ଥ କରି ନ ଥିବେ କିନ୍ତୁ ଯେପରି ପୀଡା ତାହାକୁ ଦେଲେ ସେଥିରେ ମୃତ୍ୟୁ ହେବ ବୋଲି ତାହାଙ୍କୁ ଜଣା ନ ଥିଲେ ହେଁ ଯଦ୍ୟପି ବାସ୍ତବରେ ମୃତ୍ୟୁ-ଘଟନା ହେଲା ଓ ମୃତ୍ୟୁ ଘଟିବାରେ ଏମନ୍ତ ସମ୍ଭାବନା ଥିଲା ତେବେ ସେମାନେ ହତ୍ୟା ଅପରାଧ କରିଅଛନ୍ତି।

ବିଚାରପତି ଯାକସନ୍ ସାହେବ-ମୋକଦ୍ଦମାର ପ୍ରଧାନ ଘଟନାମାନ ବର୍ଣ୍ଣନା କରି କହିଅଛନ୍ତି ଯେ ରାଜାଙ୍କ ଚିହ୍ନିତ ବିଷୟରେ ଭୁଲ ହେବା ଅସମ୍ଭବ ବିବେଚନା କରି ବାରିଷ୍ଟରମାନେ ସମୁଦାୟ ମୋକଦ୍ଦମାକୁ ମିଥ୍ୟା ଥିବାର ତର୍କ କରିଅଛନ୍ତି। ଏଥକୁ ମୋକଦ୍ଦମା ମିଛ ହୋଇଥିଲେ ଏହା ପୂର୍ବରୁ ଉଚିତ ଏବଂ ସମସ୍ତଙ୍କ ସଙ୍ଗେ ତହିଁର ମନ୍ତ୍ରଣା ହୋଇଥିବ। କାରଣ ପୀଡା ଉତ୍ତାରୁ ଶିବୁଦାସ ତାହା ରଚନା କରିବାକୁ ଅବକାଶ ପାଇ ନ ଥିଲା ଅତଏବ ସେ ପୂର୍ବରୁ ଆପଣା ସଙ୍ଗିମାନଙ୍କୁ ନଅର ଦ୍ୱାରରେ ବସାଇ ରଖିଥବ କୌଣସି ଲୋକଦ୍ୱାରା ପୀଡା ପାଇଲା ଉତ୍ତାରୁ ଉକ୍ଷଣାତ୍ ଆପଣା କଷ୍ଟକୁ ନ ମାନି ରାଜାଙ୍କ ଉପରେ ଅପରାଧ ପକାଇ ଦେବାର ସବୁ କଥା

ସ୍ଥିର କରିଥିବା ମାତ୍ର କି ସକାଶେ ସେ ଏହା କରିବ ରାଜାଙ୍କୁ ଲୋକେ ଚଳନ୍ତି ବିଷ୍ଣୁ ବୋଲି ମାନନ୍ତି ତାହାଙ୍କସଙ୍ଗେ କିଛି ବିବାଦ କିମ୍ବା ମନାନ୍ତର ଥିବାର ପ୍ରକାଶ ନାହିଁ ଓ ବ୨୪ର୍ଷର ଜଣେ ଯୁବାକୁ ଅପରାଧୀ କଲେ ତହିଁରେ ବାବାଜୀ କିମ୍ବା ଅନ୍ୟ କୌଣସି ବ୍ୟକ୍ତିର କିଛି ଲାଭର ସମ୍ଭାବନା ନ ଥିଲା। ଅତଏବ ଏପରି ଆପତ୍ତି ଅଦାଲଦରେ ଆଗତ କରିବା କେବଳ ଅଦାଲତକୁ ଅପମାନ କରିବା ତୁଲ୍ୟ ଅଟଇ। ଆଉ ରାଜାଙ୍କ ମହତ୍ ଓ ପବିତ୍ରଚରିତ୍ର ହେତୁ ଏପରି ଅପରାଧ ଅସମ୍ଭବ ଥିବାର ଯେ ଆପତ୍ତି ହୋଇଅଛି ତହିଁକି ବକ୍ତବ୍ୟ ଏହି ଯେ କୌଣସି ପ୍ରମାଣ ନ ଦେଇ ଏପରି ଆପତ୍ତି କରିବାର ଦେଖି ଆମ୍ଭେ ଆଶ୍ଚର୍ଯ୍ୟ ହେଲୁଁ। କଥିତ ହୋଇଅଛି ଯେ ମାଜିଷ୍ଟ୍ରେଟସାହେବ ନଅରକୁ ଯିବାରେ ରାଜାଙ୍କର ଖାଦ୍ୟସାମଗ୍ରୀ ମାରୁଗଲା ମାତ୍ର ରାଜା ଏମନ୍ତ ଧର୍ମପରାୟଣ ଯେ ଗୋଟିଏ ଚଢ଼େଇକୁ ସୁଦ୍ଧା ଦୁଃଖ ଦିଅନ୍ତି ନାହିଁ ଏପରି ପ୍ରମାଣ କରିବାର ଚେଷ୍ଟା ହୋଇ ନାହିଁ ଆଉ ଯେମନ୍ତ ରାଜାଙ୍କ ପକ୍ଷରେ ଏପରି ଅପରାଧ କରିବା ଅସମ୍ଭବ ତେମନ୍ତ ଜଣେ ବୃଦ୍ଧ ଧାର୍ମିକ ବୈରାଗୀ ପକ୍ଷରେ ଦେବତୁଲ୍ୟ ପୁରୀରାଜାଙ୍କର ଉପରେ ଏପରି ମିଥ୍ୟା ଅଭିଯୋଗ କରିବା ଅସମ୍ଭବ। ଅତଏବ ରାଜାଙ୍କର ଅପରାଧ ବିଷୟରେ କିଛି ସନ୍ଦେହ ନାହିଁ। ଅନ୍ୟ ଅପରାଧିଙ୍କ ମଧ୍ୟରୁ ସୁରଜନ ଉପାଧ୍ୟା ଓ ନାରାୟଣ ବାହାନପତିର ମୂର୍ତ୍ତି ଯେପରି ଚିହ୍ନିତରୂପେ ଜଜସାହେବ ଲେଖି ଅଛନ୍ତି ଅନ୍ୟ ଦୁଇଜଣଙ୍କର ସେପରି ଲେଖା ନାହିଁ ଓ ଶିବଦାସ ଏହାଙ୍କୁ ପୂର୍ବେ ଦେଖି ଥିଲା ଏମନ୍ତ ସମ୍ଭବ ହେଉ ନାହିଁ ଏବଂ ଏ ଦୁଇଜଣ ବିଷୟରେ ଅନ୍ୟ କୌଣସି ପ୍ରକାର ଗୌଣ ପ୍ରମାଣ ନ ଥିବାରୁ ଆମ୍ଭେ ଏହାଙ୍କୁ ସନ୍ଦେହର ଫଳ ଦେଲୁଁ। ଆମ୍ଭ ବିବେଚନାରେ ମୋକଦ୍ଦମାର ତଦାରଖ ଅଥବା ବିଚାରର ରୀତି ହେତୁରୁ ଏପରି କଷ୍ଟ ଘଟି ଅଛି। ପରିଶେଷରେ ଆସେସରଙ୍କ ବିଷୟରେ ଆମ୍ଭର ବକ୍ତବ୍ୟ ଏହି ଯେ ହିନ୍ଦୁ ଆସେସରଙ୍କ ପକ୍ଷରେ ଏ ମୋକଦ୍ଦମାର ବିଚାର ବଡ ଦାୟ ଅଟଇ ଏବଂ ବିଶେଷରୂପେ ଯୋଗ୍ୟ ଥିବା ଆସେସର ଏଥିପାଇଁ ନିଯୁକ୍ତ ହୋଇ ଥିବାର କୌଣସି ଚିହ୍ନ କାଗଜାତରୁ ପାୟା ଯାଉ ନାହିଁ।

ବିଚାରପତି ଏନସଲି ସାହେବ - ମୋକଦ୍ଦମାର ବୃତ୍ତାନ୍ତମାନ ପୂର୍ବପ୍ରାୟ ବର୍ଣ୍ଣନ କରି କହି ଅଛନ୍ତି କି ଶିବୁଦାସର ତିନିଥର ଯୋବାନବନ୍ଦିରେ କେତେଗୁଡ଼ିଏ ଗୁରୁତର ଅମେଳ ଅଛି ଓ ସମ୍ଭବ ହୁଅଇ ସେ ସତ୍ୟସଙ୍ଗେ ମିଥ୍ୟା ଯୋଗକରି ଅତ୍ୟୁକ୍ତିର ଦୋଷରେ ପଡ଼ିଅଛ। ମାତ୍ର ଏହା ଆଶ୍ଚର୍ଯ୍ୟ ନୁହେ। ଏ ଦେଶରେ ସଚରାଚର ଦେଖାଯାଏ ଯେ କୌଣସି ଘଟନାର ମୂଳ ସତ୍ୟ ଥିଲେ ହେଁ ଯେତେଥର ତାହା କଥିତ ହୁଅଇ କ୍ରମଶଃ ବୃଦ୍ଧି ଦେଉଥାଏ ଏବଂ ବାବାଜିର ଅବସ୍ଥା ବିବେଚନା କଲେ ସେ ପ୍ରକାର ଘଟିବା ଆଶ୍ଚର୍ଯ୍ୟ ନୁହେ। କିନ୍ତୁ ଏକବ୍ୟକ୍ତିର ଇଜହାରର ଏକକଥା ମିଥ୍ୟା ହେଲେ ତାହାର ସମସ୍ତ କଥା ମିଥ୍ୟା ହେବ ଏପରି ନିୟମ ବିଲାତରେ ପ୍ରଚଳିତ ଅଛି ଏଠାରେ ତାହା ପ୍ରଚଳିତ କରିବାଠାରୁ ସମସ୍ତ ଫଉଜଦାରୀ ଅଦାଲତ ଉଠାଇଦେବା ଭଲ। ଅତଏବ ଆମ୍ଭ ବିବେଚନାରେ ଶିବୁଦାସର ଅନ୍ୟ ଇଜହାରମାନ ଅତ୍ୟୁକ୍ତି ହୋଇ ଥିଲେହେଁ ତା୨୪ରିଖରେ ସେ ଯାହା ଇଜହାର ଦେଇଅଛି ତାହା ସତ୍ୟ ଅଟଇ। ଅତଏବ ରାଜାଙ୍କ ଅପରାଧ ବିଷୟରେ କିଛି ସନ୍ଦେହ ନାହିଁ। ଅନ୍ୟ ଆସାମିଙ୍କ ମଧ୍ୟରୁ ଦୁଇଜଣର ଆକୃତି ଚିହ୍ନିତ ପ୍ରକାରର ଅଟଇ ଶନିବାରଦିନ ସେମାନେ ନଅର

ମଧ୍ୟରେ ଥିବାର ଅନ୍ୟ ପ୍ରମାଣ ଅଟଇ ଅତଏବ ଏହାଙ୍କ ଉପରେ ଅପରାଧ ପ୍ରମାଣ ହେଲା ଓ ଗୋପୀ ରାଉତ୍ରା ଓ ଗୋପାଳଦାସ ପକ୍ଷରେ ସନ୍ଦେହ ହେବାରୁ ସେମାନଙ୍କୁ ଛାଡ଼ି ଦିଆଗଲା।

ପାଠକମାନେ ଦେଖିବେ ଯେ ହାଇକୋର୍ଟ ଆସାମିଙ୍କର ସମସ୍ତ କଥା ଶୁଣି ଅତ୍ୟନ୍ତ ଧୀରଭାବରେ ଏ ମୋକଦ୍ଦମାର ବିଚାର କରିଅଛନ୍ତି କିନ୍ତୁ ଆମ୍ଭମାନଙ୍କର ଦୁଇ ତିନି ବିଷୟରେ ସନ୍ଦେହ ରହିଗଲା। ଇଭାନ୍ସ ସାହେବ ରାଜାଙ୍କର ଚରିତ୍ର ବିଷୟରେ କିଛି ପ୍ରମାଣ ଦେଇ ନାହାନ୍ତି ଯେବେ ସେ ଦେଇଥାନ୍ତେ ଓ ସେ ପ୍ରମାଣ ତୁଷ୍ଟିଜନକ ହୋଇଥାନ୍ତା ତେବେ କିସ ହୁଅନ୍ତା। ଯେବେ ତହିଁରେ ରାଜା ମୁକ୍ତ ପାଇ ପାରନ୍ତେ ତେବେ କି ବାରିଷ୍ଟରଙ୍କ ଅଜ୍ଞତାରୁ ସେ ଦଣ୍ଡ ପାଇବାର ବୋଲାଯିବ? ସୁରଜନ ଉପାଧ୍ୟା ଓ ନାରାୟଣ ବାହନପତିଙ୍କର ବିଶେଷ ଚିହ୍ନ କିଛି ଶିବୁ ଦାସର ଯୋବାନନବନ୍ଦିରେ ନାହିଁ ଓ ସେପରି ଆଉ କେହି ଲୋକ ଚିହ୍ନିତ ହେବାକୁ ଆନୀତ ହୋଇଥିବା ଲୋକଙ୍କ ମଧ୍ୟରେ ଥିଲା କି ନାହିଁ ତହିଁର ନିଦର୍ଶନ ନାହିଁ। ପୁଲିସ ଇନ୍ସପେକ୍ଟର ଓ ଜଜ ସାହେବ ଏକ ବ୍ୟକ୍ତିକୁ ଡେଙ୍ଗା ଓ ଅନ୍ୟକୁ ବୁଢା ବୋଲି ଚିହ୍ନିତ କରି ଦେବାରୁ କି ଏମାନେ ଧରା ପଡ଼ିଲେ ଓ ସେହିପରି ଅନ୍ୟ ଦୁଇବ୍ୟକ୍ତି ମଧ୍ୟରୁ ଜଣକୁ ବାଙ୍ଗର ଓ ଜଣକୁ ଭେଣ୍ଡା ବୋଲି ଜଜ ସାହେବ ଲେଖିଥିଲେ ସେମାନେ ଦଣ୍ଡ ପାଇବାର କି ଅଟକ ଥିଲା? ଯେଉଁମାନେ ଆସେସର ନିଯୁକ୍ତ ହୋଇଥିଲେ ସେମାନେ ଯେ ଯୋଗ୍ୟ ନିରପେକ୍ଷ ଏବଂ କୁସଂସ୍କାରବିହୀନ ଲୋକ ଏବଂ ସରଳଭାବରେ ଆପଣା ମତ ଦେଇଥଲେ ଏଥିରେ ସନ୍ଦେହ ନାହିଁ। ଜଜ ସାହେବ ଯେବେ ତାହାଙ୍କର ପରିଚୟ ଆପଣା ରାୟରେ ଲେଖିଥାନ୍ତେ ତେବେ ବିଚାରପତି ଯାକସନ ସାହେବ କି ଆପଣା ମତର କୌଣସି ଅଂଶ ପରିବର୍ତ୍ତନ କରନ୍ତେ? ଏହି ସନ୍ଦେହମାନ ଭଞ୍ଜନ ହୋଇଥିଲେ ଆମ୍ଭେମାନେ ବଡ଼ ଆନନ୍ଦିତ ହେଇଥାନ୍ତୁ ଆଉ ସମସ୍ତ ବିଷୟରେ ମାନ୍ୟବର ବିଚାରପତିମାନେ ଯାହା ବ୍ୟକ୍ତ କରିଅଛନ୍ତି ତାହା ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ ଅଟଇ ସନ୍ଦେହ ନାହିଁ।

*ଉତ୍କଳ ଦୀପିକା-୧୮୭୮_ପୃଷ୍ଠା ସଂଖ୍ୟା-୧୦୧*

## ପ୍ରେରିତ ପତ୍ର

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ

ମହାଶୟ!

ସମସ୍ତ ଲୋକାନନ୍ଦ ଆପଣଙ୍କ ପତ୍ରିକାଚୂଡାମଣିରେ ଏତନିମ୍ନଲିଖିତ ପଁକ୍ତିମାନଙ୍କୁ ମୁଦ୍ରାଙ୍କିତକରି ଓଡ଼ିଶାବାସିଙ୍କି ଆନନ୍ଦ କରିବାହେବେ।

ଆମ୍ଭେ ଶୁଣିପାରିଲୁଁ ଯେ ପୁରୀର ଶ୍ରୀ ଠାକୁର ମହାରାଜାଙ୍କ ଯାବଜ୍ଜୀବନ କାରାବାସରୁ ମୁକ୍ତ କରାଇବା ନିମିତ୍ତ ପାର୍ଲିମେଣ୍ଟ ସଭାରେ ଅପୀଲ କରିବାକୁ ବଡ଼ଖେମଣ୍ଡି ଶ୍ରୀ ରାଜା ଉଦ୍ୟମ କରି ମେମେୟନ ଆଦି ତିନିଜଣ ଇଉରୋପୀୟ ଲାଇରମାନଙ୍କୁ ନିର୍ଣ୍ଣୟ କଲେ ପାର୍ଲିମେଣ୍ଟରେ ପାଞ୍ଚସହସ୍ର ଟଙ୍କା ଫିଜୁ ଦାଖଲ କଲେ।

ସେ ସଭାସଦସ୍ୟମାନେ ସଭାକରି ଅପୀଲ କରିବାର ଅଛିବୋଲି କିମ୍ବା କ୍ଷମାକରି ଶ୍ରୀ ଠାକୁର ମହାରାଜାଙ୍କୁ ମୁକ୍ତ କରିବାକୁ ଆଦେଶ ଦେବେ ପୁଣି ସେଥିନିମିତ୍ତେ ଆଠଦିନ ତଳେ ବଡ଼ଖେମଣ୍ଡି ଶ୍ରୀ ରାଜା ପାଞ୍ଚସହସ୍ର ଟଙ୍କା ଲଣ୍ଡନକୁ ପଠାଇ ଅଛନ୍ତି ଅତି ସୁଖର ବିଷୟ।

*ଶ୍ରୀ ନାରାୟଣ ବଡଜେନା ସାନ୍ତ*
*Head Dewan of Mandasa*
*to the Sree Rajah C.I.E.*
*ଉତ୍କଳ ଦୀପିକା-୧୮୭୯: ପୃଷ୍ଠା ସଂଖ୍ୟା-୩୬*

## ସାପ୍ତାହିକ ସଂବାଦ

ରାଜସାହୀ ସମ୍ବାଦପତ୍ରିକା ଲେଖନ୍ତି ପୁରୀର ମହାରାଜା କଳାପାଣି ଜେଲଖାନାରେ ଝାଡୁଦାର କର୍ମ କରୁଅଛନ୍ତି। ଏହା ସତ୍ୟ ଥିଲେ ଅତିଶୟ ଦୁଃଖର ବିଷୟ। ହାଃ କପାଳ। ସେ ଆପଣାକୁ ଲକ୍ଷେ ରାଜାର ମଉଡ଼ମଣି ବୋଲି ମଣୁଥିଲେ ଏଦଶା। ହାୟ। ଏ ପୃଥିବୀର ଗୌରବ ଏପରି କ୍ଷଣଭଙ୍ଗୁର। ତହିଁ ଉପରେ ଗାରିମା କରିବା ଅଜ୍ଞାନତା ଅଟଇ।

*ଉତ୍କଳ ଦୀପିକା-୧୮୮୧: ପୃଷ୍ଠା ସଂଖ୍ୟା-୨୪୨*

## ପୁରୀ ରାଜା

ଆମ୍ଭେମାନେ ପୁରୁଷୋତ୍ତମ ପତ୍ରିକାରେ ପାଠ କଲୁଁ କି ଚଳିତ ମାସ ତା୧ରିଖରେ ପୁରୀ ରାଜା କୁମାର ଶ୍ରୀ ଜଗନ୍ନାଥ ଜେନାମଣୀ ଶ୍ରୀ ମୁକୁନ୍ଦ ଦେବ ନାମ ଧାରଣ କରି ସିଂହାସନରୋହଣ କଲେ। ଏ ସମ୍ବାଦଟି ଆମ୍ଭମାନଙ୍କୁ ରହସ୍ୟ ପରି ବୋଧ ହେଉଅଛି। ବାସ୍ତବରେ ଏହାର ତାତ୍ପର୍ଯ୍ୟ ଆମ୍ଭେମାନେ କିଛି ବୁଝିପାରୁ ନାହୁଁ। ସିଂହାସନ ଏତେ ଦିନ ପଡ଼ିଆ ପଡ଼ି କେଉଁ କଥାର ଅସୁସାର ହୋଇଥିଲା ବା ଆଉ କିଛିଦିନ ସେହି ପରି ଥିଲେ କି ବ୍ୟାଘତ ହୁଅନ୍ତା। ବନ୍ଦୀରାଜା ଯାବଜ୍ଜୀବନ ଦ୍ୱୀପାନ୍ତରିତ ହୋଇଥିଲେହେଁ ସେ ଯେ କୌଣସି ଅବସ୍ଥାରେ ଫେରି ଆସି ନ ପାରନ୍ତି ଏପରି ବୋଲାଯାଇ ନ ପାରେ। ଜେଲର ନିୟମାନୁସାରେ ଏବଂ ଶ୍ରୀମତି ଭାରତେଶ୍ୱରୀଙ୍କୁ କ୍ଷମା ପ୍ରଭାବରୁ ଏକ ସମୟରେ ସେ ଫେରି ଆସି ପାରନ୍ତି ତାହାଙ୍କର ଦୀର୍ଘକାଳ ବଞ୍ଚିବାର ଆଶା ଅଛି ଏବଂ ତାହାଙ୍କର ଅବସ୍ଥା ବୟସ ଇତ୍ୟାଦି ଦୃଷ୍ଟିରେ ତାହାଙ୍କ ଅପରାଧ ଯେ ନିତାନ୍ତ କ୍ଷମାର ଅଯୋଗ୍ୟ ଏପରି ବୋଲା ଯାଇ ନ ପାରେ। ଏଣେ ରାଜକୁମାର ନିତାନ୍ତ ଶିଶୁ ଓ ଦୀର୍ଘକାଳ ନାବାଳଗ ରହିବେ ଓ ମହାଫିଜ ଦ୍ୱାରା କାର୍ଯ୍ୟ ନିର୍ବାହ ହେବ। ଏମନ୍ତ ଅବସ୍ଥାରେ ନାବାଳଗକୁ ଗାଦିରେ ବସାଇବାର ପ୍ରୟୋଜନ କି? ପ୍ରତ୍ୟକ୍ଷରେ ଦେଖାଯାଏ ଯେ ଏ କାର୍ଯ୍ୟ ଦ୍ୱାରା ବନ୍ଦୀରାଜାଙ୍କ ପ୍ରତି ଯାହା କିଛି ଲୋକଙ୍କର ସହାନୁଭୂତି ଅଛି ତାହା ଛଡ଼ାଇବାର ଚେଷ୍ଟା ହୋଇଅଛି। ରାଜମାତା ଏବଂ ରାଣୀ ଯେ ଇଚ୍ଛା ପୂର୍ବକ ଏ କାର୍ଯ୍ୟ କରିଅଛନ୍ତି ଏହା ଆମ୍ଭମାନଙ୍କର ବିଶ୍ୱାସ ହେଉ ନାହିଁ। ଆମ୍ଭେମାନେ ଆଶଙ୍କା କରୁଁ ସେମାନେ ସ୍ୱାର୍ଥପର କର୍ମଚାରିଙ୍କ ଗୁଢ଼ ଅଭିସନ୍ଧିରେ ପଡ଼ି ଏହା କରିଅଛନ୍ତି ଏବଂ ଏଥିରୁ ସ୍ୱଷ୍ଟ ଜଣା ଯାଉଅଛି ଯେ ରାଜମାତା କିମ୍ବା ରାଣୀ ନାବାଳଗର ସ୍ୱାର୍ଥରକ୍ଷା କରିବାକୁ ସମର୍ଥ ନୁହନ୍ତି। ଏକ ପକ୍ଷରେ ରାଜସରକାରର ଧନ ଓ ଅପର ପକ୍ଷରେ ନାବାଳଗର ଶିକ୍ଷାର ସମ୍ପୂର୍ଣ୍ଣ ହାନୀ ଦୃଷ୍ଟି ହୁଅଇ।

ଗବର୍ଣ୍ଣମେଣ୍ଟ ନାବାଳଗ ଏବଂ ଅଯୋଗ୍ୟ ବ୍ୟକ୍ତିଙ୍କର ସାଧାରଣ ରକ୍ଷାକର୍ତ୍ତା ହେବା ସ୍ଥଳେ ପୁରୀ ରାଜାଙ୍କ ବିଷୟ ସମ୍ପର୍କରେ ଭିନ୍ନ ଭାବ ଧାରଣ କରିବା ଅତ୍ୟନ୍ତ ଶୋଚନୀୟ ଅବସ୍ଥା ଅଟଇ ଏବଂ ଏଥିର ଆଶୁ ପ୍ରତୀକାର ଆବଶ୍ୟକ। ଆମ୍ଭେମାନେ ଅନୁରୋଧ କରୁଁ ଯେ ପୁରୀ ରାଜପରିବାରର ହିତକାଂକ୍ଷୀ ଏବଂ ମନ୍ଦିରର ସୁଶାସନରେ ସ୍ୱାର୍ଥବାନ୍ ହିନ୍ଦୁମାନେ ପୁରୀ ରାଜାଙ୍କର ସମସ୍ତ ବିଷୟ କୋର୍ଟ ଅବ ଓ୍ୱାର୍ଡସରେ ଆଣିବା କାରଣ ଗବର୍ଣ୍ଣମେଣ୍ଟରେ ଆବେଦନ କରନ୍ତୁ ତାହା ହେଲେ ଅବଶ୍ୟ ଗବର୍ଣ୍ଣମେଣ୍ଟ ସୁବିଚାର କରିବେ।

*ଉତ୍କଳ ଦୀପିକା-୧୮୮୨: ପୃଷ୍ଠା ସଂଖ୍ୟା-୯୬*

## ପୁରୀ ରାଜାଙ୍କ ପଦ

ପାଠକମାନଙ୍କୁ ଜଣା ଅଛି ଯେ ପୁରୀର ମହାରାଜା ଦିବ୍ୟସିଂହଦେବ ଦ୍ୱୀପାନ୍ତରିତ ହେବାରୁ ତାହାଙ୍କର ନାବାଳଗ ପୁତ୍ର ପିତୃତ୍ୟକ୍ତ ସମସ୍ତ ସମ୍ପତ୍ତି ଓ ଅଧିରେ ଭୋଗବାନ୍ ହେଲେ ଏବଂ ରାଜମାତା ଯଥା ନିୟମରେ ଅଦାଲତଙ୍କ ସାର୍ଟିଫିକଟ ଦ୍ୱାରା ତାହାଙ୍କର ମହଫିଜ ନିଯୁକ୍ତ ହୋଇ ସକଳ କାର୍ଯ୍ୟ ନିର୍ବାହ କଲେ। ନାବାଳଗର ନାମ ସେ ସମୟରେ ଜଗନ୍ନାଥ ଯେନାମଣି ଥିଲା କେତେକ ବର୍ଷ ଏହି ଭାବରେ କାର୍ଯ୍ୟ ଚାଲିଲା ଉତ୍ତାରୁ ଗତବର୍ଷ ସୁନିୟା ସମୟରେ ରାଣୀ ମହାଫିଜ ଉକ୍ତ ନାବାଳଗକୁ ପୁରୀ ରାଜବଂଶର ପରମ୍ପରା ନିୟମାନୁସାରେ ରାଜ୍ୟାଭିଷେକ କରାଇ ତାହାର ଉପରଲିଖିତ ନାମ ପରିବର୍ତ୍ତରେ ରାଜା ମୁକୁନ୍ଦଦେବ ପ୍ରଦାନ କଲେ ଏବଂ ସେହିଦିନଠାରୁ ପୁରୀ ରାଜଗୃହର ପ୍ରଜା ଏବଂ ଅଧୀନ ବର୍ଗମାନେ ତାହାଙ୍କୁ ପ୍ରକୃତ ରାଜା ସ୍ୱରୂପ ମାନ୍ୟ ଓ ଚିହ୍ନିତ କଲେ। ରାଣୀ ଉକ୍ତ ନାମ ପରିବର୍ତ୍ତନ ବିଷୟ ଅଦାଲତଙ୍କୁ ଜଣାଇ ବିଧିମତେ ଆପଣା ସାର୍ଟିଫିକେଟରେ ତାହା ଦର୍ଯ କରାଇ ନେଲେ ଏକ ସରକାରୀ ମାମଲା ମୋକଦମା ଓ ଅନ୍ୟାନ୍ୟ କାଗଜ ସମ୍ପର୍କରେ ସେହି ନୂତନ ନାମ ପ୍ରଚଳିତ କଲେ। ପ୍ରଥମ କିଛିକାଳ ତହିଁରେ କୌଣସି ଆପତ୍ତି ହୋଇ ନ ଥିଲା। ମାତ୍ର ଏଣିକି ପୁରୀର କଲେକ୍ଟର ଶ୍ରୀଯୁକ୍ତ ଗ୍ରାଣ୍ଟ ସାହେବ ଉକ୍ତ ନାମର ବିରୋଧୀ ହୋଇ ସରକାରୀ କାଗଜରେ ତାହା ବ୍ୟବହାର କରି ଦେବେ ନାହିଁ ବୋଲି ସ୍ଥିର କରିଅଛନ୍ତି ଏବଂ କଥିତ ହୁଅଇ ଯେ ଏହି ନାମ ପରିବର୍ତ୍ତନ ହେତୁ ରାଣୀଙ୍କ ଉପସ୍ଥିତକ୍ରିୟା କେତେଗୁଡ଼ିଏ ଦଶ ଆଇନ ପ୍ରଭୃତି ମୋକଦମା ଚଳାଇ ଦେଉ ନାହାନ୍ତି। ଏଥିରେ ଯେ ରାଣୀଙ୍କର ବିଶେଷ କଷ୍ଟ ଓ ଅସୁବିଧା ହୋଇ ଅଛି ଏହା ବୋଲିବା ଅଧିକ ଅଟଇ। ପୁରୀରାଜାଙ୍କର ନାମ ଯେଡ଼େ ହେଉ ବିଷୟ ସେପରି ନୁହଇ। ପ୍ରଜାଙ୍କଠାରୁ ଖଜଣା ଆଦାୟ ହେଲେ ନିର୍ବାହ ଚାଲିବ ଏଣେ ଏକା ଜଗନ୍ନାଥଙ୍କ ପ୍ରତି ଦିନର ସେବା ଖର୍ଚ୍ଚ ଏକଶତ ଟଙ୍କାରୁ ଅଧିକ ଅଟଇ। ଏସ୍ଥଳେ ଖଜଣା ମୋକଦ୍ଦମାରେ ବାଧା ଘଟିଲେ କି କାର୍ଯ୍ୟ ଚାଲିପାରେ ପୁଣି ବିଚିତ୍ର କଥା ଏହି କି କେତେକ ଖଜଣା ମୋକଦ୍ଦମାରେ ମାଲ ଅଦାଲତ ଏହି ନାମରେ ଡିଗ୍ରୀ ଦେଇ ଡିଗ୍ରୀଜାରୀ ସମୟରେ ଆପତ୍ତି କରିଅଛନ୍ତି। ଶ୍ରୀଯୁକ୍ତ ଗ୍ରାଣ୍ଟ ସାହେବଙ୍କର ଏପରି ବିଚାର ଆମ୍ଭମାନଙ୍କ ମନକୁ ଆଦୌ ଘେନୁ ନାହିଁ ଏବଂ ଏହାକୁ ଆମ୍ଭେମାନେ ପୀଡ଼ାଦାୟକ ବୋଲିବାକୁ ଦ୍ୱିଧା କରିବୁ ନାହିଁ। ନାବାଳଗ ଗବର୍ଣ୍ଣମେଣ୍ଟରୁ କୌଣସି ପଦ ପାଇ ନାହାନ୍ତି ସତ୍ୟ ଏବଂ ଗବର୍ଣ୍ଣମେଣ୍ଟଙ୍କ କାର୍ଯ୍ୟ

ବିଭାଗୀୟ କର୍ମଚାରିମାନେ ଇଚ୍ଛା କଲେ ତାହାଙ୍କୁ ସେପରି ପଦରେ ସମ୍ବୋଧନ ନ କରନ୍ତୁ ସେ କଥା ସ୍ୱତନ୍ତ୍ର କିନ୍ତୁ ଉପଯୁକ୍ତ ଅଦାଲତରୁ ସାର୍ଟିଫିକେଟ ପାଇଥିବା ଏବଂ କୌଣସି ମାମଲା ମୋକଦ୍ଦମାରେ ପ୍ରତିପକ୍ଷରୁ ସେପରି କୌଣସି ଆପତ୍ତି ହୋଇ ନ ଥିବା ସ୍ଥଳେ ମାଲ ଅଦାଲତ ମୋକଦ୍ଦମା ଚଳାଇବା ପ୍ରତି ସ୍ୱୟଂ କିପରି ଆପତ୍ତି କରିବେ ବୁଝିବା କଠିନ ଅଟଇ। ଆମ୍ଭେମାନେ ଶୁଣୁଅଛୁଁ ଯେ ଶ୍ରୀଯୁକ୍ତ କଲେକ୍ଟର ସାହେବ ଏ ବିଷୟ ଗବର୍ଣ୍ଣମେଣ୍ଟଙ୍କ ନିଷ୍ପତ୍ତି ନିମିତ୍ତ କମିଶନର ସାହେବଙ୍କ ଯୋଗେ ପତ୍ର ଲେଖିଅଛନ୍ତି ଏବଂ ଭରସା ହୁଅଇ ଗବର୍ଣ୍ଣମେଣ୍ଟ ଶୀଘ୍ର ଏଥିର ବିଚାର କରିବେ କିନ୍ତୁ କଲେକ୍ଟର ସାହେବ ଏହି ନିଷ୍ପତ୍ତି ପର୍ଯ୍ୟନ୍ତ ଯେବେ ମାମଲା ମୋକଦ୍ଦମାରେ ହସ୍ତକ୍ଷେପ କରି ନ ଥାନ୍ତେ ତେବେ ଆମ୍ଭମାନଙ୍କ ବିବେଚନାରେ ଭଲ ହୋଇ ଥାନ୍ତା ବିଶେଷତଃ ରାଣୀ ଯେତେବେଳେ ନାବାଳଗକୁ ଗଦିରେ ବସାଇଲେ ତେତେବେଳେ ତହିଁର ସମ୍ବାଦ କଲେକ୍‌ଟର ଓ କମିଶନର ସାହେବମାନଙ୍କୁ ଦେଇଥିଲେ। କଲେକ୍‌ଟର ସାହେବ ସମ୍ବାଦ ପାଇଲା ମାତ୍ରକେ ଯେବେ ଆପଣା ଆପତ୍ତି ଗବର୍ଣ୍ଣମେଣ୍ଟରେ ଜଣାଇ ଏ କଥା ନିଷ୍ପତ୍ତି କରାଇ ଆଣିଥାନ୍ତେ ତେବେ ରାଣୀଙ୍କର ଗୁହାରି କରିବାର କାରଣ ନ ଥାନ୍ତା କିନ୍ତୁ ତେତେବେଳେ କିଛି ନ କହି ଏବଂ କେତେକ ମୋକଦ୍ଦମାରେ ନିଷ୍ପତ୍ତି କଲା ଉତ୍ତାରୁ ପଶ୍ଚାତ୍ ସେପରି ଆଦେଶ ଦେବା ଭଲ ହୋଇ ନାହିଁ ଅଧିକନ୍ତୁ ଓଡ଼ିଶା ଦେଶରେ ପଦ ବ୍ୟବହାର କରିବା ଗୋଟାଏ ସାଧାରଣ ପ୍ରଥା ଅଟଇ। ଅନେକ ଲୋକ ଇଚ୍ଛାମତେ ନାନା ପଦ ବ୍ୟବହାର କରନ୍ତି। ପୁରୀ ରାଜାଙ୍କର କଥା ସ୍ୱତନ୍ତ୍ର ତାହାଙ୍କ ପଦ ଅନେକ ପ୍ରାଚିନକାଳରୁ ରହିଅଛି ଓ ସର୍ବସାଧାରଣ ତାହା ଚିହ୍ନିତ ଓ ମାନ୍ୟ କରି ଅଛନ୍ତି ମାମଲା ମୋକଦ୍ଦମା ସମ୍ପର୍କରେ ପଦ ବ୍ୟବହାର ବିଷୟରେ ଗବର୍ଣ୍ଣମେଣ୍ଟ କିପରି ନିଷ୍ପତ୍ତି କରିବେ ଏହା ଜାଣିବାକୁ ଆମ୍ଭେମାନେ ବ୍ୟଗ୍ର ହୋଇଅଛୁଁ।

ଏ ପ୍ରସ୍ତାବ ଲେଖା ହେଲା ଉତ୍ତାରୁ ଅବଗତ ହେଲୁଁ ଯେ ଉପର ଲେଖିତ ମତେ ପୁରୀ କଲେକ୍‌ଟରରୀ ମହକୁମାରେ ଯେତେ ଦଶଆଇନ ମୋକଦ୍ଦମା ଖାରଜ ହୋଇଥିଲା ତହିଁରୁ ଏକ ନମ୍ବରରେ ଜଜ ସାହେବଙ୍କ ନିକଟରେ ଅପୀଲ ଉପସ୍ଥିତ ହେବାରୁ ସାହେବ ପ୍ରଶଂସିତ ତହତ ଅଦାଲତର ଆଜ୍ଞାକୁ ରଦ କରି ଆଇନମତେ ମୋକଦ୍ଦମାର ପୁନର୍ବିଚାର କରିବା ନିମିତ୍ତ ଫେରି ପଠାଇଅଛନ୍ତି। ଜଜ ସାହେବଙ୍କ ଆଜ୍ଞା ଯେ ନ୍ୟାୟସଙ୍ଗତ ହୋଇଅଛି ଏ କଥା ବୋଲିବା ବାହୁଲ୍ୟ ଅଟଇ।

*ଉତ୍କଳ ଦୀପିକା-୧୮୮୩: ପୃଷ୍ଠା ସଂଖ୍ୟା-୧୨୪*

ସନ ୧୮୬୧ ସାଲ ୨୩ ଆଇନ ଅନୁସାରେ ବିହାର ଓଡ଼ିଶା ରେବନ୍ୟୁବୋର୍ଡ ମାନ୍ୟବର ଲେପ୍ଟନଣ୍ଟ ଗବର୍ଣ୍ଣରଙ୍କ ମଞ୍ଜୁରିରେ ନିମ୍ନଲିଖିତ ନିୟମମାନ ପ୍ରଚାର କଲେ ଯଥାଃ-

୧। ପୁରୀ ରାଜା ମୁକୁନ୍ଦଦେବ ଓଡ଼ିଶାର ପୁରାତନ ହିନ୍ଦୁରାଜଗଣଙ୍କ ବଂଶୋଦ୍ଭବ ସ୍ୱରୂପ ନିଜ ଏବଂ ପରିବାରବର୍ଗର ଭରଣ ପୋଷଣାର୍ଥ ମାସିକ ଟ୨୧୩୩/୪ ପାହୁଲା ଯାହା ରାଜକୀୟ ପେନସନ ପାଉଅଛନ୍ତି ତାହା ଅନ୍ୟ ଆଦେଶ ଯାଏ ପୁରା କଲେକ୍ଟର ଖଜଣାଖାନାରୁ ନେଇ ଖରଚ କରିବେ।

୨। ଉକ୍ତ ପେନସନ ଟଙ୍କା ମଧ୍ୟରୁ ରାଜାଙ୍କ ସ୍ତ୍ରୀ ଓ ପିତାମହୀମାନଙ୍କ ନିର୍ବାହ ନିମନ୍ତେ ଯେତେ ଟଙ୍କା ନ୍ୟାଯ୍ୟ ହେବ ଓଡ଼ିଶା କମିଶନର ସାହେବଙ୍କ ମଞ୍ଜୁରୀ ମତେ ପୁରୀ କଲେକ୍ଟର ସେମାନଙ୍କୁ ଦେବେ।

ପୁରୀରାଜାଙ୍କ ବ୍ୟବହାର ଦେଖି ଗବର୍ଣ୍ଣମେଣ୍ଟ ବାଧ ହୋଇ ଏ ବ୍ୟବସ୍ଥା କରି ଅଛନ୍ତି ଏହା ବୋଲିବା ବାହୁଲ୍ୟ ବଡ଼ ଦୁଃଖର ବିଷୟ ଯେ ଆପଣା ସମ୍ପତ୍ତି ଓ ମନ୍ଦିର ବୁଝାସୁଝା କରିବାକୁ ଅକ୍ଷମ ହେବାହେତୁ ଜଣେ ମାନେଜର ରଖିବାକୁ ବାଧ ହେଲେ ଶେଷକୁ ସ୍ତ୍ରୀ ପରିବାର କଥା ବୁଝିବା ଅକ୍ଷମତା ହେତୁ ତାହା ସୁଦ୍ଧା ହରାଇଲେ। ଏଥିରେ ଯେବେ ଚେତନା ହେବ ତେବେ ସୁଦ୍ଧା ମଙ୍ଗଳ ହେବ।

*ଉତ୍କଳ ଦୀପିକା-୧୯୧୩: ପୃଷ୍ଠା ସଂଖ୍ୟା-୨୦୮*

## ପୁରୀରାଜାଙ୍କ ବୃତ୍ତି

ପୁରୀରାଜା ସରକାରରୁ ଯେଉଁ ବୃତ୍ତି ମାସକୁ ମାସ ଦୀର୍ଘକାଳରୁ ପାଇ ଆସୁ ଅଛନ୍ତି ଓ ଯାହାର ନାମ ପୋଲିଟିକାଲ ବା ରାଜକୀୟ ପେନସନ ହୋଇଅଛି ତାହା ରାଜାଙ୍କୁ ଏକା ନ ଦେଇ ତାହାଙ୍କ ସଙ୍ଗେ ରାଜମାତା ଏବଂ ରାଣୀଙ୍କୁ ବାଣ୍ଟିଦେବା କାରଣ ପୁରୀ କଲେକ୍ଟରଙ୍କୁ ଦିୟାଯିବା ମର୍ମ୍ମରେ ବିହାର ଓଡ଼ିଶା ରେବନ୍ୟୁ ବୋର୍ଡ ପ୍ରାୟ ଦୁଇବର୍ଷ ହେଲା ଆଦେଶ ପ୍ରଚାର କରିଥିବାର ପାଠକମାନଙ୍କୁ ଜଣାଅଛି। ଏହି ବଣ୍ଟନ ରାଜା ଓ ରାଣୀ ପ୍ରଭୃତିଙ୍କ ମନୋନିତ ନ ହେବାରୁ ସେମାନେ ଆପତ୍ତିକରି କେହି ବୃତ୍ତି ନେଇନାହାନ୍ତି। ପୁରୀରାଜାଙ୍କର ପ୍ରଧାନ ଆପତ୍ତି ଏହି କି ଉକ୍ତ ବୃତ୍ତି ପେନସନ ବୋଲାଉଥିଲେ ହେଁ ତାହା ପ୍ରକୃତରେ  ଖୋରଧାମାହାଲ ସମ୍ବନ୍ଧୀୟ ମାଲିକାନା ଅଟେ ଓ ତାହା ବିଭାଗ ଯୋଗ୍ୟ ନୁହେ। ସମସ୍ତ ବୃତ୍ତି ପୂର୍ବପରି ଏହା ପାଇବା ଏବଂ ରାଜମାତା ଓ ରାଣୀଙ୍କ ଭରଣପୋଷଣ କରିବା ମର୍ମରେ ବିହାର ଓଡ଼ିଶା ବୋର୍ଡ ରେବନ୍ୟୁ ଆଦେଶ ବିରୁଦ୍ଧରେ ସ୍ଥାନୀୟ ଗବର୍ଣ୍ଣମଣ୍ଟେ ସମିପକୁ ଆବେଦନ ପତ୍ର ପଠାଇଥିଲେ ଓ ତାହା ଅଗ୍ରାହ୍ୟ ହୁଅନ୍ତେ ଭାରତ ଗବର୍ଣ୍ଣମେଣ୍ଟ ସମିପକୁ ଆବେଦନ ପଠାଇ ଅଛନ୍ତି। ନିୟମ ଅଛି ଯେ ଭାରତ ଗବର୍ଣ୍ଣମେଣ୍ଟେକୁ ଯିବା ଆବେଦନପତ୍ର ସ୍ଥାନୀୟ କଲେକ୍ଟରଙ୍କ ଦ୍ୱାରା କ୍ରମେ ଉର୍ଦ୍ଧ କର୍ମଚାରୀଙ୍କ ହାତବାଟେ ବଡ଼ଲାଟଙ୍କ ସମିପରେ ଉପସ୍ଥିତ ହେବ। ଏହି ନିୟମ ଓ ସେ ସମ୍ବନ୍ଧୀୟ ଅନ୍ୟାନ୍ୟ ନିୟମ ପାଳନ ହେତୁ ଆବେଦନପତ୍ର ନିର୍ଦ୍ଦିଷ୍ଟ ସ୍ଥାନରେ ପହୁଞ୍ଚିବାକୁ ବିଳମ୍ବହେବା ପ୍ରସଙ୍ଗ ଗତ ଅକ୍ଟୋବର ମାସ ତା ୨୩ ରିଖ ବଙ୍ଗାଳୀ ନାମକ କଲିକତାର ଦୈନିକ ସମ୍ବାଦ ପତ୍ରରେ ପ୍ରକାଶ ହୋଇଥିଲା ଓ ଦୀର୍ଘକାଳ ବୃତ୍ତି ବନ୍ଦହେବା ଦ୍ୱାରା ରାଜାଙ୍କର ଭାରି ଅସୁବିଧା ଓ କ୍ଳେଶ ଘଟିବା ଅନାୟାସରେ ବୁଝାଯାଉଅଛି। ଭାରତୀୟ ବ୍ୟବସ୍ଥାପକ ସଭାର ସଦସ୍ୟ ମାନ୍ୟବର କିଷନ ନାରାୟଣ ଧର ଉକ୍ତ ସଭାର ଗତ ଅଧିବେଶନରେ ପ୍ରଶ୍ନକଲେ କି ପୁରୀରାଜା ମୁକୁନ୍ଦଦେବଙ୍କ ଠାରୁ ଗବର୍ଣ୍ଣମେଣ୍ଟ ଏକ ଆବେଦନ ପତ୍ର ପାଇଅଛନ୍ତି କି ନା? ଏବଂ 'ବଙ୍ଗାଳୀ' ସମ୍ବାଦପତ୍ରରେ ସେ ସମ୍ବନ୍ଧେ ଯାହା ଲେଖୁଅଛି ତହିଁ ପ୍ରତି ଗବର୍ଣ୍ଣମେଣ୍ଟଙ୍କ ଦୃଷ୍ଟି ପଡ଼ଅଛି କି ନା? ପୁଣି ସେ କାଳାବଧି ପେନସନ ବନ୍ଦଥିବା ସତ୍ୟ କି ନା? ଗଭର୍ଣ୍ଣମେଣ୍ଟ ପକ୍ଷରୁ ମାନ୍ୟବର ସର ରବଟ

କାରଲଇଲ ଉତ୍ତର ଦେଇଅଛନ୍ତି କି ଗବର୍ଣ୍ଣମେଣ୍ଟ ଆବେଦନପତ୍ର ପାଇଅଛନ୍ତି ସମ୍ବାଦପତ୍ର ଦେଖିଅଛନ୍ତି ଓ ସେ ସମ୍ବନ୍ଧେ ତଦନ୍ତ କରାଯିବ। ଭରସା ହୁଅଇ ଆଉ ବିଳମ୍ବ ହେବ ନାହିଁ ଏବଂ ରାଜାଙ୍କର କଷ୍ଟ ଶୀଘ୍ର ଦୂର ହେବ।

*ଉତ୍କଳ ଦୀପିକା-୧୯୧୫: ପୃଷ୍ଠା ସଂଖ୍ୟା-୫୩*

## ପୁରୀ ରାଜାଙ୍କ ପ୍ରତି ଜୁଲମ

ଗତ ସପ୍ତାହରେ ପୁରୀ ଜଗନ୍ନାଥମନ୍ଦିର ମ୍ୟାନେଜର କର୍ମ୍ମସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଲେଖିଥିଲୁଁ। ବର୍ତ୍ତମାନ ଯାହା ଅବଗତ ହେଲୁଁ ତାହା ଆହୁରି ଆଶ୍ଚର୍ଯ୍ୟର କଥା। ଓଡ଼ିଶା କି ଗୋଟିଏ "ଅନ୍ଧକାର ମୂଳକ" ଓ ଓଡ଼ିଆମାନେ କି ଏପରି ବଣୁଆ ଜାତିଯେ ସେମାନଙ୍କୁ ହାକିମମାନେ ଟିକିଏ ଆକ୍ଷି ଦେଖାଇଦେଲେ ଡରିଯିବେ ଓ ହାକିମ ଖପା ହେବେବୋଲି ଶୁଣିଲେ ଚୁପ୍ ରହିବେ?

ପୁରୀରାଜା ଭାରତବର୍ଷରେ ସମଗ୍ର ହିନ୍ଦୁସମାଜରେ ମାନ୍ୟଗଣ୍ୟ। ଜଗନ୍ନାଥମନ୍ଦିର ହିନ୍ଦୁମାନଙ୍କର; ଓଡ଼ିଆମାନେ ମନ୍ଦିର ନିର୍ମ୍ମାଣ କରିଅଛନ୍ତି ଓ ସେବା ପୂଜା ନିମନ୍ତେ ଜମି ଖଞ୍ଜି ଦେଇଅଛନ୍ତି, ପୁରୀର ରାଜା ଓଡ଼ିଆ, ସେବକମାନେ ମଧ ଓଡ଼ିଆ, ରାଜା ନିଜେ ମନ୍ଦିରର କାର୍ଯ୍ୟ ବୁଝିପାରନ୍ତି ନାହିଁ ବୋଲି ମ୍ୟାନେଜର ରଖନ୍ତି। ରାଜକିଶୋର ବାବୁ ମନ୍ଦିରର ମାନେଜର ହେବା ପୂର୍ବରୁ ଜ୧୪ଣ ମ୍ୟାନେଜରଙ୍କୁ ସରର୍କାରଙ୍କର ବିନା ସାହାଯ୍ୟରେ ରାଜା ନିଯୁକ୍ତ କରିଥିଲେ।

ରାଜକିଶୋର ବାବୁଙ୍କ ସମୟରୁ ସର୍କାରୀ କର୍ମଚାରୀ ମାନେଜର ହେଉଛନ୍ତି। ରାଜା ଯେଉଁ ସରକାରୀ କର୍ମ୍ମଚାରିଙ୍କୁ ମନୋନୀତ କରନ୍ତି ସର୍କାର ତାଙ୍କର ସରଭିସ୍ ଧାର ଦିଅନ୍ତି ଏଥର ସରକାର ନିଜେ ନିଯୁକ୍ତ କରିବାକୁ ଚାହାନ୍ତି। ଏହା ଯେ ସରକାରଙ୍କର ଅନଧିକାର ଚର୍ଚ୍ଚା କହିବା ବାହୁଲ୍ୟ। ସରକାର ଜଣେ ବିହାରୀ ଡେପୋଟି କଲେକ୍ଟରଙ୍କୁ ମ୍ୟାନେଜର କର୍ମ୍ମରେ ନିଯୁକ୍ତ କଲେ; କିନ୍ତୁ ରାଜା ତାଙ୍କୁ କ୍ଷମତାପତ୍ର ନ ଦେଲେ ସେ କୌଣସି କର୍ମ୍ମ କରିପାରିବେ ନାହିଁ। ଏହି ହେତୁରୁ ରାଜାଙ୍କଠାରୁ ଜବରଦସ୍ତି କ୍ଷମତା ପତ୍ର ଲେଖାଇ ନେବାନିମନ୍ତେ ଅନେକ ଚେଷ୍ଟା କରାଗଲା। ସେ କ୍ଷମତାପତ୍ର ଲେଖି ନ ଦେବାରୁ ଧମକ ଆସିଲା ଯେ, ତାଙ୍କର ପେନ୍‌ସେନ୍ ବନ୍ଦ ହେବ ଓ ତାଙ୍କ ହାତରୁ ମନ୍ଦିର ପରିଚାଳନାର ଭାର କାଢ଼ି ନିଆଯିବ। ସେ କଲେକ୍ଟର ଓ କମିସନର ସାହେବଙ୍କ ପାଖରେ ଗୁହାରିକଲେ। ସେକଥା ନ ଶୁଣି ତାଙ୍କୁ କଚେରିକୁ ଟାଣି ହଇରାଣ କରିବାର ଚେଷ୍ଟା ହେଲା ଓ ଯେଉଁମାନଙ୍କ ନାମରେ ସେ ଗୁହାରି କରିଥିଲେ ସେମାନେ ତାଙ୍କ ନାମରେ ଫୌଜଦାରୀ ଓ ଦେଓ୍ୟାନି ଅଦାଲତରେ ମୋକଦ୍ଦମା କରିବେ ବୋଲି ମଧ ଧମକ ଦିଆଗଲା। ରାଜା ମ୍ୟାନେଜର କାର୍ଯ୍ୟ ଲାଗି ଉପଯୁକ୍ତ ଲୋକ ମାଗିଲେ। ତାଙ୍କର ପ୍ରାର୍ଥନା ମଞ୍ଜୁର କରାଗଲା ନାହିଁ।

ଗୋଟିଏ ରହସ୍ୟ କଥା ଶୁଣନ୍ତୁ। କମିଶନର ସାହେବଙ୍କ ପାଖରୁ ରାଜାଙ୍କ ନିକଟକୁ ଖଣ୍ଡେ ଚିଠି ଗଲା ଯେ ଜଣେ ଡେପୁଟି କଲେକ୍ଟର ଖଣ୍ଡେ ଇଁରେଜ ଚିଠି ଦେଇ ଆସିବେ ଓ ତହିଁର ଓଡ଼ିଆ ଅନୁବାଦ ପଢ଼ି ଶୁଣାଇଦେବେ। ଡେପୋଟି କଲେକ୍ଟର ଯାଇ ଚିଠି ଗଢ଼ିଲେ। ଚିଠିର ମର୍ମ୍ମ ଏଥିରେ

ଯେଉ ପ୍ରଶ୍ନଗୁଡ଼ିକ ଲେଖା ଯାଇଅଛି ତହିଁର ସଙ୍ଗେ ସଙ୍ଗେ ଉତ୍ତର ଦିଅ। ଯଦି ସଙ୍ଗେ ସଙ୍ଗେ ଉତ୍ତର ନ ଦେଇ ପରେ ଉତ୍ତର ଦେବ ବୋଲି କହ ତେବେ ଆମ୍ଭେ ବୁଝିନେବୁ ଯେ ତୁମ୍ଭକଥା ମିଛ। ଏହା ଏକ ଅଦ୍ଭୁତ ପ୍ରଣାଳୀ ଧନ୍ୟ ଉଦ୍ଭାବିନୀ ଶକ୍ତି।

ସ୍ଥାନୀୟ କର୍ମଚାରିମାନଙ୍କ ମଧ୍ୟରେ ଆତଙ୍କ ଉପସ୍ଥିତ ହୋଇଅଛି। କାହାର ଭୟ କମିସନର ସାହେବଙ୍କ କଥା ନ ହେଲେ ତାଙ୍କ ଚାକିରିଖଣ୍ଡି ଯିବ। କିଏ କହୁଚି ମୋର ମ୍ୟାନେଜରୀ କର୍ମ୍ମ ଦରକାର ନାହିଁ, ମୋହର ଅନିଷ୍ଟ ଯେପରି ନ ହୁଏ।

ରାଜାଙ୍କ ନଅର ଦୁଆରମୁହଁରେ ଲୋକ ବସି ରହି କିଏ କେତେବେଳେ ରାଜାଙ୍କ ନିକଟକୁ ଗଲା ତାଙ୍କ ନାମ ଲେଖା ହେଉଅଛି। ମୋଟକଥା ଗୋଟିଏ ଜିଦ୍ ଲାଗିଅଛି। ଯେଉଁଠାରେ ଜିଦ ସେଠାରେ କଦାପି ସୁବିଚାର ହୋଇ ନ ପାରେ?

ରାଜାଙ୍କୁ ଜବଦ୍ କରିବା ସକାଶ ନାନା ପ୍ରକାର ଷଡ଼୍ଯନ୍ତ୍ର ଲାଗିଛି। ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ, ରାଜାଙ୍କ ସଙ୍ଗେ ତାଙ୍କର ଅନ୍ୟତର ପୋଷ୍ୟପୁତ୍ର ଜଗନ୍ନାଥ ଜେନାମଣିଙ୍କ ସହିତ ବିବାଦ ସୃଷ୍ଟି କରାଯାଉଅଛି। ଏହାଦ୍ୱାରା ମାମଲା ମକଦ୍ଦମା ବଢ଼ିବ ଓ ରାଜବଂଶର ବହୁଳ କ୍ଷତି ହେବ ଏହା କି କେହି ଭାବିପାରୁନାହାନ୍ତି? ଏପରି କାର୍ଯ୍ୟକୁ ନୀଚ ପ୍ରତିହିଁସା ନକହି ଆଉ କ'ଣ କହିବାକୁ ହେବ। ଆଶା କରୁଁ ଗଭର୍ଣ୍ଣମେଣ୍ଟ କଳଙ୍କ ନ ବଢ଼ାଇ ମାନ ରକ୍ଷା କରିବେ।

*ଉତ୍କଳ ଦୀପିକା-୧୯୨୪: ପୃଷ୍ଠା ସଂଖ୍ୟା-୪୪୨*

## ପୁରୀରେ ବିଚିତ୍ର ବ୍ୟାପାର

ଗବର୍ଣ୍ଣମେଣ୍ଟଙ୍କୁ କିଏ ବୁଝାଇଦେଉଅଛି ଯେ ପୁରୀରାଜାଙ୍କ ହାତରେ ଜଗନ୍ନାଥମନ୍ଦିର ରହିଲେ ମନ୍ଦିରକାର୍ଯ୍ୟ ସୁଚାରୁରୂପେ ପରିଚାଳିତ ହୋଇପାରିବ ନାହିଁ। ଏହି ଯୁକ୍ତ ସପକ୍ଷରେ କାରଣ ଦିଆଯାଇଅଛି ଯେ, ରାଜା ନିଜେ ମ୍ୟାନେଜର ନିର୍ବାଚନ କରନ୍ତି ନାହିଁ। ତାଙ୍କର କେତେ ଆଶ୍ରିତ ଲୋକ ଟଙ୍କା ପଇସା ନେଇ ମ୍ୟାନେଜର ନିର୍ବାଚନ କରନ୍ତି, ଅତଏବ ରାଜାଙ୍କ ହାତରୁ ଅଧିକାର କାଢ଼ିନେଲେ ଗୋଟାଏ ବୃହତ କାର୍ଯ୍ୟ ହେବ ବ୍ରିଟିଶ ସମ୍ରାଜ୍ୟ ସ୍ୱର୍ଗକୁ ଉଠିବ। ଏହି ଧାରଣା ହେତୁ ଗଭର୍ଣ୍ଣମେଣ୍ଟ ମନ୍ଦିର ସହିତ ତାଙ୍କର ବି ସମ୍ପର୍କ ଓ ମନ୍ଦିର ଉପରେ ତାଙ୍କର କି ଅଧିକାର ଏହା ବିବେଚନା ନକରି, ଏକ ଡ଼େପୁଟି କଲେକ୍ଟରଙ୍କୁ ଚାରିବର୍ଷ ସକାଶେ ନିଯୁକ୍ତ କଲେ, ଗଣ୍ଡଗୋଳ ଲାଗିବାରୁ ଚାରିବର୍ଷ ଚାରିମାସ ହେଲା, କିନ୍ତୁ ଯେଉଁ ମହାତ୍ମା ଚାରିମାସ ପାଇଁ ବସିଅଛନ୍ତି, ଯେ କିପରି ଚାରି ବର୍ଷ ରହିବେ, ଏଥିପାଇଁ ନାନାପ୍ରକାର ଚେଷ୍ଟା ହେଉଅଛି। ରାଜାଙ୍କୁ ରାଜି କରାଇବା ଉଦ୍ଦେଶ୍ୟରେ ତାଙ୍କ ପ୍ରତି ନାନା ପ୍ରକାର ଉତ୍ପୀଡ଼ନ ଓ ଅତ୍ୟାଚାର ହେଉଅଛି। ତହିଁର କେତେକ ନିବାରଣ "ଶକ୍ତି" ପ୍ରକାଶ କରିଅଛନ୍ତି। ଆମ୍ଭେମାନେ ମଧ କିଛି କିଛି ପ୍ରକାଶ କରି ଅଛୁଁ। ପ୍ରଥମତଃ ପୁରୀର ଏକ ଉକିଲ ରାଜାଙ୍କର ଆଶ୍ରିତ ଏକ ବ୍ୟକ୍ତିକୁ ନାନା ପ୍ରକାର ପ୍ରଲୋଭନ ଦେଖାଇଥିଲେ ଓ କୁତ୍ସିତ ଉପାୟଦ୍ୱାରା ତାଙ୍କୁ ବଶୀଭୂତ କରିବାକୁ ଚେଷ୍ଟା କରିଥିଲେ। ଶୁଣାଯାଏ ଏକ ସ୍ତ୍ରୀ ଲୋକକୁ ଦୂତରୂପେ ନିଯୁକ୍ତ କରାଯାଇଥିଲା। ସେ ମଧ ଅକୃତକାର୍ଯ୍ୟ ହେଲା। ଏବେ ତୋଡ଼ା ତୋଡ଼ା ଟଙ୍କାର ପ୍ରଲୋଭନ ପ୍ରଦର୍ଶନ ହେଉଅଛି ଏବଂ ଅହରହ ଲୋକ

ରାଜାଙ୍କ ଆଶ୍ରିତ ଲୋକଙ୍କ ଗୃହକୁ ଦଉଡୁ ଅଛନ୍ତି ଓ ରାଜା କିପରି ଚାରିବର୍ଷ ନିମନ୍ତେ ଏଗ୍ରିମେଣ୍ଟ ଲେଖିଦେବେ, ଚେଷ୍ଟା ହେଉଅଛି। ଏହି ଚେଷ୍ଟା କି ଗବର୍ଣ୍ଣମେଣ୍ଟଙ୍କ ଅବଲମ୍ବିତ ନୀତିର ସମ୍ପୂର୍ଣ୍ଣ ବିରୁଦ୍ଧ ନୁହେଁ? ଆମ୍ଭମାନଙ୍କର ବିଶ୍ୱାସ ଯେ ଏହା ଗବର୍ଣ୍ଣମେଣ୍ଟଙ୍କର କର୍ଣ୍ଣ ଗୋଚର ହେଉନାହିଁ। ସ୍ଥାନୀୟ କର୍ମଚାରିମାନେ ଦୁର୍ବଳତା ବା ଭୀରୁତା ବା ପ୍ରତିହିଂସା ବୃତ୍ତିଦ୍ୱାରା ପରିଚାଳିତ ହେବାରୁ ସବୁକଥା ବା ପ୍ରକୃତକଥା ଗବର୍ଣ୍ଣମେଣ୍ଟଙ୍କ କର୍ଣ୍ଣଗୋଚର ହେଉନଥିବା ସମ୍ଭବ ଏବଂ ତାହା ଯଦି ଯଥାର୍ଥ ହୁଏ, ଗବର୍ଣ୍ଣମେଣ୍ଟ ନିଜର ଅସାବଧାନତା ହେତୁ ପଥଭ୍ରଷ୍ଟ ହୋଇଅଛନ୍ତି ବୋଲି ଦିନେ ବୁଝିପାରିବେ।

ଓଡ଼ିଆମାନେ ଲୋଡୁଥିଲେ ଗୋଟିଏ ଓଡ଼ିଆ କଲେକ୍ଟର, ସେମାନେ ପାଇଲେ "ଦିଲ୍ଲୀର ଲଡ୍ଡୁ" ଓଡ଼ିଆ କଲେକ୍ଟରଙ୍କ କାର୍ଯ୍ୟକଳାପ ଦେଖି ସର୍ବସାଧାରଣଙ୍କର ଧାରଣା ହୋଇଅଛି ଯେ ସେ ଉପରିସ୍ଥ କର୍ମଚାରିଙ୍କର ସୁନା ପୁଅ ହେବା ନିମନ୍ତେ ଭାରି ବ୍ୟସ୍ତ। ଏ ପ୍ରସଙ୍ଗରେ ପ୍ରଶସ୍ତ ନୀତି ଅବଲମ୍ବନ କରିନପାରି ସେ ନ୍ୟାୟପଥ ହୁଡୁଅଛନ୍ତି, ଏବଂ ଦେଶର ଓ ଧର୍ମର ଅନିଷ୍ଟ ସାଧନ କଲେ କି ଫଳ ହେବ, ତାହା ବୋଧହୁଏ ଭାବିପାରିନାହାନ୍ତି। ବାରାନ୍ତରେ ଏଥିର ଆଲୋଚନା କରିବା।

*ଉତ୍କଳ ଦୀପିକା-୧୯୨୫: ପୃଷ୍ଠା ସଂଖ୍ୟା-୩୮*

# ମନ୍ଦିର ପରିଚାଳନା

## ପୁରୀମନ୍ଦିରର ଶାସନ

ଗତ ଗୋବିନ୍ଦଦ୍ୱାଦଶୀ ସମୟରେ ପୁରୀକ୍ଷେତ୍ର ଓ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ କେତେ ଗୁଡ଼ିଏ ଯାତ୍ରି ଭିଡ଼ରେ ମରା ପଡ଼ିବାରୁ ଗବର୍ଣ୍ଣମେଣ୍ଟଙ୍କ ଆଦେଶକ୍ରମେ ଶ୍ରୀଯୁକ୍ତ କମିଶନର ବୀମସ୍ ସାହେବ ତହିଁର ଅନୁସନ୍ଧାନ କରିଥିଲେ। ଅନୁସନ୍ଧାନ ଫଳ କି ହୋଇଥିଲା ଅବଧି ପ୍ରକାଶ ପାଇ ନାହିଁ ମାତ୍ର ଗବର୍ଣ୍ଣମେଣ୍ଟ ଇଣ୍ଡିୟା ପୁରୀର ରାଜାଙ୍କ ପ୍ରତି ଯେଉଁ ଆଜ୍ଞା ଦେଇଛନ୍ତି ତହିଁରୁ ଅନୁମାନ ହୁଅଇ ଯେ ମହାରାଜାଙ୍କର ତତ୍ତ୍ୱାବଧାରଣ ଦୋଷରୁ ଉକ୍ତ ଦୁର୍ଘଟନା ଘଟିଥିବାର ସ୍ଥିର ହୋଇଅଛି। ଏଥି ପାଇଁ ଗବର୍ଣ୍ଣମେଣ୍ଟ ଆଦେଶ କରିଅଛନ୍ତି କି ମହାରାଜା ପୁରୀ ମନ୍ଦିର ମଧ୍ୟରେ ଯାତ୍ରୀଙ୍କ ପ୍ରବେଶ ରକ୍ଷା ଓ ଦର୍ଶନ କାର୍ଯ୍ୟମାନ ସୁଚାରୁରୂପେ ଚାଲିବା ଓ ସମସ୍ତ ଦୁର୍ଘଟନା ନିବାରଣର ବ୍ୟବସ୍ଥା ନିମିତ୍ତ ଗୋଟିଏ ହିନ୍ଦୁ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର କମିଟୀ ନିଯୁକ୍ତ କରିବେ ଓ ତାହାଙ୍କ ପରାମର୍ଶରେ ଏ ବିଷୟର ନିୟମାବଳୀ ସ୍ଥିର କରି ଗବର୍ଣ୍ଣମେଣ୍ଟଙ୍କ ମଞ୍ଜୁରୀ କାରଣ ପଠାଇବେ। ଯେପର୍ଯ୍ୟନ୍ତ ଏ ନିୟମାବଳୀ ପ୍ରସ୍ତୁତ ଓ ଗବର୍ଣ୍ଣମଣ୍ଟେରେ ଅର୍ପିତ ନ ହେବ ସେ ପର୍ଯ୍ୟନ୍ତ ମହାରାଜାଙ୍କୁ ମହାରାଜା ପଦ ଓ ତହିଁର ସନନ୍ଦ କି ଯାହା ଗତ ଜାନୁଆରୀ ମାସରେ ଗବର୍ଣ୍ଣମେଣ୍ଟ ଦେଇଛନ୍ତି ତାହା ସ୍ଥଗିତ ରହିବ। ଏ ଆଜ୍ଞା ଅଳ୍ପଦିନ ହେଲା ତାହାଙ୍କ ନିକଟକୁ ଯାଇଅଛି ଓ ଏଅନୁସାରେ ଅବଧି କିଛି କାର୍ଯ୍ୟ ହୋଇ ନାହିଁ ଯେପରି ବନ୍ଦୋବସ୍ତ ହେବ ତାହା ଏଉତ୍ତାରୁ ଜଣା ପଡ଼ିବ। ପୁରୀର ମହାରାଜା ଆଇନାନୁସାରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଅଟନ୍ତି ଓ ତାହାଙ୍କ ଉକ୍ତ

କର୍ମରେ କେତେ ପ୍ରକାର ଶୈଥିଲ୍ୟ ଘଟିଥିବାର ମଧ୍ଯ ଅପ୍ରକାଶ ନାହିଁ। ଅତଏବ ଆମ୍ଭେମାନେ ବିବେଚନା କରୁଁ କି ଗବର୍ଣ୍ଣମେଣ୍ଟ ତାହାଙ୍କୁ ଯେଉଁ ଆଜ୍ଞା ଦେଇଅଛନ୍ତି ତାହା ଅଯୌକ୍ତିକ ନୁହଇ ଏବଂ ତହିଁରେ ଏହାଙ୍କର ଅଧିକାର ପ୍ରତି ମଧ୍ଯ ହସ୍ତକ୍ଷେପଣ ହୋଇ ନାହିଁ। କାରଣ ଗବର୍ଣ୍ଣମେଣ୍ଟ ତାହାଙ୍କୁ ଏତିକି କହିଅଛନ୍ତି ଯେ ଏଡ଼େ ଗୁରୁତର ବ୍ୟାପାର ସେ କେବଳ ଆପଣା ବିବେଚନାରେ ନିର୍ବାହ କରିବାକୁ ସାହାସ ନ କରି କେତେ ସମ୍ଭ୍ରାନ୍ତଲୋକଙ୍କୁ ଆପଣା ମନ୍ତ୍ରୀସ୍ୱରୁପ କମିଟୀ ନିଯୁକ୍ତ କରି ତାହାଙ୍କ ପରାମର୍ଶରେ ଓ ଆପେ ସ୍ଥିର କରି ଥିବା ନିୟମାନୁସାରେ କର୍ମକାରକ ହେବେ। ଏପରି ହେଲେ ତାହାଙ୍କର ବର୍ତ୍ତମାନ ଯେ ଆଧି ଅଛି ତାହା ସ୍ଥିର ରହିଲା। କିନ୍ତୁ କେତେକ ଲୋକ ମନେକରନ୍ତି ଯେ ଗୋବିନ୍ଦଦ୍ୱାଦଶୀ ସମୟରେ ଦୁର୍ଘଟନା ସକାଶେ ଏକା ପୁରୀର ମହାରାଜାଙ୍କୁ ଦାୟଗ୍ରସ୍ତ କରିବାର ଉଚିତ ହୋଇ ନାହିଁ ସେଠାରେ ସରକାରୀ କର୍ମକାରକମାନେତ ଉପସ୍ଥିତ ଥିଲେ ସେମାନେ ଅଧିକା କି ବନ୍ଦୋବସ୍ତ କଲେ। ଏପରି ଚକ୍ରତୀର୍ଥରେ ଯେ ମନୁଷ୍ୟ ମରାପଡ଼ିବାର ଶୁଣାଯାଏ ତହିଁରେତ ମହାରାଜାଙ୍କର ଦୋଷ ବୋଲାଯାଇ ନ ପାରେ। ଏପର ଏହି କାଳରେ ଅଯୋଧ୍ୟା କାଶୀ ପ୍ରଭୃତି ତୀର୍ଥସ୍ଥାନମାନଙ୍କରେ ଭୟଙ୍କର ଦୁର୍ଘଟଣା ହୋଇଥିଲା ଓ ପୁଲିସ ତାହା ନିବାରଣ କରି ପାରିଲେ ନାହିଁ। ଏଥିରୁ ସହଜରେ ଅନୁମାନ ହୋଇ ପାରେ ଯେ ଅସାଧାରଣ ଭିଡ଼କୁ କାହାରି ଆୟତ୍ତ ନ ଥିବାର ଗବର୍ଣ୍ଣମେଣ୍ଟ ବିବେଚନା କରି ସରକାରୀ କର୍ମକାରକଙ୍କୁ ନିର୍ଦ୍ଦୋଷୀ କରିଅଛନ୍ତି ଅଥଚ ପୁରୀର ମହାରାଜାଙ୍କୁ ଏଥିପାଇଁ ଶାସନ କରିବାକୁ ପ୍ରବୃତ୍ତ ହେଲେ। ଏହା କେମନ୍ତ କରି ଘଟିଲା। ଏପରି ସଂଶୟ ମନରେ ଜାତ ହେବା ନିତାନ୍ତ ଅସଙ୍ଗତ ନୁହଇ ଓ ଏଥିପାଇଁ ଆମ୍ଭେମାନେ ଏକାନ୍ତ ଆଶା କରୁଁ ଯେ ଶ୍ରୀଯୁକ୍ତ କମିଶନର ସାହେବଙ୍କ ଅନୁସନ୍ଧାନ ଓ ତହିଁରେ ଗବର୍ଣ୍ଣମେଣ୍ଟଙ୍କ ମନ୍ତବ୍ୟ ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶ ହେଉ ତାହା ହେଲେ କାହାରି କିଛି ଭ୍ରମ ରହି ପାରିବ ନାହିଁ।

*ଉତ୍କଳ ଦୀପିକା-୧୮୭୭: ପୃଷ୍ଠା ସଂଖ୍ୟା-୧୨୦*

## ପୁରୀ ଜଗନ୍ନାଥ ମନ୍ଦିର

ପୁରୀ ରାଜା କଳାପାଣିକୁ ପ୍ରେରିତ ହେବା ଦିନଠାରୁ ଶ୍ରୀ ଜଗନ୍ନାଥ ମନ୍ଦିରର କାର୍ଯ୍ୟ ନିର୍ବାହ ପକ୍ଷରେ ନୂତନ ବନ୍ଦୋବସ୍ତ କରିବାର ଆବଶ୍ୟକତା ପ୍ରତ୍ୟକ୍ଷ ହୋଇଥିଲା ଏବଂ ଶ୍ରୀଯୁକ୍ତ ଡାମ୍ପିୟର ସାହେବ ବୋର୍ଡ ରେବନ୍ୟୁର ମେମ୍ବର ଏବିଷୟରେ ଖଣ୍ଡିଏ ଆଇନର ପାଣ୍ଡୁଲିପି ସୁଦ୍ଧା ପ୍ରସ୍ତୁତ କରିଥିଲେ। ତେତେବେଳେ ଏହି କଥା ସମସ୍ତଙ୍କୁ ଜଣାଥିଲା କି କେବଳ ପୁରୀ ରାଜାଙ୍କ ଅନୁପସ୍ଥିତ କାଳ ନିମିତ୍ତ ମନ୍ଦିର ସମ୍ପର୍କରେ ପୃଥକ୍ ବନ୍ଦୋବସ୍ତ ହେବ ଅର୍ଥାତ୍ ଗୋଟିଏ ସ୍ୱତନ୍ତ୍ର କମିଟୀ ଗଠିତ ହୋଇ ତହିଁର ତତ୍ତ୍ୱାବଧାରଣରେ ଜଣେ ବେତନଭୋଗୀ ମାନେଜରଦ୍ୱାରା ମନ୍ଦିରକାର୍ଯ୍ୟ ଚଳିବ ଏବଂ ପୁରୀ ରାଜଗାଦିରେ ଯୋଗ୍ୟବ୍ୟକ୍ତି ଆସୀନ ହେଲାରୁ ସେ ପରମ୍ପରା ରୀତିଅନୁସାରେ ଜଗନ୍ନାଥଙ୍କ ମନ୍ଦିରର ସେବା ଚଳାଇବେ। ଉକ୍ତ ଆଇନ୍ ଏବଂ ସଦାବର୍ତ୍ତ ସମ୍ପର୍କୀୟ ଆଇନର ପାଣ୍ଡୁଲିପିମାନ ଏକ ସମୟରେ ଇଣ୍ଡିୟା ଗବର୍ଣ୍ଣମେଣ୍ଟରେ ଉପସ୍ଥିତ ହୁଅନ୍ତେ ମହାମାନ୍ୟ ଲର୍ଡ ରିପନ ଧର୍ମ ବିଷୟରେ ଗବର୍ଣ୍ଣମେଣ୍ଟଙ୍କର ହସ୍ତକ୍ଷେପ କରିବା ଅଯୌକ୍ତିକ ଜ୍ଞାନ

କରି ସଦାବର୍ତ୍ତର ଆଇନକୁ ଅଗ୍ରାହ୍ୟ କଲେ କିନ୍ତୁ ପୁରୀମନ୍ଦିର ବିଷୟରେ କୌଣସି ନିଷ୍ପତ୍ତି ହୋଇ ନ ଥିବାରୁ ଏଥିର ନୂତନ ବ୍ୟବସ୍ଥା ହେବ ବୋଲି ସମସ୍ତେ ଆଶା କରିଥିଲେ। ଏପରି ଅନେକ ଦିନ ବାହାରି ଗଲା ଏବଂ ଆଉ କିଛି ଶୁଣାଗଲା ନାହିଁ। ବିସ୍ତର ବିଳମ୍ବ ଦେଖି କେହି୨ ମନେ କରିଥିଲେ ପ୍ରାୟ ଗବର୍ଣ୍ଣମେଣ୍ଟ ଏଥିରେ ସୁଦ୍ଧା ଧର୍ମର ଯୁକ୍ତିକୁ ଅନୁସରଣ କରି କିଛି କରିବେ ନାହିଁ ଏଥିମଧ୍ୟରେ ଦେବାନି କାର୍ଯ୍ୟ ବିଧିର କେତେକ ବିଷୟ ସଂଶୋଧନ ନିମିତ୍ତ ଗୋଟିଏ ନୂତନ କ୍ଷୁଦ୍ର ଆଇନର ପାଣ୍ଡୁଲିପି ବାହାରିଲା ଏବଂ ନିୟମିତ ରୂପେ ତାହା ବ୍ୟବସ୍ଥାପକ ସଭାରେ ବିଚାରିତ ହୋଇ ବିଧିବଦ୍ ହେଲା। ଏହି ଅବକାଶରେ ବ୍ୟବସ୍ଥାପକ ସଭା କ୍ଷୁଦ୍ର ଆଇନଟିକୁ ଅଲଗା ପ୍ରକାଶ ନ କରି ଦେବାନି କାର୍ଯ୍ୟ ବିଧିର ସଂଶୋଧିତ ଆଇନ ବୋଲି ଦେବାନି କାର୍ଯ୍ୟବିଧି ବିଷୟକ ସନ ୧୮୮୨ ସାଲର ୧୪ ଆଇନ ଗୋଟାସୁଦ୍ଧା ପ୍ରଚାର କଲେ ଏବଂ ସେହି ଆଇନ ଚଳିତ ମାସ ଅଦ୍ୟରୁ ଜାରୀ ହେଲା। ଦେବାନି କାର୍ଯ୍ୟବିଧି ଆଇନରେ ପୁରୀମନ୍ଦିରର ବ୍ୟବସ୍ଥା ହେବ ଏହା ସ୍ୱପ୍ନର ଅଗୋଚର ଏବଂ ଉକ୍ତ ଆଇନ ସଂଶୋଧନ ସମୟର ତର୍କବିତର୍କରେ ଏଥିର କୌଣସି ଉଲ୍ଲେଖ ସୁଦ୍ଧା ହୋଇ ନ ଥିଲା ସୁତରାଂ କିଏ କାହିଁକି ମନେ କରନ୍ତା ଯେ ଦେବାନି କାର୍ଯ୍ୟବିଧିରେ ପୁରୀମନ୍ଦିରର ବ୍ୟବସ୍ଥା ହୋଇଅଛି। ବାସ୍ତବରେ ନୂତନ ଦେବାନି କାର୍ଯ୍ୟବିଧି ଗେଜେଟରେ ଛାପା ହେବାର ଦୁଇ ଏକ ମାସ ଉତ୍ତାରୁ ଦେଖାଗଲା ଯେ ଉକ୍ତ ଆଇନର ୫୩୯ଧାରା ଶେଷରେ ଲେଖାଅଛି କି ଏହାଦ୍ୱାରା ସନ ୧୮୪୦ ସାଲର ୧୦ ଆଇର ଦୁଇ ଧାରା ରହିତ ହେଲା। ଏହି ଦୁଇ ଧାରାରେ ଖୋରଧାର ରାଜାଙ୍କୁ ଜଗନ୍ନାଥଙ୍କ ମନ୍ଦିରର ସୁପ୍ରଣ୍ଟେଣ୍ଟ ନିଯୁକ୍ତ କରା ଯାଇଥିଲା ଏବଂ ତଦନୁସାରେ ଏପର୍ଯ୍ୟନ୍ତ ଉକ୍ତ ଅଧିକାର ଭୁକ୍ତ ରାଜବଂଶ ଚଳାଇ ଆସୁଅଛନ୍ତି। ଏପରି ବ୍ୟବସ୍ଥା କରିବାର ଫଳ ଏହି ହେଲା କି ପୁରୀ ରାଜାଙ୍କ ତତ୍ତ୍ୱବଧାରଣରୁ ଚିରକାଳ ନିମିତ୍ତ ମନ୍ଦିର ବାହାରିଗଲା ଏବଂ ଅନ୍ୟାନ୍ୟ ଧର୍ମାର୍ଥ ଏବଂ ସଦାବର୍ତ୍ତ ମନ୍ଦିର ସଙ୍ଗରେ ତହିଁର ବିଶେଷ କିଛି ରହିଲା ନାହିଁ। ଏଣିକି ମନ୍ଦିରର କାର୍ଯ୍ୟରେ ବିଶୃଙ୍ଖଳା ଘଟିଲେ ସ୍ୱାର୍ଥବାନ୍ ବ୍ୟକ୍ତିଙ୍କ ଆବେଦନାଦି ଅଦାଲତ ତହିଁର ସୁବନ୍ଦୋବସ୍ତ କରି ଦେବେ ଆଉ ଗବର୍ଣ୍ଣମେଣ୍ଟଙ୍କର କୌଣସି ସମ୍ପର୍କ ରହିଲା ନାହିଁ। ଆମ୍ଭମାନଙ୍କ ମତରେ ଲର୍ଡ ରିପନଙ୍କ ବିଚାର ଏବଂ କୌଶଳ ଉଭୟ ପ୍ରଶଂସନୀୟ ଅଟଇ। ଏକ ପକ୍ଷରେ ଧର୍ମ ବିଷୟରେ ହସ୍ତକ୍ଷେପ ନ କଲେ ଏଠାରୁ ବିଲାତ ପର୍ଯ୍ୟନ୍ତ ଗୋଳ ହେବ ଅନ୍ୟ ପକ୍ଷରେ ଉତ୍କଳବାସିମାନେ ପୁରୀ ରାଜାଙ୍କଠାରୁ ମନ୍ଦିର କାଢ଼ି ନେବାକୁ ସୁଖକର ମଣିବେ ନାହିଁ ଏହି ହେତୁ ସେ କୌଣସି ଆନ୍ଦୋଳନ ନ କରି ଅଲକ୍ଷିତ ଭାବରେ ମନ୍ଦିରକୁ ସ୍ୱତନ୍ତ୍ର କରି ଦେଲେ ଏବଂ ଲୋକଙ୍କ ଅଭିମତେ କମିଟି ନିୟୋଗ କରିବାର ଆଶା ଦେଲେ। ଗବର୍ଣ୍ଣମେଣ୍ଟ ପୁରୀ ରାଜାଙ୍କୁ ସୁପ୍ରଣ୍ଡାଣ୍ଟ ନିଯୁକ୍ତ କରିଥିଲେ ଯେବେ ସେ ନିୟୋଗ ରହିତ ହେଲା ତେବେ ସୁପ୍ରଣ୍ଡେଣ୍ଟି କାର୍ଯ୍ୟ ନିର୍ବାହ ନିମିତ ବ୍ୟବସ୍ଥା କରିବା ଗବର୍ଣ୍ଣମେଣ୍ଟଙ୍କର କର୍ତ୍ତବ୍ୟ ହେଉଅଛି ଏହି ହେତୁ ଗବର୍ଣ୍ଣମେଣ୍ଟ ଗୋଟିଏ କମିଟି ଗଢ଼ିବା ପାଇଁ ସ୍ଥାନୀୟ ହାକିମକୁ ଆଦେଶ ଦେବାରୁ ତଦନୁସାରେ ପୁରୀର କଲେକ୍ଟର ଜ୧୦ଣ ଭଦ୍ରଲୋକଙ୍କ ନାମ ଲେଖି କମିଶ୍ନର ସାହେବଙ୍କ ମନୋନୀତ ଆଗାମୀ ମଙ୍ଗଳବାର ପୁରୀକୁ ଯାତ୍ରା କରିବେ ଏବଂ ଆମ୍ଭେମାନେ ଆଶା କରୁଁ କି

ସେଠାରେ ସର୍ବସାଧାରଣଙ୍କ ମତାମତ ବୁଝି ଉପଯୁକ୍ତ ବ୍ୟକ୍ତିଙ୍କୁ କମିଟିଭୁକ୍ତ କରିବେ। ପ୍ରଥମେ ଯେଉଁମାନେ କମିଟିଭୁକ୍ତ ହେବେ ସେମାନଙ୍କ ଯୋଗ୍ୟତା ଓ କାର୍ଯ୍ୟ ଶୃଙ୍ଖଳା ଉପରେ ସମସ୍ତ ବିଷୟ ନିର୍ଭର କରିବ। ଯାହାଙ୍କ ପ୍ରତି ଲୋକଙ୍କର ଅନୁକୂଳ ମତ ନାହିଁ ସେପରି ବ୍ୟକ୍ତିଙ୍କୁ କଦାଚ ସ୍ଥାନ ଦେବା ଉଚିତ ନୁହଇ ଆଉ ରେବନ୍ୟୁ ଏବଂ ଫଉଜଦାରୀ ଏଲାକାର ସରକାରୀ କର୍ମକାରକଙ୍କୁ ମଧ୍ୟ କମିଟିରୁ ଅନ୍ତର ରଖିବା ଉଚିତ କାରଣ ଏମାନେ ସ୍ୱାଧୀନ ଭାବରେ କମିଟିର କାର୍ଯ୍ୟ ପର୍ଯ୍ୟାବେକ୍ଷଣ କରିବେ ଏମାନେ କମିଟିରେ ରହିଲେ ତାଦୃଶ ଫଳ ବେବ ନାହିଁ।

*ଉତ୍କଳ ଦୀପିକା-୧୮୮୨: ପୃଷ୍ଠା ସଂଖ୍ୟା-୧୨୮*

## ପୁରୀରେ ଜଗନ୍ନାଥଜିଉଙ୍କ ମନ୍ଦିର

୧୮୪୦ ମଶୀହାର ୧୦ ଆଇନର ୨ୟ ଧାରା ଅନୁଦାରେ ଉକ୍ତ ମନ୍ଦିରର ତତ୍ତ୍ୱାବଧାନର ଭାର ଖୋରଧା ରାଜାଙ୍କ ପ୍ରତି ଅର୍ପିତ ହୋଇଥିଲା, ତଦନୁସାରେ ଖୋରଧାର ରାଜବଂଶ ଉକ୍ତ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ହୋଇ ଦେଉଳର ତାବତୀୟ କାର୍ଯ୍ୟ ନିର୍ବାହ କରୁଥିଲେ। ଏବେ ସେହି ଅଧିକାର ସଂଶୋଧିତ ଦେୱାନୀ କାର୍ଯ୍ୟ ବିଧିର ୧୮୮୨ ସାଲର ୧୪ ଆଇନ କି ଯାହା ଏହି ମାସ ଆଦ୍ୟରୁ ଜାରୀ ହୋଇଅଛି, ସେହି ଆଇନର 539 ଧାରା ଅନୁସାରେ ଚିରକାଳ ନିମନ୍ତେ ରହିତ ହେଲା। ଏବେ ଉକ୍ତ ମନ୍ଦିର ଅନ୍ୟାନ୍ୟ ସଦାବର୍ତ୍ତ ମନ୍ଦିରର ସମକକ୍ଷ ହୋଇ ଗୋଟିଏ କମିଟୀଙ୍କ ହସ୍ତରେ ରହିବ। ଯେବେ ଏଥିରେ କୌଣସି ଗୋଳମାଳ ଘଟେ, ତେବେ ଦେୱାନୀ ଅଦାଲତ, ଅନ୍ୟାନ୍ୟ ସଦାବର୍ତ୍ତ ମଠର ଯେପରି ସୁବନ୍ଦୋବସ୍ତ କରନ୍ତି ସେହିପରି ଉକ୍ତ ମନ୍ଦିରର ବନ୍ଦୋବସ୍ତ କରିବେ। ସରକାର ବାହାଦୂର ସେଥିରେ କୌଣସି ହସ୍ତକ୍ଷେପ କରିବେ ନାହିଁ।

ରେଭିନିଉ ବୋର୍ଡର ମେମ୍ବର ଶ୍ରୀଯୁକ୍ତ ଡାମ୍ପିୟର ସାହେବ ଓଡ଼ିଶ୍ୟାକୁ ଆସି ସଦାବର୍ତ୍ତ ମଠ ଓ ଉକ୍ତ ମନ୍ଦିରର କାର୍ଯ୍ୟ ଚଳିବା ସମ୍ବନ୍ଧରେ ଦୁଇଖଣ୍ଡ ଆଇନର ପାଣ୍ଡୁଲିପି ପ୍ରସ୍ତୁତ କରି ଭାରତବର୍ଷୀୟ ବ୍ୟବସ୍ଥାପନ ସଭାରେ ଦେଇଥିଲେ, ସେହି ପାଣ୍ଡୁଲିପିମାନଙ୍କ ମଧ୍ୟରୁ ସଦାବର୍ତ୍ତ ମଠ ସମ୍ବନ୍ଧୀୟ ଆଇନର ପାଣ୍ଡୁଲିପିକୁ ଆମ୍ଭମାନଙ୍କ ବଡ଼ଲାଟ ରୀପନ ବାହାଦୂର ମନୋନୀତ ନ  କରିବାରୁ ତାହା ରହିତ ହେଲା; କାରଣ ତାହା ବିଧିବଦ୍ଧ ହେଲେ ଧର୍ମ ଉପରେ ସରକାର ବାହାଦୂରଙ୍କର ହସ୍ତକ୍ଷେପ କରିବା ହୁଅନ୍ତା। ତଭିନ୍ନ ଉକ୍ତ ମନ୍ଦିର ସମ୍ବନ୍ଧରେ ଯେଉଁ ପାଣ୍ଡୁଲିପି ପ୍ରଦତ୍ତ ହୋଇଥିଲା, ତାହା ସ୍ୱତନ୍ତ୍ର ଆଇନ ରୂପରେ ଲିପିବଦ୍ଧ ନ ହୋଇ ଦେୱାନୀ ଅଦାଲତର ଉକ୍ତ ନୂଆ ଆଇନ୍ ସଙ୍ଗରେ ଯୋଜନା କରି ଦିଆଗଲା, ସେପରି କରିବାରୁ ଧର୍ମ ପ୍ରଭୃତି ସମସ୍ତ କଥା ବଜାୟ ରହିଲା।

ଏତେବେଳେ ଉପଯୁକ୍ତ ଓ ନିଃସ୍ୱାର୍ଥ ଲୋକଙ୍କୁ ଦେଉଳର କମିଟୀରେ ନିଯୁକ୍ତ କରିବା ଉଚିତ ହେଉଅଛି। ଦୀପିକାରୁ ଅବଗତ ହେଲୁଁ ଯେ, ଆମ୍ଭମାନଙ୍କର କମିଶନର ସାହେବ ଗତ ମଙ୍ଗଳବାର ଦିନ ପୁରୀକୁ ଯାତ୍ରା କରିଥିବେ। ଭରସା କରୁଁ, ସାହେବ ମୌସୁଫ ଉପଯୁକ୍ତ ଲୋକଙ୍କୁ ଘେନି ଗୋଟିଏ କମିଟୀ ସଂଗଠନ କରି ଦେବେ।

*ବାଲେଶ୍ୱର ସମ୍ବାଦ ବାହିକା, ୧୮୮୨, ପୃଷ୍ଠା-34*

# ଶ୍ରୀ ଜଗନ୍ନାଥ ଦେବଙ୍କ ମନ୍ଦିରର କାର୍ଯ୍ୟ ନିର୍ବାହର ବ୍ୟବସ୍ଥା

ପାଠକମାନେ ଜାଣନ୍ତି ଯେ ସନ୍ ୧୮୪୦ ସାଲର ୧୦ ଆଇନ କି ଯଦ୍ୱାରା ପୁରୀର ରାଜା ଏହି ମନ୍ଦିରର ସୁପ୍ରଣ୍ଟେଣ୍ଡ ସ୍ୱରୂପ ନିଯୁକ୍ତ ହୋଇ ଥିଲେ ଗତ ବର୍ଷରେ ଜାରୀ ହୋଇଥିବା ଦେବାନୀ କାର୍ଯ୍ୟ ବିଧିର ୫୩୯ ଧାରା ଅନୁସାରେ ରହିତ ହେବାରୁ ସେହି ସମୟରୁ ପୁରୀ ମନ୍ଦିରର କାର୍ଯ୍ୟ ନିର୍ବାହ ନିମିତ୍ତ ଗୋଟିଏ କମିଟି ନିଯୁକ୍ତ ହେବାର ପ୍ରସ୍ତାବ ଗବର୍ଣ୍ଣମେଣ୍ଟଙ୍କ ବିଚାରାଧୀନ ରହିଅଛି। ସେହି ପ୍ରସ୍ତାବ ସମ୍ପର୍କରେ ପୁରୀର ପୂର୍ବ କଲେକ୍ଟର ଶ୍ରୀଯୁକ୍ତ ଗୁପ୍ତ ସାହେବ ପୁରୀବାସୀଙ୍କ ସାଧାରଣ ଅଭିପ୍ରାୟ ଜାଣିବା ସକାଶେ ଗୋଟିଏ ସଭା କରିଥିଲେ। ଉପସ୍ଥିତ ସଭ୍ୟମାନଙ୍କୁ ସାହେବ ଏହି ପ୍ରଶ୍ନ କଲେ କି ମନ୍ଦିର ସକାଶେ ଯେଉଁ କମିଟି ଗଠିତ ହେବ ତହିଁରେ ପୁରୀ ରାଜାଙ୍କର ସମ୍ପର୍କ ରହିବ କି ନାହିଁ ଥିବ ଯେବେ ରହିବ ତେବେ କିପରି ଭାବରେ। ଗୁପ୍ତ ସାହେବ ଆପଣାର ଅଭିପ୍ରାୟ ଏହି ଅଭିବ୍ୟକ୍ତ କଲେ କି ତାହାଙ୍କ ବିବେଚନାରେ ଉକ୍ତ କମିଟିର ମେମ୍ବର ପାଞ୍ଚଜଣ ଅଥବା ସାତଜଣ ହେବେ ଏବଂ ପୁରୀ ରାଜା ସେମାନଙ୍କର ପ୍ରେସିଡଣ୍ଟ (ସଭାପତି) ହେବେ ମେମ୍ବରମାନେ ସମୟ ସମୟରେ ପରିବର୍ତ୍ତନ ହୋଇ ପାରିବେ ମାତ୍ର ରାଜା ପୁରୁଷାନୁକ୍ରମେ ସେମାନଙ୍କର ପ୍ରେସିଡ଼େଣ୍ଟ ହେବେ। କମିଟିର ଅଧୀନରେ ଜଣେ କେବଳ ଭୋଗୀ ମାନେଜର ନିଯୁକ୍ତ ହେବ। କମିଟି ମାନେଜର ମନୋନୀତ କରିବେ ମାତ୍ର ତାହାଙ୍କ ନିୟୋଗ ଓ ବରଖାସ୍ତି ଗବର୍ଣ୍ଣମେଣ୍ଟଙ୍କ ହାତରେ ରହିବ କମିଟି କେବଳ ତାହାଙ୍କର ଦୋଷାଦୋଷ ସମ୍ପର୍କରେ ଗବର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ କରି ପାରିବେ।

ପୁରୁଷୋତ୍ତମ ପତ୍ରିକା ବୋଲନ୍ତି କି କଲେକ୍ଟର ସାହେବଙ୍କର ଉପର ଲିଖିତ କଥାମାନ ଶୁଣି ସଭ୍ୟମାନେ ସହସା କୌଣସି ମତ ନ ଦେଇ ତହିଁ ଆରଦିନ ଶ୍ରୀ ମନ୍ଦିରରେ ଏକ ବୃହତ୍ ସଭା ଆହ୍ୱାନ କଲେ ଏବଂ ସେଠାରେ ଅନେକ ବାଦାନୁବାଦ ଉତ୍ତାରୁ ଏହି କଥା ଧାର୍ଯ୍ୟ ହେଲା ଯେ ମନ୍ଦିରର ତତ୍ତ୍ୱାବଧାନ ପ୍ରଚଳିତ ପ୍ରଥା ଅନୁଯାୟି ପୁରୀ ରାଜାଙ୍କ ହସ୍ତରେ ରହିବା ଉଚିତ ତହିଁର ଅନ୍ୟଥା କଦାଚ ବାଞ୍ଛନୀୟ ନୁହଇ। ସଭାର ଏହି ଅଭିପ୍ରାୟ କଲେକ୍ଟର ସାହେବଙ୍କୁ ଜଣାଇ ଦିୟାଯାଇଅଛି।

ଆମ୍ଭେମାନେ ପୂର୍ବରୁ କହିଅଛୁଁ କି ଗବର୍ଣ୍ଣମେଣ୍ଟ ସେପରି ଗୋପନ ଭାବରେ ସନ ୧୮୪୦ ସାଲର ୧୦ ଆଇନକୁ ରହିତ କଲେ ତାହା କଦାଚ ଅନୁମୋଦୀୟ ନୁହଇ। ଯେବେ ସେ କାଳରେ ଉକ୍ତର ଆଇନ ରହିତ କରିବାର ହେତୁମାନ ସର୍ବସାଧାରଣଙ୍କୁ ଜଣାଇ ଦିୟାଯାଇ ଥାନ୍ତା ଏବଂ ସେମାନେ ତହିଁର ପ୍ରତିବାଦ କରିବାକୁ ଅବକାଶ ପାଇଥାନ୍ତେ ଏବଂ ସେ ପଚାରି ପ୍ରତିବାଦ ଅଗ୍ରାହ୍ୟ କରିବାର ହେତୁ ପ୍ରଦର୍ଶନ ହୋଇ ଆଇନ ରହିତ ହୋଇଥାନ୍ତା ତେବେ ବର୍ତ୍ତମାନ ପୁରୀର ସାଧାରଣ ଭାବ ସେଠା ରାଜାଙ୍କ ସପକ୍ଷରେ ପ୍ରଦର୍ଶିତ ହୋଇ ପାରନ୍ତା ନାହିଁ। କାରଣ ଲୋକମାନେ ଏହି ପରିବର୍ତ୍ତନର ଆବଶ୍ୟକତା ଉତ୍ତମରୂପେ ହୃଦୟଙ୍ଗମ କରିଥାନ୍ତେ। ଭାରତବର୍ଷୀୟ ବ୍ୟବସ୍ଥାପକ ସଭା ସାଧାରଣ ମତର ଉପେକ୍ଷା ନ ରଖି ଗୋଟିଏ ଆଇନକୁ ଇଚ୍ଛାମତେ ଲେଉଟାଇ ଦେଇ ସୁବିଚାର କରି ନାହାନ୍ତି। ମାତ୍ର ଏହା ବୋଲି ଆମ୍ଭେମାନେ ଏମନ୍ତ କହି ନ ପାରୁଁ ଯେ ମନ୍ଦିରର

ତତ୍ତ୍ୱାବଧାରଣ ବିଷୟରେ କୌଣସି ପରିବର୍ତ୍ତନ ଆବଶ୍ୟକ ନାହିଁ। ଯେମନ୍ତ ଅନ୍ୟାନ୍ୟ ସଦାବର୍ତ୍ତ ବା ସାଧାରଣ ଦେବାଳୟମାନଙ୍କର ତଦ୍ରୂପ ପୁରୀ ମନ୍ଦିରର ତତ୍ତ୍ୱାବଧାରଣରେ ସମୟ ସମୟରେ ଅନେକ ବିଶୃଙ୍ଖଳା ଘଟିଅଛି ଏବଂ ଘଟିବାର ସମ୍ଭବ। ତହିଁର ପ୍ରତୀକାର କରିବା ଗବର୍ଣ୍ଣମେଣ୍ଟଙ୍କର କର୍ତ୍ତବ୍ୟ ହେଉଅଛି। ପୁରୀ ରାଜାମାନେ ମଧ୍ୟ କ୍ରମାଗତ ସମସ୍ତେ ଏ ରୂପ ଯୋଗ୍ୟତା ସହିତ କାର୍ଯ୍ୟ ନିର୍ବାହ କରିବାର ପରିଚୟ ଦେଇ ଆସି ନାହାନ୍ତି କି ଯଦ୍ଦ୍ୱାରା ସେମାନଙ୍କ ବିରୁଦ୍ଧରେ କେହି ଦନ୍ତସ୍ଫୁଟ କରିବାର ଅବସର ପାଇବ ନାହିଁ। କୌଣସି ବ୍ୟକ୍ତି ବିଶେଷ ଓଡ଼ିଶାର ରାଜାର ସ୍ୱତନ୍ତ୍ର ଇଛା ଉପରେ ଯେଉଁ କାର୍ଯ୍ୟ ନିର୍ଭର କରିବ ତାହା ଯେ ସର୍ବଦା ପ୍ରତୁଳ ହେବ ନାହିଁ ଏହା ପ୍ରାୟ ସମସ୍ତେ ଅନୁଭବ କରି ପାରନ୍ତି ଏବଂ ଯେଉଁ ଅଧିକାରରେ ଭାରତ ବର୍ଷୀୟ ସମସ୍ତ ହିନ୍ଦୁଙ୍କର ସଂସ୍ରବ ତହିଁର ଅଯଥା ବ୍ୟବହାରର ପ୍ରତିବିଧାନ କରିବା ଉଚିତ ଅଟଇ। ଅତଏବ ଯଦ୍ୟପିକି ପୁରୀ ମନ୍ଦିର ସମ୍ପର୍କରେ ଗବର୍ଣ୍ଣମେଣ୍ଟଙ୍କର ହସ୍ତକ୍ଷେପ କରିବାର ରୀତି ଅନ୍ୟାୟ ହୋଇଅଛି କିନ୍ତୁ ହସ୍ତକ୍ଷେପ କରିବାର ଯଥେଷ୍ଟ କାରଣ ରହିଅଛି। ବିଶେଷତଃ ବର୍ତ୍ତମାନ ସମୟରେ ପୁରୀର ରାଜା ନାବାଲଗ ଏବଂ ବହୁକାଳ ପର୍ଯ୍ୟନ୍ତ ଏହି ଅବସ୍ଥାରେ ରହିବ। ଗବର୍ଣ୍ଣମେଣ୍ଟ ଧର୍ମ ସଂକ୍ରାନ୍ତ କାର୍ଯ୍ୟ ପ୍ରତି ହସ୍ତକ୍ଷେପ ନ କରିବା ଭୟରେ କୋର୍ଟ ଅବ୍‌ୱାର୍ଡସ ଅଧୀନରେ ମନ୍ଦିରକୁ ଆଣି ନ ପାରନ୍ତି ଏବଂ ଅନ୍ୟ କୌଣସିରୂପେ ତହିଁର ବୁଝା ସୁଝା ହୋଇ ନ ପାରେ। ଏ ସ୍ଥଳେ କମିଟି ନିଯୁକ୍ତ କରିବା ଭିନ୍ନ ଗତି ନାହିଁ ଏବଂ ଯେବେ କମିଟୀ ନିଯୁକ୍ତ କରିବା ଏକାନ୍ତ ଆବଶ୍ୟକ ହେଲା ତେବେ ଗୁପ୍ତ ସାହେବ ଯାହା ପ୍ରସ୍ତାବ କରିଅଛନ୍ତି ତାହା ସବୁଠାରୁ ଭଲ ଏ ପକ୍ଷରେ ଭିନ୍ନ ମତ ହୋଇ ନ ପାରେ। ଏ ପ୍ରସ୍ତାବର ପ୍ରଧାନ ଗୁଣ ଏହି କି ଯଦ୍ୟପି ପୁରୀ ରାଜାଙ୍କ ଏକାଧିପତ୍ୟ ତାହାଙ୍କର ପ୍ରାଧାନ୍ୟ ରକ୍ଷା ପାଉଅଛି। କାର୍ଯ୍ୟତଃ ସେ ମନ୍ଦିରର ଅଧ୍ୟକ୍ଷ ରହିଲେ କମିଟୀ କେବଳ ତାହାଙ୍କର ପରାମର୍ଶଦାତା ଏବଂ ମାନେଜର ତାହାଙ୍କର କର୍ମଚାରୀ ହେଲେ। ଏଣେ ମାନେଜରଙ୍କ ନିୟୋଗ ଓ ବରଖାସ୍ତୀ ଗବର୍ଣ୍ଣମେଣ୍ଟ ହାତରେ ରହିବାରୁ କାର୍ଯ୍ୟ ନିର୍ବାହର ରୀତି ଉପରେ ଏକପ୍ରକାର ଗବର୍ଣ୍ଣମେଣ୍ଟଙ୍କର କର୍ତ୍ତୃତ୍ୱ ରହିଲା। ମାନେଜରଙ୍କର ଏକମାତ୍ର ହର୍ତ୍ତାକର୍ତ୍ତା କମିଟୀ ହେଲେ ହୋଇ ପାରେ ଯେ ସେ କମିଟୀର ମନ ଯୋଗାଇବାକୁ ଏକାନ୍ତ ପ୍ରବୃତ୍ତ ହେବେ ଏବଂ ତହିଁରେ କୌଣସି କାଳରେ କାର୍ଯ୍ୟର ବିଶୃଙ୍ଖଳା ଘଟିବ। ଅଥବା କମିଟୀର ଅବିଚାରର ପ୍ରତିକାର ନାହିଁ ବୋଲି କେହି ଶିକ୍ଷିତ ଓ ସ୍ୱାଧୀନଭାବାପନ୍ନ ବ୍ୟକ୍ତି ଏ କାର୍ଯ୍ୟକୁ ଆଗ୍ରହ କରିବେ ନାହିଁ। ଅତଏବ ଯେତେ ପ୍ରକାର ଆମ୍ଭେମାନେ ଏହି ପ୍ରସ୍ତାବକୁ ଆଲୋଚନା କରୁ ଅଛୁଁ ତେତିକି ଏଥିର ଗୁରୁତ୍ୱ ଅନୁଭବ କରୁ ଅଛୁଁ। ଏ ସ୍ଥଳେ ଏ କଥା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଗୁପ୍ତ ସାହେବ ଏ ପ୍ରସ୍ତାବକୁ ପୁରୀବାସୀଙ୍କ ନିକଟରେ ଉପସ୍ଥିତ କରି ସାଧାରଣ ମତ ପ୍ରତି ଯେଉଁ ଆସ୍ଥା ଦେଖାଇଅଛନ୍ତି ତାହା ଅତ୍ୟନ୍ତ ପ୍ରଶଂସନୀୟ ଅଟଇ। ଅନେକ ସ୍ଥାନୀୟ ହାକିମ ଆପଣା ମର୍ଯ୍ୟାଦା ବା ବୁଦ୍ଧି ଉପରେ ଅଧିକ ନିର୍ଭର କରି ସାଧାରଣ ମତର ଅପେକ୍ଷା କରନ୍ତି ନାହିଁ ଏବଂ ତଦ୍ଦ୍ୱାରା ସେମାନଙ୍କର ସହାନୁଭୂତିରୁ ବଞ୍ଚିତ ହୁଅନ୍ତି ଗୁପ୍ତ ସାହେବ ଯେ ସେଭଳି ଲୋକ ନୁହନ୍ତି ତାହା ସେ କାର୍ଯ୍ୟତଃ ଦେଖାଇଅଛନ୍ତି।

*ଉତ୍କଳ ଦୀପିକା-୧୮୮୩: ପୃଷ୍ଠା ସଂଖ୍ୟା-୩୬୮*

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରର ଅଧିକାରସ୍ଥ ସତେଇଶ ହଜାରୀ ଏବଂ ଏଖରାଜାତମାହାଲମାନଙ୍କର ଜରିବ ବନ୍ଦୋବସ୍ତ କାର୍ଯ୍ୟ ବଙ୍ଗୀୟ ପ୍ରଜାସ୍ବବ ଆଇନର ବିଧାନନୁସାରେ ହେବ। ଏଥିର ବିଜ୍ଞାପନ କଲିକତାଗଜେଟରେ ବାହାରି ଅଛି। ବଙ୍ଗଳା ଗବର୍ଣ୍ଣମେଣ୍ଟ ସ୍ବତଃପ୍ରବୃତ୍ତ ହୋଇ ଏ କାର୍ଯ୍ୟ କରି ନାହାନ୍ତି। ଓଡ଼ିଶାବିଭାଗର କମିଶ୍ନରଙ୍କ ପ୍ରାର୍ଥନା ମତେ ଏହା ମଞ୍ଜୁର କରିଅଛନ୍ତି ଏବଂ ତହିଁ ସଙ୍ଗେ ଆଦେଶ ଦେଇଅଛନ୍ତିକି ଜରିବ ବନ୍ଦୋବସ୍ତର ଖରଚ ପ୍ରତିମାଣ ଆଠଅଣା ଲେଖାଏଁ ହେସାବରେ ଆଗତୁରା ଜମା ହେଲେ କାର୍ଯ୍ୟାରମ୍ଭ ହେବ। ଏଥିରୁ ଅଧିକ ଖରଚ ହେଲେ କିଏ ଦେବ ନିଶ୍ଚୟ ହୋଇ ନ ଥିଲେ ସୁଦ୍ଧା ପୁରୀର ମହାରାଣୀ ତାହା ସୁଦ୍ଧା ଦେବେ ସନ୍ଦେହ ନାହିଁ କାରଣ ଅବସ୍ଥାରୁ ଜଣାଯାଉଅଛି ଯେ ତାହାଙ୍କ ପ୍ରାର୍ଥନା ଅନୁସାରେ ଗବର୍ଣ୍ଣମେଣ୍ଟ ଏଥିରେ ହସ୍ତକ୍ଷେପ କରିଅଛନ୍ତି। ଅଧିକ ଖରଚ ନ ହେଲେ ମଧ୍ୟ ମାଣ ପ୍ରତି ଆଠଅଣା ସାମାନ୍ୟ ନୁହଇ ଜଗନ୍ନାଥଙ୍କ ଅର୍ଥର ଟଣାଟଣି ସମୟରେ ଏ ଖର୍ଚ୍ଚଟା ଅଧକ ନୁହଇ କି? ଏଥିରୁ ଅନେକ ଊଣା ଖରଚରେ ପୁରୀ ମହାରାଣୀ ଆପେ କରିବ ବନ୍ଦୋବସ୍ତ କରାଇ ନେଇପାରନ୍ତେ। ସମ୍ଭବତଃ ଉପଯୁକ୍ତ କର୍ମଚାରୀ ଅଭାବରେ ତହିଁକି ଅପାରଗ ବୋଲି ଅଗତ୍ୟା ଅଧିକ ବ୍ୟୟଭାର ସ୍ବୀକାର କରିଅଛନ୍ତି।

*ଉତ୍କଳ ଦୀପିକା-୧୮୯୨: ପୃଷ୍ଠା ସଂଖ୍ୟା-୧୫୦*

## ପୁରୀ ମନ୍ଦିର

ସ୍ଥାନାନ୍ତରେ ପ୍ରକାଶିତ ବିଜ୍ଞାପନରୁ ସର୍ବସାଧାରଣ ଅବଗତ ହେବେ ଯେ ପୁରୀ ମନ୍ଦିରର କାର୍ଯ୍ୟ ସୁବନ୍ଦୋବସ୍ତରେ ନିର୍ବାହ ହେବାର ଉପାୟ ସ୍ଥିର କରିବା କାରଣ ଆଗାମୀ ସୋମବାର ଉତ୍କଳସଭାର ଗୋଟିଏ ଅଧିବେଶନ ହେବ। ପାଠକମାନଙ୍କର ମନେପଡ଼ିବ ଯେ ଠିକ୍ ବ୧୨ର୍ଷ ତଳେ ଅର୍ଥାତ୍ ସନ୍ ୧୮୮୬ ସାଲରେ ପୁରୀ ମନ୍ଦିରର ଭାର ପୁରୀ ରାଜବଂଶ ହାତରୁ କାଢ଼ି ନେଇ ଗୋଟିଏ କମିଟୀକୁ ଅର୍ପଣ କରିବା ଅଭିପ୍ରାୟ ସରକାର ବାହାଦୂର ଇଚ୍ଛା କରିବାରୁ ଏହି ଉତ୍କଳସଭାର ଉଦ୍ୟମରେ ଓଡ଼ିଶାର ସର୍ବସାଧାରଣ ତହିଁର ଘୋର ପ୍ରତିବାଦ କରିଥିଲେ ଏବଂ ପ୍ରଜାବତ୍ସଳ ଇଂରାଜଗବର୍ଣ୍ଣମେଣ୍ଟ ଜନସାଧାରଣଙ୍କ ଇଚ୍ଛା ଓ ଅନୁରୋଧ ଭାଙ୍ଗିବା ଉଚିତ ବିବେଚନା ନ କରି ଦୟାପୂର୍ବକ ପୁରୀର ରାଜମାତାଙ୍କୁ କେତେକ ନିୟମରେ ଆବଦ୍ଧ କରି ମୋକଦ୍ଦମା ଉଠାଇ ନେଲେ। ସେ ସମୟରୁ କେତେକବର୍ଷ ପର୍ଯ୍ୟନ୍ତ ଏକ ପରେ ଏକ କେତେକ ଯୋଗ୍ୟଲୋକ ପୁରୀ ମନ୍ଦିରର ମାନେଜର ହୋଇ ସୁବନ୍ଦୋବସ୍ତରେ କାର୍ଯ୍ୟ ଚଳାଉଥିଲେ। ପରିଶେଷରେ ସୁଯୋଗ୍ୟ ମାନେଜର ନିଯୋଗ ହେବା ରହିତ ହେଲା ଏବଂ ପୁରୀ ରାଣୀ ଏକ ପ୍ରକାରରେ ମନ୍ଦିରର କାର୍ଯ୍ୟନିର୍ବାହ କରି ଆସୁଥିଲେ। ବର୍ତ୍ତମାନର ପୁରୀ ରାଜା ମୁକୁନ୍ଦଦେବ ବୟଃପ୍ରାପ୍ତ ହୁଅନ୍ତେ କାର୍ଯ୍ୟଭାର ସ୍ୱୟଂ ଗ୍ରହଣ କଲେ ଏବଂ ତାହାଙ୍କର ଶରୀରପୀଡ଼ା ଏବଂ ବିଷୟ ବୁଦ୍ଧିର ସ୍ୱଳ୍ପତା ହେତୁ ସେ ସୁପରାମର୍ଶ ଅନୁସାରେ ସମସ୍ତ କାର୍ଯ୍ୟର ଭାର ରାଜା ବୈଦ୍ୟନାଥ ପଣ୍ଡିତ ବାହାଦୁର ବାବୁ ମଧୁସୂଦନ ଦାସ ଏବଂ ବାବୁ ଗୋକୁଳାନନ୍ଦ ଚୌଧୁରୀଙ୍କୁ ଅର୍ପଣ କଲେ। ଏ ବନ୍ଦୋବସ୍ତ ଉତ୍ତମ ହୋଇଥିଲା ଏବଂ ଭାରପ୍ରାପ୍ତ ବ୍ୟକ୍ତିମାନେ

ଯଥୋଚିତ ମନୋଯୋଗ ଏବଂ ପରିଶ୍ରମ ସହିତ ସମସ୍ତ ବୁଝାସୁଝା କରୁଥିଲେ। ଏଥିମଧ୍ୟରେ ବାବୁ ମଧୁସୂଦନ ଦାସ ବିଲାତ ଗଲେ ଏବଂ ଅନ୍ୟ ଦୁଇଜଣଙ୍କ ମଧ୍ୟରେ ମତାନ୍ତର ଘଟିଲା। ଏଥିଉତ୍ତାରୁ ରାଜା ସ୍ୱହସ୍ତରେ ସମସ୍ତ ଭାର ନେଇ କାର୍ଯ୍ୟ ଚଳାଇ ଆସୁଅଛନ୍ତି। ଏଠାରେ ବୋଲିବା ଆବଶ୍ୟକ ଯେ ମାନ୍ୟବର ବାବୁ ମଧୁସୂଦନ ଦାସ ପୁରୀ ମନ୍ଦିର ସମ୍ବନ୍ଧୀୟ ମୋକଦ୍ଦମାର ସୂତ୍ରପାତ ହେବାକାଳରୁ ତାହା ଶେଷହେବା ପର୍ଯ୍ୟନ୍ତ ଆପଣାର ପ୍ରଗାଢ଼ ବୁଦ୍ଧି ଓ ଅଧ୍ୟବସାୟ ସହକାରେ ଯେତେ ଉପକାର କରିଥିଲେ ତାହା କାହାରିକି ଅବିଦିତ ନାହିଁ ବରଂ ସମସ୍ତ ଓଡ଼ିଶାବାସୀ ତାହାଙ୍କୁ ଧନ୍ୟବାଦ ଦେଇଥିଲେ। ପୁରୀ ରାଣୀ ତାହାଙ୍କର ଅକୃତ୍ରିମ ବନ୍ଧୁତା ହୃଦୟଙ୍ଗମ କରି ତାହାଙ୍କ ଉପରେ ଏକାନ୍ତ ବିଶ୍ୱାସ ସ୍ଥାପନ ପୂର୍ବକ ତାହାଙ୍କ ପରାମର୍ଶରେ ଚାଲୁଥିଲେ। ମଧୁବାବୁ ରାଜା ମୁକୁନ୍ଦଦେବଙ୍କର ସାମାନ୍ୟ ଉପକାର କରିନାହାନ୍ତି। ତାହାଙ୍କ ପୀଡ଼ାମୁକ୍ତି ଆଶାରେ ପ୍ରଥମେ ପୁରୀରେ ଚିକିତ୍ସା କରାଇ ତହିଁଉତ୍ତାରୁ କଟକ ଓ କଲିକତାକୁ ସଙ୍ଗେ ଘେନି ବୁଲି ତାହାଙ୍କ ଆରୋଗ୍ୟର ଯଥୋଚିତ ଉପାୟ କଲେ ଏବଂ ଆମ୍ଭେମାନେ ଶୁଣିଅଛୁଁ ଯେ କେତେସ୍ଥଳେ ଡାକ୍ତରର ଫିସ ସୁଦ୍ଧା ସେ ଆପଣା ହାତରୁ ଦେଇଅଛନ୍ତି। ମାତ୍ର ସେ ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା। ରାଜା ଅବଧି ଆରୋଗ୍ୟ ହୋଇ ନାହାନ୍ତି ଏବଂ ସୁଯୋଗ୍ୟ ଚିକିତ୍ସକ ଦ୍ୱାରା ଚିକିତ୍ସା କରାଇବାକୁ ତାହାଙ୍କୁ ପ୍ରବୃତ୍ତ କରାଇବା ଅସମ୍ଭବ ହୋଇଅଛି। ଏଣେ ବିଷୟବୁଦ୍ଧି ଅଭାବରୁ ସ୍ୱୟଂ ରାଜକାର୍ଯ୍ୟ ନିର୍ବାହ କରିବାକୁ ଅକ୍ଷମ ତହିଁଉପରେ ପରିବେଷ୍ଟିତ ଚାଟୁକାରଙ୍କ ପରାମର୍ଶରେ ଚାଳିତ। ଏଥିରେ ଯେଉଁ ମନ୍ଦଫଳ ଘଟିବା ଅନିବାର୍ଯ୍ୟ ତାହା ଘଟିବାର ଆରମ୍ଭ ହୋଇଅଛି। ଅଳ୍ପଦିନତଳେ ଗୋଟାଏ ଫଉଜଦାରୀ ମୋକଦ୍ଦମାରେ ପ୍ରକାଶ ପାଇଲା ଯେ ଅନେକ ମୂଲ୍ୟବାନ୍ ରତ୍ନାଦି ଅଳଙ୍କାର ଏବଂ ରାମେଶ୍ୱରୀ ସୁନା ମୋହର ଓ ଅନ୍ୟାନ୍ୟ ମୁଦ୍ରା ଅପବ୍ୟୟ ହୋଇଅଛି। ଏ ସବୁ ରାଜାଙ୍କର ନିଜ ସମ୍ପତ୍ତି କି ମନ୍ଦିରର ସମ୍ପତ୍ତି ତଦନ୍ତ ହେଲେ ଜଣାଯିବ। ମନ୍ଦିରର ନୀତିଭୋଗ ବର୍ତ୍ତମାନ ଋଣଦ୍ୱାରା ନିର୍ବାହ ହେଉଥିବାରୁ ସ୍ପଷ୍ଟ ଜଣାଯାଉଅଛି ଯେ ମନ୍ଦିରର ଆୟ ଅପବ୍ୟୟ ହେଉଅଛି ଏବଂ ଯେଉଁ ମହାଜନମାନେ ତମସୁକ ଦ୍ୱାରା ଠାକୁରମାନଙ୍କ ନୀତି ସକାଶେ ଋଣ ଦେଉଅଛନ୍ତି ସେମାନେ ଠାକୁରଙ୍କ ସମ୍ପତ୍ତି ବିରୁଦ୍ଧରେ ମାମଲା ଚଳାଇପାରନ୍ତି। ତାହାହେଲେ ବଡ଼ ବିଭ୍ରାଟ ହେବ। ଅନେକ ସମ୍ଭ୍ରାନ୍ତ ବ୍ୟକ୍ତି ଏବଂ କେହି କେହି ସରକାରୀ ଉଚ୍ଚକର୍ମଚାରୀ ବିବେଚନା କରନ୍ତି କି ରାଜାଙ୍କର ମତି ସ୍ଥିର ନାହିଁ ଏ ସମସ୍ତ ଅତ୍ୟନ୍ତ ଦୁଃଖର ବିଷୟ ଅଟେ କେବଳ। ପୁରୀ ମନ୍ଦିର ଓଡ଼ିଶାର ପ୍ରାଚୀନ କୀର୍ତ୍ତି କି ଯହିଁପାଇଁ ଓଡ଼ିଶାର ଗୌରବ ତହିଁର ସଂରକ୍ଷଣ ସକାଶେ ଆମ୍ଭେମାନେ ବାଧ୍ୟ ହୋଇ ଏସବୁ ଘଟନା ପ୍ରକାଶ କଲୁଁ। ପୁରୀ ମନ୍ଦିର ଏବଂ ରାଜବଂଶର ସୁରକ୍ଷା ଏବଂ ସୌଭାଗ୍ୟ ସମସ୍ତ ଓଡ଼ିଶାବାସିଙ୍କର ଏକାନ୍ତ ବାଞ୍ଛନୀୟ। ଅତଏବ ଆମ୍ଭେମାନେ ଆଶା କରୁଁ କି ସର୍ବସାଧାରଣ ବିହିତ ଉପାୟ ଅବଲମ୍ବନ କରିବାକୁ ଯତ୍ନବାନ୍ ହେବେ।

*ଉତ୍କଳ ଦୀପିକା-୧୮୯୮: ପୃଷ୍ଠା ସଂଖ୍ୟା-୧୪୫*

# ପୁରୀମନ୍ଦିର

ପୂର୍ବ ପ୍ରକାଶିତ ବିଜ୍ଞାପନ ଅନୁସାରେ ଗତ ସୋମବାର ସନ୍ଧ୍ୟା ସମୟରେ ପୁରୀ ମନ୍ଦିର ବିଷୟରେ ଉତ୍କଳ ସଭାର ଅଧିବେଶନ ହୋଇଥିଲା। ସେଦିନ ମୁସଲମାନଙ୍କର ପର୍ବ ହେତୁ କଚେରିମାନ ବନ୍ଦ ଥିବାରେ କେତେକ ଲୋକ ମୋଫସଲକୁ ବାହାରି ଯାଇଥିବା ଅଥବା ଅନ୍ୟାନ୍ୟ କାର୍ଯ୍ୟରେ ନିଯୁକ୍ତି ଥିବାରୁ ସଭାକୁ ଅଧିକ ଲୋକ ଆସି ନ ଥିଲେ। ସଭ୍ୟ ଓ ଦର୍ଶକମାନଙ୍କ ସଂଖ୍ୟା ୨୦/୨୫ରୁ ଅଧିକ ନ ଥିଲା। ସଭାପତି ବାବୁ ମଧୁସୂଦନ ଦାସ ମହାଶୟ ସଭାର କାର୍ଯ୍ୟାରମ୍ଭ କରି କହିଲେ କି ସେ ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ହୋଇଥିବା ପ୍ରତ୍ୟେକ୍ଷେ ପୁରୀ ମନ୍ଦିରରେ ତାହାଙ୍କର ଆସ୍ଥା ଓ ସହାନୁଭୂତି ଦେଖି କେତେକ ଆଶ୍ଚର୍ଯ୍ୟ ହେବାର ସେ ଅବଗତ ହୋଇଅଛନ୍ତି। ପୁରୀ ମନ୍ଦିରର କେତେକ ପ୍ରଧାନ ବ୍ୟବସ୍ଥା ତାହାଙ୍କୁ ଭଲ ଲାଗେ। ଜାତିଭେଦ ହିନ୍ଦୁଧର୍ମର ଗୋଟିଏ ପ୍ରଧାନ କଥା ପ୍ରାଚିନ କାଳରେ ଏହା ବ୍ୟବସ୍ଥାଗତ ଥିଲା କିନ୍ତୁ ଶେଷକୁ ଅନ୍ନଗତ ହୋଇ ପଡ଼ିବାରୁ ତହିଁରୁ ଅନେକ ଅନିଷ୍ଟ ଜାତି ହୋଇଅଛି ଏବଂ ଐକ୍ୟତାର ବିଶେଷ ବାଧା ଜନ୍ମାଇଅଛି। ପୁରୀ ମନ୍ଦିରରେ ଜାତିବିଚାର ନାହିଁ। ସୁପକାର ବା ସୁଆରମାନେ ବ୍ରହ୍ମଣ ଜାତି ନୁହନ୍ତି। ଈଶ୍ୱରଙ୍କ ନିକଟରେ ସମସ୍ତ ମନୁଷ୍ୟ ଏକଜାତି, ଏକତ୍ରେ ଆହାରପାନ କରି ପରସ୍ପରକୁ ପ୍ରେମ କରିବାର ଉଚିତ ମହାପ୍ରସାଦ ଏହି ଶିକ୍ଷା ଦେଉଅଛି ଏବଂ ପୁରୀର ରାଜା ପର୍ବ ବିଶେଷରେ ଠାକୁରଙ୍କ ମନ୍ଦିର ଝାଡୁକରିବା ଦ୍ୱାରା ପୃଥିବୀର ବଡ଼ ବଡ଼ ରାଜାମାନେ ଈଶ୍ୱରଙ୍କର କୀର୍ତ୍ତିର ଭିନ୍ନ ଆଉ କିଛି ନ ଥିବାର ପରିଚୟ ଦେଉଅଛି। ଧର୍ମର ଟେକ ଯେଉଁଠାରେ ଦେଖାଯିବ ସେଠାରେ କାହାର ମନ ଆନନ୍ଦିତ ନ ହେବ। ବିଶେଷତଃ ଗତ ତା୧୦/୧୨ବର୍ଷରୁ ପୁରୀ ରାଜା ସଂସାରର ସୁରକ୍ଷା ବିଷୟରେ ସେ ବିଶେଷ ପରିଶ୍ରମ ଓ ଯତ୍ନ କରିବାର ସମସ୍ତଙ୍କୁ ଜଣା ଅଛି। ଅବଶ୍ୟ କେଡ଼େବଡ଼ ଘରର ଉନ୍ନତି ହେଲେ ତାହାଙ୍କ ପ୍ରଗାଢ଼ ପରିଶ୍ରମର ପୁରଷ୍କାର ଲାଭ ହେବ ଏମନ୍ତ ଆଶା ମଧ କରିଥିଲେ। ମାତ୍ର ସେ ଆଶା ଦୂରେ ଥାଉ ସେ ଘରଟି ଭାଙ୍ଗି ଗଲେ ତାହାଙ୍କର ସମସ୍ତ ଶ୍ରମ ବିଫଳ ହେବ। ଏହି ଦୁଃଖ ତାହାଙ୍କୁ ବିଶେଷ ବାଧୁଅଛି। ଏଥିଉତ୍ତାରୁ ପୁରୀର ରାଜା ମୁକୁନ୍ଦଦେବ ମନ୍ଦିରର ସମ୍ପତ୍ତି କେତେକ ଅପବ୍ୟୟ କରିବାର ଉଦାହରଣ ଦେଖାଇ କହିଲେ କି ମନ୍ଦିରର କାର୍ଯ୍ୟ ନିର୍ବାହର ବର୍ତ୍ତମାନ ଅବସ୍ଥା ତଦନ୍ତ ଏବଂ ତାହା ସୁଶୃଙ୍ଖଳାରୂପେ ନିର୍ବାହ ହେବାର ଉପାୟ ସ୍ଥିର କରିବା କାରଣ ଗୋଟିଏ କମିଟି ଗଠିତ ହେଲେ ଭଲ ହେବ। ରାଜା ବୈଦ୍ୟନାଥ ପଣ୍ଡିତ ବାହାଦୁର ସଭାପତିଙ୍କ ବକ୍ତୃତାର ସମର୍ଥନରେ କହିଲେ କି ପୁରୀ ମନ୍ଦିର ଭାରତବର୍ଷରେ ସମସ୍ତ ହିନ୍ଦୁମାନଙ୍କର ସର୍ବୋତ୍କୃଷ୍ଟ ତୀର୍ଥ ଏବଂ ଏହାର ସୁରକ୍ଷା ଓ ଉନ୍ନତି ବିଷୟରେ ସମସ୍ତଙ୍କର ସମ୍ପର୍କ ଅଛି ସେ ସ୍ୱୟଂ କିଛିଦିନ ଏହି ମନ୍ଦିରର କାର୍ଯ୍ୟ ଚଳାଇ ଦେଖି ଅଛନ୍ତି ଏବଂ ସ୍ୱହସ୍ତରୁ ଅନେକ ଟଙ୍କା ବ୍ୟୟ କରିଅଛନ୍ତି। ମନ୍ଦିରର କାର୍ଯ୍ୟ ନିର୍ବାହ ନିମନ୍ତେ ଯେପରି ଯୋଗ୍ୟତାର ଆବଶ୍ୟକ ପୁରୀର ବର୍ତ୍ତମାନ ରାଜା ଏବଂ ତାହାଙ୍କ ପରାମର୍ଶଦାତାଙ୍କଠାରେ ସେପରି କିଛି ଦେଖା ଯାଉ ନାହିଁ ସୁଶୃଙ୍ଖଳରେ କାର୍ଯ୍ୟ ନିର୍ବାହର କୌଣସି ସୁବନ୍ଦୋବସ୍ତ ଶୀଘ୍ର ହେବା ଆବଶ୍ୟକ। କେତେକ ତର୍କ ବିତର୍କ ଉତ୍ତାରୁ ସଭାରେ ଧାର୍ଯ୍ୟ ହେଲା ଯେ ପୁରୀ ମନ୍ଦିରର କାର୍ଯ୍ୟନିର୍ବାହ ବର୍ତ୍ତମାନ ଯେଉଁ

ଧାରାରେ ହେଉଅଛି ତହିଁର ବିଶେଷ ତଦନ୍ତ କରିବା ଏବଂ ଭବିଷ୍ୟତ କାର୍ଯ୍ୟନିର୍ବାହ ସମ୍ବନ୍ଧରେ ମନ୍ଦିରର ସେବକମାନ ଏବଂ ପୁରୀର ପ୍ରଧାନ ଲୋକମାନଙ୍କ ସଙ୍ଗେ ପରାମର୍ଶ କରି ଏବଂ ସରକାରଙ୍କ ମତ ଗ୍ରହଣ ପୂର୍ବକ ଗୋଟିଏ କଳ୍ପଣା ସ୍ଥିର କରିବା କାରଣ ଗୋଟିଏ କମିଟି ସ୍ଥାପିତ ହେଉ ଏବଂ ରାଜା ବୈଦ୍ୟନାଥ ପଣ୍ଡିତ ବାହାଦୂର, ବାବୁ ବିହାରିଲା ପଣ୍ଡିତ, ବାବୁ ମଧୁସୂଦନ ଦାସ, ବାବୁ ଖୋସାଲ ଚନ୍ଦ ବାବୁ ଗୌରୀଶଙ୍କର ରାୟ ଏବଂ ବାବୁ ରାମଶଙ୍କର ରାୟ ତହିଁର ସଭ୍ୟ ହେଉନ୍ତୁ। ଏମାନେ ଯାହା ସ୍ଥିର କରିବେ ଶୀଘ୍ର ତହିଁର ରିପୋଟ ସଭାକୁ ଅର୍ପଣ କଲେ ସଭାରେ ସର୍ବସାଧାରଣ ବିବେଚନା କରି ଯେମନ୍ତ ସିଦ୍ଧାନ୍ତ କରିବେ ତଦନୁସାରେ କାର୍ଯ୍ୟ ହେବ। ଆମ୍ଭେମାନେ ଏକାନ୍ତ ଆଶା କରୁଁ କି କମିଟିର ସଭ୍ୟମାନେ ଏ ବିଷୟରେ ତତ୍ପର ହେବେ। ଏଥିରେ ଯେତେ ବିଳମ୍ବ ହେବ ତେତେ ଅଧିକ କ୍ଷତି ହେବ। ପୁରୀ ରାଜାଙ୍କର ମର୍ଯ୍ୟାଦା ଖର୍ବ ହେବା କୌଣସିମତେ ବାଞ୍ଛନୀୟ ନୁହେଁ। ଆମ୍ଭେମାନ ଏତିକି ଦେଖିବାକୁ ଆଶା କରୁଁ ଯେମନ୍ତ ତାହାଙ୍କର କାର୍ଯ୍ୟ ଓ ବିଚାର ଦୋଷରେ ମନ୍ଦିର କୌଣସି କ୍ଷତି ନ ହୁଏ।

*ଉତ୍କଳ ଦୀପିକା-୧୮୯୮: ପୃଷ୍ଠା ସଂଖ୍ୟା-୧୫୩*

ପୁରୀ ମନ୍ଦିର କାର୍ଯ୍ୟ ଅତ୍ୟନ୍ତ ଅସନ୍ତୋଷଜନକରୂପେ ନିର୍ବାହ ହେବାର ଦେଖି ଉତ୍କଳସଭା ଯାହା ସ୍ଥିର କରିଅଛନ୍ତି ତାହା ଚଳିତ ମାସ ତା୭ରିଖରେ ଉତ୍କଳଦୀପିକାରେ ପ୍ରକାଶିତ ହୋଇଅଛି। ସୁଯୋଗ ଘଟି ନ ଥିବାରୁ କମିଟିର ମେମ୍ବରମାନେ ଏପର୍ଯ୍ୟନ୍ତ ତଦନ୍ତ ନିମନ୍ତେ ଯାଇ ନାହାନ୍ତି ମାତ୍ର ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଆଶା ଯେ ତହିଁରେ ଅଧିକ ବିଳମ୍ବ ଘଟିବ ନାହିଁ। କେହି୨ ଆଶଙ୍କା କରନ୍ତି କି ଯେମନ୍ତ ପୁରୀ ରାଜାଙ୍କଠାରୁ ମନ୍ଦିରର ଭାରଅନ୍ତର କରିବା ସଭାର ଅଭିପ୍ରାୟ ଅଟେ। ମାତ୍ର ଏହା ଭ୍ରମ ବିନା ଆଉ କିଛି ନୁହେ ଓ ସେ ପ୍ରସ୍ତାବର ଶେଷଭାଗରେ ଆମ୍ଭେମାନେ ଯାହା ଲେଖିଅଛୁଁ କି ପୁରୀ ରାଜାଙ୍କ ମର୍ଯ୍ୟାଦା ଖର୍ବ କରିବା କୌଣସିମତେ ବାଞ୍ଛନୀୟ ନୁହେ ବା ସାଧାରଣ ଅଭିପ୍ରାୟ ତହିଁରୁ ଭିନ୍ନ ନୁହେ। ମନ୍ଦିରର କାର୍ଯ୍ୟ ସୁଶୃଙ୍ଖଳାରେ ନିର୍ବାହ ଏବଂ ମନ୍ଦିରର ସମ୍ପତ୍ତି ସୁରକ୍ଷା ଦେବାର ବିହିତ ବ୍ୟବସ୍ଥା ଦେଖିବା ସଭାର ଉଦ୍ଦେଶ୍ୟ। ଯେବେ ରାଜା ସ୍ୱତଃପ୍ରବୃତ୍ତ ହୋଇ ତହିଁର ସୁବ୍ୟବସ୍ଥା ନ କରିବେ ତେବେ ତାହା କରିବା ବିଷୟରେ ତାହାଙ୍କୁ ବାଧ କରିବାର ସକଳ ଉପାୟ ଅବଲମ୍ବନ କରିବାକୁ ହେବ। ମୂଳକଥା ପୁରୀ ରାଜା ଓ ମନ୍ଦିର ଉଭୟର କାର୍ଯ୍ୟ ସୁଶୃଙ୍ଖଳାରେ ଚାଲିବାର ସୁବ୍ୟବସ୍ଥା ହେବା ବାଞ୍ଛନୀୟ ଏବଂ ମନ୍ଦିରର ସେବକ ଓ ଉପାସକବର୍ଗ ଦୃଢ଼ରୂପେ ଯତ୍ନବାନ୍ ହେଲେ ଉଭୟ ଉଦ୍ଦେଶ୍ୟ ଅନାୟାସରେ ସଂଶୋଧିତ ହେବ। ମନ୍ଦିରର ସୁଆରମାନେ ବ୍ରାହ୍ମଣ ନ ଥିବାର ଯାହା ଉକ୍ତ ପ୍ରବନ୍ଧରେ ଲେଖାଅଛି ତାହା ଘେନି ଟିକିଏ ଅନର୍ଥ ଘଟିବାର ଜଣାଯାଏ। ସୁଆରମାନେ ଉତ୍କୃଷ୍ଟ ବ୍ରାହ୍ମଣ ନ ଥିବାର ବୋଲିବା ଆମ୍ଭମାନଙ୍କର ଅଭିପ୍ରାୟ କେବଳ 'ଉତ୍କୃଷ୍ଟ' ଶବ୍ଦଟି ଛାପ ଦୋଷରୁ ଖସି ଯାଇଥିବାରୁ ତାହା ଘଟିଥିଲା।

ପୁରୀ ମନ୍ଦିରର କାର୍ଯ୍ୟ ବର୍ତ୍ତମାନ ନିତାନ୍ତ ଅସନ୍ତୋଷଜନକରୂପେ ନିର୍ବାହ ହେବାର ଦେଖି ଅନ୍ୟାନ୍ୟ ଲୋକ ପ୍ରାୟ ନିଜ ପୁରୀବାସୀମାନେ ବଡ଼ ବ୍ୟସ୍ତ ହୋଇ ଅଛନ୍ତି ଏବଂ ସେମାନେ ତହିଁର ଉପାୟ ଚିନ୍ତାରେ ମଧ ପ୍ରବୃତ୍ତ ହୋଇ ଅଛନ୍ତି। ଆମ୍ଭମାନଙ୍କର ପୁରୀ ସମ୍ବାଦଦାତା ଏ

ବିଷୟରେ ଲେଖିଅଛନ୍ତି ତାହା ନିମ୍ନେ ପ୍ରକାଶ କଲୁ ଯଥା -

ଚନ୍ଦନଯାତ୍ରା ଶେଷ ହୋଇଅଛି। କିନ୍ତୁ ଏ ବର୍ଷ ଯାତ୍ରାର ଆମୋଦ ପୂର୍ବପ୍ରାୟ ହୋଇ ନ ଥିଲା। ଦୁଇ ତିନିଦିନ ଛଡ଼ା ଦିନ ଚାପ ପ୍ରାୟ ରାତ୍ର ଘ୮|୯ଣ୍ଟାଠାରେ ଓ ରାତ୍ର ଚାପପରେ ଠାକୁରମାନେ ପ୍ରତ୍ୟାଗମନ କରିବା ସମୟେ ରାତ୍ର ଘ୪|୫ଣ୍ଟା ଥିବା କେଉଁ୨ ଦିନ ରାତ୍ର ଶେଷ ପ୍ରାୟ ହୋଇଥାଏ। ଏପରି ଅସୁବିଧା ଦୃଷ୍ଟେ ନରେନ୍ଦ୍ର ସନ୍ତରଣ ପ୍ରଭୃତି ଆଡ଼ମ୍ବର ଲୋକମାନଙ୍କ ମନକୁ ବିଶେଷରୂପେ ଘେନି ନ ଥିଲା। ସୁତରାଂ ବଡ଼ ସିଂହାର ଭୋଗ ଅଧିକାଂଶଦିନ ହୋଇ ପାରି ନାହିଁ। ଚନ୍ଦନଯାତ୍ରା ପରେ ମଧ ନୀତି ଚଳାଇବା ବିଷୟରେ କେହି ମନଯୋଗୀ ନ ହେବା ଓ ଉପଯୁକ୍ତ ସମୟରେ ବ୍ୟବହାର୍ଯ୍ୟ ଦ୍ରବ୍ୟମାନଙ୍କ ଅଭାବରୁ କେତେକଦିନ ପ୍ରଭାତ ହୋଇ ଯିବାରୁ ବଡ଼ସିଂହାର ଭୋଗ ନଷ୍ଟ ହୋଇଅଛି। ଏହି ସବୁ ବିଶୃଙ୍ଖଳା ମୋଚନ ହେବା ଆଶାରେ ଚନ୍ଦନଯାତ୍ରା ମଧ୍ୟରେ ଏକଦିନ ମନ୍ଦିର ମଧ୍ୟରେ ସର୍ବସାଧାରଣର ଏକ ସଭା ହୋଇଥିଲା। ମହନ୍ତ, ଜମିଦାର, ଅମଲା, ସେବକ ପ୍ରଭୃତି ବହୁସଂଖ୍ୟକ ଲୋକ ଯୋଗ ଦେଇଥିଲେ। ଏବଂ ପୁରୀର ରାଜା ମହୋଦୟ ସ୍ୱୟଂ ଉପସ୍ଥିତ ଥାଇ ସଭାପତିର ଆସନ ଗ୍ରହଣ କରିବା ପର ମନ୍ଦିରର କାର୍ଯ୍ୟ କିରୂପେ ସୁଚାରୁରୂପେ ନିର୍ବାହ ହେବ ସେ ବିଷୟରେ ନାନାବିଧ ଆନ୍ଦୋଳନ ହେବା ପର ସ୍ଥିରହେଲା ଯେ ସ୍ଥାନୀୟ ଭଦ୍ରବ୍ୟକ୍ତିମାନଙ୍କ ସମ୍ମିଳନରେ ଗୋଟିଏ ସଭା ଗଠିତ ହେଉ ଏବଂ ରାଜା ମହୋଦୟ ସ୍ୱୟଂ ସଭାପତି ହେଉନ୍ତୁ। ଏ ବିଷୟରେ ରାଜା ମହୋଦୟ ସମ୍ମତ ହେବାରୁ ସଭା ଭଙ୍ଗ ହେଲା। ଭରସା କରୁଁ ମାନନୀୟ ରାଜା ମହୋଦୟ ଏବଂ ଏଠାର ସମ୍ଭ୍ରାନ୍ତ, ଧନୀ ବ୍ୟକ୍ତିମାନେ ଯେପରି ସଭାରେ ନିର୍ଦ୍ଧାରିତ ବିଷୟମାନ କାର୍ଯ୍ୟରେ ପରିଣତ ହୋଇ ଶୀଘ୍ର ମନ୍ଦିରର ନୀତିମାନ ସୁବିଧାମତେ ଚଳିବ ସେ ବିଷୟରେ ବଦ୍ଧପରିକର ହେବେ।

*ଉତ୍କଳ ଦୀପିକା-୧୮୯୮_ପୃଷ୍ଠା ସଂଖ୍ୟା-୧୭୭*

## ପୁରୀରାଜା ଓ ମନ୍ଦିର

ପୁରୀରାଜା ପୁରୁଷୋତ୍ତମକ୍ଷେତ୍ରସ୍ଥ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ମନ୍ଦିର ଏବଂ ସେବାର ସୁପରିଣ୍ଟେଣ୍ଡେଣ୍ଟ ଅଧିକାରରୁ ଆଇନଦ୍ୱାରା ବିଚ୍ୟୁତ ହେବାରୁ ମନ୍ଦିରର ସେବା କାର୍ଯ୍ୟ ନିର୍ବାହର ସୁବ୍ୟବସ୍ଥା କରିବା ନିମନ୍ତେ ସରକାର ଯେଉଁ ମୋକଦ୍ଦମା ଦାଏର କରିଥିଲେ ଏବଂ ତାହା ଯେପରି ରଫା ହେଲା ପାଠକମାନଙ୍କୁ ଜଣାଅଛି ଏହା ମଧ ସମସ୍ତେ ଜାଣନ୍ତି, ଯେ ଏଠାର ସୁପରିଚିତ ଉକିଲ ବାବୁ ମଧୁସୂଦନ ଦାସଙ୍କର ବିଚକ୍ଷଣ ବୁଦ୍ଧି କୌଶଳ ଏବଂ ବିଶେଷ ପରିଶ୍ରମ ଓ ଅଧ୍ୟବସାୟ ହେତୁ ପୁରୀ ରାଜଗୃହର ଗୌରବ ରକ୍ଷା ପାଇଲା। ପୁରୀର ବର୍ତ୍ତମାନ ରାଜା ସେ ସମୟରେ ନାବାଳକ ଥିଲେ ଏବଂ ତାହାଙ୍କର ଠାକୁରମାତା ମଣିମା ଉପଯୁକ୍ତ ମନେଜର ରଖି ବାବୁ ମଧୁସୂଦନ ଦାସଙ୍କ ପରାମର୍ଶ ଅନୁସାରେ ମନ୍ଦିରର ସକଳ କାର୍ଯ୍ୟ ନିର୍ବିଘ୍ନରେ ଚଳାଇ ଆସୁଥିଲେ। ରାଜାଙ୍କ ବୟଃପ୍ରାପ୍ତ ସଙ୍ଗେ ସଙ୍ଗେ ସ୍ୱାର୍ଥପର ପାର୍ଶ୍ୱଲୋକଙ୍କ କୁମନ୍ତ୍ରଣାରେ ପଡ଼ି କର୍ତ୍ତବ୍ୟ କାର୍ଯ୍ୟରେ ଅବହେଳା ଏବଂ ଅତ୍ୟାଚାରରେ ପୀଡ଼ିତ ହେବାର ଦେଖି ମଧୁବାବୁ ତାହାଙ୍କୁ ସୁଶିକ୍ଷା ଏବଂ ସୁଚିକିତ୍ସା ନିମନ୍ତେ ଏ ନଗରକୁ ଆଣି ଏବଂ କଲିକତାକୁ ଘେନି ଯାଇ ନାନା ଯତ୍ନ ଓ

ଚେଷ୍ଟାରେ ତାହାଙ୍କୁ ଆରୋଗ୍ୟ କଲେ। ଏବଂ ତାହାଙ୍କର କର୍ତ୍ତବ୍ୟ ଜ୍ଞାନର ଅନେକ ଶିକ୍ଷା ଦେଲେ। ମାତ୍ର ଦୁଃଖର ବିଷୟ ଯେ ସେ ପୁରୀକି ଯାଇଁ ସେ ସମସ୍ତ ଭୁଲିଗଲେ ଏବଂ ମଧୁବାବୁଙ୍କ ପରି ଅକୃତ୍ରିମ ପୁରୁଣାବନ୍ଧୁଙ୍କର ପରାମର୍ଶରେ ଚାଲିବା ତେଣିକି ଥାଉ ତାହାଙ୍କୁ ଏକାବେଳେ ହତାଦର କରି କୁପଥଗାମୀ ହେଲେ। କ୍ରମେ ଋଣ ବଢ଼ିଲା ଶ୍ରୀଜଗନ୍ନାଥଙ୍କ ନୀତିରେ ଅଶୃଙ୍ଖଳା ଘଟିଲା, ବେଳେ ବେଳେ ଦୁଇ ଏକଦିନ ସେବକଙ୍କ କଳି ଅଥବା ଦ୍ରବ୍ୟ ଯୋଗାଇବାର ତ୍ରୁଟିରୁ ଅନ୍ନ ଭୋଗ ବନ୍ଦ ହୋଇଥିଲା। ପୁରୀର ଭଦ୍ରଲୋକ ଓ ଯାତ୍ରୀମାନେ ଏଥିପାଇଁ ବଡ଼ ବ୍ୟସ୍ତ ହୋଇ ସଭା ସମିତି ବସାଇ ରାଜାଙ୍କର ମନୋଯୋଗ ଆକର୍ଷଣ କଲେ। ମାତ୍ର କିଛି ଫଳ ହେଲା ନାହିଁ। ସୁଚତୁର ମଧୁ ବାବୁ ରାଜାଙ୍କୁ ସୁପଥରେ ଆଣିବାର ଅନ୍ୟ ଉପାୟ ନ ଦେଖି ଏବଂ ପୁରୀ ରାଜଗୃହର ଗୌରବ ରକ୍ଷା ନ ହେଲେ ତାହାଙ୍କର ସମସ୍ତ ବିଫଳ ଏବଂ ବନ୍ଧୁତାରେ ତ୍ରୁଟି ହେବାର ବିବେଚନା କରି ଗତ ଦଶହରା କଚେରୀ ବନ୍ଦର ଦି୨/୪ନ ପୂର୍ବେ ଏଠା ସବଜଜଙ୍କ ଅଦାଲତରେ ରାଜାଙ୍କ ଶିକ୍ଷା ଓ ଚିକିତ୍ସାରେ ବ୍ୟୟ କରିଥିବା ପ୍ରାୟ ଟ୧୪୦୦ଙ୍କା ପରି ଶୋଧ ପାଇବା ଦାବିରେ ଏକ ନାଲସ ଦାଏର କରି ଚଳନ୍ତି ଯାଏ ଦାବି ଆଗାମୀ କୋରକ କରିବାର ପ୍ରାର୍ଥନା କଲେ ଏବଂ ତହିଁର ଉପଯୁକ୍ତ ହେତୁ ଦେଖାଇ ଅଦାଲତଙ୍କ ଆଦେଶ ପ୍ରାପ୍ତ ହୋଇ ସଙ୍ଗେ ସଙ୍ଗେ ପିୟାଦ ଘେନି ପୁରୀରେ ପ୍ରବେଶ ହେଲେ। ପାଠକମାନେ ମନେ କରି ପାରନ୍ତି ଯେ ରାଜାଙ୍କର ନଅର ଭିତର ତଲାସ କରାଇବା ମଧୁ ବାବୁଙ୍କର ଅଭିପ୍ରାୟ ଥିଲା। ମାତ୍ର ଯେଉଁ ମହାନ୍ ବ୍ୟକ୍ତି ରାଜମର୍ଯ୍ୟଦା ରକ୍ଷା କରିବାକୁ ସର୍ବଦା ଯତ୍ନବାନ୍ ଅପମାନ କରିବା ତାହାଙ୍କର ଅଭିପ୍ରାୟ କଦାଚ ହୋଇ ନ ପାରେ। ଅପର ଲୋକଙ୍କ ପରି ମଧୁବାବୁ ମଧ ଜାଣିଥିଲେ ଯେ ରାଜା ଖଣ୍ଡୀ ନାମ୍ନୀ ଏକ ଛତ୍ରଖାଇର କୁହୁକରେ ପଡ଼ି ତାହା ଘରେ ଅନେକ ଟଙ୍କା ଓ ଅଳଙ୍କାର ରଖିଅଛନ୍ତି। ମଧୁ ବାବୁ ସେହି ଖଣ୍ଡିର ଘର ତଲାସ କରାଇ ମାଟିତଳେ ପୋତା ଥିବା ନଗଦ ପ୍ରାୟ ଦଶ ହଜାର ଟଙ୍କା ଏବଂ ଚଷୁହାଣ୍ଡିରେ ପୋତା ଏବଂ ଅନ୍ୟାନ୍ୟ ସ୍ଥାନରେ ଲୁଚାଇ ରଖିଥିବା ମୁକ୍ତାହାର ରାମେଶ୍ୱର ମୋହରରହାର ପ୍ରଭୃତି ନାନାପ୍ରକାର ବହୁମୂଲ୍ୟ ଅଳଙ୍କାରମାନ କୋରକ କରାଇ ଏ ନଗରକୁ ଘେନି ଆସିଲେ। ଏଥିରେ ରାଜାଙ୍କର ଚୈତନ୍ୟ ଉଦୟ ହେଲା। ସେ ଅଦାଲତରେ ମଧୁ ବାବୁଙ୍କର ଦାବୀ ଯଥାର୍ଥ ଥିବାର ସ୍ୱୀକାର କରି କୋରକ ମାଲମାନ ଦାବି ଭରଣାରେ ଦିଆଯିବାର ଯବାବ ଦେଲେ ଏବଂ ତଦନୁସାରେ ଅଦାଲତ ମୋକଦ୍ଦମା ନିଷ୍ପତ୍ତି କଲେ। ମଧୁବାବୁଙ୍କର ଯଥାର୍ଥ ଦାବି ଡିକ୍ରୀ ହେଲା ଅଥଚ ସେ ଦେଣା ରାଜାଙ୍କର ନିଜ ଭଣ୍ଡାରରୁ ଆଦାୟ ନ ହୋଇ ଯାହା ତାହାଙ୍କ ଅବିବେଚନା ବା ଅପବ୍ୟୟରେ ବାହାରି ଯାଇଥିଲା ଏବଂ ଆଉ ତାହାଙ୍କ ହାତକୁ ଫେରି ଆସିବା ଦୁସ୍ତର ଥିଲା ତହିଁରୁ ଆଦାୟ ହେଲା। ଏହା ଅବଶ୍ୟ ସନ୍ତୋଷର ବିଷୟ ଅଟେ। ରାଜା ଆପଣାର ଭ୍ରମ ବୁଝି ପାରି ପୁଣି ମଧୁ ବାବୁଙ୍କ ପରାମର୍ଶରେ ଚାଲିବାକୁ ପ୍ରତିଶ୍ରୁତ ହେଲେ ତଦନୁସାରେ ମଧୁବାବୁ ଶ୍ରୀଯୁକ୍ତ ପ୍ରାଇସ ସାହେବଙ୍କୁ ମାସିକ ଟ୮୦୦ଙ୍କା ବେତନରେ ରାଜାଙ୍କର ନିଜ ଏବଂ ମନ୍ଦିର ଏଲାକାର ସମସ୍ତ ସମ୍ପତ୍ତିର ମାନେଜର ନିଯୁକ୍ତ କରାଇଦେଲେ। ଏବଂ ରାଜା ଏହିପରି ଏକରାର ନାମା ଲେଖି ଦେଲେ କି ମାନେଜର ରାଜାଙ୍କ ନିଜ ଖରଚ ନିମନ୍ତେ ମାସକୁ ଏକହଜାର

ଟଙ୍କା ଦେବେ ଏବଂ ସଦରଠାରୁ ମୋଫସଲ ପର୍ଯ୍ୟନ୍ତ ଅମଲାଙ୍କର ବାହାଲ ବରଖାସ୍ତ ଉସୁଲ ତହସିଲ ଏବଂ ତହିଁର ସମସ୍ତ ବିଷୟରେ ସେ ଯାହା କରିବେ ରାଜା ତହିଁରେ ହସ୍ତକ୍ଷେପ କରି ପାରିବେ ନାହିଁ। ଅବଶ୍ୟ କ୍ଷତି କଲେ ତହିଁ ନିମନ୍ତେ ମାନେଜର ଦାୟୀ ହେବେ ଏବଂ ତାହାଙ୍କର କାର୍ଯ୍ୟ ଓ ହେସାବ ପତ୍ର ମଧୁବାବୁ ବୁଝିବେ। ମନ୍ଦିର ଭିତର କାର୍ଯ୍ୟ ବୁଝିବା ନିମନ୍ତେ ଅନ୍ୟ ମାନେଜର ରହିବାର କଥା ଅଛି। ଅପାପତତଃ ରାଜା ସ୍ୱୟଂ ବୁଝାବୁଝି କରିବେ ମାତ୍ର ଆୟ ବ୍ୟୟ ସମସ୍ତ ପ୍ରଧାନ ମାନେଜରଙ୍କ ହେସାବରେ ଆସିବ ଏବଂ ତହିଁର ଭଲ ମନ୍ଦ ସେ ବୁଝିବେ। ବର୍ତ୍ତମାନ୍ ଏକବର୍ଷ ନିମନ୍ତେ ଏ ବନ୍ଦୋବସ୍ତ ହୋଇ ଅଛି। ଆମ୍ଭମାନଙ୍କର ଏକାନ୍ତ ବିଶ୍ୱାସ ଯେ ଏହି ସମୟ ମଧ୍ୟରେ ଏଥିର ସୁଫଳ ଦେଖି ରାଜା ମହୋଦୟ ଶୀଘ୍ର ଏହାକୁ ଭାଙ୍ଗିବେ ନାହିଁ ଏବଂ ପ୍ରାଇସ ସାହେବଙ୍କର ପରି ସୁଯୋଗ୍ୟ ଲୋକ ଅଧିକ ଦିନ ମାନେଜର ରହିଲେ ଏକଦିଗରେ ଯେମନ୍ତ ସମ୍ପତ୍ତିର ଉନ୍ନତି ଏବଂ ଉସୁଲ ତହସିଲର ସୁବିଧା ହେବା ଅନ୍ୟ ଦିଗରେ ରାଜାଙ୍କର ଋଣ କି ଯହିଁର ପରିମାଣ ଅଢ଼େଇଲକ୍ଷ ଟଙ୍କା ବୋଲି କଥିତ ହୁଅଇ କେତେକ ବର୍ଷ ମଧ୍ୟରେ ଆଦାୟ ହୋଇ ଯିବ। ରାଜାଙ୍କର ଋଣ ବୃଦ୍ଧି ହେଲେ ଏକ ସମୟରେ ମନ୍ଦିରର ସମ୍ପତ୍ତି ଦାୟଗ୍ରସ୍ତ ହେବା ବିଚିତ୍ର ନୁହେଁ। ଅତଏବ ରାଜାଙ୍କର କାର୍ଯ୍ୟ ପ୍ରତି ସର୍ବସାଧାରଣ ବିଶେଷତଃ ହିନ୍ଦୁମାନଙ୍କର ଏକାନ୍ତ ଦୃଷ୍ଟି ରଖିବା ଏବଂ କିଞ୍ଚିତ ବିଶୃଙ୍ଖଳା ହେଲେ ତହିଁର ପ୍ରତିକାରମାନ ଲୋଡ଼ିବା ନିତାନ୍ତ ପ୍ରୟୋଜନ ମାତ୍ର ଆଶ୍ଚର୍ଯ୍ୟର ବିଷୟ ଯେ ପୁରୀବାସୀ ହିନ୍ଦୁମାନେ ମନ୍ଦିର ଅପେକ୍ଷା ମାଙ୍କଡ଼ ରକ୍ଷା ଅତ୍ୟନ୍ତ ପ୍ରୟୋଜନୀୟ ଜାଣି ତହିଁର ଆନ୍ଦୋଳନ ଚତୁର୍ଦ୍ଦିଗରେ ଲଗାଇ ରଖିଅଛନ୍ତି।

*ଉତ୍କଳ ଦୀପିକା-୧୮୯୮: ପୃଷ୍ଠା ସଂଖ୍ୟା-୩୭୫*

## ରଥଯାତ୍ରାରେ ଲାଭ

ରଥଯାତ୍ରା ଉପଲକ୍ଷେ ଭାରତର ବିଭିନ୍ନ ସ୍ଥାନର ଲକ୍ଷାଧିକ ଧନୀ ଦରିଦ୍ର ହିନ୍ଦୁ ସନ୍ତାନ କଷ୍ଟୋପାର୍ଜିତ ଅର୍ଥ ବ୍ୟୟକରି ଦେବଦେବ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ସକାଶ ପୁରୀଧାମକୁ ଆଗମନକରି ଦର୍ଶନପରେ ନିଜ୨ ସ୍ଥାନକୁ ଫେରି ଯାଇଅଛନ୍ତି। ସେମାନେ ଦେବୋଦ୍ଦେଶ୍ୟରେ ଜଣକେ ହାରାହାରି ଟଙ୍କାଏ ଲେଖାଁଏ ଖରଚ କରିଥିଲେ ମଧ୍ୟ ପୁରୀ ସହରରେ ଏକ ଲକ୍ଷ ଟଙ୍କା ନଗଦ ଦେଇଗଲେ। ସେମାନଙ୍କ ଯୋଗେ ସ୍ଥାନୀୟ ବେପାରିମାନେ ମଧ୍ୟ ଯଥେଷ୍ଟ ପରିମାଣରେ ଲାଭବାନ୍ ହୋଇଥିଲେ। କିନ୍ତୁ ଏ ଯାତ୍ରୀପ୍ରଦତ୍ତ ଲକ୍ଷେ ମୁଦ୍ରାରେ ଜଗନ୍ନାଥ ଦେବଙ୍କର କିଛି ମାତ୍ର ଲାଭ ନାହିଁ, ମାତ୍ର ବ୍ୟୟ ଯଥେଷ୍ଟ। ଯାତ୍ରାର ନିରାମୟତା ବିଷୟରେ ମିଉନସିପାଲିଟିର ଡାକ୍ତର ନିୟୋଗ, ସହର ପରିଷ୍କାର ରଖିବା ଆଦି କାର୍ଯ୍ୟରେ ବ୍ୟୟ ବିସ୍ତର, ସରକାରଙ୍କର ମଧ୍ୟ ପୋଲିଶଦଳ ନିୟୋଗାଦିରେ ବ୍ୟୟ ଅଳ୍ପ ନୁହେଁ। ଯାହା କିଛି ଲାଭ ପଣ୍ଡାମାନଙ୍କର। ସେମାନେ ଯାତ୍ରୀମାନଙ୍କ ପ୍ରଦତ୍ତ ଲକ୍ଷାଧିକ ଟଙ୍କା ଗ୍ରହଣକରିଅଛନ୍ତି। ଯାତ୍ରୀମାନଙ୍କଠାରୁ "ଆଟିକା" ନାମରେ ଗୃହୀତ ଟଙ୍କା ସେମାନଙ୍କ ପେଟିକା ମଧ୍ୟରେ ବିଶ୍ରାମ ଲାଭକରିଅଛି। ଜଗନ୍ନାଥଦର୍ଶନବେଳେ ଯାତ୍ରୀମାନେ ରତ୍ନସିଂହାସନ ନିକଟରେ ନଗଦ ଟଙ୍କା ଆଦି ଭେଟ ଦେବା ପ୍ରଥା ବର୍ତ୍ତମାନ ଉଠିଯାଇଅଛି। ତାହା ଜଗନ୍ନାଥଦେବଙ୍କର ପ୍ରାପ୍ୟ ଥିଲା। ଶୁଣିବାରେ ପଣ୍ଡାମାନଙ୍କ ପ୍ରବର୍ତ୍ତନ

ଫଳରେ ସେହି ଭେଟି ପ୍ରଥା ଉଠିଯାଇଅଛି। ଏହା ସାମାନ୍ୟ କ୍ଷୋଭର ବିଷୟ ନୁହେ। ପଣ୍ଡାମାନଙ୍କର ଉଚିତ, ପ୍ରାପ୍ତ ଅର୍ଥର ଅଂଶବିଶେଷ ମହାପ୍ରଭୂଙ୍କ ଭଣ୍ଡାରରେ ଅର୍ପଣ କରିବା ତାହା ନ ହେଲେ ମନ୍ଦିରପରିଚାଳକଙ୍କର କର୍ତ୍ତବ୍ୟ, ପ୍ରତ୍ୟେକ ଯାତ୍ରୀଙ୍କଠାରୁ ନିର୍ଦ୍ଦିଷ୍ଟ ପରିମାଣରେ ଅର୍ଥ ଗ୍ରହଣ କରି ଦର୍ଶନ ନିମନ୍ତେ ସେମାନଙ୍କୁ ମନ୍ଦିର ମଧ୍ୟକୁ ଛାଡ଼ିବା। ଏପରି ବିଧାନ ଅପ୍ରିତିକର ହେଲେ ମଧ ମନ୍ଦିରର ମଙ୍ଗଳ କାମନାରେ ତାହା କରିବାକୁ ହେବ। ମଧ୍ୟେ ମଧ୍ୟେ ମନ୍ଦିର ମରାମତି ନ କଲେ ନ ଚଳେ, ତହିଁ ସକାଶ ବିପୁଳ ଅର୍ଥ ଆବଶ୍ୟକ। ମହାପ୍ରଭୂଙ୍କ ନିଦ୍ଦିଷ୍ଟ ଆୟରେ ତାହା ହୋଇ ପାରିବ ନାହିଁ। ତହିଁ ସକାଶ କ୍ରମଶଃ ଅର୍ଥ ସଂଗ୍ରହକରି ନ ରଖିଲେ ପୁରୀ ମନ୍ଦିରର ଅବସ୍ଥା ଭୁବନେଶ୍ୱରର ମନ୍ଦିରପରି ହେବ। ଆମ୍ଭମାନଙ୍କ ବିବେଚନାରେ ମନ୍ଦିର ରକ୍ଷା, ମନ୍ଦିରର ଆୟ ବୃଦ୍ଧି ବିଷୟରେ ପଣ୍ଡାମାନଙ୍କର ଅଧିକ ମନୋଯୋଗ ଆବଶ୍ୟକ, କାରଣ ମନ୍ଦିର ଭଲ ଥିଲେ ସେମାନଙ୍କର ମଙ୍ଗଳ ହେଉଥିବ।

*ଉତ୍କଳ ଦୀପିକା-୧୯୨୩: ପୃଷ୍ଠା ସଂଖ୍ୟା-୨୮୭*

## ଶ୍ରୀମନ୍ଦିରରେ ଅବବ୍ୟସ୍ଥା

"ଆନନ୍ଦ ବଜାର ପତ୍ରିକା' ପ୍ରକାଶ କରି ଅଛନ୍ତି 'ପୁରୀର ବର୍ତ୍ତମାନ ମନ୍ଦିର ମେନେଜରଙ୍କର ସରକାରରେ ସୁନାମ ଅଛି, ତାଙ୍କର ସରକାରୀ କର୍ମଚାରୀମାନଙ୍କ ପ୍ରତି ଆସ୍ଥା ଅଛି। ତାଙ୍କ ଦ୍ବାରା ମନ୍ଦିର ମରାମତି ଓ ସ୍ଥାନେ ସ୍ଥାନେ ରଙ୍ଗଦିଆ ଯାଉଥିଲେ ମଧ ମନ୍ଦିର ପର୍ଯ୍ୟବେକ୍ଷଣ କାର୍ଯ୍ୟ ପୂର୍ବପରି ହେଉନାହିଁ, ଭୋଗରାଗ, ସେବା ପୂଜା ପ୍ରତି ତାଙ୍କର ଦୃଷ୍ଟି କମ୍; ବିଶେଷତଃ ସେ ଜୈନଧର୍ମାବଲମ୍ବୀ। ଜୈନଧର୍ମାବଲମ୍ବୀ ବ୍ୟକ୍ତିଙ୍କ ହସ୍ତରେ ମନ୍ଦିର ଭାର ରହିବା ସଙ୍ଗତ ନୁହେଁ।" ମନ୍ଦିର ରକ୍ଷା, ମନ୍ଦିରର ସୌଷ୍ଟବ ବୃଦ୍ଧି ବିଷୟରେ ଯାହାଙ୍କର ଅନୁରାଗର କଥା ସ୍ୱୀକୃତ ହୋଇଅଛି ତାଙ୍କର ସେହି ମନ୍ଦିରର ଦେବତାଙ୍କ ସେବା ପୂଜାରେ ଦୃଷ୍ଟି ନଥିବା କଥା ସ୍ୱୀକାର କରିବାକୁ ପ୍ରବୃତ୍ତି ହେଉନାହିଁ। ସେପରି ହେଉଥିଲେ ତାଙ୍କର ସାବଧାନ ହେବା ଆବଶ୍ୟକ। ତାଙ୍କର ସରକାରରେ ସୁନାମ ଅଛି ଏବଂ ସେ ଜୈନଧର୍ମାବଲମ୍ବୀ ଥିବା ହେତୁବାଦରେ ତାଙ୍କୁ ମେନେଜର କାର୍ଯ୍ୟରୁ ଅନ୍ତର କରିବା ସଙ୍ଗତ ମନେ କରୁନାହୁଁ। ସରକାରୀ ଲୋକ ରଖାଗଲେ ସେମାନେ ସରକାରଙ୍କର ଭକ୍ତ ହେବା ସ୍ୱାଭାବିକ। ପୂର୍ବେ ଜଣେ ଇଉରୋପୀୟାନ ମନ୍ଦିରର ମେନେଜର କରିଥିବା ସ୍ଥଳେ ଜୈନ ବୋଲି ବର୍ତ୍ତମାନ ମେନେଜରଙ୍କୁ ଅନ୍ତର କରିଦେବା ସଙ୍ଗତ ମନେ କରୁନାହୁଁ। ବର୍ତ୍ତମାନ ମେନେଜର ଭଲ କାର୍ଯ୍ୟ କରୁଅଛନ୍ତି ବୋଲି ଲୋକ ସାଧାରଣରେ ବିଶ୍ୱାସ।

*ଉତ୍କଳ ଦୀପିକା, ୧୯୨୪, ପୃଷ୍ଠା-୩*

ପୁରୀ ମନ୍ଦିରରେ ଶ୍ରୀଯୁକ୍ତ ଲାଲ ଆଶୁତୋଷ ରାଜା ମୁକୁନ୍ଦଦେବଙ୍କ ସମୟରେ ମେନେଜର ନିଯୁକ୍ତ ହୋଇ କାର୍ଯ୍ୟକରି ଆସିଥିଲେ। ସେ ଚାରିବର୍ଷ ସକାଶେ ନିଯୁକ୍ତ ହୋଇଥିଲେ। ସେ ପ୍ରାୟ ଦେଢ଼ ବର୍ଷ କାର୍ଯ୍ୟ କରିଅଛନ୍ତି। ତାହାଙ୍କର କାର୍ଯ୍ୟକାଳ ମଧ୍ୟରେ କେତେ ପୁରାତନ ଓଡ଼ିଆ ଅମଲା ଖାରଜ ହୋଇ ତହିଁ ପରିବର୍ତ୍ତେ ଅନେକ ଗୁଡ଼ିଏ ବିଦେଶୀ ଅମଲା ନିଯୁକ୍ତ ହୋଇଥିଲେ। ବେତନ

ମଧ୍ଯ ସେମାନଙ୍କୁ ଖୁବ୍ ବେଶୀ ୨ ଦିଆଯାଉଥିଲା। କିନ୍ତୁ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁପରେ ରାଜା ରାମଚନ୍ଦ୍ର ଦେବ ମନ୍ଦିରର ଭାର ଗ୍ରହଣ କରିବାରୁ ଲାଲା ସାହେବଙ୍କର ସାହାଯ୍ୟ ଅନାବଶ୍ୟକତା ଅନୁଭବ କରିବାରୁ ବର୍ତ୍ତମାନ ଲାଲାସାହେବ ଆରା ଜିଲ୍ଲାକୁ ଯିବାର ଗେଜେଟରେ ପ୍ରକାଶିତ ହୋଇଅଛି।

ବର୍ତ୍ତମାନ କାଗଜପତ୍ର ଅଡ଼ିଟ ହେଉଅଛି। ଅଡିଟ୍ କାର୍ଯ୍ୟ ଶେଷ ହେଲା ଲାଲା ସାହେବ ବିଦାୟ ଗ୍ରହଣ କରିବେ। ଭୂତପୂର୍ବ ଟେମ୍ପଲ ମେନେଜର ରାୟବାହାଦୂର ରାଜକିଶୋର ଦାସ ଯେ କି ପ୍ରଥମେ ମନ୍ଦିରର ବିଶୃଙ୍ଖଳା ଦୂର କରି ସମସ୍ତକାର୍ଯ୍ୟ ଶୃଙ୍ଖଳାରେ ଚଳାଇବାର ବ୍ୟବସ୍ଥା କରିଥିଲେ ତାହାଙ୍କୁ ଦେଓ୍ୟାନ ପଦରେ ନିଯୁକ୍ତକରି ରାଜା ରାମଚନ୍ଦ୍ରଦେବ ସ୍ୱୟଂ ସମସ୍ତ କାର୍ଯ୍ୟ ଚଳାଇବାର ସ୍ଥିର କରିଥିବାର ସଂବାଦ ପାଉଅଛୁଁ।

ରାଜା ରାମଚନ୍ଦ୍ର ଦେବ ବେଶ୍ ସୁବିବେଚନାର କାର୍ଯ୍ୟ କରିଅଛନ୍ତି। ରାଜା ମହୋଦୟ ଯେବେ ଜଗନ୍ନାଥଙ୍କଠାରେ ଅଚଳ ଭକ୍ତି ରଖି ସମସ୍ତ କାର୍ଯ୍ୟ ମନୋଯୋଗୀ ହୁଅନ୍ତି ତାହାହେଲେ ତାଙ୍କର ସୁଖ୍ୟାତି ଭାରତର ସବୁ ସ୍ଥାନରେ ଘୋଷିତ ହେବ ସନ୍ଦେହ ନାହିଁ।

*ଉତ୍କଳ ଦୀପିକା-୧୯୨୬: ପୃଷ୍ଠା ସଂଖ୍ୟା-୨୯୨*

# ଗଜପତି ମୁକୁନ୍ଦଦେବ

ପୁରୀର ଦ୍ୱୀପାନ୍ତରିତ ମହାରାଜା ଦିବ୍ୟସିଂହଙ୍କ ନାବାଲଗ ପୁତ୍ର ଶ୍ରୀ ଜଗନ୍ନାଥ ଜେନାମଣି ମୁକୁନ୍ଦଦେବ ମହାରାଜା ନାମ ଗ୍ରହଣ ପୂର୍ବକ ସିଂହାସନରେ ବସିବାର ଅନେକଦିନ ହେଲା ପାଠକମାନଙ୍କୁ ଜଣାଇ ଥିଲୁଁ। ସମ୍ପ୍ରତି ପୁରୁଷୋତ୍ତମପତ୍ରିକାରେ ପାଠ କଲୁଁ କି ନୂତନ ମହାରାଜା ମୁକୁନ୍ଦଦେବ ଗତ ସୁନିଆଁଦିନ ପୁରୀ ରାଜବଂଶର ପ୍ରାଚୀନ ରୀତି ଅନୁସାରେ ଚତୁରଙ୍ଗ ଦଳରେ ବାଳିନଅରକୁ ବିଜେ କରିଅଙ୍କ କଟାଇଲେ। ଏହି ସୁନିଆଁଠାରୁ ମୁକୁନ୍ଦଦେବଙ୍କର ୩ ଅଙ୍କ ଆରମ୍ଭ ହେଲା। ଅଙ୍କ କଟା ସମୟରେ ଅନେକ ଲୋକ ଉପସ୍ଥିତ ହୋଇଥିଲେ ଏବଂ ସଲାମୀସ୍ୱରୂପ ପ୍ରାୟ ଟ୩୦୦ଙ୍କା ଆୟ ହୋଇଥିଲା। ଦିବ୍ୟସିଂହଦେବ ବଞ୍ଚି ଥାଉଣୁ ଏପରି ହେବା ଅବଶ୍ୟ ହାସ୍ୟାସ୍ପଦ ଏବଂ ଦୁଃଖର ବିଷୟ ଅଟଇ। ତେବେ ପୁରୀ ରାଜବଂଶର ପୂର୍ବ ଟେକ ନ ଥିବାରୁ ଏ ଘଟନା ସର୍ବସାଧାରଣଙ୍କ ମନକୁ ଆକର୍ଷଣ କରି ପାରି ନାହିଁ।

*ଉତ୍କଳ ଦୀପିକା-୧୮୮୨: ପୃଷ୍ଠା ସଂଖ୍ୟା-୨୪୫*

ପୁରୁଷୋତ୍ତମ ପତ୍ରିକାରୁ ଅବଗତ ହୋଇ ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ ଯେ, ଦୀପାନ୍ତରିତ ରାଜା ଶ୍ରୀ ଦିବ୍ୟସିଂହଦେବଙ୍କର ସାତବର୍ଷ ବୟସର ପୁତ୍ର ଜେନାମଣି 'ମୁକୁନ୍ଦଦେବ' ନାମ ଧାରଣ କରି ସିଂହାସନରେ ବସିଅଛନ୍ତି। ଜେନାମଣିଙ୍କ ବୟସରୁ ତାଙ୍କ ବିଦ୍ୟାର ପରିଚୟ ମିଳୁଅଛି। ଏମନ୍ତ ବୟସରେ ଓଡ଼ିଶ୍ୟାର (ନାମମାତ୍ର ହେଉ ପଛକେ) ଗଜପତି ସିଂହାସନରେ ତାଙ୍କର ବସିବା,

କେଡ଼େ ଯୁକ୍ତିସଙ୍ଗତ, ତାହା ଆମ୍ଭେମାନେ ବୁଝି ପାରିଲୁଁ ନାହିଁ। ଯେବେ ଏମନ୍ତ ହେଲା, ତେବେ ଜମିଦାରୀ ଓ ମହାଜନୀ, ବାର୍ଷିକ ପଞ୍ଜିକା ଏବଂ ଜାତକାଦିରେ (ଯେଉଁମାନ କି ତାଳପତ୍ରରେ ଲେଖାଯାଏ) ନୂଆ ଅଙ୍କ ଚଳିବ। ପିତାଙ୍କ ବର୍ତ୍ତମାନରେ ପୁତ୍ରଙ୍କ ନାମରେ ଅଙ୍କ ଚଳିବା ବଡ଼ ଅସମ୍ଭବବୋଧ ହେଉଅଛି। ପୁଣି ବନ୍ଦୀ ଦେବରାଜ ପ୍ରୌଢ଼ ନୋହନ୍ତି କି ବୃଦ୍ଧ ନୋହନ୍ତି, ଆଉ ଇଂରେଜରାଜ ଅନୁଗ୍ରହ କଲେ ତାଙ୍କୁ ମୁକ୍ତ କରି ଦେଇ ପାରନ୍ତି, ତାହା ହେଲେ ତାଙ୍କର ଦେଶରୁ ଲେଉଟି ଆସିବା ସମ୍ଭବ। ଏହିମାନ ବିବେଚନା ନ କରି ଦେବରାଜଙ୍କ ପାରିଷଦବର୍ଗ ଜେନାମଣିଙ୍କୁ ଏକାବେଳକେ 'ମୁକୁନ୍ଦଦେବ' ନାମ ଦେଇ ସିଂହାସନରେ ବସାଇଦେଲେ ଏହା ଜଗତକୁ ଶୋଭା ପାଉ ନାହିଁ।

*ବାଲେଶ୍ୱର ସମ୍ବାଦ ବାହିକା, ୧୮୮୨, ପୃଷ୍ଠା-୬*

ମହାଶୟ!

ନିମ୍ନଲିଖିତ ବିଷୟଟିକୁ ଆପଣଙ୍କ ବିଖ୍ୟାତ ପତ୍ରିକାରେ ସ୍ଥାନଦାନ କରି ବାଧିତ କରାନ୍ତୁ। ଅନେକଦିନ ଦେଖି ଆସୁଅଛି ଯେ ଓଡ଼ିୟା ନବସମ୍ବାଦ ପତ୍ରିକାର ଶିରୋଦେଶରେ ମାହାଳିଆ ମୁକୁନ୍ଦଦେବଙ୍କ ଅମୁକଅଙ୍କ ଲେଖା ହେଉଅଛି। କେଉଁ ମୁକୁନ୍ଦଦେବ ମହାଳିଆ କିଛି ବୁଝିପାରୁ ନାହିଁ କେବଳ ଏତିକି ଯେ ଆମ୍ଭ ଓଡ଼ିଶାରେ ପୁରୀ ମହାରାଜାଙ୍କର ଅଙ୍କ ପ୍ରଚଳିତ। ତେବେ ସେହି ବୋଧ ହୁଏ ମାହାଳିଆ। ଆଉ କଉଡ଼ିଦିଆ ମୁକୁନ୍ଦଦେବ କିଏ? ମୁକୁନ୍ଦଦେବଙ୍କର ଏପରି ବିଶେଷଣ ଦେଇ ପତ୍ରିକାର ଶିରୋଦେଶରେ ଲେଖି ବିଖ୍ୟାତକରିବା ଦ୍ୱାରା ସମ୍ପାଦଙ୍କର କି ଉଦ୍ଦେଶ୍ୟ ସାଧନ ହେଉଅଛି ମୁଁ କ୍ଷୁଦ୍ରମନରେ ଭାବିପାରୁ ନାହିଁ। ଆଉ ମଧ ସେ ପତ୍ରିକା ଆରମ୍ଭରୁ ସେହିପରି ଲେଖି ଆସୁଥିବା ସ୍ଥଳେ ଅନେକ ମହାତ୍ମାମାନଙ୍କର ଗୋଚର ହୋଇ ମଧ ଆଜିପର୍ଯ୍ୟନ୍ତ ଉପେକ୍ଷିତ ନ ହୋଇ ଥିବାର ମୁଁ ସାହାସ କରି କହିପାରୁ ନାହିଁ ଏପରି ଲେଖା ଅନୁଚିତ। କେବଳ ମାହାଳିଆ ବିଶେଷଣଟି ମର୍ଯ୍ୟାଦାସୂଚକକ ହେଲାପରି ବୋଧ ହେଉ ନାହିଁ। ମହାରାଜାଙ୍କ ଅଙ୍କ ଆଦର ସହିତ ଶିରୋଦେଶରେ ଲେଖି ଏପରି ବିଶେଷଣଟି ବଡ଼ ଅଡୁଆ ବୋଧ ହେଉଅଛି। ଯାହା ହେଉ ଏ ବିଷୟରେ ଆଉ ଅଧିକ କିଛି ଲେଖି ନ ପାରି ଏହି ପ୍ରତିକାର ସମ୍ପାଦକ ଓ ପାଠକ ଏବଂ ଓଡ଼ିଆ ନବସମ୍ବାଦର ସମ୍ପାଦକ ଓ ପାଠକମାନଙ୍କୁ ପ୍ରାର୍ଥନା କରୁଅଛି ଏ ବିଷୟର ଉଚିତାନୁଚିତ ବିବେଚନା କରି ପଦେ ଅଧେ କେହି କିଛି ଲେଖିଲେ ମୋ ମନରୁ ଭୟ ଛାଡ଼ିଯିବ ଯେହେତୁ ଯାହାକୁ ଆଜିପର୍ଯ୍ୟନ୍ତ ପ୍ରଧାନବ୍ୟକ୍ତିମାନେ ଲେଖି ଆସୁଅଛନ୍ତି ଓ ପଢ଼ି ଆସୁଅଛନ୍ତି, ତାହା ମତେ ଅସଙ୍ଗତ ବୋଧ ହେଉଅଛି।ଇତି।

।ନି।ଶ୍ରୀ ମଧୁସୂଦନ
ବିଶ୍ୱାଳ
ବେରବୋଇ
୧୮/୮/୯୧

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୨୭୬*

ମହାଶୟ!

ନିମ୍ନଲିଖିତ ଫକ୍ତି ନିଚୟକୁ ଆପଣଙ୍କୁ ପତ୍ରିକାର କୋଣୈକ ଦେଶରେ ସ୍ଥାନ ପ୍ରଦାନ କରିବା ହେବେ।

ପୁରୀ ରାଜା ସର୍ବତ୍ର ବିଦିତ ଏହାଙ୍କ ଗୌରବାଦିର ପରିଚୟ ପ୍ରଦାନ ବାହୁଲ୍ୟ ମାତ୍ର। ଅଧୁନା ଶ୍ରୀମାନ୍ ରାଜା ମୁକୁନ୍ଦଦେବ ଅପ୍ରାପ୍ତ ବ୍ୟବହାର କାଳ ଅତିବାହିତ କରି ଏକବର୍ଷ ହେବ ସକଳକାର୍ଯ୍ୟ ଚାଳନ କ୍ଷମ ହେଲେ କିନ୍ତୁ ତତ୍ରତ୍ୟ ପ୍ରଥାନୁଯାୟୀ ଗୋପାଳବର୍ଗଙ୍କ କର୍ତ୍ତୃତ୍ୱ ହେତୁ ରାଜନୀତି ପ୍ରଭୃତି ଶିକ୍ଷାକରି ପାରି ନ ଥିବାରୁ ଓଡ଼ିଶାର ପ୍ରଧାନ ଓକିଲ ବାବୁଙ୍କ ପରାମର୍ଶନୁଯାୟୀ ସକଳ କାର୍ଯ୍ୟର ଭାର ରାଜା ବୈଦ୍ୟନାଥ ପଣ୍ଡିତ ମାନ୍ୟବର ବାବୁ ମଧୁସୂନ ଦାସ ଓ ଗୋକୁଳାନନ୍ଦ ଗଉଧୁରୀଙ୍କ ହସ୍ତେ ଅର୍ପଣ କରିଥିଲେ। ମଧୁସୂଦନ ବାବୁଙ୍କ ଅନୁପସ୍ଥିତ କାଳରେ ରାଜା ବୈଦ୍ୟନାଥ ପଣ୍ଡିତ ୪ ସହସ୍ରର ଟଙ୍କା ଆତ୍ମସାତ କାରୀ (ପୂର୍ବରୁ ଅଭିଯୋଗଦ୍ୱାରା ସାବ୍ୟସ୍ତ) ତାରେଶ୍ୱର ପଟ୍ଟନାୟକଙ୍କୁ ଲୋମ୍ବାଇ ତହସିଲଦାର ପଦରେ ନିଯୁକ୍ତ ଓ ରାମକୃଷ୍ଣ ପଟ୍ଟନାୟକ ପ୍ରଭୃତି ସଚ୍ଚରିତ୍ର ନିରପରାଧୀ ବ୍ୟକ୍ତିଙ୍କୁ କର୍ମଚ୍ୟୁତ କରିବାରୁ ଶ୍ରୀମାନ୍ ରାଜା ମୁକୁନ୍ଦଦେବ ଦର୍ପଣି ରାଜାଙ୍କ ନ୍ୟାୟପରତା ଅନୁଭବ କରି ଭବିଷ୍ୟତ ଉନ୍ନତ୍ୟାର୍ଥେ ସମସ୍ତ ଭାର ସ୍ୱହସ୍ତରେ ଗ୍ରହଣ କଲେ। ଏହାଙ୍କ ତତ୍ତ୍ୱାବଧାନରେ ମନ୍ଦିର ନୀତିମାନ ଯେପରି ଯଥା ସମୟରେ ସାଧିତ ହେଉଅଁଛି ପୂର୍ବରୁ ତାହା କଦାପି ଲକ୍ଷିତ ହେଉ ନ ଥିଲା। ମଫସଲରେ ଏପରି ସୁନିୟମ ସ୍ଥାପିତ ହେଉଅଛି ଯେ ଆମ୍ଭେମାନେ ତାହାଙ୍କ ବୁଦ୍ଧିମତ୍ତାର ପରିଚୟ ପ୍ରାପ୍ତ ହୋଇ ଅହର୍ନିଶି ପ୍ରାର୍ଥନା କରୁଅଛୁଁ ଯେ ଆମ୍ଭମାନଙ୍କର ଜମିଦାର ଦୀର୍ଘଜୀବୀ ହୁଅନ୍ତୁ। ବୋଧ ହୁଏ ଜଗନ୍ନାଥ ନିଜ ସେବକଙ୍କୁ ସୁବୁଦ୍ଧି ପ୍ରଦାନ କଲେ।ଇତି।

ବିଶମ୍ବଦ

ଶ୍ରୀ ଦୀନବନ୍ଧୁ ରାଜଗୁରୁ

୨୯/୧୦/୯୭

ଲୋମ୍ବାଇ

*ଉତ୍କଳ ଦୀପିକା-୧୮୯୭: ପୃଷ୍ଠା ସଂଖ୍ୟା-୩୬୧*

## ଶୋକ ସମ୍ବାଦ

ପୁରୀର ରାଜା ଶ୍ରୀ ମୁକୁନ୍ଦଦେବ ଚଳିତ ମାସ ତା୪ରିଖ ରବିବାର ଦିବା ୩ଣ୍ଟା ସମୟରେ ସ୍ୱର୍ଗାରୋହଣ କରିଅଛନ୍ତି। ତାହାଙ୍କର ପୋଷ୍ୟପୁତ୍ର ଶ୍ରୀଯୁକ୍ତ ଜଗନ୍ନାଥ ଯେନାମଣି ସାମନ୍ତ ଶ୍ରୀରାମଚନ୍ଦ୍ର ଦେବ ନାମ ଧାରଣ କରି ରାଜା ହୋଇଅଛନ୍ତି। ମୁକୁନ୍ଦଦେବଙ୍କୁ ୫୩ ବର୍ଷ ବୟସ ହୋଇଥିଲା। ସେ ବସନ୍ତ ରୋଗାକ୍ରାନ୍ତ ହୋଇ ୮ମ ଦିବସରେ ପରଲୋକ ପ୍ରାପ୍ତହେଲେ।

**ଦାହ।**

ରାଜାଙ୍କ ମୃତ୍ୟୁପରେ ପୁରୀବାସୀ ଅଧିକାଂଶ ଲୋକ ଦେଖିବା କାରଣ ଉପସ୍ଥିତ ହୋଇଥିଲେ। ପ୍ରାୟ ତିନିହଜାର ଲୋକଙ୍କ ଶ୍ମଶାନ ପର୍ଯ୍ୟନ୍ତ ଶବର ଅନୁଗମନ କରିଥିଲେ।

କୀର୍ତ୍ତନ ଓ ଆଲୋକ ଆଦି ସହିତ ସମାରୋହରେ ତାହାଙ୍କର ଶବ ସ୍ୱର୍ଗଦ୍ୱାରକୁ ନୀତ ହୋଇଥିଲା ଏବଂ ସେହିଠାରେ ଶବ ଦାହ ହୋଇଥିଲା। ଶାନ୍ତିରକ୍ଷାନିମନ୍ତେ କେତେକ ଜଣ ପୁଲିଶ କର୍ମଚାରୀ ଯୋଗ ଦେଇଥିଲେ। କେବଳ କଲେକ୍‌ଟର ସାହେବ କିମ୍ବା ସରକାରୀ ଅନ୍ୟ କୌଣସି ଉଚ୍ଚ କର୍ମଚାରୀଙ୍କୁ ସେଠାରେ କେହି ଦେଖିବାର କହୁନାହାନ୍ତି। ଟେମ୍ପଲ ମେନେଜର ମଧ୍ୟ ଶ୍ମଶାନ ପର୍ଯ୍ୟନ୍ତ ଯାଇନାହାନ୍ତି।

**ସରକାରୀ ବନ୍ଦୋବସ୍ତ**

କଲେକ୍ଟର ମହୋଦୟ ମଫସଲରେ ଥିଲେ, ସମ୍ବାଦପାଇ ସନ୍ଧ୍ୟାକୁ ପୁରୀ ଫେରି ଆସିଥିଲେ। କମିଶନର ସାହେବ ପରଦିନ ଯାଇ ଉପସ୍ଥିତ ହୋଇ ରାମଚନ୍ଦ୍ର ଦେବଙ୍କୁ ଜଗନ୍ନାଥଙ୍କ ଦେଉଳର ସୁପରିଟେଣ୍ଡେଣ୍ଟ ହେଲେ ବୋଲି ପ୍ରକାଶ କରି ଆସିଥିଲେ ଏବଂ ଶ୍ରୀଯୁକ୍ତ ଲାଲା ଆଶୁତୋଷଙ୍କୁ କ୍ଷମତାପ୍ରାପ୍ତ ଦେବାକୁ ଆଦେଶ ଦେଇ ଆସିଥିଲେ।

ପୁରୀରାଜାଙ୍କୁ ସାଧାରଣତଃ ହିନ୍ଦୁମାନେ ଠାକୁର ରଜା ବୋଲି କହନ୍ତି। ଭାରତବର୍ଷର ବଡ଼ ବଡ଼ ରାଜ୍ୟେଶ୍ୱରମାନେ ପୁରୀ ରାଜାଙ୍କୁ ସମ୍ମାନ କରନ୍ତି। ମୁକୁନ୍ଦ ଦେବ ଆଧୁନିକ ସମାଜରେ ମିଶୁ ନଥିଲେ। ସାଧାରଣତଃ କାହାରିକୁ ଦେଖା ଦେଉନଥିଲେ। ଯେଉଁମାନେ ତାହାଙ୍କ ସହିତ କେବେ ସାକ୍ଷାତ କରିବାର ସୁଯୋଗ ପାଇଅଛନ୍ତି ସେମାନେ କହନ୍ତି ଯେ ସେ ବେଶ୍ ବୁଦ୍ଧିମାନ ଥିଲେ। ତାହାଙ୍କୁ କଦାଚ ନିର୍ବୋଧ କୁହାଯାଇ ନ ପାରେ। କିନ୍ତୁ ନାନା କାର୍ଯ୍ୟରେ ଏପରି ଉଦାସୀନତାର ପରିଚୟ ମିଳୁଥିଲା ଯେ ଲୋକେ ତାହାଙ୍କ ସମ୍ବନ୍ଧେ ନାନାକଥା କହିବାକୁ କୁଣ୍ଠିତ ହେଉନଥିଲେ। ତଥାଚ ତାହାଙ୍କର ଯେ ସମସ୍ତ ମହତ୍ ଗୁଣମାନଥିଲା ସେପରି ଗୁଣ ସାଧାରଣ ମନୁଷ୍ୟ ମାନଙ୍କଠାରେ ବିରଳ। ସେ ଅର୍ଥକୁ ଅତି ତୁଚ୍ଛଜ୍ଞାନ କରୁଥିଲେ। ସହସ୍ର ୨ ଟଙ୍କା ତାଙ୍କ ନିକଟରେ ପହଞ୍ଚି ଅଛି ସେ ତାହା ଆଦୌ ସ୍ପର୍ଶ କରିନାହାନ୍ତି। ତାହା ଅନ୍ୟମାନେ ଘେନିଯାଇଅଛନ୍ତି। ଯେବେ ସେ କେବଳ ସାଧାରଣ ଯାତ୍ରିମାନଙ୍କୁ ଦର୍ଶନ ଦେଉଥାନ୍ତେ ତାହାହେଲେ ଯେ କେତେ ସୁନାରୂପା ଧନରତ୍ନ ଆନନ୍ଦରେ ତାହାଙ୍କୁ ଭେଟଦେଇ ହିନ୍ଦୁମାନେ ତାହାଙ୍କର ପାଦପୂଜା କରୁଥାନ୍ତେ ତାହାର ସୀମା ନ ଥାନ୍ତା। ମାତ୍ର ସେ କେବେ ସେରୂପଧନରତ୍ନକୁ ଆଶା କରୁନଥିଲେ। ଗୋମାତାଙ୍କର ସେବା ତାହାଙ୍କର ପ୍ରଧାନ ବ୍ରତ ଥିଲା। ସେ ନିଜ ହସ୍ତରେ ଗୋମାତାଙ୍କର ସେବା କରୁଥିଲେ। ଆହାର ପରିଧାନ ଆଦିରେ ବିଶେଷ ଉଦାସୀନ ଥିଲେ। କେବଳ ଆହାର ପରିଧାନ କାହିଁକି ତାହାଙ୍କର ଅନ୍ୟାନ୍ୟ ସମସ୍ତ କାର୍ଯ୍ୟମାନଙ୍କରେ ସମ୍ପୂର୍ଣ୍ଣ ନିର୍ଲିପ୍ତ ଭାବ ଓ ଉଦାସୀନତା ପ୍ରକାଶ ପାଉଥିଲା। ଆମ୍ଭେମାନେ ତାହାଙ୍କର ଶୋକସନ୍ତପ୍ତ ପରିବାରମାନଙ୍କର ସାନ୍ତ୍ୱନା ନିମନ୍ତେ ଭଗବାନଙ୍କ ଠାରେ ପ୍ରାର୍ଥନା କରୁଅଛୁଁ।

*ଉତ୍କଳ ଦୀପିକା-୧୯୨୬: ପୃଷ୍ଠା ସଂଖ୍ୟା-୯୩*

## ପୁରୀ-ରାଜା

ପୁରୀର ଭୂତପର୍ବ ରାଜା ଶ୍ରୀ ମୁକୁନ୍ଦଦେବଙ୍କ ମୃତ୍ୟୁସମ୍ବାଦ ଆମ୍ଭେମାନେ ଏଥିପୂର୍ବେ ପ୍ରକାଶ କରିଥିଲୁଁ। ତାହାଙ୍କର ଶ୍ରାଦ୍ଧ ଶେଷ ହୋଇଅଛି। ଶ୍ରାଦ୍ଧରେ ସେପରି ବିଶେଷ କିଛି ଆଡମ୍ବର

ହୋଇନାହିଁ। ମୁକୁନ୍ଦଦେବଙ୍କର ଅନେକ ମହତ୍ତ୍ୱ ଗୁଣ ଥିଲେହେଁ ସେ ସାଂସାରିକ କାର୍ଯ୍ୟରେ ଏକ ପ୍ରକାର ବିରାଗୀ ଥିବା ବିଶେଷତଃ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କର ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଥାଇ ମନ୍ଦିର କାର୍ଯ୍ୟରେ ବିଶେଷ ମନୋଯୋଗୀ ନ ଥିବା ଓ ମଧ୍ୟ କେତେକ ଲୋକଙ୍କର ପରାମର୍ଶରେ ଚାଲୁଥିବାର ସରକାରଙ୍କର ଧାରଣା ଥିବାରୁ ସେ ଏକ ପ୍ରକାର ଉକ୍ତ କାର୍ଯ୍ୟମାନ ପରିଚାଳନା ନିମନ୍ତେ ଆଯୋଗ୍ୟ ବିବେଚିତ ହୋଇ ବହୁକାଳରୁ ମନ୍ଦିରର କାର୍ଯ୍ୟ ଜଣେ ଜଣେ ସରକାରୀ କର୍ମଚାରୀଙ୍କ ଦ୍ୱାରା ପରିଚାଳିତ ହୋଇ ଆସୁଥିଲା। ଉକ୍ତ ସରକାରୀ କର୍ମଚାରୀମାନେ ଚାରିବର୍ଷ ସକାଶେ ନିଯୁକ୍ତ ହେଉଥିଲେ। ପ୍ରତି ଚାରିବର୍ଷରେ ଥରେ ଲେଖାଁଏ ପରିବର୍ତ୍ତିତ ବା ପୂନର୍ନିଯୁକ୍ତ ହେଉଥିଲେ ଏହି ପରିବର୍ତ୍ତନ ସମୟରେ ପ୍ରତିଥର କେତେ ରହସ୍ୟମୟ ଘଟଣା ଘଟିଯାଉଥିଲା। ବର୍ତ୍ତମାନ ମୁକୁନ୍ଦଦେବଙ୍କର ମୃତ୍ୟୁ ହୋଇଅଛି ଏବଂ ଶ୍ରୀଯୁକ୍ତ ଜଗନ୍ନାଥଯେନାମଣି ମହୋଦୟ ରାମଚନ୍ଦ୍ର ଦେବ ନାମ ଗ୍ରହଣ କରି ରାଜା ହୋଇଅଛନ୍ତି। ଏ ମହାଶୟ ବାମଣ୍ଡା ରାଜକୁମାର ଥିଲେ। ତାହାଙ୍କୁ ମୁକୁନ୍ଦଦେବ ପୋଷ୍ୟପୁତ୍ର ଗ୍ରହଣକରିବା ଘେନି ମଧ୍ୟ କେତେ ରହସ୍ୟ ଘଟିଯାଇଅଛି। ମାଲି ମକଦ୍ଦମା ହୋଇ କଟକ ସବ୍‌ଜଜ୍‌ଙ୍କ ଅଦାଲତରୁ ପାଟଣା ହାଇକୋର୍ଟ୍ ପର୍ଯ୍ୟନ୍ତ ଭୁରି ଭୁରି ଅର୍ଥଧ୍ୱଂସ ହୋଇଅଛି। ପରି ଶେଷରେ ଯେନାମଣି ମୁକୁନ୍ଦଦେବଙ୍କ ପୋଷ୍ୟପୁତ୍ର ବୋଲି ସିଦ୍ଧାନ୍ତ ହେଲେହେଁ ମୁକୁନ୍ଦଦେବ ବହୁକାଳ ପର୍ଯ୍ୟନ୍ତ ତାହାଙ୍କୁ ପୋଷ୍ୟପୁତ୍ର ବୋଲି ସ୍ୱୀକାର କରିବାକୁ ଅନିଚ୍ଛୁକ ଥିଲେ ଏବଂ ସେ ରାଜବାଟୀ ଆଶ୍ରୟ ନ ପାଇ ଅନ୍ୟତ୍ର ଭଡ଼ାଘରେ ବାସ କରୁଥିଲେ। ବର୍ତ୍ତମାନ ମୁକୁନ୍ଦଦେବଙ୍କ ମୃତ୍ୟୁରେ ସେ ସମସ୍ତ ଅସୁବିଧା ଦୂର ହୋଇଅଛି। ରାମଚନ୍ଦ୍ର ଦେବ ବର୍ତ୍ତମାନ ରାଜା। ପୁରୀ ରାଜାଙ୍କର ରାଜ୍ୟ ନ ଥିଲେ ହେଁ ସମସ୍ତ ଭାରତର ହିନ୍ଦୁମାନେ ଓ ବଡ଼ ବଡ଼ ରାଜା ମହାରାଜାମାନେ ତାହାଙ୍କୁ ମାନ୍ୟ କରନ୍ତି। ଏ ରୂପ ମାନ୍ୟ କରିବାର କାରଣ ଅନ୍ୟ କିଛି ନୁହେଁ। କେବଳ ହିନ୍ଦୁ ଧର୍ମର ଜଣେ ଧର୍ମନେତା ବୋଲି ତାହାଙ୍କର ଏତେଦୂର ଟେକ ଓ ସମ୍ମାନ। ସେହି ପୁରୀ ସିଂହାସନ ଆରୋହଣ କରି ସେହି ଗାଦୀର ଟେକ ରଖିବା ନିମନ୍ତେ ପୁରୀରାଜାମାନଙ୍କର ନିଜର ମନୁଷ୍ୟତା ଦେଖାଇବା ବିଶେଷ ଆବଶ୍ୟକ। ରାମଚନ୍ଦ୍ର ଦେବ ଜଣେ ଅଳ୍ପବୟସ୍କ ଯୁବକ। ତାହାଙ୍କର ଜନ୍ମଦାତା ପିତା ଓ ମଧ୍ୟ ତାହାଙ୍କର ଭ୍ରାତା ବିଶେଷ ଦକ୍ଷତାର ସହିତ ରାଜନୀତିକୁଶଳ ଦେଖାଇ ଯାଇ ଅଛନ୍ତି। ତାହାଙ୍କର ପିତାମହ ଭୂତପୂର୍ବ ବାମଣ୍ଡାଧିପତି ସାର୍ ସୁଢ଼ଳଦେବ କେ, ସି, ଆଇ ଇ ନିଜର କାର୍ଯ୍ୟ କୁଶଳ ଦ୍ୱାରା ସମସ୍ତ ଉତ୍କଳରେ ବିଶେଷ ସୁପରିଚିତ ଥିଲେ। ଆଶାକରାଯାଏ ରାମଚନ୍ଦ୍ର ଦେବ ଶ୍ରୀ ଜଗନ୍ନାଥ ଦେବଙ୍କର ସୁପରିଣ୍ଟେଣ୍ଡାଣ୍ଟ ସ୍ୱରୂପ ଦେଉଳ ପରିଚାଳନା କାର୍ଯ୍ୟରେ ବିଶେଷ ମନୋଯୋଗୀ ହୋଇ ସୁବିବେଚନା ଓ ଦକ୍ଷତାର ସହିତ କାର୍ଯ୍ୟ ପରିଚାଳନ କରିବେ ଏବଂ ଆଚାର ବ୍ୟବହାର ଦ୍ୱାରା ହିନ୍ଦୁ ସମାଜରେ ଭାରତର ସମସ୍ତ ହିନ୍ଦୁମାନଙ୍କର ପୂଜ୍ୟ ହେବେ।

*ଉତ୍କଳ ଦୀପିକା-୧୯୨୬: ପୃଷ୍ଠା ସଂଖ୍ୟା-୧୧୬*

# ଶ୍ରୀମନ୍ଦିର ଜୀର୍ଣ୍ଣସଂସ୍କାର

ଶ୍ରୀଜଗନ୍ନାଥଙ୍କ ମନ୍ଦିର ସଂସ୍କାର ଅବଧି ଆରମ୍ଭ ହୋଇ ନାହିଁ। ଅଳ୍ପଦିନ ହେଲା ପୁରୀ ରାଜା ମନ୍ଦିରର ଭଗ୍ନସ୍ଥାନ ସ୍ୱୟଂ ଦେଖିଥିଲେ। ତାହାଙ୍କର ମତ ଏହି ଯେ ସମୁଦାୟ ଛାତ ନୂଆ ନିର୍ମାଣ ନ ହେଲେ ଅନ୍ୟ କୌଣସିରୂପେ ଜୀର୍ଣ୍ଣସଂସ୍କାର ହୋଇ ନ ପାରେ। ରାଜା କମିଶନର ସାହେବଙ୍କ ନିକଟକୁ ଲେଖିଅଛନ୍ତି ଯେ ବାରିକମାଷ୍ଟରୀ କର୍ମଚାରୀ ଦ୍ୱାରା ନିର୍ମାଣକାର୍ଯ୍ୟ ହେଲେ ଭଲ ହେବ ଅନ୍ୟ କୌଣସି କାରିଗର ଦ୍ୱାରା ହେବାର ସମ୍ଭାବନା ନାହିଁ। ଜୀର୍ଣ୍ଣସଂସ୍କାର ବ୍ୟୟ ବିଷୟରେ ରାଜା ଲେଖିଅଛନ୍ତି ଯେ ମନ୍ଦିର ଆୟ ସମସ୍ତ ନିୟମିତ ବ୍ୟୟରେ ଖର୍ଚ୍ଚ ହୋଇଯାଏ କିଛି ଟଙ୍କା ବଞ୍ଚଇ ନାହିଁ ଯେ ତହିଁରୁ ଏପ୍ରକାର ଅସାଧାରଣ ଖର୍ଚ୍ଚ ନିର୍ବାହ ହୋଇ ପାରିବ। କମିଶନର ସାହେବ ମନ୍ଦିରର ଆୟ ବ୍ୟୟର ହିସାବ ରାଜାଙ୍କୁ ତଲବ କରିଥିଲେ ତହିଁରେ ରାଜା ଜମା ଖର୍ଚ୍ଚ ତୁଳ କରି ହିସାବ ଦେଇଅଛନ୍ତି ଓ ତିହିଁରୁ ବାର୍ଷିକ ଆୟରୁ ବ୍ୟୟ ଯାଇ କିଛି ଟଙ୍କା ବଞ୍ଚିବାର ଦେଖାଯାଉ ନାହିଁ। ଏଥିପାଇଁ ରାଜା ପ୍ରସ୍ତାବ କରିଅଛନ୍ତି କି ଯାତ୍ରୀ ଘରଭଡ଼ା ଟିକସରୁ ମନ୍ଦିରସଂସ୍କାର କାର୍ଯ୍ୟ ନିର୍ବାହ ହେଉ ଏ ଭିନ୍ନ ଆଉ କିଛି ଉପାୟ ଦିଶୁ ନାହିଁ। ଆମ୍ଭେମାନେ ଶୁଣିଅଛୁଁ ଯେ ଉକ୍ତ ଫଣ୍ଡରେ ବହୁତ ଟଙ୍କା ଅଛି ତାହା ଖର୍ଚ୍ଚ କରିବାର କୌଣସି ବ୍ୟବସ୍ଥା ସ୍ଥାନୀୟ କମିଟୀ କରି ନାହାନ୍ତି ଏତେ ଟଙ୍କା ଥାଉଁ ଥାଉଁ ମନ୍ଦିର ଭଗ୍ନାବସ୍ଥାରେ ରହିବାର ଉଚିତ ନୁହଇ କାରଣ ମନ୍ଦିର ହେତୁରୁ ଯାତ୍ରୀ ଓ ଯାତ୍ରୀ ହେତୁରୁ ଉକ୍ତ ଟାକ୍ସର ଆମଦାନୀ ସୁତରାଂ ମନ୍ଦିରରେ ଟଙ୍କା ଖର୍ଚ୍ଚ ହେବା ମନ୍ଦ ପରାମର୍ଶ ନୁହଇ। ଆମ୍ଭେମାନେ ବୋଧକରୁଁ ଏ ଉତ୍ତାରୁ ଯାତ୍ରୀ ଘରଭଡ଼ା ଟାକ୍ସ ସମୁଦାୟ ପୁରୀ ରାଜାଙ୍କୁ ଦିଆଯିବାର ପ୍ରସ୍ତାବ ହେବ ଓ ରାଜା ଆପଣା ଇଚ୍ଛାମତେ ସେ ଟଙ୍କାର କାରବାର କରିବେ।

ନୂତନ ମହାପ୍ରସାଦ ବିଷୟରେ ଯେଉଁ ଆପତ୍ତିମାନ ହୋଇଅଛି ତାହା ଖଣ୍ଡନନିମିତ୍ତ ପଣ୍ଡିତ ତାରାକାନ୍ତ ବିଦ୍ୟାସାଗର ଲେଖନୀ ଧାରଣ କରି ଆପତ୍ତିକାରିଙ୍କ ବ୍ୟବସ୍ଥା ଉତ୍ତରରେ ଏକଖଣ୍ଡ ବ୍ୟବସ୍ଥାପତ୍ର ଛପାଇ ପ୍ରଚାର କରୁଅଛନ୍ତି ଦେଖାଯିବ ଉତ୍କଳପଣ୍ଡିତମାନେ ବଙ୍ଗାଳିପଣ୍ଡିତଙ୍କ ମତ ବିରୁଦ୍ଧରେ ଆପଣା ମତ ସ୍ଥାପନ କରି ପାରିବେ କି ନାହିଁ।

*ଉତ୍କଳ ଦୀପିକା-୧୮୭୫: ପୃଷ୍ଠା ସଂଖ୍ୟା-୧୮୫*

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ମାନ୍ୟବରେଷୁ।

ମହାଶୟ!

ଆପଣଙ୍କର ଗତ ସପ୍ତାହର ପତ୍ରିକାରେ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ମନ୍ଦିର ମରାମତି ବିଷୟରେ ଶ୍ରୀଯୁକ୍ତ ବାବୁ ବ୍ରଜକୁମାର ବୋଷ ମହାଶୟ ଯାହା ଲେଖିଅଛନ୍ତି ତହିଁ ଉପରେ ଆପଣ ଯେ ମନ୍ତବ୍ୟ ପ୍ରକାଶ କରିଅଛନ୍ତି ସେ ପକ୍ଷରେ ଆମ୍ଭର ଯେ କିଞ୍ଚିତ କହିବାକୁ ଅଛି ତାହା ନିମ୍ନେ ପ୍ରକାଶ କରିଅଛୁଁ। ପ୍ରାର୍ଥନା କରୁଁ ଆପଣଙ୍କର ପତ୍ରିକାର ଏକ ପାର୍ଶ୍ୱରେ ସ୍ଥାନ ଦେଇ ଚିରବାଧିତ କରିବା ହେବେ।

ପ୍ରଥମତଃ ଏପର୍ଯ୍ୟନ୍ତ ଶ୍ରୀମନ୍ଦିରର ଯେତେ ଥର ମରାମତି କାର୍ଯ୍ୟ ହେଉଅଛି ତାହା ପ୍ରାୟ ବ୍ରହ୍ମଚାରୀ ବୈରାଗୀ ପ୍ରଭୃତିଙ୍କଦ୍ୱାରା ସମ୍ପନ୍ନ ହୋଇ ଆସୁଅଛି ଓ ସମ୍ପୂର୍ଣ୍ଣରୂପେ ଭିକ୍ଷୋପଲବ୍ଧ ଅର୍ଥ ଉପରେ ନିର୍ଭର କରି ଆସୁଅଛି। କିନ୍ତୁ ବ୍ରହ୍ମଚାରୀ ଆଦି ଯେତେ ଅର୍ଥ ବ୍ୟୟ କରିଅଛନ୍ତି ତାହା ଶୁଣିଲେ ଭିକ୍ଷାରୁ ଏତେ ଅର୍ଥ ସଂଗ୍ରହ ହେବାର କଦାପି ବିଶ୍ୱାସ ହେବ ନାହିଁ। ସଭାଦ୍ୱାରା ଏ କାର୍ଯ୍ୟ ସମ୍ପନ୍ନ ହେବାର ଏହି ପ୍ରଥମ ଉଦ୍ୟୋଗ। ବର୍ତ୍ତମାନ ମନ୍ଦିରର ଅବସ୍ଥା ବଡ଼ ମନ୍ଦ। ଯେ ପରିମାଣରେ ମରାମତି ପ୍ରୟୋଜନ ହୋଇଅଛି ତହିଁରେ ଅନେକ ଅର୍ଥର ପ୍ରୟୋଜନ। ଏତେ ଅର୍ଥ ଯେ ସଭା ସଂଗ୍ରହ କରି ପାରିବ ଏହା ହଠାତ୍ ଆଶା କରାଯାଇ ପାରୁ ନାହିଁ। ତଥାପି ଉଦ୍ୟୋଗରୁ ପରାଙ୍ମୁଖ ହେବା ମଧ୍ୟ ଅବିଧେୟ। କି ସଭା କିପରି ମରାମତି କରିବାକୁ ଉଦ୍ୟୋଗ କରୁଅଛନ୍ତି ତାହା କିଛି ପ୍ରକାଶ ପାଇ ନାହିଁ। ସଭାରୁ ସମସ୍ତ କାର୍ଯ୍ୟାବଳୀ ପ୍ରକାଶ ହେବାର ଉଚିତ ନତୁବା ଲୋକେ ଯେ ସହଜରେ ଅର୍ଥଦେବାକୁ ମନ ବଳାଇବେ ଏହା ବିଶ୍ୱାସ ହେଉ ନାହିଁ।

୨ୟ ଆପଣଙ୍କର ପତ୍ରପ୍ରେରକ ମହାଶୟ ସଭ୍ୟମାନଙ୍କ ମଧ୍ୟରୁ କିଏ କେତେ ଦେଇଅଛି ଓ ପୁରୀନିବାସୀ ସନ୍ଥ ମହନ୍ତମାନେ କିଛି କେହି ଦେଇଅଛନ୍ତି କି ନା ଜାଣିବାକୁ ଚାହାନ୍ତି। ଆପଣ ମଧ୍ୟ ସ୍ଥାନୀୟ ଚାନ୍ଦାଦ୍ୱାରା ପ୍ରଥମେ ଅର୍ଥ ସଂଗ୍ରହ କରିବାକୁ ପରାମର୍ଶ ଦେଇଅଛନ୍ତି। ଏଥକୁ ସଭ୍ୟମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଚୌଧୁରୀ ମହୋଦୟଙ୍କ ବ୍ୟତିତ ଅପର ସମସ୍ତେ ସତ୍ ଓ ମାନ୍ୟଗଣ୍ୟ ବ୍ୟକ୍ତି ଥିଲେ ହେଁ ତାଦୃକ ସଙ୍ଗତିପନ୍ନ ନୁହନ୍ତି। ତଥାପି ଏମାନେ ଯେ କ୍ଷମତାନୁସାରେ ଏ ବିଷୟରେ ଦାନ କରି ନ ଥିବେ କି ନ କରିବେ, ଏମନ୍ତ ସନ୍ଦେହ କଦାପି କରାଯାଇ ନ ପାରେ। କିନ୍ତୁ ଏମାନେ ପ୍ରାୟ ସମସ୍ତେ ପକ୍କା ହିନ୍ଦୁ ସୁତରାଂ ଧର୍ମ ସମ୍ବନ୍ଧୀୟ ଦାନ ପ୍ରକାଶ କରିବାକୁ ପ୍ରାୟ ଅନିଚ୍ଛୁକ। ସୁତରାଂ ସେମାନଙ୍କୁ ସେ ବିଷୟରେ ଚଳାଇବାର ଉଚିତ ବୋଧହେଉ ନାହିଁ। ଆଉ ଚୌଧୁରୀ ମହୋଦୟ ମଧ୍ୟ ଏ ପକ୍ଷରେ ମୁକ୍ତହସ୍ତ ହେବା ପକ୍ଷରେ ଲେଶ ମାତ୍ର ସନ୍ଦେହ ନାହିଁ। ଏହାଙ୍କ ବଂଶରେ କେତେ ଲୋକ ପୁରୀ ଜିଲାର କେତେ ସ୍ଥାନରେ ଅଛନ୍ତି। ତହିଁର ତାଲିକା ଉଠାଇ ଦେଖିଲେ ଏମାନଙ୍କୁ ସହସ୍ର୨ ଧନ୍ୟବାଦ ଦେବାକୁ ହୁଅଇ। ତଥାପି ବୋଧ ହୁଏ ବିଶେଷ କାରଣରୁ ଉପରୋକ୍ତ କାର୍ଯ୍ୟ ନିମିତ୍ତ ଏତେବେଳେ ଏହାଙ୍କଠାରୁ ଆଶାନୁରୂପ ସାହାଯ୍ୟ ପାଇବାର ପ୍ରାୟ ଅସମ୍ଭବ। ଆଉ ସନ୍ଥ ମହନ୍ତମାନଙ୍କ ବିଷୟରେ ବକ୍ତବ୍ୟ ଏହି ଯେ ସେମାନଙ୍କର ବିପୁଳ ଅର୍ଥ ସଂଗ୍ରହି କରିବାରୁ ବେଶ ବୁଝିବାକୁ ପାରିବେ ଯେ ସେମାନେ ଏ ପକ୍ଷରେ ନିଦାଘବିଷ୍ଣୁ। ଯେଉଁମାନେ ଖଏରାତ୍ ମାଲୁ ଗରିବ କଙ୍ଗାଳ, ସାଧୁ ସନ୍ଥଙ୍କର ପେଟ କାଟି ଓ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଦାଲୁଅ ଅନ୍ନ ଚୋପା ଗଇତାଳ ବିରିଡାଲି ଖୁଆଇ ଅର୍ଥସଂଗ୍ରହ ପୂର୍ବକ ବିଳାସ ସୁଖ ଭୋଗ କରିଅଛନ୍ତି ସେମାନେ ମନ୍ଦିର ମରାମତିରେ ଅର୍ଥବ୍ୟୟ କରିବାର କି ସମ୍ଭବ? ଏଥିରେ "ଅନାଡି ମେଜଶ୍ରେଷ୍ଟ" କି "ରାଏବାଦୁଡ଼" ପ୍ରଭୃତି ପଦବୀ ପ୍ରାପ୍ତିର ସମ୍ଭାବନା ନାହିଁ।

ଆଉ ପୁରୀରେ ଚାନ୍ଦା ତୋଳି ଅର୍ଥ ସଂଗ୍ରହ କରିବାରେ ମଧ୍ୟ କୃତକାର୍ଯ୍ୟ ହେବାର ସମ୍ଭାବନା ବଡ଼ ବୋଧ ହେଉ ନାହିଁ କାରଣ କି ପୁରୀର ଧନାଢ୍ୟ ବ୍ୟକ୍ତିମାନଙ୍କ ମଧ୍ୟରେ ସନ୍ଥ ମହନ୍ତ ପଣ୍ଡା

ପଢ଼ିଆରି ମାନେ ପ୍ରଧାନ। ସନ୍ଥ ମହନ୍ତମାନଙ୍କ କଥାତ ପୂର୍ବେ କହିଅଛୁଁ ପଣ୍ଡା ପଢ଼ିଆରିମାନେ ଏମନ୍ତ ମୁର୍ଖ ଯେ ସଭାର ନାମ ଶୁଣିଲା କ୍ଷଣି ମନେ କରିବେ ହୁଏତ ସରକାର କୌଣସି ଟିକସ ବସାଉଅଛନ୍ତି। ଆଉ ଯେ ଅପର ଭଦ୍ରଲୋକେ ଅଛନ୍ତି ସେମାନଙ୍କର ସଙ୍ଗତି ମଧ୍ୟ ଯାଦୃତ ନୁହଇ ପୁଣି ଏ କାର୍ଯ୍ୟରେ ଦେଲେତ କୌଣସି ସାହେବ ପ୍ରିୟପାତ୍ର ହେବେ ନାହିଁ ଯେ ଏଥିରେ କେହି ମୁକ୍ତହସ୍ତ ହେବେ। ସୁତରାଂ ସଭା ଯେ ଭଗବତ୍ ଭିକ୍ଷାର ପ୍ରଥା ଅବଲମ୍ବନ କରିଅଛନ୍ତି ତାହା ଦେଶ କାଳ ପାତ୍ରକୁ ଚାହିଁଲେ ଉପଯୁକ୍ତ ହୋଇଅଛି।ଇତି।

ଖୋରଧା ନିଃ ଶ୍ରୀ ................................

୧୯/୨/୮୪

ଯେବେ ପ୍ରକାଶ୍ୟ ସଭା ଅନୁମୋଦନୀୟ ହେଲା ତେବେ ଦାନ ସକାଶ କରିବାର ଅନିଚ୍ଛାରୂପ ଯୁକ୍ତି ସଙ୍ଗତ ହୋଇ ନ ପାରେ ବିଶେଷରେ ଦେବା ଦିଆଇଲା ଉଭୟ ସତ୍କାର୍ଯ୍ୟ ଅଟଇ ଏବଂ ତାହା ପ୍ରକାଶ କରିବାର ଉଦେଶ୍ୟ ଅନ୍ୟକୁ ପ୍ରବର୍ତ୍ତନା ଭିନ୍ନ ଆଉ କିଛି ଏମନ୍ତ ସ୍ଥଳରେ ହୋଇ ନ ପାରେ। କଥାଚ ଇଚ୍ଛା ହେଲେ ନାମ ଗୋପନ ପୂର୍ବକ କେବଳ ଦାନର ଅଙ୍କ ପ୍ରକାଶ କରା ଯାଇ ପାରେ ଏବଂ ତଦ୍ୱାରା ପ୍ରକୃତ ଉଦେଶ୍ୟ ସଫଳ ହେବ-ସମ୍ପାଦକ।

*ଉତ୍କଳ ଦୀପିକା-୧୮୮୪: ପୃଷ୍ଠା ସଂଖ୍ୟା-୮୦*

ମହାଶୟ!

ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ବଡ଼ଦେଉଳ ଓ ତହିଁ ସଂଲଗ୍ନ କୁରୁମବେଢ଼ା ଇତ୍ୟାଦି ବହୁଦିବସ ହେଲା ସଂସ୍କାର ନ ହେବାରୁ ଅତି ସଂକିର୍ଣ୍ଣହୋଇ ସ୍ଥାନ ସ୍ଥାନରୁ ଭଗ୍ନ ହେବାକୁ ଆରମ୍ଭ ହୋଇଅଛି, ଏହିରୂପେ ଆଉ କିଛିକାଳ ରହିଲେ ଏକାବେଳକେ ନଷ୍ଟ ହେବାର ସମ୍ଭାବନା, କିନ୍ତୁ ଉକ୍ତ ଦେଉଳ ଇତ୍ୟାଦିକୁ ମରାମତ କରିବାକୁ ହେଲେ ଅନେକ ଟଙ୍କାର ଆବଶ୍ୟକ, କେହି ଜଣେ ସେ ସମସ୍ତ ଟଙ୍କା ବ୍ୟୟ କରି ତାହା ସମାଧା କରିବାର ସୁକଠିଣ, ତେବେ ଭିକ୍ଷା ବା ଭେଦା (ଯାହା କୁହ) ତହିଁ ବେତ୍ରକେ ଏଥିର ଅନ୍ୟ ଉପାୟ ଆଉକିଛି ଦେଖା ନ ଯାଏ, ମଧ୍ୟ ଉକ୍ତ ଉପାୟଦ୍ୱାରା ଏଥିର ବହୁକାର୍ଯ୍ୟ ପୂର୍ବେ ସମାଧା ହୋଇଅଛି, ଏବଂ ମଧ୍ୟେ ମଧ୍ୟେ ହେବାର ଦେଖା ଯାଉଅଛି, ବର୍ତ୍ତମାନ ଉଦ୍‌ଯୋଗୀ ହେଲେ ସେହି ଉପାୟଦ୍ୱାରା ଯେ ଏ ସଂସ୍କାର କାର୍ଯ୍ୟ ସମାଧା ହେବ ତହିଁରେ କିଛି ମାତ୍ର ସନ୍ଦେହ ନାହିଁ।

ଏଣୁକରି ଆମ୍ଭେ ମନ୍ଦିର ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ପୁରୀ ମହାରାଜାଙ୍କର ଅନୁମତି ନେଇ ତହିଁ ବିଷୟରେ ଉଦ୍‌ଯୋଗୀ ହୋଇ ପ୍ରଥମେ ମହାମାନ୍ୟ ଗବର୍ଣ୍ଣମେଣ୍ଟଙ୍କର ଏ ବିଷୟରେ ସାହାଯ୍ୟ ଦାନ କରିବା ପ୍ରାର୍ଥନାରେ ଆବେଦନ କରିଥିଲୁ, ତହିଁରେ ମହିମାବର ବେଙ୍ଗଲ ଗବର୍ଣ୍ଣମେଣ୍ଟ ଆମ୍ଭର ଉକ୍ତ ଆବେଦନ ଶ୍ରୀଯୁକ୍ତ ପୁରୀ କଲଟର ସାହେବ ମହୋଦୟଙ୍କ ସମୀପକୁ ପ୍ରେରଣ କରି ମନ୍ଦିର ଅବସ୍ଥା କିରୂପ ଓ ଆମ୍ଭର ଅଭିପ୍ରାୟ କି ତାହା ତଦନ୍ତ କରି ରିପୋର୍ଟ କରିବାର ଆଦେଶ କରିବାରୁ ବର୍ତ୍ତମାନ ମନ୍ଦିରର ଅବସ୍ଥା ଓ ଆମ୍ଭର ଅଭିପ୍ରାୟ ତଦନ୍ତ ହୋଇ ରିପୋର୍ଟ ହୋଇଅଛି।

କିନ୍ତୁ ତଦନ୍ତରେ ମନ୍ଦିରର ଜୀର୍ଣ୍ଣତା ଓ କୁରୁମବେଢ଼ା ଇତ୍ୟାଦିର ଅତି ଶୋଚନୀୟ ଅବସ୍ଥା ପ୍ରକାଶ ପାଇଅଛି, ଏବଂ ଆମ୍ଭର ଅଭିପ୍ରାୟ ଏସ୍ଥଳେ ମନ୍ଦିର ସଂସ୍କାରିଣୀ ନାମରେ ଗୋଟିଏ ସଭା ସ୍ଥାପିତ ହୋଇ ଉକ୍ତ ସଭାଦ୍ୱାରା ଏକାର୍ଯ୍ୟ ସମ୍ପନ୍ନ କରାଯିବାର ବିଶେଷତଃ ଏ ବିଷୟରେ ଗବର୍ଣ୍ଣମେଣ୍ଟଙ୍କର ସୁଦୃଷ୍ଟି ହେଲେ ଦାତା ମହୋଦୟମାନେ ଉତ୍ସାହରେ ଦାନ କରିବାର ବିଦିତ କରିଅଛୁଁ, ଏବେ କି ହୁଏ ଦେଖାଯାଉ।

ସେ ଯାହା ହେଉ ଆମ୍ଭେ ବର୍ତ୍ତମାନ ଏ କାର୍ଯ୍ୟର ଦାତା ମହୋଦୟମାନେ କିପରି ଉତ୍ସାହ ପ୍ରକାଶ କରନ୍ତି ଏବଂ କେ କି ଦାନ କରିବାକୁ ଅଙ୍ଗୀକୃତ ହୁଅନ୍ତି ତାହା ସ୍ୱଦେଶ ଓ ବିଦେଶସ୍ଥ ରାଜା ଓ ଜମିଦାର ଓ ମହାଜନମାନଙ୍କ ସନ୍ନିଧକୁ ଏଥିର ଅନୁଷ୍ଠାନ ପତ୍ର ପ୍ରେରଣ କରିବାର, ମଧ୍ୟ ସ୍ଥଳ ବିଶେଷରେ ସ୍ୱୟଂ ଯାଇ ବୁଝିବାର ଉଦ୍‌ଯୋଗ କରୁଅଛୁଁ।

ଉପସଂହାରରେ ପ୍ରକାଶ କରିଅଛୁଁ କି ଓଡ଼ିଶ୍ୟାର ଦଣ୍ଡପ୍ରାପ୍ତ ଦ୍ୱୀପାନ୍ତରିତ ରାଜା ଶ୍ରୀଯୁକ୍ତ ଦିବ୍ୟସିଂହଦେବ ମହାରାଜାଙ୍କର ଉଦ୍ଧାର ବିଷୟରେ କ୍ଷମା ପ୍ରାର୍ଥନାର ଆବେଦନ ପତ୍ରରେ ସ୍ୱଦେଶୀୟ ରାଜା ଓ ଜମିଦାର ଓ ସନ୍ଥ ମହନ୍ତ ମହୋଦୟମାନଙ୍କର ସ୍ୱାକ୍ଷର କରାଇବାର ମଧ୍ୟ ଉଦ୍‌ଯୋଗ ହେଉଅଛି। ଇତି। ତା୩୧ରିଖ ଭାଦ୍ରବ ସନ୧୨୯୨ ସାଲ।

ନିଃ

ଶ୍ରୀ ନାରାୟଣ ପ୍ରସାଦ ଆଚାର୍ଯ୍ୟ-ପୁରୀ

*ଉତ୍କଳ ଦୀପିକା-୧୮୮୫: ପୃଷ୍ଠା ସଂଖ୍ୟା-୩୨୭*

## ପୁରୀମନ୍ଦିର ସଂସ୍କାର

ଓଡ଼ିଶାର ପ୍ରାଚୀନ ଅବସ୍ଥା ଯାହା ଥାଉ ବର୍ତ୍ତମାନ ଏହା ଧନ ମାନ ଓ ସଭ୍ୟତାରେ ଭାରତବର୍ଷର କୌଣସି ପ୍ରଧାନସ୍ଥାନ ସଙ୍ଗେ ସରି ନୁହେ। କେବଳ ଏହା ଗୋଟିଏ ହିନ୍ଦୁମାନଙ୍କର ପ୍ରଧାନତୀର୍ଥସ୍ଥାନ ହୋଇଥିବାରୁ ଭାରତର ନାନାସ୍ଥାନର ଲୋକେ ସର୍ବଦା ଅବିଶ୍ରାନ୍ତଧାରାରେ ଏଠାକୁ ଆକର୍ଷିତ ହେଉ ଅଛନ୍ତି। ବାସ୍ତବରେ ପୁରୁଷୋତ୍ତମକ୍ଷେତ୍ର ଘେନି ଓଡ଼ିଶାର ଗୌରବ ଏବଂ ପୁରୁଷୋତ୍ତମର ପ୍ରଧାନ ଶୋଭା ଶ୍ରୀ ଜଗନ୍ନାଥମନ୍ଦିର। ଯେଉଁମାନେ ହିନ୍ଦୁ ନୁହନ୍ତି ବା ଜଗନ୍ନାଥଙ୍କୁ ଦେବତା ବୋଲି ମାନନ୍ତି ନାହିଁ ସେମାନେ ସୁଦ୍ଧା କେବଳ ମନ୍ଦିରର ଶିଳ୍ପକାର୍ଯ୍ୟ ଦେଖିବାକାରଣ ପୁରୀକି ଆସନ୍ତି ଓ ତାହା ଦେଖି ଆପଣାଶ୍ରମ ସଫଳ ହେବାର ଜ୍ଞାନ କରନ୍ତି। ବଡ଼ ଦୁଃଖର ବିଷୟ ଯେ ଏହି ମନ୍ଦିରର ଜୀର୍ଣ୍ଣସଂସ୍କାର ବହୁକାଳରୁ ରୀତିମତେ ନ ହେବାରୁ କ୍ରମଶଃ ଦୁର୍ବଳ ହେଉଅଛି ଏବଂ ସମ୍ପୂର୍ଣ୍ଣରୂପେ ମରାମତ ନ ହେଲେ ଏକଦିନ ପଡ଼ିଯିବାର ଓ ତଦ୍ୱାରା ମହାଅନିଷ୍ଟ ହେବାର ଆଶଙ୍କା ହେଉଅଛି। ଓଡ଼ିଶାର ଏହି ଚମତ୍କାର ଏବଂ ଅତ୍ୟୁତ୍କୃଷ୍ଟ କୀର୍ତ୍ତିକି ଅକ୍ଷୁନ୍ନ ରଖିବା ଦେଶହିତୈଷି ମାତ୍ରର କର୍ତ୍ତବ୍ୟ ଏ ବିଷୟରେ ସନ୍ଦେହ ନାହିଁ। ଏପର୍ଯ୍ୟନ୍ତ ଏହି ମନ୍ଦିର ସଂସ୍କାର କରିବାର ଚେଷ୍ଟା ହୋଇ ନାହି ଏମନ୍ତନୁହେ। ବ୍ରହ୍ମଚାରୀପ୍ରଭୃତି କେତେକ ଲୋକ କେତେ ସମୟରେ ମନ୍ଦିରସଂସ୍କାରର ଚେଷ୍ଟା କରିଅଛନ୍ତି ଏବଂ ଭିକ୍ଷାଦ୍ୱାରା ଅର୍ଥ ସାହାଯ୍ୟ ପ୍ରାପ୍ତ ହୋଇ କେତେ କାର୍ଯ୍ୟ ମଧ୍ୟ କରିଅଛନ୍ତି। କିନ୍ତୁ ଏଡ଼େବଡ଼ ମନ୍ଦିରର

ସଂସ୍କାରକାର୍ଯ୍ୟ ଏପରି ଅନିଶ୍ଚିତ ଏବଂ ସାମାନ୍ୟ ଉପାୟରେ ହୋଇ ନ ପାରେ। ଏ ମନ୍ଦିରକୁ ରୀତିମତେ ମରାମତ କରିବା କାରଣ ବହୁଅର୍ଥ ବ୍ୟୟ ଏବଂ ବିଚକ୍ଷଣ ବହୁଦର୍ଶୀ ଶିଳ୍ପକାର ଆବଶ୍ୟକ। ମନ୍ଦିରର ଅଧ୍ୟକ୍ଷ ବିନା ଅନ୍ୟ କାହାରିଦ୍ୱାରା ହେବାର ନୁହଇ। ଏଥକୁ ମନ୍ଦିରର ସୁପ୍ରଣ୍ଡଣ୍ଟ ପୁରୀରାଜାଙ୍କ ହାତରେ ମନ୍ଦିର ସମ୍ପର୍କୀୟ ଏତେ ଟଙ୍କା ନାହିଁ ଯେ ତହିଁରୁ ନିୟମିତ ସେବାର ବ୍ୟୟ ନିର୍ବାହ କରିସାରି ମନ୍ଦିରସଂସ୍କାର ସକାଶେ ଯଥେଷ୍ଟ ଅର୍ଥ ଯୋଗାଇ ପାରିବେ ଏବଂ ରାଜାଙ୍କର ନିଜର ସଙ୍ଗତି ମଧ ତେତେ ଅଧିକ ନୁହଇ। ପକ୍ଷାନ୍ତରେ ଜଗନ୍ନାଥଦେବଙ୍କ ଭଣ୍ଡାରରେ ବହୁମୂଲ୍ୟରତ୍ନାଳଙ୍କାର ଏବଂ ଅନ୍ୟାନ୍ୟ ଅନେକଦ୍ରବ୍ୟ ଅତିପ୍ରାଚୀନକାଳରୁ ଜମା ହୋଇ ରହିଅଛି ଓ କେତେଦ୍ରବ୍ୟ ପଡ଼ି ରହି ନଷ୍ଟ ହୋଇଅଛି ବା ହେଉଅଛି। ଏସବୁ ଦ୍ରବ୍ୟମଧ୍ୟରୁ ଯାହା ବ୍ୟବହାରରେ ଆସୁ ନାହିଁ ଏବଂ ଆଉ ଯାହା ରହିଲେ କାଳକ୍ରମେ ନଷ୍ଟ ହୋଇଯିବ ତାହାସବୁ ବିକ୍ରୟ କରି ସେହିଟଙ୍କାରେ ମନ୍ଦିରର ସଂସ୍କାରକାର୍ଯ୍ୟ କରିବାକୁ ପୁରୀରାଜସରକାର ବିଚାର କରିବାରୁ ଆପାତତଃ ସେହିସବୁ ଦ୍ରବ୍ୟ ତାଲିକା ହେଉଅଛି। ତାଲିକା ଶେଷ ହେଲେ ଏଠାରେ ଅବା କଲିକତାରେ ଯେଉଁଠାରେ ଉଚିତ ମୂଲ୍ୟରେ ବିକ୍ରୟ ହୋଇ ପାରିବ ସେଠାରେ ବିକ୍ରୟ ହେବ ଓ ସେହି ଟଙ୍କାରୁ ମନ୍ଦିରର ସଂସ୍କାର କାର୍ଯ୍ୟ ଏବଂ ପୁରୀନଗରବାସି ଓ ଯାତ୍ରିମାନଙ୍କ ବ୍ୟବହାର ନିମିତ୍ତ ପାନୀୟଜଳ ଯୋଗାଇବାର ବ୍ୟବସ୍ଥା ହେବ। ଆଶା ହେଉଅଛି ଯେ ଏସବୁ ଉପାୟରେ ଟଙ୍କା ସଂଗ୍ରହ କରି କାର୍ଯ୍ୟରମ୍ଭ କଲେ ପଛକୁ କାର୍ଯ୍ୟ ଦେଖି ଧନୀ ଯାତ୍ରୀ ଭାରତବର୍ଷର ରାଜା ମହାରାଜାମାନେ ଏଥିପାଇଁ ସାହାଯ୍ୟ ଦେବାକୁ ଅଗ୍ରସର ହେବେ ଓ ତାହା ହେଲେ ଆହୁରି ସୁଖର ବିଷୟ ହେବ। କିନ୍ତୁ ସେ ପଛର କଥା। ପ୍ରଥମେ ଉପଯୁକ୍ତ ପାଣ୍ଠି ନେଇ କାର୍ଯ୍ୟାରମ୍ଭ କରିବାର ଆବଶ୍ୟକ। ଏଥିପାଇଁ ଆମ୍ଭେମାନେ ବିବେଚନା କରୁଁ କି ପୁରୀର ମହାରାଣୀ ଭଣ୍ଡାରର ଅପ୍ରୟୋଜନୀୟ ଏବଂ ନଷ୍ଟ ହୋଇଯିବା ଦ୍ରବ୍ୟ ବିକ୍ରୟ କରି ଏ କାର୍ଯ୍ୟରେ ଲଗାଇବାର ଯାହା ବ୍ୟବସ୍ଥା କରିଅଛନ୍ତି ତାହା ଅନ୍ୟାୟ ନୁହଇ କେହି କେହି କହିପାରନ୍ତି ଯେ ଜଗନ୍ନାଥଙ୍କ ଭଣ୍ଡାରରେ କୌଣସିମତେ ହାତ ଦେବା ଉଚିତ ନୁହଇ ମାତ୍ର ଏବିଚାର ଯୁକ୍ତିସଙ୍ଗତ ବୋଧ ହେଉ ନାହିଁ। ଏକଆଡ଼େ ମନ୍ଦିର ଭାଙ୍ଗି ପଡ଼ିବ ଓ ଅନ୍ୟଆଡ଼େ କେତେଗୁଡ଼ିଏ ବହୁମୂଲ୍ୟ ଦ୍ରବ୍ୟ ଅକର୍ମଣ୍ୟ ହୋଇ ପଡ଼ିଥିବ ଏହା କେମନ୍ତ କରି ଯୁକ୍ତି ସଙ୍ଗତ ବୋଲାଯିବ। ହିନ୍ଦୁମାନଙ୍କର ଭକ୍ତି ନିତାନ୍ତ ହୀନାବସ୍ଥାକୁ ଲଭି ନାହିଁ। ଧନୀଯାତ୍ରୀମାନେ ଅବଧି ବହୁମୂଲ୍ୟଦ୍ରବ୍ୟାଦି ଭେଟି ଦେଉ ଅଛନ୍ତି ଏବଂ ଭବିଷ୍ୟତ୍‌କୁ ଆହୁରି ଦେବେ। ସୁତରାଂ ଭଣ୍ଡାରରୁ ଯେମନ୍ତ ଖର୍ଚ୍ଚ ହେବ ତେମନ୍ତ ଆମଦାନି ମଧ ହେବ ଓ ଯାହା ନୀତିରେ ଲାଗୁଅଛି ତାହା ଅବଶ୍ୟ ଖର୍ଚ୍ଚ ହେବ ନାହିଁ। ବିକ୍ରୟଦ୍ୱାରା ଯଥେଷ୍ଟ ଅର୍ଥ ସଂଗ୍ରହ ହେଲେ ଗବର୍ଣ୍ଣମେଣ୍ଟଙ୍କଠାରୁ ଜଣେ ବହୁଦର୍ଶୀ ହିନ୍ଦୁ ଇଞ୍ଜିନୀୟର ଧାର ନିଆ ଯାଇ ତାହାଙ୍କଦ୍ୱାରା ସଂସ୍କାରକାର୍ଯ୍ୟ ହେବ।

*ଉତ୍କଳ ଦୀପିକା-୧୮୯୦: ପୃଷ୍ଠା ସଂଖ୍ୟା-୪୦୧*

# ଶ୍ରୀମନ୍ଦିରର ଜୀର୍ଣ୍ଣସଂସ୍କାର

ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଜଗନ୍ନାଥଦେବଙ୍କ ମନ୍ଦିରର ଅତ୍ୟନ୍ତ ଜୀର୍ଣ୍ଣାବସ୍ଥାକୁ ପ୍ରାପ୍ତ ହୋଇଥିବା ଏବଂ ତହିଁର ବିଧିମତ ସଂସ୍କାର ଆବଶ୍ୟକ ଥିବାର ଅନେକ କାଳରୁ ଲୋକମାନଙ୍କୁ ଜଣା ଅଛି ଏବଂ ନାନା ସମୟରେ ନାନା ବ୍ୟକ୍ତି ଏଥିରେ ମନୋଯୋଗୀ ହୋଇ କିଛି କିଛି କାର୍ଯ୍ୟ କରୁଥିବାର ମଧ୍ୟ ଦେଖାଯାଇଅଛି। ଶ୍ରୀମନ୍ଦିରର ସୁପ୍ରଣ୍ଡଣ୍ଟ ମଧ୍ୟ ଏ ବିଷୟରେ ନିଶ୍ଚନ୍ତ ନାହାନ୍ତି ଏବଂ ସମସ୍ତ xx ଅର୍ଥ ସଂଗ୍ରହ କରି ଏ କାର୍ଯ୍ୟ ନିର୍ବାହ କରିବାର ମନସ୍ଥ ସେ କରିଥିଲେ ତାହା ମଧ୍ୟ ଆମ୍ଭେମାନେ ଏଥିପୂର୍ବେ ଜଣାଇଅଛୁଁ। କାର୍ଯ୍ୟଟି ଅତ୍ୟନ୍ତ କଠିନ ଏବଂ ବ୍ୟୟସାଧ୍ୟ ଏମନ୍ତ କି ତିନିଲକ୍ଷ ଟଙ୍କାରୁ ଊଣାରେ ହେବାର ନୁହଇ। ଏଥିପାଇଁ କେବଳ ବିଚାରରେ ଦିନକାଟି ଯାଉଥିଲା କିନ୍ତୁ ବର୍ତ୍ତମାନ ପୁରୀମାଜିଷ୍ଟ୍ରେଟ ଏବଂ ମିଉନିସିପାଲିଟୀଙ୍କ ଧମକରେ ସନ୍ଧିସମୟ ଉପସ୍ଥିତ ହେବାରୁ ଆଉ ବିଳମ୍ବ କରିବାର ଉପାୟ ନାହିଁ। ମିଉନିସିପାଲଟୀ ନୋଟିସ ଦେଇ ଅଛନ୍ତି କି ଏକ ସପ୍ତାହରେ ମରାମତ ନ ହେଲେ ମନ୍ଦିରକୁ ଯାତ୍ରି ଛାଡ଼ି ଦିୟା ଯିବ ନାହିଁ। ଏହିହେତୁ ପୁରୀ ଓ ଏ ନଗରର ସମ୍ଭ୍ରାନ୍ତମାନେ ଜାଗ୍ରତ ହୋଇ ଗତ ସପ୍ତାହରେ ଗୋଟିଏ କ୍ଷୁଦ୍ର ସଭା କରିଥିଲେ ତହିଁର ବିବରଣ ନିମ୍ନେ ପ୍ରକାଶିତ ହେଲା।

ସନ ୧୮୯୧ ମସିହା ମାର୍ଚ୍ଚ ମାସ ତା୨୫ରିଖ ବୁଧବାର ଦିନ ଶ୍ରୀ ବାବୁ ହରିବଲ୍ଲଭ ବସୁଙ୍କ ଗୃହରେ ଗୋଟିଏ ସଭା ହୋଇଥିଲା। ତହିଁରେ ନିମ୍ନଲିଖିତ ଭଦ୍ରବ୍ୟକ୍ତିମାନେ ଉପସ୍ଥିତ ଥିଲେ।

ଶ୍ରୀ ବାବୁ ନନ୍ଦକିଶୋର ଦାସ ବାହାଦୂର ଅଶିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଗଡ଼ଜାତ ମାହାଲ। ଶ୍ରୀ ବାବୁ ହରିବଲ୍ଲଭ ବୋଷ ବି, ଏଲ୍, ସରକାରି ଓକିଲ କଟକ। ଶ୍ରୀ ବାବୁ ମଧୁସୂଦନ ଦାସ ବି, ଏଲ୍, ଓକୀଲ ହାଇକୋର୍ଟ କଟକ। ଶ୍ରୀ ବାବୁ ବଳରାମ ମଲ୍ଲିକ ସବ୍ ଜଜ କଟକ। ଶ୍ରୀ ବାବୁ ଲାଲବିହାରୀ ଘୋଷ ବି, ଏଲ, ଓକୀଲ କଟକ। ଶ୍ରୀ ବାବୁ ଜାନକୀନାଥ ବୋଷ ଏମ୍, ଏ, ବି, ଏଲ, ଓକୀଲ କଟକ।

୧। ଉକ୍ତ ସଭାରେ ପ୍ରକାଶ ହେଲା କି ନିମ୍ନ ଲିଖିତ ଭଦ୍ରବ୍ୟକ୍ତିମାନେ ବିଶ୍ୱାସ ସୁତ୍ରରୁ ଅବଗତ ହୋଇଅଛନ୍ତି ଯେ ମିଉନିସିପାଲିଟୀ ଆଇନର ଧା୨୧୦ରା ଅନୁସାରେ ସହର ପୁରୀ ମିଉନିସିପାଲଟୀ କମିଶନରମାନେ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ସୁପରିଣ୍ଟେଣ୍ଡେଣ୍ଟ ପୁରୀ ରାଣୀଙ୍କ ଉପରେ ଏହିପରି ନୋଟିସ ଜାରୀ କରିଅଛନ୍ତି କି ସୁପରିଣ୍ଟେଣ୍ଡେଣ୍ଟ ଏକ ସପ୍ତାହମଧ୍ୟରେ ଉକ୍ତ ମନ୍ଦିର ମରାମତ କରିବେ। ତାହା ନ କଲେ ଦେଉଳ ଭଗ୍ନାଂଶକୁ ସାଧାରଣଙ୍କ ଗତାଗତାବନ୍ଦ କରାଯିବ।

୧। ଅଳ୍ପଦିନ ପୂର୍ବେ ଶ୍ରୀମନ୍ଦିରର ଉପରରୁ ଖଣ୍ଡେ ଚୂନ ଖସି ପଡ଼ିବାରୁ ପୁରୀ ମାଜିଷ୍ଟ୍ରେଟ ସାହେବ ମଧ୍ୟ ଉପରୋକ୍ତ ମତେ କାର୍ଯ୍ୟ କରିବା ସକାଶେ ଇଚ୍ଛା ପ୍ରକାଶ କରିଥିଲେ। ଏବଂ ସେହି କାରଣରୁ ମନ୍ଦିରର ଅବସ୍ଥା ତଦାରଖ କରିବା ସକାଶେ ଏକଜିକ୍ୟୁଟିଭ ଇଞ୍ଜିନୀୟର ବାବୁ ଅମୃତଲାଲ ଚୌଧୁରୀଙ୍କ ପ୍ରତି ଆଦେଶ ହୋଇଥିଲା। ଉକ୍ତ ମହାଶୟଙ୍କ ତଦାରଖରୁ ଜଣାଯାଏ

ସେ ମନ୍ଦିରର ମରାମତ କରିବାର ଆବଶ୍ୟକ ଏବଂ ନିମ୍ନଲିଖିତ ସ୍ୱାକ୍ଷରକାରିମାନେ ମଧ୍ୟ ଇଞ୍ଜିନିୟର ବାବୁଙ୍କୁ ତଦାରଖ ଠିକ ଥିବାର ବୋଧ କରନ୍ତି।

୨। ଉପରଲିଖିତ ବିଷୟଟି ହିନ୍ଦୁ ସମାଜପ୍ରତି ଅତ୍ୟନ୍ତ ଗୁରୁତର କାର୍ଯ୍ୟ ଅଟେ। ଏବଂ ଅତି ପ୍ରାଚୀନ ଏବଂ ଚିରପୂଜିତ ଉକ୍ତ ଧର୍ମ୍ମକୀର୍ତ୍ତି ଲୋପ ହେବାର ଆଶଙ୍କା ହିନ୍ଦୁ ସମାଜଙ୍କୁ ଜଣାଇ ଦେବା ନିମ୍ନଲିଖିତ ସ୍ୱାକ୍ଷରକାରିମାନେ ସେମାନଙ୍କ କର୍ତ୍ତବ୍ୟକର୍ମ ବୋଲି ଜ୍ଞାନ କରନ୍ତି।

୩। ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ପୃଥିବୀମଧ୍ୟରେ ହିନ୍ଦୁସମାଜର ବଦାନ୍ୟତା, ଶିଳ୍ପକାର୍ଯ୍ୟ ଦକ୍ଷତା ଓ ସଭ୍ୟତାର ଚିହ୍ନସ୍ୱରୂପ ଏକ ଅଦ୍ୱିତୀୟ ଧର୍ମକୀର୍ତ୍ତି ଅଟେ। ଉକ୍ତ କୀର୍ତ୍ତିକି ରକ୍ଷା କରିବାର ଓ ତାହା କିପରି ଧର୍ମୋପଲକ୍ଷ କାର୍ଯ୍ୟ ହେବ ତାହା ବର୍ଣ୍ଣନାତୀତ କିନ୍ତୁ ସର୍ବସାଧାରଣ ହୃଦୟଙ୍ଗମ କରି ପାରିବେ।

୪। ଅତଏବ ସଭାରେ ଏହି ବିଷୟମାନ ଧାର୍ଯ୍ୟ ହେଲା। କି

୧ମ। ସମୁଦାୟ ହିନ୍ଦୁସମାଜକୁ ଉକ୍ତ ବିଷୟରେ ସମୁଚିତ ସାହାଯ୍ୟ ପ୍ରାର୍ଥନା କରିବାର ପ୍ରସଙ୍ଗ ବିଚାର କରିବାକାରଣ ଓଡ଼ିଶାନିବାସୀ ହିନ୍ଦୁମାନଙ୍କର ଏକସଭା ଅତିଶୀଘ୍ର ଆହୁତ ହେଉ।

୨ୟ। ମନ୍ଦିର ମରାମତ କାର୍ଯ୍ୟ ଯେତେ ଶୀଘ୍ର ସମ୍ଭବ ତେତେ ଶୀଘ୍ର ଆରମ୍ଭ କରିବା କାରଣ ଏକ କମିଟୀ ଗଠିତ ହେଉ। ପୁରୀ ସହରସ୍ଥିତ ନିମ୍ନଲିଖିତ ଭଦ୍ରବ୍ୟକ୍ତିମାନଙ୍କୁ ପ୍ରାର୍ଥନା କରାଯାଉ କି ସେମାନେ ଏ କମିଟୀର ମେମ୍ବର ହେଉନ୍ତୁ ଓ ଉକ୍ତ କମିଟୀରେ ଅତିରିକ୍ତ ମେମ୍ବରମାନ ନିଯୁକ୍ତ କରିବାକୁ ସେମାନଙ୍କର କ୍ଷମତା ରହୁ।

ବାବୁ କେଦାରନାଥ ଦତ୍ତ ରାୟ ବାହାଦୁର, ବାବୁ ମହେନ୍ଦ୍ରନାଥ ମୁଖୁର୍ଯି ରାୟ ବାହାଦୁର, ବାବୁ ମନୋହନ ଚକ୍ରବର୍ତ୍ତୀ ରାୟ ବାହାଦୁର, ବାବୁ ହରିଶ୍ଚନ୍ଦ୍ର ଘୋଷ, ବାବୁ ହରିଶ୍ଚନ୍ଦ୍ର ବୋଷ, ବାବୁ କାନ୍ତି ଚନ୍ଦ୍ର ମିତ୍ର, ବାବୁ ହରିହର ମିଶ୍ର, ବାବୁ ଚୌଧୁରୀ କୃତ୍ତିବାସ ଦାସ, ବାବୁ ମହନ୍ତ ରଘୁନନ୍ଦନ ରାମାନୁଜ ଦାସ, ବାବୁ ଅଧିକାରୀ କୃଷ୍ଣ ପ୍ରସନ୍ନ ରାମାନୁଜ ଦାସ

୩ୟ। ପୁରୀ ରାଣୀଙ୍କି ପ୍ରାର୍ଥନା କରା ଯାଉ ଯେ ତାଙ୍କର ଏକଜଣ କର୍ମଚାରିଙ୍କି ଉକ୍ତ କମିଟୀରେ କାର୍ଯ୍ୟ କରିବାକୁ ଆଦେଶ କରିବେ ଏବଂ ରାଣୀଙ୍କ ବିବେଚନାରେ ଉକ୍ତ କମିଟୀକୁ ଯେତେଦୂର ସାହାଯ୍ୟ କରା ଉଚିତ ସେପରି ସାହାଯ୍ୟ କରିବେ।

ଏ ସପ୍ତାହରେ ଅର୍ଥାତ୍ ଗତ ବୁଧବାର ପ୍ରିଣ୍ଟିଂ କମ୍ପାନୀଙ୍କ କୋଠାରେ ଗୋଟିଏ ପ୍ରକାଶକ ସଭା ହୋଇ ଅର୍ଥ ସଂଗ୍ରହ ନିମିତ୍ତ ଭାରତବାସୀ ରାଜା ଜମିଦାର ଓ ଧନୀବ୍ୟକ୍ତିଙ୍କ ନିକଟକୁ ଆବେଦନ ପତ୍ରମାନ ପଠାଇବାରେ ଧାର୍ଯ୍ୟ ହୋଇ ଗୋଟିଏ କାର୍ଯ୍ୟନିର୍ବାହକ କମିଟୀ ଗଠିତ ହେଲା। ଆଠଗଡ଼ର ରାଜା ଏ ସଭାର ସଭାପତି ଥିଲେ। ଏଥିର ବିସ୍ତାରିତ ବିବରଣ ଆଗାମୀରେ ପ୍ରକାଶିତ ହେବ।

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୧୦୫*

## ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ଜୀର୍ଣ୍ଣସଂସ୍କାରିଣୀ ସଭା ପୁରୀ

ଅଦ୍ୟ ମାର୍ଗମାସ ତା ୧ ୧ ରିଖରେ ଏସଭାରେ ସମ୍ବଲପୁର ହିତୈଷିଣୀଙ୍କର ଉକ୍ତ ମାସ ତା ୪ ରିଖ ସପ୍ତାହିକପତ୍ର ପାଠ ହେବାରେ ପ୍ରକାଶ ହେଲାକି-

୧ । ସଭା ଆବଶ୍ୟକ ଅର୍ଥ ସଂଗ୍ରହ ନିମନ୍ତେ କିପରି ପ୍ରକୃଷ୍ଟ ଉପାୟ ଅବଲମ୍ବନ କରିଅଛନ୍ତି?

୨ । ଏହି ସଭାର ଭାର କିପରି ଉପଯୁକ୍ତ ବ୍ୟକ୍ତିଙ୍କ ହସ୍ତରେ ଅର୍ପିତ ହୋଇଅଛି?

3 । ମନ୍ଦିରର ଯେଉଁ ୨ ସ୍ଥାନ ମରାମତି କରିବାକୁ ହେବ ତହିଁର ନାମ।

୪। ତନ୍ନିହିତ୍ତ କେତେ ବ୍ୟୟ ହେବ? ଏବଂ ଅନୁଗ୍ରହପୂର୍ବକ ଆଦେଶ ଦେଇ ଅଛନ୍ତି କି ଉପର ଉପରଉକ୍ତ ବିଷୟ ବିଭିନ୍ନ ଭାଷାରେ ମୁଦ୍ରିତ କରି ଭାରତର ସକଳ ଅଂଶରେ ପ୍ରଚାର କରିବା ଦ୍ବାରା ନିଜର ଅଭିପ୍ରାୟ ଜଣାଇବାର ଇଚ୍ଛା କରନ୍ତୁ।

ଏଥିର ଉତ୍ତରରେ ସଭା ନିମ୍ନୋକ୍ତ ବିଷୟମାନ ପ୍ରକାଶ କରୁଅଛନ୍ତି ଯେ-

୧। ଆଜକୁ ପାଞ୍ଚମାସ ହେବ ଶ୍ରୀମନ୍ଦିର ମଧ୍ୟସ୍ଥିତ ଶ୍ରୀଲକ୍ଷ୍ମୀଠାକୁରାଣୀଙ୍କ ଆଳୟେ ସ୍ଥିତ ହୋଇ ଏ ସଭାର ସଭାପତି ପଦରେ ବଡ଼ଛତା ଅଧିକାରୀ ଶ୍ରୀରାମାନୁଜ ଦାସ ଓ ସହକାରୀ ସଭାପତି ପଦରେ ଉକ୍ତ ପୁରୀ ବାସେଳିସାହୀ ଓଡ଼ିଆମଠ ନିବାସୀ ଶ୍ରୀବାବାଜି ଜୟରାମ ଦାସ ଓ ମନ୍ଦିର ମରାମତି କରାଇବା ଭାରପ୍ରାପ୍ତ କାର୍ଯ୍ୟ ସମ୍ପାଦକ ପଦରେ କାଳୀକାଦେବୀସାହୀ ସମାଧିମଠ ନିବାସୀ ଶ୍ରୀବାବାଜୀ ସରଜୁରାମାନୁଜ ଦାସ କି ସେ ପୂର୍ବରୁ ଏ ମନ୍ଦିରର କେତେକ ମରାମତି କାର୍ଯ୍ୟ ଭିକ୍ଷାଦ୍ବାରା କରାଇ ଥିବାରୁ ତାଙ୍କୁ ଏ କାର୍ଯ୍ୟରେ ନିଯୁକ୍ତି ଦିଆଯାଇଅଛି ଓ ସଭାର ସମ୍ପାଦକ ପଦରେ ମାର୍କଣ୍ଡେଶ୍ୱର ସାହିନିବାସୀ ବାବୁ ଭାଗବତ ପଟ୍ଟନାୟକ କି ସେ ପୁରୀ ଜିଲ୍ଲାର ଅନେକ ଦିନ କୀଲଟରୀ ପେସ୍କାର ଥିଲେ ତାଙ୍କୁ ମନୋନୀତ କରାଯାଇ ଥିବାରେ ପ୍ରତିଦିନ ସମ୍ପାଦକବାବୁ ଜୀର୍ଣ୍ଣସଂସ୍କାର ବାବଦକୁ ଏକ ରେକର୍ଡବିହୀନ ଆମଦାନୀ ହେଉଥିବା ଟଙ୍କା ଜମା ଦେଇ ପ୍ରତିଦିନ ଖର୍ଚ୍ଚ ଲେଖି ଖର୍ଚ୍ଚର ତତ୍ତ୍ୱ ନେଇ ସଭାର ଦୃଷ୍ଟିପାତ କରାଉଅଛନ୍ତି।

୨। ଶ୍ରୀମନ୍ଦିର ଭୋଗମଣ୍ଡର ଉତ୍ତର ତରଫରେ ଥିବା ପ୍ରସ୍ତର ବେଦୀର ଜଖମ ଥିବାରୁ ତାକୁ ମରାମତି କରାଇବା ଓ ଜଗମୋହନ ଦକ୍ଷିଣ ତରଫ ରକ୍ମଣୀ ବିଭା ମଣ୍ଡପ ସାମନାରେ ଥିବା ଝାଲମ ଭଗ୍ନ ହୋଇ ଯାଇଥିବାରେ ସେ ଜରୁର ମରାମତି ହେବା ଓ ଶ୍ରୀମନ୍ଦିର ଶ୍ରୀନୀଳଚକ୍ରର ପେଡ଼ି ଖସିଯାଇ ବକ୍ରଭାବ ହୋଇଥିବାରେ ତାକୁ ମରାମତି କରାଇବାକୁ ସେ ପର୍ଯ୍ୟନ୍ତ ଚାରବନ୍ଧା କର୍ମ ଉପସ୍ଥିତ ଥାଇ ଦଶପଣତକ ହୋଇଥିବା ଓ ଅଚିନ୍ତାପହଣ୍ଡରୁ ଚୂନ ଛାଡ଼ିଯିବାରେ ଭରତପୁର ମହାରାଜାଙ୍କ ଦତ୍ତ ଏକ ସହସ୍ର ଟଙ୍କା ଖର୍ଚ୍ଚରେ ପ୍ରାୟ ଆଠପଣ ତକ ଚୂନ ଦେବା କର୍ମ ଶେଷ ଓ ବାକି ଆଠପଣ ଅଛି ଯେ କ୍ରମେ ୨ ହେଉଅଛି ଓ ବଟକୃଷ୍ଣ ମନ୍ଦିର ଭଗ୍ନ ହୋଇଅଛି ଯେ ତାକୁ ମରାମତି କରାଇବାର ଜରୁର ଓ ମଧ୍ୟ ଶ୍ରୀମନ୍ଦିର ବିବାକ ଚୂନଦେବା କାର୍ଯ୍ୟ ସହିତ ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚ ହେବ।

3 । ଓଡ଼ିଆ ବିଜ୍ଞାପନମାନ ଏ ପୁରୀଜିଲ୍ଲାର ସ୍ଥାନେ ସ୍ଥାନେ ପ୍ରାୟେ ଅନେକ ପଠାଗଲାଣି ଆହୁରି ମଧ୍ୟ ପଠାଯିବ ଓ କଟକ, ବାଲେଶ୍ୱର ଓ ଦକ୍ଷିଣାଞ୍ଚ ଉତ୍ତର ପ୍ରଦେଶକୁ ମଧ୍ୟ ପଠାଯିବ ଓ

ପଶ୍ଚିମପ୍ରଦେଶମାନଙ୍କର ବଡ଼ ୨ ରାଜା ଇତ୍ୟାଦି ମାନଙ୍କ ପାଖକୁ ପରସି ଓ ନାଗେରୀ ବିଜ୍ଞାପନ ପଠାଯାଇ ଅଛି ଓ ପଠାଯିବ ଓ ବଙ୍ଗଳା, ଇଂରେଜୀ ବିଜ୍ଞାପନ ଛାପା ଅଣାଇବା ସକାଶେ ଏ ସଭାରୁ ପତ୍ର ପଠାଯାଇଅଛି। ଫାରମ ପହଞ୍ଚିଲେ ଭାରତର ସକଳ ଅଂଶକୁ ପଠାଯିବ। ଯେହେଉ ଏଥିରେ ରାଜା ଓ ଜମୀଦାର ଓ ଧନୀଜନମାନଙ୍କର ସାହାଯ୍ୟକରା ଆବଶ୍ୟକ ଅଟେ। ଏ ଜଗନ୍ନାଥ ମହାପ୍ରଭୁଙ୍କ କାର୍ଯ୍ୟ ଥିବାରୁ ଆପଣଙ୍କର ସମସ୍ତ ସାପ୍ତାହିକ ପତ୍ରମାନଙ୍କରେ ଓ ଅନ୍ୟାନ୍ୟ ସାପ୍ତାହିକ ପତ୍ର ପ୍ରକାଶ ହେଉଥିବା ସ୍ଥାନମାନଙ୍କରେ ପ୍ରକାଶ କରିବାକୁ ପ୍ରାର୍ଥନୀୟ। କିମଧିକଂ।

୪। ଏପରି ଆପଣ ଯେପରି ଶ୍ରମସ୍ୱୀକାର କରି ସଭାର ତତ୍ତ୍ୱ ନେଉ ଅଛନ୍ତି ଏଣି ସଭା ଆପଣଙ୍କୁ ଉଚିତ ଧନ୍ୟବାଦ ପ୍ରଦାନ କରୁଅଛନ୍ତି ଏବଂ ଆଶାକରନ୍ତି ଆପଣ ଏହିପରି ଯତ୍ନ ନେଉଥିବେ ଏବଂ ଶ୍ରୀଜୀଉଙ୍କର ମନ୍ଦିର ସଂସ୍କାରରେ ଯତ୍‌ପରନାସ୍ତି ସାହାଯ୍ୟ କରି ବାଧିତ କରାଇବା ହେବେ।

ଏଥିରେ ଯାହା ଭୁଲ୍ ଥିବା ତାହା ଅନୁଗ୍ରହ ପୂର୍ବକ ସଂଶୋଧନ କରି ପ୍ରକାଶ କରିବା ହେବେ।

ସରଜ ରାମାନୁଜ ଦାସ
ଶ୍ରୀଜୟରାମଦାସ ବାବାଜୀ ସହକାରୀ ସଭାପତି
ଶ୍ରୀ ଭାଗବତ ପଟ୍ଟନାୟକ ସମ୍ପାଦକ
*ସମ୍ବଲପୁର ହିତୈଷିଣୀ, ୧୮୯୧, ପୃଷ୍ଠା-୪୮*

## ଶ୍ରୀମନ୍ଦିର ମରାମତି ଉଦ୍ୟୋଗ

ପୁରୀ ମୁନିସିପାଲିଟି ଶ୍ରୀମନ୍ଦିରର ଭଗ୍ନାଂଶକୁ ଲୋକ ଯାତାୟତ ବନ୍ଦ କରିବା ଅଭିପ୍ରାୟ ବ୍ୟକ୍ତ କରାଇବାର ମନ୍ଦିର ମରାମତୀ କାର୍ଯ୍ୟପ୍ରତି ଦେଶର ଲୋକମାନଙ୍କର ଚିତ୍ତବୃତ୍ତି ଆକର୍ଷିତ ହୋଇଥିବାର ଦେଖାଯାଏ, ଏଥି ମଧ୍ୟରେ କଟକ ନଗରରେ ଉକ୍ତ ମନ୍ଦିର ମରାମତୀ ବ୍ୟୟ ସଂଗ୍ରହ ହେବା ବିଷୟରେ ତିନିଗୋଟି ସଭା ହୋଇ ଶେଷୋକ୍ତ ସଭାରେ ୧୫୦୦ ଟଙ୍କା ଚାନ୍ଦା..... ହୋଇଅଛି। ତନ୍ମଧ୍ୟରୁ ବାବୁ ହରିବଲ୍ଲଭ ବସୁ ଏକାକୀ ଏକ ସହସ୍ର ଟଙ୍କା ଦାନ କରି ଅଛନ୍ତି। ବାଲେଶ୍ୱରରେ ଗୋଟିଏ ଶାଖାସଭା ସ୍ଥାପିତ ହୋଇଅଛି। ଏହି ସଭା ତତ୍ରତ୍ୟ ଖଜଣାଖାନା ଏବଂ ମୁନସଫ କଚେରୀ ପାଖରେ ଦୁଇଟି ଦାନଧାର ରଖିବା ପ୍ରସ୍ତାବ କରି ଅଛନ୍ତି। ଏହିସଭାରେ ବାବୁ ରାଜନାରାୟଣ ଦାସ ଯୋଗ ଦେବାକୁ କେଉଁ କାରଣରୁ ଅନିଚ୍ଛା ପ୍ରକାଶ କଲେ ତାହା ଜଣା ଯାଉ ନାହିଁ। ପଣ୍ଡିତ ମହେଶ୍ୱର ନ୍ୟାୟରତ୍ନଙ୍କ ଯତ୍ନରେ ପୁରୀରେ ଗୋଟିଏ ମହତ୍ ସଭା ହୋଇଯାଇଅଛି। ସକଳ ସଭାର ମୂଳ ଉଦ୍ଦେଶ୍ୟ ଏକ- ସାଧାରଣଙ୍କ ନିକଟରେ ମନ୍ଦିରର ଦୁର୍ଗତି ଜଣାଇ ଆଶା ଭିକ୍ଷା କରିବା।

ଦେଶର ବଡ଼ ୨ଲୋକମାନେ ଏ ବିଷୟରେ ବିଶେଷ ଉଦ୍ୟୋଗୀ ହୋଇଥିବାରୁ ଆଶା ହେଉଅଛି ଯେ ଅଳ୍ପକାଳ ମଧ୍ୟରେ ପ୍ରୟୋଜନୀୟ ଅର୍ଥ ସଂଗୃହୀତ ହୋଇପାରିବ। ଏ ବିଷୟରେ ପ୍ରତ୍ୟେକ ହିନ୍ଦୁ ସନ୍ତାନର ଯତ୍ନ ଏବଂ ତ୍ୟାଗ ସ୍ୱୀକାର ନ କଲେ ନ ହୁଏ।

ଓଡ଼ିଶାର ତିନିଗୋଟି ପ୍ରଧାନ ନଗରର ପ୍ରଧାନ ୨ ବ୍ୟକ୍ତିମାନେ ପ୍ରୟୋଜନୀୟ ଅର୍ଥ ସଂଗ୍ରହାର୍ଥ ଯେତେସବୁ ପରିଶ୍ରମ କରୁଅଛନ୍ତି, ପ୍ରତ୍ୟେକ ଉପନଗର, ପ୍ରତ୍ୟେକ ଗ୍ରାମ, ପ୍ରତ୍ୟେକ ସାହୀରେ ସେପରି ଯତ୍ନହେବା ଉଚିତ। ଅତ୍ୟନ୍ତ ଲଜ୍ଜାର ସହିତ ଜଣାଉ ଅଛୁଁ ଯେ ଆମ୍ଭମାନଙ୍କର-

**ସମ୍ବଲପୁରବାସୀମାନେ**

ଏତେବେଳ ଯାଏ ସେ ବିଷୟରେ କୌଣସି ପ୍ରକାର ଯତ୍ନ କରୁଥିବାର ଜଣାଗଲା ନାହିଁ। ଆଶା ଏବଂ ପ୍ରାର୍ଥନା କରୁଁ ଯେ ସମ୍ବଲପୁରବାସିମାନେ ଶ୍ରୀଜଗନ୍ନାଥ ଦେବଙ୍କ ମନ୍ଦିର ମରାମତି ସମ୍ବନ୍ଧରେ ଏକ ସଭାକରି ସମ୍ବଲପୁରରୁ ଏବଂ ସମ୍ବଲପୁର ଅନ୍ତର୍ଗତ ମୋଫସଲ ଏବଂ ଗଡ଼ଜାତ ମାନଙ୍କରୁ ଅର୍ଥ ସଂଗ୍ରହ କରିବାକୁ ଶୀଘ୍ର ଉଦ୍ୟୋଗୀ ହେବେ।

ଦୁଃଖର ବିଷୟ ଯେ ଏଥିମଧ୍ୟରେ ବାମଣ୍ଡା ରାଜଧାନୀର ଭଦ୍ରବ୍ୟକ୍ତିମାନେ ସ୍ୱଚ୍ଛାରେ ଆପଣାର ଅବସ୍ଥାନୁରୂପ ଚାନ୍ଦାଦେଇ ଆପଣାର ସ୍ୱଧର୍ମ୍ମାନୁଚାରିତା ଗୁଣର ପରିଚୟ ଦେଇ ଅଛନ୍ତି। ଏତେଦିନର ଆନ୍ଦୋଳନରେ କୌଣସି ଗଡ଼ଜାତର ବା ମୋଫସଲର ଭଦ୍ରବ୍ୟକ୍ତିମାନେ ଅର୍ଥ ସଂଗ୍ରାହର୍ଥ ........ ହୋଇଥିବାର ଶୁଣାଯାଇ ନାହିଁ। ସୁତରାଂ ଏଥି ସକାଶେ ବାମଣ୍ଡା ପ୍ରଶଂସାଯୋଗ୍ୟ ଅଟଇ। ଆଶାକରୁଁ ପ୍ରତ୍ୟେକ ସ୍ଥାନର ଲୋକମାନେ ଜଗନ୍ନାଥ ଦେବଙ୍କ କାର୍ଯ୍ୟରେ ମୁକ୍ତହସ୍ତତାର ପରିଚୟ ଦେବେ, ଏବଂ ଆବଶକୀୟ ଅର୍ଥ ସଂଗ୍ରହ ନିମିତ୍ତ ନିଜକାର୍ଯ୍ୟ ଜ୍ଞାନରେ ଯତ୍ନ କରିବେ।

ସକଳ ସ୍ଥାନର ରାଜା, ମହାରାଜା ଏବଂ ଜମିଦାର ଏବଂ ଅନ୍ୟାନ୍ୟ ଧନୀଲୋକମାନଙ୍କ ନିକଟକୁ ଉପରୋକ୍ତ ସଭାମାନଙ୍କରୁ ସାହାଯ୍ୟ ପ୍ରାର୍ଥନା କରାଯାଉଅଛି। ପ୍ରତ୍ୟେକ ସବ୍‌ଡିଭିଜନର ଲୋକମାନେ ସଭା କରନ୍ତୁ। ଯେତେବେଳେ ଗ୍ରାମର ଗୌନ୍ତିଆମାନଙ୍କୁ ସାହାଯ୍ୟ ପ୍ରାଥର୍ନା କରନ୍ତି ଏବଂ ଗୌନ୍ତିଆମାନେ ପ୍ରଜାମାନଙ୍କ ସହାୟତା ନିମନ୍ତେ ତେବେ ଉଦ୍ଦେଶ୍ୟ ସିଦ୍ଧି ପକ୍ଷେ କେତେକ ସାହାଯ୍ୟ ମିଳିପାରିବ।

ସାଧୁ ସନ୍ନ୍ୟାସୀମାନେ ଗୃହସ୍ଥମାନଙ୍କ (ମୃର୍ତ୍ତିକା ପାତ୍ରରେ) ପ୍ରତ୍ୟହ ପ୍ରଦତ୍ତ ମୁଷ୍ଟିଭିକ୍ଷା ସଂଗ୍ରହ କରି ତାହା ସାହାଯ୍ୟରେ ବହୁବ୍ୟୟ ସାଧ୍ୟ ସାଧୁକାର୍ଯ୍ୟମାନ କରୁଥିବାର ସର୍ବଦା ଦେଖାଯାଏ। ସୁତରାଂ ଏପରି ସମୟରେ ସେମାନଙ୍କର ସହାୟତା ଦେବା ଉଚିତ ବୋଧକରୁଁ। ଆଉ କେହି ଜାଣୁ ବା ନଜାଣୁ ପ୍ରତ୍ୟେକ ସମ୍ବାଦପତ୍ରର ପାଠକମାନେ ସମ୍ବାଦପତ୍ର ଯୋଗେ ଶ୍ରୀମନ୍ଦିର ସମ୍ବନ୍ଧେ ଉପସ୍ଥିତ ଘଟଣା ବିଦିତ ଅଛନ୍ତି। ସୁତରାଂ ଉତ୍କଳ ସମ୍ବାଦପତ୍ରର ପାଠକମାନଙ୍କ ସଂଖ୍ୟା ଅନ୍ତତଃ ୪ ହଜାରରୁ ନ୍ୟୂନ ନୁହନ୍ତି, ସେମାନେ ସମସ୍ତେ ହିନ୍ଦୁ ନହେଲେ ମଧ୍ୟ ଅନ୍ତତଃ ପନ୍ଦର ପଣ ହିନ୍ଦୁ ଅଛନ୍ତି, ସେମାନଙ୍କର କି ଏପରି କାର୍ଯ୍ୟରେ ସାହାଯ୍ୟ କରିବା ଉଚିତ ନୁହେଁ। ସେମାନେ ସ୍ଥାନୀୟ ଲୋକମାନଙ୍କୁ ସକଳ କଥା ବିଦିତ କରାଇ ଅର୍ଥ ସଂଗ୍ରହ କରିବାକୁ ଯତ୍ନ କଲେ କଦାପି ବିଫଳ ମନୋରଥ ହେବାର ଆଶା ନାହିଁ। ହିନ୍ଦୁମାନେ ଏ କଥା ଅବଶ୍ୟ ସ୍ୱୀକାର କରନ୍ତି ଯେ "ଦେବ, ଦିଆଇବ, ଦେପତି ଲଭିବ" ଏହି ତିନି କାର୍ଯ୍ୟର ଫଳ ସମାନ ଅଟଇ, ଅତଏବ ଯେସ୍ଥଳେ ବିନା ଦାନରେ ଦାନ ଫଳ ମିଳିବ, ସେପରି ସ୍ଥଳରେ ନିରୁଦ୍ୟମାବଲମ୍ବୀ ହେବା ପ୍ରତି ବେଦନାର କାର୍ଯ୍ୟ ନୁହଁଇ। ବର୍ତ୍ତମାନ ହିନ୍ଦୁଭ୍ରାତାମାନଙ୍କ

ନିକଟରେ ବଦ୍ଧହରପୁଟରେ ପ୍ରାର୍ଥନା କରୁଅଛି ଯେ ସେମାନେ ଏହି ବହୁବ୍ୟୟସାଧ୍ୟ କାର୍ଯ୍ୟରେ ଯେ କୌଣସି ରୂପ ସହଯୋଗୀତା ପ୍ରକାଶ କରି ..... ଭାଜନ ହେଉନ୍ତୁ। ଯେଉଁମାନେ ଆସ୍ମମାନଙ୍କ ନିକଟରେ ଚାନ୍ଦା ଟଙ୍କା ଜମା ଦେବାକୁ ଅଭିଳାଷ ରଖନ୍ତି, ସେମାନେ ଅନ୍ୟତ୍ର ମ୍ୟାନେଜର ମହୋଦାୟଙ୍କ ନାମରେ ପଠାଇଲେ ପତ୍ରିକାରେ ତହିଁର ପ୍ରାପ୍ତିସ୍ୱୀକାର କରି ପ୍ରାପ୍ତଧନ ଯଥାସ୍ଥାନକୁ ପଠାଇଦେବୁଁ।

ପୁରୀ ସଭାରୁ ପ୍ରତ୍ୟେକ ଯାତ୍ରୀମାନଙ୍କ ନିକଟରୁ ମନ୍ଦିର ମରାମତି ଉପଲକ୍ଷେ ଅନ୍ତତଃ ଏକ ୨ ପଇସା ନେବାର ଯେଉଁ ପ୍ରସ୍ତାବ କରି ଅଛନ୍ତି ତାହା ଉତ୍ତମ ଅଟଇ। ଆମ୍ଭେମାନେ ଆଶାକରୁଁ ଯେ ପ୍ରତ୍ୟେକ ସ୍ୱଧର୍ମ୍ମାସ୍ନେହୀ ଯାତ୍ରିମାନେ ଆପଣା ଶକ୍ତି ଅନୁସାରେ କିଛି ୨ ଅର୍ଥ ଦାନ କରିବାକୁ ଅନିଚ୍ଛୁକ ହେବେ ନାହିଁ।

ପରିଶେଷରେ ବକ୍ତବ୍ୟ ଏହିଯେ ଏହି ମନ୍ଦିର ଜୀର୍ଣ୍ଣ ..... ନିମନ୍ତେ ଅର୍ଥ ସଂଗ୍ରହ ହେବା ବିଷୟରେ ଯେଉଁମାନେ ଯତନ ପରିଶ୍ରମ କରିଅଛନ୍ତି ଏବଂ ଯେଉଁମାନେ ଅର୍ଥ ପ୍ରଦାନ କରି ଅଛନ୍ତି, ସେମାନେ ଆସ୍ମମାନଙ୍କ ଶ୍ରଦ୍ଧାରପାତ୍ର, ଆମ୍ଭେମାନେ ସେହି ମହାତ୍ମାମାନଙ୍କୁ ମୁକ୍ତ କଣ୍ଠରେ ଧନ୍ୟବାଦ ପ୍ରଦାନ କରୁଅଛୁଁ।

*ସମ୍ବଲପୁର ହିତୈଷିଣୀ, ୧୮୯୧, ପୃଷ୍ଠା ୬୨*

## ପୁରୀମନ୍ଦିରର ସଂସ୍କାର

ଚଳିତମାସ ତା୧ରିଖରେ ଏ ନଗରରେ ଯେଉଁ ସଭା ହୋଇଥିଲା ତହିଁରେ ତଳଲିଖିତ ବିଷୟମାନ ଧାର୍ଯ୍ୟ ହେଲା।

୧। ଏ ସଭା ବିବେଚନା କରନ୍ତି କି ଶ୍ରୀ ପୁରୁଷୋତ୍ତମକ୍ଷେତ୍ର ଜଗନ୍ନାଥମହାପ୍ରଭୁଙ୍କ ମନ୍ଦିରର ଜୀର୍ଣ୍ଣସଂସ୍କାର ନିତାନ୍ତ ଆବଶ୍ୟକ ହୋଇଅଛି ଏବଂ ତହିଁ ନିମିତ୍ତ ଅତିଶୀଘ୍ର ବିହିତଉପାୟ କରିବା ଉଚିତ।

୨। **ନିମ୍ନଲିଖିତ** ଆବେଦନ ଏ ପ୍ରଦେଶର ଏବଂ ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶର ହିନ୍ଦୁମାନଙ୍କ ନିକଟକୁ ପ୍ରେରିତ ହେଉ।

(ଏହି ଆବେଦନପତ୍ରରେ ମନ୍ଦିର ସଂସ୍କାର ନିମିତ୍ତ ୩ ଲକ୍ଷ ଟଙ୍କାର ପ୍ରୟୋଜନ ଥିବାର ଲେଖାଅଛି ଏବଂ ସମସ୍ତ ହିନ୍ଦୁମାନଙ୍କୁ ଅନୁରୋଧ କରାଯାଉଛି କି ସେମାନେ ଆପଣା ଆପଣା ସାଧ୍ୟାନୁସାରେ ଏହି ଟଙ୍କା ସଂଗ୍ରହ ପକ୍ଷରେ ସାହାଯ୍ୟ କରନ୍ତୁ)

ସ୍ଥାନାଭାବରୁ ଆବେଦନପତ୍ର ପ୍ରତିଲିପି ଏଠାରେ ପ୍ରକାଶ କରିବାକୁ ଅକ୍ଷମ ହେଲୁଁ। ଏପଛେ ପାଠକମାନେ ତାହା ଦେଖି ପାରିବେ।

୩। ଭେଦାସଂଗ୍ରହ କରିବା ତହିଁର ହେସାବ ରଖିବା ସଂସ୍କାରକାର୍ଯ୍ୟ କିପରି ଅଗ୍ରସର ହେବ ତହିଁର ଉପାୟ ଓ ତତ୍ତ୍ୱାବଧାରଣ କରିବା ଏବଂ ଏ ସମ୍ପର୍କୀୟ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ନିର୍ବାହ କରିବା ନିମିତ୍ତ ଗୋଟିଏ କାର୍ଯ୍ୟନିର୍ବାହ କମିଟୀ ଗଠିତ ହେଉ ଏବଂ ନିମ୍ନଲିଖିତ ବ୍ୟକ୍ତିମାନେ ତହିଁର ସଭ୍ୟ ହେଉନ୍ତୁ, ଯଥା।

ମହାରାଜା କେନ୍ଦୁଝର, ମହାରାଜା ଆଠମଲ୍ଲିକ ରାଜା ଆଠଗଡ଼, ରାଜା ବୈଦ୍ୟନାଥ ପଣ୍ଡିତ, ବାବୁ ବିହାରିଲାଲ ପଣ୍ଡିତ, ଚୌଧୁରୀ ବାବୁ କାଳୀପଦ ବନ୍ଦୋପାଧାୟ, ବାବୁ ରାମଗୋବିନ୍ଦ ଜଗଦେବ, ବାବୁ ବିଶ୍ୱନାଥ ଖୁଣ୍ଟିଆ, ବାବୁ ବଳରାମ ଭ୍ରମରବର, ବାବୁ ମଥୁରାଲାଲ ଭଗତ, ବାବୁ ଉମେଶ୍ଚନ୍ଦ୍ର ମଣ୍ଡଳ, ବାବୁ ରାଧାରମଣ ଦାସ, ବାବୁ ଲୋକନାଥ ରାୟ, ବାବୁ ଗୋବିନ୍ଦ ବଲ୍ଲଭ ରାୟ ମହାଶୟ, ବାବୁ ଖୋସାଲିଚାନ୍ଦ, ରାୟ ନନ୍ଦକିଶୋର ଦାସ ବାହାଦୂର, ବାବୁ ରାସବିହାରୀ ନାୟକ, ବାବୁ କେଦାରନାଥ ଦତ୍ତ, ବାବୁ ମନମୋହନ ଚକ୍ରବର୍ତ୍ତୀ, ବାବୁ ମହେନ୍ଦ୍ରନାଥ ମୁଖୁର୍ଯ୍ଯି, ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ, ବାବୁ ରାମପ୍ରସନ୍ନ ମୁଖୁର୍ଯ୍ଯି, ବାବୁ ମଧୁସୂଦନ ଦାସ, ବାବୁ ଗୋକୁଳାନନ୍ଦ ଚୌଧୁରୀ, ବାବୁ ନିମାଇଚରଣ ମିତ୍ର, ବାବୁ ପାର୍ବତୀଚରଣ ଚକ୍ରବର୍ତ୍ତୀ, ବାବୁ ଦୀନାନାଥ ଘୋଷ, ମହନ୍ତ ରଘୁନାଥ ରାମାନୁଜ ଦାସ, ମହନ୍ତ ରାମପ୍ରସନ୍ନ ରାମାନୁଜ ଦାସ, ଅଧିକାରୀ କୃଷ୍ଣପ୍ରସନ୍ନ ଦାସ, ବାବୁ ହରିବଲ୍ଲଭ ବୋଷ, ବାବୁ ବଳରାମ ମଲ୍ଲିକ।

୪। ଯେଉଁ ଟଙ୍କା ଭେଦାଦ୍ୱାରା ସଂଗୃହୀତ ହେବ ତାହା ଜଗନ୍ନାଥ ମନ୍ଦିର ସଂସ୍କାର ପାଣ୍ଠି ନାମରେ ଏକ ସ୍ୱତନ୍ତ୍ର ପାଣ୍ଠି ହୋଇ ବଙ୍ଗାଲବାଙ୍କରେ ଜମା ହେବ। ବଙ୍ଗାଳିବାବୁକୁ ଏହି ପାଣ୍ଠି କୋଷାଧ୍ୟକ୍ଷ ହେବା ନିମିତ୍ତ ଅନୁରୋଧ କରାଯାଉ ଏବଂ ଏହି କାର୍ଯ୍ୟ ନିମିତ୍ତ ପୁରୀରେ ଯେଉଁ କମିଟୀ ସ୍ଥାପିତ ହୋଇଅଛି ସେ କମିଟୀ ଏଠାରେ ବର୍ତ୍ତମାନ ଗଠିତ ହେବା କମିଟୀ ସଙ୍ଗେ ଏକ ଯୋଗ ହୋଇ କାର୍ଯ୍ୟ କରିବା କାରଣ ପ୍ରାର୍ଥନା ହେଉ।

୫। ଏ ସଭାର କାର୍ଯ୍ୟାବଳିର ପ୍ରତିଲିପିମାନ ସର୍ବସାଧାରଣ ଗୋଚରାର୍ଥେ ଭାରତବର୍ଷର ସମ୍ବାଦପତ୍ରମାନଙ୍କରେ  ପ୍ରକାଶ ହେବା ନିମିତ୍ତ ପଠାଯାଉ ଏବଂ ପୁରୀର ମାଜିଷ୍ଟ୍ରେଟ ଏବଂ ମିଉନିସିପାଲଟୀର ଚେଆରମାନଙ୍କ ନିକଟକୁ ମଧ୍ୟ ଏକ ଏକ ଖଣ୍ଡ ପ୍ରତିଲିପି ପଠାଯାଉ। ଇତି।

ପୁରୀର ଏ ବିଷୟରେ ଯେଉଁ ସଭା ହୋଇଥିଲା ତହିଁର ବିବରଣ ନିମ୍ନେ ପ୍ରକାଶିତ ହେଲା ଯଥା।

ତା୨୪ରିଖ ମାର୍ଚ୍ଚ ମଙ୍ଗଳବାର ରାତ୍ର ଘ୭ଣ୍ଟା ସମୟରେ ମହାମହୋପାଧ୍ୟାୟ ପଣ୍ଡିତ ଶ୍ରୀଯୁକ୍ତ ଶ୍ରୀ ମହେଶ୍ଚନ୍ଦ୍ର ନ୍ୟାୟରତ୍ନ ସିଃ ଆଇଃ ଇଃ ମହୋଦୟଙ୍କ ଯତ୍ନରେ ଶ୍ରୀ ମନ୍ଦିର ସଂସ୍କାର ନିମିତ୍ତ ଶ୍ରୀ ଜଗନ୍ନାଥମହାପ୍ରଭୂଙ୍କ ମନ୍ଦିରମଧ୍ୟରେ ଶ୍ରୀ ଲକ୍ଷ୍ମୀଠାକୁରାଣୀଙ୍କ ମଣ୍ଡପସମ୍ମୁଖରେ "ଶ୍ରୀଜଗନ୍ନାଥ ମନ୍ଦିର ସଂସ୍କାରିଣୀ" ନାମକ ଗୋଟିଏ ମହାସଭା ଆହୂତ ହୋଇ ଉକ୍ତ ସଭାରେ ନିମ୍ନଲିଖିତ ବିଷୟମାନ ନିର୍ଦ୍ଧାରିତ ହେଲା।

୧। ଅଦ୍ୟ ସଭାର କାର୍ଯ୍ୟ ନିର୍ବାହ ନିମିତ୍ତ ଉକ୍ତ ମହା ମହୋପାଧ୍ୟାୟ ପଣ୍ଡିତ ଶ୍ରୀଯୁକ୍ତ ଶ୍ରୀମହେଶ୍ଚନ୍ଦ ନ୍ୟାୟରତ୍ନ ସିଃ ଆଇଃ ଇଃ ମହୋଦୟ ସର୍ବସମ୍ମତିକ୍ରମେ ସଭାପତି ଆସନାଗ୍ରହଣ କଲେ।

୨ୟ - ସଭାପତି ମହାଶୟ ସରଳବଙ୍ଗଳା ଭାଷାରେ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ମନ୍ଦିରର ଯେଯେସ୍ଥାନମାନ ଜୀର୍ଣ୍ଣ ହୋଇଅଛି ତାହା ସଂସ୍କାର ରହିବାର ଆବଶ୍ୟକତା ବୁଝାଇଦେବାରୁ ସଭାରେ ସ୍ଥିରହେଲା ଯେ ଏ ବିଷୟରେ ସ୍ଥାନୀୟ ଏବଂ ବିଦେଶୀ ଲୋକମାନଙ୍କର ଶୀଘ୍ର

ଯତ୍ନଶୀଳ ହୋଇ କାର୍ଯ୍ୟକରିବା ଅତ୍ୟାବଶ୍ୟକ।

୩ୟ। "ଶ୍ରୀ ଜଗନ୍ନାଥ ମନ୍ଦିର ସଂସ୍କାରିଣୀ ସଭା, ବୋଲି ଏ ସଭାର ନାମ ପ୍ରତିଷ୍ଠିତ ହେଲା।

୪ର୍ଥ। ଶ୍ରୀ ଜଗନ୍ନାଥ ସନାତନ ଧର୍ମରକ୍ଷିଣୀ ସଭାର ଏ କାର୍ଯ୍ୟକରିବାର ଏକମାତ୍ର ଉଦେଶ୍ୟ ଥିବାର ସେ ସଭାର ସଭ୍ୟମାନେ ଶ୍ରୀମନ୍ଦିର ସଂସ୍କାର ବିଷୟରେ ପୃଥକ୍ ଉଦ୍ଯୋଗ ନ କରି ଏ ମନ୍ଦିର ସଂସ୍କାରଣୀ ସଭାରେ ଯୋଗ ଦେଇ ଯତ୍ନଶୀଳ ପୂର୍ବକ କାର୍ଯ୍ୟ କରିବାର ସ୍ଥିର ହୋଇ ଶ୍ରୀଶଙ୍କର ଦାମୋଦର ତୀର୍ଥସ୍ୱାମୀ; ଏମାରମଠର ମହନ୍ତ ଶ୍ରୀ ରଘୁନନ୍ଦନରାମାନୁଜ ଦାସ ଦକ୍ଷିଣପାର୍ଶ୍ୱ ମଠର ମହନ୍ତ ଶ୍ରୀ ରଘୁନନ୍ଦନ ରାମାନୂଜ ଦାସ, ଉତ୍ତରପାର୍ଶ୍ୱମଠର ମହନ୍ତ ଶ୍ରୀ ରାମପ୍ରସନ୍ନାରାମାନୁଜ ଦାସ ଶ୍ରୀ ନାରାୟଣ ଖୁଣ୍ଟିଆ, ଶ୍ରୀ ବିଶ୍ୱନାଥ ଖୁଣ୍ଟିଆ, -- ଶ୍ରୀ ହଜୁରୀ ନୀଳକଣ୍ଠ ଖୁଣ୍ଟିଆ, ଶ୍ରୀହରିହର ଗୁରୁ, ଶ୍ରୀବାବାଜୀ ସର୍ଜୁରାମାନୁଜ ଦାସ, ଶ୍ରୀବାବୁ ମହେନ୍ଦ୍ରନାଥ ମୁଖୋପାଧ୍ୟାୟ, ଶ୍ରୀ ବାବୁ କେଦାରନାଥ ଦତ୍ତ, ଶ୍ରୀ ବାବୁ ମନମୋହନ ଚକ୍ରବର୍ତ୍ତି, ଶ୍ରୀବାବୁ ହରିନାଥ ଚଟୋପାଧ୍ୟାୟ, ଶ୍ରୀ ବାବୁ ଆନନ୍ଦଲାଲ ବୋଷ, ଶ୍ରୀ ବାବୁ ପ୍ୟାରୀମୋହନ ସେନ, ମହାଜନ ଶ୍ରୀ ଭିଖାରୀ ମିଶ୍ର, ଶ୍ରୀ ବାବୁ ହରିଶ୍ଚନ୍ଦ୍ର ଘୋଷ, ଦେଓ୍ୟାନ ଶ୍ରୀବାବୁ ଆନନ୍ଦଚନ୍ଦ୍ର ମୁଖୁର୍ଯି, ମାନେଜର ଶ୍ରୀ ବାବୁ କୃଷ୍ଣଚନ୍ଦ୍ର ମହାନ୍ତି। ଶ୍ରୀ ବାବୁ ନିତ୍ୟାନନ୍ଦ ଦାସ, ଶ୍ରୀ ଜଗନ୍ନାଥ ସନାତନ ଧର୍ମ୍ମରକ୍ଷିଣୀ ସଭାର ସମ୍ପାଦକ ଶ୍ରୀ ବାବୁ ଶିବଚରଣ ମହାନ୍ତି ଓ ଅନ୍ୟାନ୍ୟ ସ୍ଥାନୀୟ ବ୍ୟକ୍ତି ଏବଂ ବାମଣ୍ଡାଧିପତି ଶ୍ରୀ ରାଜା ସୁଢ଼ଳଦେବ - ମହାମହୋପଧ୍ୟାୟ ଭକ୍ତ ପଣ୍ଡିତ ଶ୍ରୀ ମହେଶ୍ଚନ୍ଦ୍ର ନ୍ୟାୟରତ୍ନ ସି, ଆଇ, ଇ: - ଦର୍ପଣୀ ରାଜା ଶ୍ରୀ ବୈଦ୍ୟନାଥପଣ୍ଡିତ, ପାରିକୁଦ ରାଜା ଶ୍ରୀ ଗୌରଚନ୍ଦ୍ରମାନସିଂହ ହରିଚନ୍ଦନ ମର୍ଦ୍ଦରାଜ ଭ୍ରମରବର ରାୟ, ରାଜା ଶ୍ରୀ ବୈକୁଣ୍ଠନାଥ ଦେ, ବିଦେଶୀୟ ବ୍ୟକ୍ତିମାନେ ସଭ୍ୟପଦରେ ମନୋନୀତ ହେଲେ।

୫ମ- ଶ୍ରୀଯୁକ୍ତ ଶ୍ରୀ ମୁକୁନ୍ଦଦେବ ମହାରାଜାଙ୍କୁ ଚିରକାଳ ନିମନ୍ତେ ଏ ସଭା-ସଭାପତିକାର୍ଯ୍ୟର ଭାର ଅର୍ପଣ କରାଗଲା ମାନେଜର ଶ୍ରୀ ବାବୁ କୃଷ୍ଣଚନ୍ଦ୍ର ମହାନ୍ତି ଓ ଶ୍ରୀବାବୁ ହରିଶ୍ଚନ୍ଦ୍ର ଘୋଷ ଉଭୟ ଏ ସଭାର ଜଏଣ୍ଟ ସମ୍ପାଦକ ମନୋନୀତ ହେଲେ -

୬ଷ୍ଠ - ସାଧାରଣସଭାରେ ଅନ୍ତତଃ ଜ୨୦ଣ ଓ କାର୍ଯ୍ୟାନିର୍ବାହକ ସଭାରେ ଅନ୍ତତଃ ଜ୫ଣ ସଭ୍ୟ ଉପସ୍ଥିତ ଥିଲେ ସଭାର କାର୍ଯ୍ୟ ହେବ। ସଭାପତିଙ୍କର ଅନୁପସ୍ଥିତ ସ୍ଥଳେ ସଭ୍ୟମାନେ ସଭାପତି ମନୋନୀତ କରି କାର୍ଯ୍ୟ ଚଳାଇବେ।

୭ମ - ଭାରତବର୍ଷର ସାଧାରଣ ହିନ୍ଦୁମାନଙ୍କୁ ମନ୍ଦିର ସଂସ୍କାର ନିମନ୍ତେ ଚାନ୍ଦା ଦେବା ସକାଶେ ଏସଭାରୁ ଅନୁରୋଧ କରାଯାଉ ଓ ଜିଲ୍ଲାର ଶ୍ରୀଯୁକ୍ତ ଶ୍ରୀକମିଶନର ସାହେବ ଓ ସ୍ଥାନୀୟ ଶ୍ରୀଯୁକ୍ତ କଲେକ୍ଟର ସାହେବ ଟ୍ରଷ୍ଟସ୍ୱରୂପେ ଚାନ୍ଦା ଗ୍ରହଣ କରିବା ସକାଶେ ଓ ପୁରୀ ଖଜଣା ଖାନାର ଭାରପ୍ରାପ୍ତ ହାକିମଙ୍କୁ ତହବିଲ ରଖିବାସକାଶେ ସେମାନଙ୍କ ନିକଟକୁ ଅନୁରୋଧ ପତ୍ର ଲେଖା ଯାଉ।

୮ମ - ଏ ଶ୍ରୀମନ୍ଦିର ସଂସ୍କାର କରିବାରେ କେତେ ଟଙ୍କା ବ୍ୟୟ ହେବ ତହିଁର ଏକଇଷ୍ଟମିଟ ପ୍ରସ୍ତୁତ କରିବା ସକାଶ ସଭାରେ ଫଣ୍ଡଗଛିତ ହେଲେ ଖର୍ଚ୍ଚା ଦିଆଯାଇ ଜଣେ ହିନ୍ଦୁ ଉପଯୁକ୍ତ

ଇଞ୍ଜିନୀୟର ଅଣାଯିବାନିମନ୍ତେ ଶ୍ରୀଯୁକ୍ତ କଲେକ୍ଟର ସାହେବଙ୍କୁ ଅନୁରୋଧ କରାଯିବ।

୯ମ - ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ଦର୍ଶନ ଅଭିପ୍ରାୟରେ ଯେଉଁ ଯାତ୍ରିମାନେ ଆସିବେ ସେମାନଙ୍କଠାରୁ ପ୍ରତ୍ୟେକ ଜଣକୁ ଅନ୍ତତଃ ଏକ ପଇସା ହିସାବ ଏକାର୍ଯ୍ୟରେ ଧର୍ମାର୍ଥ ଚାନ୍ଦାସ୍ୱରୂପ ନେବାନିମନ୍ତେ ସଭାରୁ ଅନୁରୋଧ କରାଯିବ ଓ ସାଧୁ ଅଭ୍ୟାଗତ ଏବଂ ନିତାନ୍ତ ଗରିବ ଦୁଃଖି ଲୋକଙ୍କୁ ଅନୁରୋଧ କରାଯିବ ନାହିଁ।

୧୦ - ଶ୍ରୀଯୁକ୍ତ ଶ୍ରୀ ମହାମହୋପଧ୍ୟାୟ ସଭାପତି ମହୋଦୟଙ୍କ ସଯତ୍ନରେ ଏସଭା ସ୍ଥାପନ ହୋଇଥିବା ଏବଂ ସେ ନିଜେ ଏକଶତ ଟଙ୍କା ଦେଇ ସର୍ବସାଧାରଣଙ୍କର ଚାନ୍ଦା ଦେବା ବିଷୟରେ ଉତ୍ସାହ ଜନ୍ମାଇଥିବାରୁ ସଭ୍ୟମାନେ ତାହାଙ୍କୁ ଧନ୍ୟବାଦ ଦେଲାପର ସଭା ଭଙ୍ଗ ହେଲା।

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୧୧୩*

ପୁରୀରୁ ଏକ ବ୍ୟକ୍ତି ଲେଖିଅଛନ୍ତି କି ଶ୍ରୀମନ୍ଦିରର ମରାମତି କାର୍ଯ୍ୟ ସକାଶେ ବେଢ଼ା ମଧ୍ୟରେ ନାନାସ୍ଥାନରେ ପଥର କାଠ ଇତ୍ୟାଦି ଜମା ହେଉଅଛି ଓ ତହିଁରେ ଅନ୍ଧାରରାତ୍ରରେ ଝୁଣ୍ଟିପଡ଼ି କେତେ ଯାତ୍ରି ଆଘାତ ପାଉଅଛନ୍ତି। ଏପର ବାଙ୍କାବଟ ମୁକ୍ତିମଣ୍ଡପ ପ୍ରଭୃତି ସ୍ଥାନରେ ଅନ୍ଧାରରାତ୍ରରେ ଚୋରୀ ଇତ୍ୟାଦି ହେବାର ଏବଂ ସର୍ପାଦି ବୁଲିବାର ଦେଖାଯାଏ। ଏଥିପାଇଁ ସେ ମନ୍ଦିରର ମାନେଜର ଏବଂ ରାଣୀଙ୍କଦେବାନଙ୍କୁ ମନ୍ଦିରମଧ୍ୟରେ ଆଲୋକ ଦେବାର ବନ୍ଦୋବସ୍ତ କରିବାର କାରଣ ଅନୁରୋଧ କରିଅଛନ୍ତି। ଏ ପ୍ରସ୍ତାବ ଯୁକ୍ତି ସଙ୍ଗତ ବୋଧ ହେଉଅଛି। ଭରସା କରୁଁ ମନ୍ଦିରର ଭାରପ୍ରାପ୍ତ କର୍ମଚାରିମାନେ ଏ ବିଷୟରେ ମନୋଯୋଗୀ ହେବେ।

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୧୪୩*

ପୁରୀର ଶ୍ରୀ ଜଗନ୍ନାଥ ଜିଉଙ୍କ ମନ୍ଦିର ସଂସ୍କାର ନିମିତ୍ତ ଭେଦା ସଂଗ୍ରହାର୍ଥେ କଟକରେ ଯେଉଁ କମିଟୀ ବସିଅଛି ତହିଁର ଜଣେ ସମ୍ପାଦକ ଓ କୋଷାଧ୍ୟକ୍ଷ ବାବୁ ହରିବଲ୍ଲଭ ବସୁଙ୍କର ଖଣ୍ଡିଏ ବିଜ୍ଞାପନ ଗତସପ୍ତାହ ବଙ୍ଗବାସୀରେ ଦେଖିଲୁଁ ଉକ୍ତ ବିଜ୍ଞାପନର ତାରିଖ ତା୧୦ରିଖ ଜୁଲାଇ ସନ ୧୮୯୧ ଅଟଇ। ତହିଁରେ ଲେଖାଅଛି କି ଏଥିପୂର୍ବେ ପ୍ରକାଶିତ ଭେଦାର ସମଷ୍ଟି ହୋଇଥିଲା। ସମ୍ପ୍ରତି ଯଶୋରରର ଟ୧୨୫୯୮ଙ୍କା ଦଶ ଅଣା ଦଶ ପଇସା ହୋଇଥିଲା ସମ୍ପ୍ରତି ଯଶୋରରର ମୁକ୍ତାରଖାନା ଭେଦା ଟ୬୯ଙ୍କା ୪ଅଣା ୨ ପଇସା ଜିଲ୍ଲା ବାଲିୟାନିବାସୀ ପାଣ୍ଡେ ରାମଶରଣ ଲାଲଙ୍କ ପ୍ରେରିତ ଟ୧୬ଙ୍କା ତିନି ଅଣା ଏବଂ କେନ୍ଦ୍ରାପଡ଼ା ଶାଖା କମିଟୀର ଉଦ୍ୟମରେ ସ୍ୱାକ୍ଷାରିତ ଭେଦା ଟ୧୨୪୦ଙ୍କା ପାଞ୍ଚଅଣା ଯୋଗହେବାରୁ ଉକ୍ତ ତାରିଖ ପର୍ଯ୍ୟନ୍ତ ବାଏ ଟ୧୫୪୨୭ଙ୍କା ୬ ଅଣା ୧୦ ପଇସା ଭେଦା ହୋଇଥିଲା। ଏଥିରୁ ପାଠକମାନେ ଦେଖିବେ ଯେ ଏ ନଗରର କମିଟୀ ଭେଦା ସଂଗ୍ରହ ବିଷୟରେ ଯତ୍ନବାନ୍ ଅଛନ୍ତି। ମାତ୍ର ବଙ୍ଗବାସୀ ହିନ୍ଦୁର ସମ୍ବାଦପତ୍ର ବୋଲି ପରିଚୟ ଦେଉଥିବା ପ୍ରତ୍ୟେକ୍ଷେ ପୁରୀମନ୍ଦିରର ଭେଦାସଂଗ୍ରହବାର୍ତ୍ତାକୁ ସମ୍ପାଦକୀୟ ସ୍ତମ୍ଭମଧ୍ୟରେ ନ ଦେଇ ବିଜ୍ଞାପନପୃଷ୍ଠାର ଏକ କୋଣରେ ପକାଇ ଦେଇଥିବାରୁ ବୋଧ ହୁଅଇ ଅନେକଙ୍କର ବୃଷ୍ଟିପଥରେ ଆସିନାହିଁ ଏବଂ ସେହିହେତୁ ଭେଦା ସଂଗ୍ରହ ହେଉଅଛି

ବୋଲି ଅନେକଙ୍କୁ ଜଣା ନାହିଁ। ଆମ୍ଭେମାନେ ଏ ସପ୍ତାହରେ ବାବୁ ହରି ବଲ୍ଲଭବସୁଙ୍କଠାରୁ ଏକ ତାଲିକା ପାଇଅଛୁଁ। ଆଗାମୀ ସପ୍ତାହରେ ପ୍ରକାଶ କରିବୁଁ। ଏ ପର୍ଯ୍ୟନ୍ତ ମୋଟ ଟ୧୮,୦୬୦ଙ୍କା ୬ ଅଣା ୧ ପଇସା ହୋଇଅଛି।

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୨୩୨*

## ପୁରୀ ମନ୍ଦିର ମରାମତୀ କମିଟୀ

ସଞ୍ଜୀବନୀ ଲେଖି ଅଛନ୍ତି ପୁରୀ ଜଗନ୍ନାଥ ମନ୍ଦିର ମରାମତି ଉପଲକ୍ଷେ ଅର୍ଥ ସଂଗ୍ରହ କରିବା ନିମିତ୍ତ କଲିକତାରେ ଗୋଟିଏ କମିଟୀ ଗଠିତ ହୋଇ ଅଛି। ଦୋଳଯାତ୍ରା, ରଥଯାତ୍ରା ସମୟରେ ପୁରୀରେ ପ୍ରତିବର୍ଷ ଅସଂଖ୍ୟ ଯାତ୍ରୀ ସମବେତ ହୋଇ ଥାନ୍ତି। ତେତେବେଳେ ଅନେକ ଯାତ୍ରୀ ଓ ସ୍ଥାନୀୟ ଲୋକ ସଂକ୍ରାମକ ବ୍ୟାଧିରେ ମାରା ପଡ଼ନ୍ତି। ଏହି ମଡ଼କର କାରଣ ନିର୍ଣ୍ଣୟ କରିବା ଏବଂ କଳର ଜଳ, ଉତ୍କୃଷ୍ଟ ପୟଃପ୍ରଣାଳୀ ଓ ଯାତ୍ରୀମାନଙ୍କର ବାସସ୍ଥାନର ଉନ୍ନତିକର ବନ୍ଦୋବସ୍ତ କଲେ ଏହି ମଡ଼କର କାରଣ ଊଣା ପଡ଼ିପାରେ କିନା ତାହା ନିର୍ଦ୍ଧାରଣ କରିବା ସକାଶେ ଏକ କମିଶନ ନିଯୁକ୍ତ କରିବା ନିମିତ୍ତ ସେହି କମିଟୀ ପ୍ରାଦେଶିକ ଗବର୍ଣ୍ଣମେଣ୍ଟ ନିକଟରେ ଏକ ଆବେଦନ କରି ଅଛନ୍ତି। ମାତ୍ର କମିଟୀ ଯେଉଁ ୨ କାରଣ ଦେଖାଇ ଅନୁସନ୍ଧାନର ଆବେଦନ କରି ଅଛନ୍ତି, ତାହା ଅନୁସନ୍ଧାନ ନ କରିବାର ପୂର୍ବରୁ ସୁଫଳ ଫଳିବାର କୁହାଯାଇପାରେ, ପୁରୀ ସ୍ୱାସ୍ଥ୍ୟପ୍ରଦସ୍ଥାନ କରିବା ବିଷୟରେ ଗବର୍ଣ୍ଣମେଣ୍ଟଙ୍କର ଶୀଘ୍ର ଉଦ୍ୟୋଗୀ ହେବା ପ୍ରାର୍ଥନୀୟ।

*ସମ୍ବଲପୁର ହିତୈଷିଣୀ-୧୮୯୧: ପୃଷ୍ଠା ସଂଖ୍ୟା-୧୦୭*

## ଶ୍ରୀମନ୍ଦିର ମରାମତୀ ଉପଲକ୍ଷେ ଅର୍ଥସଂଗ୍ରହ

ଏମଧ୍ୟରେ ବାମଣ୍ଡା ଜିଲ୍ଲାରୁ ଶ୍ରୀମନ୍ଦିର ମରାମତୀଉପଲକ୍ଷେ ଟ୧୨୧ଙ୍କା ଆଠ ଅଣା ୯ ପହୁଲା ଚାନ୍ଦାସ୍ୱାକ୍ଷରୀତ ହୋଇଥିବାର ହିସାବ ପ୍ରକାଶ କରାଯାଇଅଛି। ବଙ୍ଗଦେଶ ଏବଂ ଉତ୍‌କଳ ଦେଶର କେତେକ ସ୍ଥାନରେ ଏହିରୂପେ ଅର୍ଥସଂଗ୍ରହ ଲାଗିସଂଗୃହୀତ ହେବାର ଚେଷ୍ଟାହେବା ବାଞ୍ଛନୀୟ। ଉପରୋକ୍ତ କାର୍ଯ୍ୟସମ୍ବନ୍ଧେ ପୁରୀ ସଭାର କେତେକଜଣ ମୋଫସଲକୁ ବାହାରି ଥିବାର ସମ୍ବାଦ ପାଇଥିଲୁଁ, ସେମାନେ ଏପର୍ଯ୍ୟନ୍ତ କିପରିମାଣରେ କୃତକାର୍ଯ୍ୟହୋଇ ଅଛନ୍ତି ଜାଣିବାକୁ ଇଚ୍ଛାକରୁଁ। ବାମଣ୍ଡାର ବନ୍ଧାବାର ଥାନା ଜମାଦାର ବାବୁ ରତ୍ନାକର ଦାସଙ୍କ ଯତ୍ନରେ ୧୮ ଟଙ୍କା ଚାନ୍ଦା ଉଠିଥିବାରୁ ଆମ୍ଭେମାନେ ପ୍ରୀତିପ୍ରଫୁଲ୍ଲ ଚିତ୍ତରେ ଜଗନ୍ନାଥ ଦେବଙ୍କ ନିକଟରେ ତାଙ୍କର ଏବଂ ଚାନ୍ଦାଦାତା ମାନଙ୍କର ଦୀର୍ଘଜୀବନ ପ୍ରାର୍ଥନା କରୁଅଛୁଁ। ବର୍ତ୍ତମାନ ସର୍ବସାଧାରଣଙ୍କ ଅବଗତାର୍ଥେ ଚାନ୍ଦାଦାତାମାନଙ୍କ ନାମ ଓ ପ୍ରଦତ୍ତ ଚାନ୍ଦାର ପରିମାଣ ଏତନ୍ନିମ୍ନେ ପ୍ରକାଶକଲୁଁ। ଭରସାକରୁଁ ଅନ୍ୟାନ୍ୟ ପାଠକମାନେ ଏହିପରି ସତ୍‌କାର୍ଯ୍ୟରେ ଦାନକରି ଧନ୍ୟହେବେ।

*ସମ୍ବଲପୁର ହିତୈଷିଣୀ ୧୮୯୧: ପୃଷ୍ଠା ସଂଖ୍ୟା-୧୦୭*

ଶ୍ରୀମନ୍ଦିର ସଂସ୍କାରିଣୀ ସଭାର ଯେଉଁ ଅଧିବେଶନ ପୁରୀଠାରେ ଗତମାସରେ ହୋଇ ଥିଲା ତହିଁର ବିବରଣ ପ୍ରାପ୍ତ ହୋଇ ଆନନ୍ଦ ସହିତ ଅବଗତ ହେଲୁଁ ଯେ ମନ୍ଦିର ସଂସ୍କାର କାର୍ଯ୍ୟ ଆରମ୍ଭ ହୋଇ କ୍ରମଶଃ ଅଗ୍ରସର ହେଉ ଅଛି। ବଡ଼ ଦେଉଳର ଦଧିନଉତି ଯହିଁର ଉଚ୍ଚ ହା୧୧ତ ଓ ବ୍ୟାସ ହା୭ତ ଅଟଇ ତାହା ପ୍ରସ୍ତୁତ ହୋଇ ଅଛି କେବଳ ଚୂନ ଲାଗିବାର ବାକୀ ଅଛି। ନୀଳଚକ୍ର ମରାମତି ନିମନ୍ତେ ଦୁଇମହଣ ଓଜନର ଗୋଟିଏ ଅଷ୍ଟଧାତୁର ଚନ୍ଦ୍ରିକା ପ୍ରସ୍ତୁତ ହୋଇ ଆଉ ଗୋଟିଏ ସେ ୬୫ର ଓଜନର ପ୍ରସ୍ତୁତ ହେଉଅଛି। ଏହା ଶେଷ ହେଲେ ନୀଳଚକ୍ର କାର୍ଯ୍ୟ ଶେଷ ହେବ। ଝୁଲଣମଣ୍ଡପ ଭଙ୍ଗା ହୋଇଅଛି। ଏମାରମଠର ମହନ୍ତ ଶ୍ରୀ ରଘୁନନ୍ଦନ ରାମାନୁଜଦାସ ଏକାକେ ୬/୭ ହଜାର ଟଙ୍କା ବ୍ୟୟରେ ତାହା ନୂତନ ପ୍ରସ୍ତୁତ କରି ଦେବାର ଭାର ନେଇ ଅଛନ୍ତି ଏବଂ ଏଥିଉପରେ ସାଧାରଣ ସଂସ୍କାରପାଣ୍ଠିରେ ଏକ ହଜାର ଟଙ୍କା ଦାନ କରି ଅଛନ୍ତି। ମେଘନାଦ ପ୍ରାଚୀରବେଷ୍ଟିତ ବେଢ଼ା ମଧ୍ୟରେ ଥିବା ଅନ୍ୟାନ୍ୟ ମନ୍ଦିରମାନଙ୍କ ମଧ୍ୟରେ କେଉଁ ମନ୍ଦିରର କି ମରାମତି ଦରକାର ତାହା ତଦନ୍ତ କରି ଇଷ୍ଟିମିଟ ସହିତ ରିପୋର୍ଟ କରିବା କାରଣ ଗୋଟିଏ ସବକମିଟୀ ଗଠିତ ହୋଇଅଛି ଏବଂ ଏହିପରି ରୋଷଘର ମରାମତି ବିଷୟରେ ଆଉ ଗୋଟିଏ ଶାଖାକମିଟୀ ନିଯୁକ୍ତ ହୋଇଅଛି। ଏଥିରୁ ପାଠକମାନେ ଜାଣିବେ ଯେ ଭେଦା ସଂଗ୍ରହ ସଙ୍ଗେ ସଙ୍ଗେ ମରାମତି କାର୍ଯ୍ୟ ଯଥାସାଧ୍ୟ ତତ୍ପରତା ସହିତ ଲାଗି ଯାଇଅଛି। ଅତଏବ ଯେଉଁମାନେ ଭେଦା ଦେବାକୁ ସମ୍ମତ ହୋଇ ଅଛନ୍ତି ସେମାନେ ଶୀଘ୍ର ଟଙ୍କା ପ୍ରଦାନ କରନ୍ତୁ ଏବଂ ପୁଣ୍ୟ କାର୍ଯ୍ୟରେ ସାହାଯ୍ୟ କରିବାକୁ ଅଗ୍ରସର ସେମାନେ ଆଉ ବିଳମ୍ବ ନ କରନ୍ତୁ।

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୨୫୬*

ପୁରୀ ମନ୍ଦିରସଂସ୍କାର କମିଟୀର ସମ୍ପାଦକ ଦ୍ୱୟ ବାବୁ ବଳରାମ ମଲ୍ଲିକ ଏବଂ ବାବୁ ହରିବଲ୍ଲଭ **ବସୁଙ୍କ** ସ୍ୱାକ୍ଷରିତ ଗତମାସ ତା୨୧ରିଖ ଲିଖିତ ଖଣ୍ଡିଏ ବିବରଣ ପ୍ରଚାରିତ ହୋଇଅଛି ଏବଂ ତହିଁର ଏକପ୍ରସ୍ଥ ଛାପା ପ୍ରତିଲିପି ଆମ୍ଭେମାନେ ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ। ଏଥିରେ ପୁରୀ ମନ୍ଦିର ଉପରେ ଥିବା ନୀଳଚକ୍ର ପରିମାଣ ଓ ଇତିହାସ ସଂକ୍ଷେପରେ ବର୍ଣ୍ଣନା ହେଲା ଉତ୍ତାରୁ ଲେଖାଅଛି କି ଏକି ନୀଳଚକ୍ର ଢ଼ଳି ପଡ଼ିବା ହେତୁ ସ୍ଥାନୀୟ ହାକିମମାନେ ମିଉନିସିପଲ ଆଇନାନୁସାରେ କାର୍ଯ୍ୟ କରିଥିଲେ। ନୀଳଚକ୍ରଟି ଅଷ୍ଟଧାତୁରେ ନିର୍ମିତ। ଏହାର ବ୍ୟାସ ୧୦ଫିଟ ଏବଂ ମଣ୍ଡଳର ମୋଟ ୪ ଇଞ୍ଚ। ଏହାକୁ ମରାମତ କରିବାକାରଣ ବାବାଜି ସରଜୁଦାସ କି ସେ ବିଶେଷ ପରିଶ୍ରମୀ ସାଧୁ ଅଟନ୍ତି। ୧୯୨ ଫିଟ ଭାରା ବନ୍ଧାଇଥିଲେ ଏବଂ ପ୍ରାୟ ମ୫ହଣ ଲେଖାଏଁ ଯୋଡାଏ ଚନ୍ଦ୍ରିକା ପ୍ରସ୍ତୁତ କରାଇଥିଲେ। ଚକ୍ରର ଧାରଣାକୁ ଠିକ କରି ବସାଇବା ସକାଶେ ୧୯ ଫିଟ ଉଚ୍ଚ ପଥରନିର୍ମିତ କଳଶକୁ ଭାଙ୍ଗି ନୂତନ ପ୍ରସ୍ତୁତ କରିବାର ଆବଶ୍ୟକ ହେଲା। ଚକ୍ରଟି ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ମରାମତ ହୋଇ ନୀଳରଙ୍ଗ ହୋଇଅଛି ଏବଂ ତହିଁର ତଳକାମ ସବୁ ଚୂନପଲସ୍ତ୍ରା ଦ୍ୱାରା ବିବିଧ ବର୍ଣ୍ଣ x x x ହେଇଅଛି। ଏ କାର୍ଯ୍ୟ ସମ୍ପନ୍ନ କରିବା x x x ଖରଚ ହୋଇଅଛି। ଦେଖାଗଲା ଯେ କାର୍ଯ୍ୟ ନିର୍ବାଚନ କମିଟି ଏବଂ x x x କମିଟିର ସମ୍ପାଦକ ବାବୁ ଏବଂ ଖର୍ଚ୍ଚା ମଧ ଏବଂ ଭରସା କରୁ ଉତ୍କଳର ଏହି ଅନୁପମ ପ୍ରାଚୀନ କୀର୍ତ୍ତିର

ସଂରକ୍ଷଣରେ ଯେଉଁମାନଙ୍କର ଆସ୍ଥା ଓ ଅନୁରାଗ ଅଛି ସେମାନେ ଆନନ୍ଦିତ ହୋଇବେ ଏବଂ ଅନ୍ୟାନ୍ୟ ଜୀର୍ଣ୍ଣସଂସ୍କାର ପକ୍ଷରେ ସାହାଯ୍ୟ କରିବେ। ସଂସ୍କାରକମିଟୀ ଏହି ବିବରଣ ପ୍ରକାଶ କରି ଅପଣାକାର୍ଯ୍ୟଦକ୍ଷତା ଏବଂ ଯତ୍ନର ପରିଚୟ ଦେଇ ଅଛନ୍ତି ଓ ଭରସା ହୁଅଇ ଆଶାନୁରୂପ ସାହାଯ୍ୟ ପାଇଲେ ଆବଶ୍ୟକୀୟ ସମସ୍ତ ସଂସ୍କାର ଅଳ୍ପସମୟ ମଧ୍ୟରେ କରିବାକୁ ସମର୍ଥ ହେବ।

*ଉତ୍କଳ ଦୀପିକା-୧୮୯୨: ପୃଷ୍ଠା ସଂଖ୍ୟା-୮୭*

ମହାଶୟ!

ଆମ୍ଭେ କାର୍ଯ୍ୟାପଲକ୍ଷେ କେତେଦିନ ହେଲା ଏ ପୁରୁଷୋତ୍ତମକ୍ଷେତ୍ରଠାକୁ ଆସିଅଛୁଁ ଏଠାରେ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କର ବଡ଼ଦେଉଳ ଓ ତନ୍ନିକଟବର୍ତ୍ତୀ ବେଢ଼ାର ମଧ୍ୟସ୍ଥିତ ଅପରାପର ଦେଉଳଆଦିର ଜୀର୍ଣ୍ଣସଂସ୍କାର କାର୍ଯ୍ୟ ଦେଖି ଅତ୍ୟନ୍ତ ଆନନ୍ଦିତ ହେଉଅଛୁଁ। କାର୍ଯ୍ୟନିର୍ବାହର ବନ୍ଦୋବସ୍ତ ଅତି ଉତ୍କୃଷ୍ଟ ହୋଇଅଛି। ଓ ମରାମତିକର୍ମ ଅତି ସୁଚାରୁରୂପେ ଚଳୁଅଛି। ଏଥିନିମିତ୍ତ ଆମ୍ଭେ ଏହାର ଉଦ୍ୟୋଗ କର୍ତ୍ତାମାନଙ୍କୁ ସର୍ବୋନ୍ତଃକରଣରେ ଶତସହସ୍ରଧନ୍ୟବାଦ ଦେଉଅଛୁଁ ଓ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ନିକଟରେ ପ୍ରାର୍ଥନା କରୁଅଛୁଁ କି ମହାପ୍ରଭୂ ଏ ମହାତ୍ମାମାନଙ୍କର ଉତ୍ତରୋତ୍ତର ମଙ୍ଗଳ କରନ୍ତୁ ଓ ଏହିପରି ସତ୍କାର୍ଯ୍ୟରେ ବ୍ରତୀ ହୋଇ ଆପଣାର ଓ ହିନ୍ଦୁମାନଙ୍କର ମୁଖୋର୍ଜ୍ଜ୍ୱଳ କରିବାକୁ ସର୍ବଦା ଏମାନଙ୍କୁ ପ୍ରବୃତ୍ତି ଦେଉନ୍ତୁ। ଯେଉଁମାନେ ଦେଉଳ ମରମତି କାର୍ଯ୍ୟରେ ଅର୍ଥ ପ୍ରଦାନ କରିଅଛନ୍ତି ସେମାନେ ନିଶ୍ଚୟ ଜାଣିବେ ଯେ ସେମାନଙ୍କର ଦତ୍ତ ଅର୍ଥରୁ ଗୋଟିଏ ପଇସା ସୁଦ୍ଧା ଅପବ୍ୟୟିତ ନ ହୋଇ ସମଗ୍ର ଅର୍ଥ ସତ୍‌କାର୍ଯ୍ୟରେ ଲାଗୁଅଛି। ମରମତିକାର୍ଯ୍ୟର ସବିଶେଷବୃତ୍ତାନ୍ତ ଏପଛେ ଜଣାଇବୁଁ ବର୍ତ୍ତମାନ ଯେ ସେ କାର୍ଯ୍ୟ ହୋଇଅଛି ଓ ଯାହା ଯାହା ହେଉ ତହିଁର ସଂକ୍ଷିପ୍ତବିବରଣ ନିମ୍ନେ ପ୍ରକାଶ କରୁ ଅଛୁଁ।

୧। ମାଜଣାମଣ୍ଡପରେ ଚୂନ ଦିଆଯାଇ ରଙ୍ଗ ଦିଆଯାଇ ଅଛି।

୨। ନୀଳଚକ୍ର ମରାମତ ହୋଇ ତହିଁରେ ନୀଳରଙ୍ଗ ଦିଆଯାଇ ଅଛି।

୩। ବଡ଼ଦେଉଳ ଉପର ଦହିହାଣ୍ଡି ମରମତି ହୋଇ ତହିଁରେ ପାଟଳରଙ୍ଗ ଦିଆଯାଇ ଅଛି।

୪। ଦହିହାଣ୍ଡି ତଳ ଅଁଳାବେଢ଼ରେ ଚୂନ ଦିଆଯାଇ ରଙ୍ଗ ଲାଗୁଅଛି।

୫। ବାଇସ ପାହାଚ ଉପରେ ପୂର୍ବେ ଗୁମୁଟଦ୍ୱାରରେ ଚୂନର ନାନାବିଧି ପୁଷ୍ପ ଇତ୍ୟାଦିର ନକ୍ସା ହୋଇ ତହିଁରେ ବିବିଧ ସୁନ୍ଦର ରଙ୍ଗ ଦିଆଯାଇ ଅଛି।

୬। ଲକ୍ଷ୍ମୀଙ୍କର ରୋଷଘର ଓ ବାହାରଦେହୁଡ଼ି ରୋଷଘର ପଥରରେ ନୂଆ ପ୍ରସ୍ତୁତ ହୋଇ ଅନେକ ପରିମାଣରେ ଶେଷ ହୋଇ ଅଛି ଏ କାର୍ଯ୍ୟ ଅତିସୁନ୍ଦର ଓ ଶକ୍ତ ହୋଇଅଛି।

୭। ଦକ୍ଷୀଣଦ୍ୱାର ଗୁମଟ ମରାମତ ହେଉଅଛି।

୮। ସୂର୍ଯ୍ୟନାରାୟଣଙ୍କ ମୁକଶାଳୀ ଓ ରୋଷଘର ପ୍ରସ୍ତୁତ ହେଉଅଛି।

୯। ବଟକୃଷ୍ଣଙ୍କ ନିକଟରେ ଏକ ଶିବମନ୍ଦିର ପ୍ରସ୍ତୁତ ହେଉଅଛି।

ଏବାଦ ସ୍ଥାନେ ସ୍ଥାନେ ସାମାନ୍ୟ ପ୍ରକାରର କାର୍ଯ୍ୟ ଲାଗିଅଛି। ବଡ଼ଦେଉଳ ଉପରକୁ ଦୁଇଗୋଟା ଚାର ବନ୍ଧାଯାଇ ଅଛି ଆଉ ଦୁଇଗୋଟା ବନ୍ଧାଯିବାର ଉଦ୍ୟୋଗ ଲାଗିଅଛି।

ଚାରିଗୋଟା ଚାର ବନ୍ଧା ଶେଷହେଲେ ସମଗ୍ର ଦେଉଳରେ ଚୂନ ଓ ରଙ୍ଗ ଲାଗିବ। ଏ ସମ୍ବନ୍ଧରେ ଆମ୍ଭର କିଛି ନିବେଦନ ପ୍ରାର୍ଥନା କରୁଁ ମରାମତି କମିଟୀ ତହିଁ ପ୍ରତି ଯାହା ଭଲ ବିବେଚନା କରନ୍ତି ତାହା କରିବେ। ବଡ଼ଦେଉଳରେ ଯେ ରଙ୍ଗ ଦିଆଯିବ ତାହା ପେଷିତେଲରେ ନ ଗୋଳି ପୋର୍ଟଲେଣ୍ଡ ସିମେଣ୍ଟ ସଙ୍ଗେ ଗୋଳି ଲଗାଇଲେ ତାହା ସ୍ଥାୟୀ ହେବ ପୋର୍ଟଲେଣ୍ଡ ସିମେଣ୍ଟରେ ଏପରି କୌଣସି ଦ୍ରବ୍ୟ ନାହିଁ ଯାହା ଦେଉଳରେ ଦେବାର କୌଣସି ଆପତ୍ତି ହୋଇପାରେ। ଆଉ ବଡ଼ ଦେଉଳରେ ଇଷତ୍ ନୀଳାଭ ରଙ୍ଗ ଦେଲେ ବଡ଼ସୁନ୍ଦର ଓ ସ୍ଥାୟୀ ହେବ ମଧ ଶାସ୍ତ୍ରବଚନର ସହିତ ତାହା ମେଳଖାଇବ। କଲିକତାରୁ ଯେ ଚୂନ ଆସିଅଛି ତାହା ଫୁରୁଷି ଯାଇଅଛି। ତାକୁ ବାଜେକର୍ମରେ ଲଗାଇ ସ୍ଥାୟୀକାର୍ଯ୍ୟ ସକାଶେ ପିପିଲିର ବା ଅନ୍ୟସ୍ଥାନର ନୂଆ ପଥରଚୂନ ବ୍ୟବହାର କଲେ ଆମ୍ଭ ବିବେଚନାରେ ଭଲ ହେବ। ଟିନରେ ଅତିସୂକ୍ଷ୍ମ ଛିଦ୍ରଯୁକ୍ତ ଚାଲୁଣି ପ୍ରସ୍ତୁତ କରାଇଁ ତହିଁରେ ପଥରଚୂନକୁ ଚଲାଇ ନେଲେ ସୁନ୍ଦର କାର୍ଯ୍ୟ ଚଳିବ। ପରିଶେଷରେ ବକ୍ତବ୍ୟ ଏହିକି ଏ ମରାମତି କାର୍ଯ୍ୟରେ ଅର୍ଥ ସାହାଯ୍ୟ କରିବାନିମିତ୍ତ ହିନ୍ଦୁମାତ୍ରେ ଅଗ୍ରସର ଓ ମୁକ୍ତହସ୍ତ ହେଉନ୍ତୁ ଏଥିରେ ସେମାନଙ୍କର ଐହିକ ଓ ପାରତ୍ରିକ ଉଭୟ ପ୍ରକାରରେ ଶ୍ରେୟ ହେବ। ଇତି।

ଆପଣଙ୍କର ଏକାନ୍ତ ବିଶମ୍ବଦ

ଶ୍ରୀ ନାରାୟଣ ପ୍ରସାଦ ମିତ୍ର

ପୁରୀ

୧୭/୫/୯୨

*ଉତ୍କଳ ଦୀପିକା-୧୮୯୨: ପୃଷ୍ଠା ସଂଖ୍ୟା-୧୮୬*

## ପୁରୀମନ୍ଦିର ସଂସ୍କାରପାଣ୍ଠି

ପୁରୀ ଜଗନ୍ନାଥଙ୍କ ମନ୍ଦିର ସଂସ୍କାରିଣୀ ସଭାର ଯେଉଁ ପ୍ରଥମ ବାର୍ଷିକ ବିବରଣ ବାହାରି ଅଛି ତାହା ସନ ୧୮୯୧-୯୨ଲ ଅର୍ଥାତ୍ ଗତ ମାରିଚ ମାସ ତା୩୧ରିଖରେ ଶେଷ ହେବ। ବର୍ଷ ସମ୍ବନ୍ଧୀୟ ଅଟଇ। ଏଥିରେ ମନ୍ଦିର ସଂସ୍କାରର ଉଦ୍ୟମଠାରୁ ଉକ୍ତ ମାରିଚମାସ ଶେଷପର୍ଯ୍ୟନ୍ତ ସମସ୍ତ ଘଟନା ଲେଖା ଅଛି। ଆମ୍ଭେମାନେ ମନ୍ଦିର ସଂସ୍କାରର ପ୍ରସ୍ତାବ ଓ କାର୍ଯ୍ୟ ଏସକଳ ବିଷୟ ସମୟ ସମୟରେ ପାଠକଙ୍କ ନିକଟରେ ଉପସ୍ଥିତ କରିଅଛୁଁ। ସୁତରାଂ ସେସବୁର ପୁନରୁଲ୍ଲେଖ ଆବଶ୍ୟକ ନାହିଁ। କେବଳ କାର୍ଯ୍ୟନିର୍ବାହ ଏବଂ ଆୟ ବ୍ୟୟଘଟିତ ରିପୋର୍ଟର ସଂକ୍ଷେପ ମର୍ମ ପ୍ରକାଶ କରୁଅଛୁଁ।

ପୁରୀ ମନ୍ଦିର ଗୋଟିଏ ପ୍ରକାଣ୍ଡକୀର୍ତ୍ତି ଏବଂ ଓଡ଼ିଶାର ଗୌରବସ୍ଥଳ। ଏହି ମନ୍ଦିରର ବେଢ଼ା ମଧ୍ୟରେ ସାନ ବଡ଼ ଗୋ୧୨୦ଟା ମନ୍ଦିର ଅଛି। ଏସବୁର ମରାମତି ସକାଶେ ବାର୍ଷିକ ଟ୫୦୦ଙ୍କା ମାତ୍ର ଖଞ୍ଜା ଅଛି ଯାହାକି କେବଳ ଥରେ କଲିଚୂନ ଫେରାଇବାକୁ ନିଅଣ୍ଟ। ଅର୍ଥାଭାବରୁ ମରାମତି ନ ହେବାରୁ ଦେଉଳ ଭାଙ୍ଗିପଡ଼ିବାର ଭୟ ହେଲା ଏବଂ ମାଜିଷ୍ଟ୍ରେଟ ଓ ମିଉନିସିପାଲଟୀ ତମ୍ବି କଲେ। ଏଥିପାଇଁ ସାଧାରଣ ଭେଦଦ୍ୱାରା ମରାମତି କାର୍ଯ୍ୟ କରିବାର କଳ୍ପନା ହୋଇ ସନ୧୮୯୧ସାଲ ମାରିଚମାସ ତା୨୫ରିଖରେ ଏ ନଗରରେ ପ୍ରଥମେ ସଭା

ହୋଇ ଗୋଟିଏ ସଂସ୍କାରିଣୀ ସଭା ଗଠିତ ହେଲା ଏବଂ ତହିଁ ଅଧୀନରେ ପୁରୀଠାରେ ଗୋଟିଏ କାର୍ଯ୍ୟନିର୍ବାହକ ସଭା ହେଲା। ଭେଦାସଂଗ୍ରହ ନିମନ୍ତେ ଭାରତବର୍ଷର ନାନାସ୍ଥାନରେ ଶାଖା ସଭାମାନ ମଧ୍ୟ ସ୍ଥାପିତ ହେଲା। ମୂଳସଭା ଏବଂ ଶାଖାସଭାମାନଙ୍କ ଚେଷ୍ଟା ଓ ଯତ୍ନରେ ବର୍ଣ୍ଣିତ ବର୍ଷମଧ୍ୟରେ ଟ୪୩୩୮୪ଙ୍କା ଭେଦା ସ୍ୱାକ୍ଷରିତ ହୋଇ ତହିଁ ମଧ୍ୟରୁ ଟ୨୧୯୯୦ଙ୍କା ଆଦାୟ ହେଲା କିନ୍ତୁ ଆୟୋଜନରେ ଅନେକ ସମୟ ବାହାରିଯିବାରୁ କେବଳ ଟ୧୪୪୧୬ଙ୍କାର କାର୍ଯ୍ୟ ହେଲା। ଏଛଡ଼ା ଅମଲାଙ୍କ ବେତନ ଟ୧୩୩୯ଙ୍କା ଛାପା ଓ ବିଜ୍ଞାପନ ଖର୍ଚ୍ଚା ଟ୫୪୫ଙ୍କା ଏବଂ ବାଜେ ଖରଚ ଟ୯୩୭ଙ୍କା ଏପରି ମୋଟରେ ଟ୧୭୪୪୬ଙ୍କା ଖରଚ ହୋଇଅଛି ଅମଲାଙ୍କ ମଧ୍ୟରେ ଜଣେ ସରକାରୀ ପେନ୍‌ସନଭୋଗୀ ସୁପରଭାଇଜର ମାସି ଟ୨୦୦ଙ୍କା ବେତନରେ କେବଳ ଇଷ୍ଟମିଟ ପ୍ରସ୍ତୁତ କରିବା ସକାଶେ ନିଯୁକ୍ତ ହୋଇଥିଲେ ଏବଂ ତାହା ଶେଷ ହୁଅନ୍ତେ ତାହାଙ୍କୁ ବିଦାୟ ଦିଆଗଲା। ମୁକରରୀ ଅମଲା ମଧ୍ୟରେ ଟ୧୦୦ଙ୍କାରେ ଜଣେ ସୁପରଭାଇଜର ଟ୨୦ଙ୍କାରେ ଜଣେ ସହକାରୀ ଟ୧୦ଙ୍କାରେ ଜଣେ କରଣ ଏବଂ ଟ୮ଙ୍କାରେ ଜଣେ ଗୋଦାମ ମୋହରର ଏବଂ ଟ୧୦ଙ୍କାରେ ଦୁଇଜଣ ଚପରାସୀ ଅଛନ୍ତି। ଏମାନେ ପୁରୀ କମିଟୀର ଅଧୀନରେ କାର୍ଯ୍ୟ କରନ୍ତି।

ବର୍ଣ୍ଣିତବର୍ଷ ମଧ୍ୟରେ ନୀଳଚକ୍ର, ଗୁରୁବାର ମାର୍ଜନା ମଣ୍ଡପ ଅଚିନ୍ତମଣ୍ଡପ ଏବଂ ଦକ୍ଷିଣଦ୍ୱାର ଝୁଲଣ ଏହି କାର୍ଯ୍ୟମାନ ଶେଷ ହୋଇଥିଲା ଏବଂ ଲକ୍ଷ୍ମୀଙ୍କ ରୋଷଘର ସୂର୍ଯ୍ୟମନ୍ଦିର, ବୈକୁଣ୍ଠ ଶ୍ରୀମନ୍ଦିର ଏବଂ ସିଂହଦ୍ୱାର ଓ ଦକ୍ଷିଣଦ୍ୱାର ଉପରଗୁମୁଟି ଏହିସବୁର କାର୍ଯ୍ୟ ଲାଗିଥିଲା।

ଯେଉଁମାନେ ଟ୧୦ଙ୍କା ବା ତତୋଽଧିକ ଦାନ କରିଅଛନ୍ତି ସେମାନଙ୍କ ନାମ ବର୍ଣ୍ଣମାଳାକ୍ରମେ ରିପୋର୍ଟସଙ୍ଗେ ପ୍ରକାଶିତ ହୋଇ ଅଛି। ତହିଁରୁ ଜଣାଯାଏ ଯେ ଏନଗରବାସୀ ଶ୍ରୀରାଜା ବୈଦ୍ୟନାଥପଣ୍ଡିତ ସର୍ବୋପେକ୍ଷା ଅଧିକ ଅର୍ଥାତ୍ ଟ୫୦୦୦ଙ୍କା ଦେଇଅଛନ୍ତି। ଏହାଙ୍କ ତଳେ କେଉଁଝର ମହାରାଜା ଟ୩୪୦୦ଙ୍କା ଓ ହାତୁଆର ମହାରାଜା ଟ୩୦୦ଙ୍କା ଦେଇ ଅଛନ୍ତି। ଓଡ଼ିଶାର ପ୍ରଧାନ କୀର୍ତ୍ତିରକ୍ଷା ସକାଶେ ଜଣେ ଓଡ଼ିଶାବାସୀ ସର୍ବୋପେକ୍ଷା ଅଧିକ ଦାନ କରି ବଡ଼ଗୌରବର କାର୍ଯ୍ୟ କରିଅଛନ୍ତି ଏବଂ ଏଥିପାଇଁ ଆମ୍ଭେମାନେ ତାହାଙ୍କର ଅଶେଷ ପ୍ରଶଂସା କରୁଅଛୁଁ।

ଶ୍ରୀମନ୍ଦିର ଓ ତହିଁର ବେଢ଼ା ଓ ବେଢ଼ାସ୍ଥିତ ସାନ ବଡ଼ ସମସ୍ତ ମନ୍ଦିରାଦିର ସଂସ୍କାର କାର୍ଯ୍ୟରେ ସର୍ବସୁଦ୍ଧା ୩ ଲକ୍ଷ ୮ ହଜାର ଏକଶତଟଙ୍କା ବ୍ୟୟ ହେବାର ଇଷ୍ଟମିଟ ହୋଇଅଛି ଏବଂ ତହିଁମଧ୍ୟରୁ ଆଜିପର୍ଯ୍ୟନ୍ତ ଅର୍ଥାତ୍ ପ୍ରାୟ ମା୧୨ସରେ କେବଳ ୭୨ ହଜାର ଟଙ୍କା ସଂଗୃହିତ ହୋଇଅଛି ବଡ଼ ଆନନ୍ଦର ବିଷୟ ନୁହଇ। ମାତ୍ର ଆମ୍ଭେମାନେ ଆଶା କରୁଁ କି ବର୍ତ୍ତମାନ ଯେଉଁ ବାର୍ଷିକ ରିପୋର୍ଟ ବାହାରି ଅଛି ତାହା ଦେଖି ସର୍ବସାଧାରଣ ଜାଣିପାରିବେ ଯେ ସଂସ୍କାରଣୀସଭା ଯେଉଁ କାର୍ଯ୍ୟର ଭାର ଗ୍ରହଣ କରିଅଛନ୍ତି ତାହା ଅତ୍ୟନ୍ତ ବ୍ୟୟଶୀଳ ଏବଂ ଏହି ବ୍ୟୟ ନିର୍ବାହାର୍ଥ ଯେ ଯାହା ଦାନ କରିବେ ତାହା ନ୍ୟାଯ୍ୟମତେ କାର୍ଯ୍ୟରେ ଲାଗିବ। ଏହି ଜ୍ଞାନ ଓ ବିଶ୍ୱାସର ବଶବର୍ତ୍ତୀ ହୋଇ ଧର୍ମପରାୟଣ ହିନ୍ଦୁମାନେ ଉପଯୁକ୍ତ ଅର୍ଥ ସାହାଯ୍ୟ କରିବାକୁ ପ୍ରବୃତ୍ତ ହେବେ। ଏଥି

ଉତ୍ତାରୁ ଯେବେ ଅର୍ଥାଭାବରୁ ସଂସ୍କାର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ନ ପାରିବ ତେବେ ଭାରତବର୍ଷର ହିନ୍ଦୁସମାଜ ପ୍ରତି ବଡ଼ ନିନ୍ଦାର ବିଷୟ ହେବ ସନ୍ଦେହ ନାହିଁ। ସଂସ୍କାରିଣୀ ସଭା ଆପଣାର କର୍ତ୍ତବ୍ୟ କାର୍ଯ୍ୟ ସୁନ୍ଦରରୂପେ ନିର୍ବାହ କରି ଧନ୍ୟବାଦର ପାତ୍ର ହୋଇଅଛନ୍ତି। ଆମ୍ଭେମାନେ ସେମାନଙ୍କ ଯତ୍ନ ଓ ଅଧ୍ୟବସାୟ କରୁଁ ଧର୍ମପରାୟଣ ଧନାଢ଼୍ୟ ହିନ୍ଦୁଙ୍କଠାରୁ ସମୁଚିତ ସହାନୁଭୂତି ପାଇବେ।

*ଉତ୍କଳ ଦୀପିକା-୧୮୯୨: ପୃଷ୍ଠା ସଂଖ୍ୟା-୨୩୨*

ପୁରୀମନ୍ଦିର ସଂସ୍କାର ନିମନ୍ତେ ତିନିଲକ୍ଷରୁ ଅଧିକ ଟଙ୍କା ପ୍ରୟୋଜନ ମାତ୍ର ଏପର୍ଯ୍ୟନ୍ତ ଭେଦା ସ୍ୱାକ୍ଷର ଏକଲକ୍ଷରୁ ବିଶେଷ ଅଧିକ ହୋଇ ନାହିଁ ଏବଂ ତହିଁ ମଧ୍ୟରୁ ପ୍ରାୟ ଅଧେ ଉସୁଲ ହେବାକୁ ବାକୀ ଅଛି। ପ୍ରାୟ ଦୁଇବର୍ଷ କାଳ ଅବିଶ୍ରାନ୍ତ ଯତ୍ନ ଓ ଚେଷ୍ଟା କରି ସମସ୍ତ ଭାରତବର୍ଷରୁ ଏତିକି ଟଙ୍କାରୁ ଅଧିକ ନ ଉଠିବା ଅତ୍ୟନ୍ତ ଦୁଃଖର ବିଷୟ ଅଟଇ। ଏଥିରେ ହିନ୍ଦୁମାନଙ୍କପ୍ରତି ଅନ୍ୟ ଧର୍ମାବଲମ୍ବିମାନେ କାହିଁକି ନ ହସିବେ?

*ଉତ୍କଳ ଦୀପିକା-୧୮୯୩: ପୃଷ୍ଠା ସଂଖ୍ୟା-୧୭୩*

ପୁରୀ ବଡ଼ଦେଉଳର ମରାମତୀ ଶେଷ ହୋଇ ତତ୍‌ପାର୍ଶ୍ୱସ୍ଥ ଭୋଗମଣ୍ଡପ ମନ୍ଦିର ଏବଂ ନିଶା ମନ୍ଦିର ପ୍ରଭୃତି ମନ୍ଦିରମାନ ମରାମତୀ ଏବଂ ଚୂନଲାଗୁ ଅଛି। ଶ୍ରୀ ଲକ୍ଷ୍ମୀଦେବୀ ଏବଂ ଶ୍ରୀ ବିମଳାଠାକୁରାଣୀଙ୍କ ମନ୍ଦିର ଜଗମୋହନରେ ସିଂହମଲମଲ ପ୍ରସ୍ତରମାନ ପଡୁଅଛି ଓ ଯେଉଁ ଯେଉଁ ସ୍ଥାନରେ ଏହି ପ୍ରସ୍ତରମାନ ବିଛାହୋଇ ଗଲାଣି ସେ ସ୍ଥାନମାନ ସୁରମ୍ୟ ଏବଂ ବସିବାକୁ ସୁଖପ୍ରଦ ହୋଇ ଅଛି ଏବଂ ଭୋଗମଣ୍ଡପ ମନ୍ଦିରର ଅଭ୍ୟନ୍ତର ମରାମତୀ ହେଉଥିବାରୁ ସମ୍ପ୍ରତି ମହାପ୍ରଭୂ ସିଂହାସନାରୁଢ଼ ହେବା ଦିନଠାରୁ ଆଜକୁ ଦୁଇତିନିଦିନ ହେବ ଭୋଗମଣ୍ଡପ ଭୋଗ ବନ୍ଦ ହୋଇ ଅଛି। କିନ୍ତୁ ଶ୍ରୀ ବିମଳାଠାକୁରାଣୀଙ୍କ ମନ୍ଦିରମଧ୍ୟସ୍ଥ କେତେକ ପାର୍ଶ୍ୱଦେବୀ ଏବଂ କେତେକ ମଣିବିଗ୍ରହ ମୂର୍ତ୍ତିମାନ ମନ୍ଦିର ମରାମତୀ କର୍ମଚାରିମାନେ ନଷ୍ଟକରି ଦେଇ ଚୂନ ଲଗାଇ ଦେବାରୁ ପୁରୀର ଲୋକେ ବଡ଼ ବିରକ୍ତ ଅଛନ୍ତି ଏବଂ ଉକ୍ତ ମନ୍ଦିରମଧ୍ୟରେ ଯେଉଁ ଲିଖିତ କାଳୀମୂର୍ତ୍ତି ଥିଲେ (ଯାହାଙ୍କ ଅଗ୍ରରେ ପୂଜାସମୟରେ ବଳିଦାନାଦି ବିଧି ହୁଏ) ତାହାଙ୍କୁ ନଷ୍ଟକରି ଦେଇ ଚୂନଲଗା ହେଉଅଛି। ଏହେତୁ ବିମଳାଙ୍କ ସେବକମାନେ ରାଣୀଙ୍କଠାରେ ଆପତ୍ତି କରି ବାର ଜଣାଯାଏ।

*ଉତ୍କଳ ଦୀପିକା-୧୮୯୩: ପୃଷ୍ଠା ସଂଖ୍ୟା-୨୭୦*

ମହାଶୟ

ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ଭିତର ପରିକ୍ରମା କୋଇଲି ନାମକ ସ୍ଥାନ ବହୁକାଳରୁ ଅପରିଷ୍କାର ଭାବରେ ପଡ଼ି ରହିଥିଲା। ବର୍ତ୍ତମାନ ବୈଷ୍ଣବ ଦାମୋଦର ରାମାନୁଜ ଦାସ ଭିକ୍ଷାର୍ଥରେ ଏହି ସ୍ଥାନ ପରିଷ୍କାର କରି ଜଗନ୍ନାଥ ମହାପ୍ରଭୁଙ୍କ ପ୍ରକୃତ ସେବା ଉପଯୁକ୍ତ ତୁଳସୀ ଓ ପୁଷ୍ପୋଦ୍ୟାନ ପ୍ରସ୍ତୁତ କରିବାରେ ବ୍ରତୀ ହୋଇ ଅଛନ୍ତି। କିନ୍ତୁ ଜଳ ଅଭାବବଶତଃ ବଗିଚା ରହି ନ ପାରେ। ଏ କାରଣ ସେହି ସ୍ଥାନରେ ଗୋଟିଏ ପ୍ରକାଣ୍ଡ କୂପ ଖନନ କରିବାକୁ

ଆରମ୍ଭ କରିଅଛନ୍ତି। ଏହି ସାହାର୍ଯ୍ୟ ଯେପରି ଚିରସ୍ଥାୟୀ ହେବ ସେପ୍ରତି ସେ ଦୃଢ଼ ପ୍ରତିଜ୍ଞ ହୋଇ ତାଙ୍କର ଜୀବନ ପର୍ଯ୍ୟନ୍ତ ଉତ୍ସର୍ଗ କରିବାକୁ ସାହାସୀ ହୋଇଅଛନ୍ତି।

କୂପ ଖନନ ଖର୍ଚ୍ଚା ବର୍ତ୍ତମାନ ପ୍ରାୟ ୫୦୦୦ ହଜାର ଟଙ୍କାରୁ ଉର୍ଦ୍ଧ୍ୱ ହେବ। ବୈଷ୍ଣବ ମହାରାଜ ଏହି ବହୁ ବ୍ୟୟ ଅସାଧ କାର୍ଯ୍ୟ ଭିକ୍ଷାଦ୍ୱାରା ନିର୍ବାହ କରିବାକୁ ସଂକଳ୍ପ କରି ଅଛନ୍ତି। ଅତଏବ ଏତ ଦେଶୀୟ ସର୍ବସାଧାରଣ ଓ ସର୍ବଧର୍ମପରାୟଣ ମହାତ୍ମାମାନଙ୍କ ନିକଟରେ ପ୍ରାର୍ଥନା ଯେ ସେମାନେ ଏହି ଗୁରୁତର ଧର୍ମକାର୍ଯ୍ୟ ସ୍ଥିତି ସୁଦୃଢ଼ ନିକ୍ଷେପ କରି ଯଥାଶକ୍ତି ସାହାଯ୍ୟ ପ୍ରଦାନ କଲେ ଏହି ଅସାଧ କାର୍ଯ୍ୟ ସହଜରେ କାର୍ଯ୍ୟରେ ପରିଣତ ହୋଇ ଏକ ଅକ୍ଷୟ ଜଳକୀର୍ତ୍ତି ଓ ବଗିଚା ଜଗନ୍ନାଥ ମହାପ୍ରଭୁଙ୍କ ସେବା ପୂଜାରେ ଚିରକାଳ ଲାଗି ରହିବ।

ଯେଉଁ ବ୍ୟକ୍ତିମାନେ ଏଥିରେ ସାହାଯ୍ୟ ପ୍ରଦାନ କରିବେ ସେମାନେ ବୈଷ୍ଣବ ଦାମୋଦର ରାମାନୁଜଦାସଙ୍କ ନାମରେ ଟଙ୍କା ପଠାଇବେ। ନଚେତ ତାହାଙ୍କ ନାମରେ ମନ୍ଦିର ମେନେଜରଙ୍କ ନିକଟକୁ ପ୍ରେରଣ କଲେ ବୈଷ୍ଣବ ମହାରାଜ ଅକ୍ଳେଶରେ ପ୍ରାପ୍ତ ହେବେ। ଆମ୍ଭେମାନେ ଆଶା କରୁଁ କି ବୈଷ୍ଣବ ମହାରାଜଙ୍କର ଏହି ସତ୍କାର୍ଯ୍ୟ ବାସନା ଶ୍ରୀଜଗନ୍ନାଥ ମହାପ୍ରଭୁ ଶୀଘ୍ର ଅକ୍ଷୟ ଭାବରେ ପୂର୍ଣ୍ଣ କରନ୍ତୁ ଏତିକି ତାହାଙ୍କ ନିକଟରେ ବିନୀତ ପ୍ରାର୍ଥନା।

ପୁରୀ ସ୍ୱର୍ଗଦ୍ୱାର

ବଶମ୍ବଦ
ଶ୍ରୀ ମୋହନ ନାୟକ
୨୯/୪/୦୬

*ଉତ୍କଳ ଦୀପିକା-୧୯୦୬: ପୃଷ୍ଠା ସଂଖ୍ୟା-୨୫୧*

# ସନାତନ ଧର୍ମ ସଂରକ୍ଷଣୀ ସଭା

ପୁରୀ ଦେବରାଜାଙ୍କ ହସ୍ତରୁ ଶ୍ରୀଜଗନ୍ନାଥଦେବଙ୍କ ମନ୍ଦିରର ଭାର କାଢ଼ି ନେବାର ଦେବାନୀ ମୋକଦ୍ଦମା ସରକାରଙ୍କ ତରଫରୁ ଦଶହରା କଚେରୀବନ୍ଦ ପୂର୍ବେ ଦାଏର ହେବାର କଥା ଥିଲା କୌଣସି କାରଣରୁ ହୋଇପାରିଲା ନାହିଁ ଅରଜି ଆଦି କାଗଜପତ୍ର ସବୁ ପ୍ରସ୍ତୁତ ଅଛି କଚେରୀ ଫିଟିଲାମାତ୍ରକେ ନାଲଶ ହେବାର କଥା ଏବଂ ତହିଁ ସଙ୍ଗେ ୨ ଆଗାମୀ କୋରକୀର ପ୍ରାର୍ଥନା ହେବ ଏବଂ ଅଦାଲତରୁ ମୋକଦ୍ଦମା ନିଷ୍ପତ୍ତି ହେବାପର୍ଯ୍ୟନ୍ତ ରସିବର ଜଣେ ନିଯୁକ୍ତ ହୋଇ ତାହାଙ୍କଦ୍ୱାରା ମନ୍ଦିରର କାର୍ଯ୍ୟ ଚାଲିବ ଏହିପରି ପ୍ରସ୍ତାବମାନ ହୋଇଅଛି। ଦେବରାଜଙ୍କ ପକ୍ଷରୁ ମୋକଦ୍ଦମା ଲଢ଼ିବାର କି ଉପାୟ ହେଉଅଛି ଆମ୍ଭେମାନେ ଜାଣି ନାହୁଁ । ଶୁଣିବାର ରାଣୀମଣିମା ମୋକଦ୍ଦମା ଆପୋସିରେ ଭାଙ୍ଗିବାର ପ୍ରସ୍ତାବ କରି ଥିଲେ ତହିଁର କିଛି ଉତ୍ତର ପାଇ ନାହାନ୍ତି। ଯାହା ହେଉ ଓଡ଼ିଶ୍ୟାପକ୍ଷରେ ଏ ମୋକଦ୍ଦମାଟୀ ସର୍ବପ୍ରଧାନ ଅଟଇ ଏବଂ ଭାରତବାସିସମସ୍ତ ହିନ୍ଦୁଙ୍କର ଏଥିରେ ଗାଢ଼ ସମ୍ପର୍କଥିବାରୁ ସାଧାରଣ ଚର୍ଚ୍ଚାର ବିଷୟ ହୋଇଅଛି। ଆମ୍ଭେମାନେ

ଆଶାକରୁଁ ଏସମୟରେ ଓଡ଼ିଶ୍ୟାବାସିମାନେ ନିଶ୍ଚିନ୍ତ ନ ହୋଇ ମନ୍ଦିରର ସେବା କାର୍ଯ୍ୟ କିପରି ବନ୍ଦୋବସ୍ତରେ ଚାଲିବାର ଉଚିତ ତର୍କ ବିତର୍କଦ୍ୱାରା ଏକଥା ସ୍ଥିର କରିବାକୁ ମନୋଯୋଗୀ ହେବେ।

*ଉତ୍କଳ ଦୀପିକା-୧୮୮୬: ପୃଷ୍ଠା ସଂଖ୍ୟା-୩୫୫*

# ମନ୍ଦିର ଭାର ମକଦ୍ଦମା

ପୁରୀ ଦେବରାଜାଙ୍କ ହସ୍ତରୁ ଶ୍ରୀଜଗନ୍ନାଥଦେବଙ୍କ ମନ୍ଦିରର ଭାର କାଢ଼ି ନେବାର ଦେବାନୀ ମୋକଦ୍ଦମା ସରକାରଙ୍କ ତରଫରୁ ଦଶହରା କଚେରୀବନ୍ଦ ପୂର୍ବେ ଦାଏର ହେବାର କଥା ଥିଲା କୌଣସି କାରଣରୁ ହୋଇପାରିଲା ନାହିଁ ଅରଜି ଆଦି କାଗଜପତ୍ର ସବୁ ପ୍ରସ୍ତୁତ ଅଛି କଚେରୀ ଫିଟିଲାମାତ୍ରକେ ନାଲଶ ହେବାର କଥା ଏବଂ ତହିଁ ସଙ୍ଗେ ୨ ଆଗାମୀ କୋରକୀର ପ୍ରାର୍ଥନା ହେବ ଏବଂ ଅଦାଲତରୁ ମୋକଦ୍ଦମା ନିଷ୍ପତ୍ତି ହେବାପର୍ଯ୍ୟନ୍ତ ରସିବର ଜଣେ ନିଯୁକ୍ତ ହୋଇ ତାହାଙ୍କଦ୍ୱାରା ମନ୍ଦିରର କାର୍ଯ୍ୟ ଚାଲିବ ଏହିପରି ପ୍ରସ୍ତାବମାନ ହୋଇଅଛି। ଦେବରାଜଙ୍କ ପକ୍ଷରୁ ମୋକଦ୍ଦମା ଲଢ଼ିବାର କି ଉପାୟ ହେଉଅଛି ଆମ୍ଭେମାନେ ଜାଣି ନାହୁଁ । ଶୁଣିବାର ରାଣୀମଣିମା ମୋକଦ୍ଦମା ଆପୋସିରେ ଭାଙ୍ଗିବାର ପ୍ରସ୍ତାବ କରି ଥିଲେ ତହିଁର କିଛି ଉତ୍ତର ପାଇ ନାହାନ୍ତି। ଯାହା ହେଉ ଓଡ଼ିଶ୍ୟାପକ୍ଷରେ ଏ ମୋକଦ୍ଦମାଟୀ ସର୍ବପ୍ରଧାନ ଅଟଇ ଏବଂ ଭାରତବାସିସମସ୍ତ ହିନ୍ଦୁଙ୍କର ଏଥିରେ ଗାଢ଼ ସମ୍ପର୍କଥିବାରୁ ସାଧାରଣ ଚର୍ଚ୍ଚାର ବିଷୟ ହୋଇଅଛି। ଆମ୍ଭେମାନେ ଆଶାକରୁଁ ଏସମୟରେ ଓଡ଼ିଶ୍ୟାବାସିମାନେ ନିଶ୍ଚିନ୍ତ ନ ହୋଇ ମନ୍ଦିରର ସେବା କାର୍ଯ୍ୟ କିପରି ବନ୍ଦୋବସ୍ତରେ ଚାଲିବାର ଉଚିତ ତର୍କ ବିତର୍କଦ୍ୱାରା ଏକଥା ସ୍ଥିର କରିବାକୁ ମନୋଯୋଗୀ ହେବେ।

*ଉତ୍କଳ ଦୀପିକା-୧୮୮୬: ପୃଷ୍ଠା ସଂଖ୍ୟା-୩୫୫*

## ଶ୍ରୀକ୍ଷେତ୍ରର ବଡ଼ ଦେଉଳର ବ୍ୟବସ୍ଥା

ପୁରୀର ଶ୍ରୀ ଜଗନ୍ନାଥଙ୍କ ସେବାକାର୍ଯ୍ୟ ନିର୍ବାହସମ୍ପର୍କରେ ଉତ୍ତମ ବନ୍ଦୋବସ୍ତ କରିବା ନିମିତ୍ତ ଗବର୍ଣ୍ଣମେଣ୍ଟରୁ ଯେଉଁ ଦେବାନୀ ମୋକଦ୍ଦମା ଦାଏର ହେବାର କଥା ହେଉଅଛି ତାହା ପାଠକମାନେ ଉତ୍ତମରୂପେ ଜାଣନ୍ତି। ଓଡ଼ିଶାର ଯାହା କିଛି ଗୌରବ ଏକା ଜଗନ୍ନାଥଙ୍କ ହେତୁରୁ ନତୁବା ଏ ଦେଶକୁ ଭାରତବର୍ଷର ସକଳ ସ୍ଥାନରୁ ଅସଂଖ୍ୟ ଯାତ୍ରି ଆସିବାର ଦୂରେ ଥାଉ ଏହାର ନାମ ସୁଦ୍ଧା ବର୍ତ୍ତମାନ କେହି ଧରନ୍ତେ ନାହି। ଜଗନ୍ନାଥଙ୍କ ସେବା ଯେତେଦିନ ଜାଗ୍ରତ ରହିଥିବ ତେତେଦିନ ଓଡ଼ିଶାର ଟେକ ରହିଥିବ। ଅତଏବ ଏହି ସେବାକାର୍ଯ୍ୟରେ ଓଡ଼ିଶାବାସି ସମସ୍ତଙ୍କ ଘନିଷ୍ଟ ସମ୍ବନ୍ଧ ରହିଅଛି ଏବଂ ଗବର୍ଣ୍ଣମେଣ୍ଟ ସେହି ସେବାର ସୁବନ୍ଦୋବସ୍ତ ପ୍ରତି ଦୃଷ୍ଟି ରଖିଅଛନ୍ତି ଅବଶ୍ୟ ସୁଖର ବିଷୟ ବୋଲିବାକୁ ହେବ ମାତ୍ର ଦେଖାଯାଏ ଯେ ଆମ୍ଭମାନଙ୍କ ଶାସନକର୍ତ୍ତାମାନେ ବିଦେଶୀୟ ଏବଂ ଭିନ୍ନ ଧର୍ମ୍ମାବଲମ୍ବୀ ଏବଂ ସେମାନଙ୍କ ଚକ୍ଷୁ ସ୍ୱରୂପ ପ୍ରଧାନ ସ୍ଥାନୀୟ କର୍ମଚାରିମାନେ ତଦ୍ରୂପ ଥିବାରୁ ଆମ୍ଭେମାନଙ୍କର ପ୍ରକୃତ ଭାବ ଅବସ୍ଥା ଓ ପ୍ରୟୋଜନ

ବୁଝି ସୁବ୍ୟବସ୍ଥା କରିବାକୁ ସର୍ବଦା ସକ୍ଷମ ହୁଅନ୍ତି ନାହି। ଏଥିପାଇଁ କୌଣସି ନୂତନ କାର୍ଯ୍ୟରେ ଗବର୍ଣ୍ଣମେଣ୍ଟ ପ୍ରବୃତ୍ତ ହେଲେ ଦେଶୀୟ ଲୋକଙ୍କର ସତ୍‌ପରାମର୍ଶ ଦେବାର ଉଚିତ ଏବଂ ଏହିକାରଣରୁ ମନ୍ଦିରସମ୍ପର୍କୀୟ ମୋକଦ୍ଦମାର ପ୍ରସ୍ତାବକୁ ବିଚାର କରି ମତାମତ ପ୍ରକାଶ କରିବା କାରଣ ଅନେକଦିନରୁ ଆମ୍ଭେମାନେ ଅନ୍ତଦେଶୀୟଙ୍କୁ ଅନୁରୋଧ କରି ଆସିଥିଲୁ। ବଡ଼ ସୁଖର ବିଷୟ ଯେ ସମ୍ପ୍ରତି ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେଲା। ଗତ ରବିବାର ଅପରାହ୍ନ ଘ୪ଣ୍ଟା ସମୟରେ ଉତ୍କଳସଭାର ଏକ ଅଧିବେଶନ ଏହି ଉପଲକ୍ଷରେ ହୋଇଥିଲା ଏବଂ କେବଳ ଏକଦିନ ପୂର୍ବରୁ ବିଜ୍ଞାପନ ଦିଆଯାଇଥିଲେ ହେଁ ଶତାଧିକ ଲୋକ ଏକତ୍ରିତ ହୋଇ ସଭାର ସ୍ଥାନ ଛାପାଖାନାଗୃହକୁ ପୂର୍ଣ୍ଣକରିଥିଲେ। ଏନଗରରେ ଏତେଲୋକ କ୍ଷଣକାଳରେ ବିଜ୍ଞାପନରେ କୌଣସି ସଭାରେ ଉପସ୍ଥିତ ହେବା ବଡ଼ ସାଧାରଣ ନୁହଇ। ଉତ୍କଳସଭାର ସଭାପତି ଚୌଧୁରୀ କାଶୀନାଥ ଦାସ ସଭାର ଉଦ୍ଦେଶ୍ୟ ବୁଝାଇ ଦେଇ କାର୍ଯ୍ୟାରମ୍ଭ କଲାରୁ ଯେ ସମସ୍ତ ପ୍ରସ୍ତାବ ଯାହାଦ୍ୱାରା ଉପସ୍ଥିତ ଓ ଅନୁମୋଦିତ ହୋଇ ଯେପରି ଧାର୍ଯ୍ୟ ହେଲା ସ୍ଥାନାନ୍ତରେ ତାହା ପ୍ରକାଶିତ ହୋଇଅଛି। ପାଠକମାନେ ତହିଁରୁ ସମସ୍ତ ବିଷୟ ଜାଣିପାରିବେ। ସଭାର କାର୍ଯ୍ୟ ବଡ଼ ସୁନ୍ଦରରୂପେ ଏବଂ ବିନା ଆଡ଼ମ୍ବରରେ ନିର୍ବାହିତ ହେଲା ଏବଂ ସମସ୍ତ ପ୍ରସ୍ତାବ ଏକ ବାକ୍ୟରେ ଧାର୍ଯ୍ୟ ହେବାରୁ ଅନାୟାସରେ ବୋଲାଯାଇ ପାରେ ଯେ ସେ ସବୁ ବିଷୟରେ ଦ୍ୱିମତ ନାହି। କେବଳ ପ୍ରଥମପ୍ରସ୍ତାବ ଅନୁମୋଦନ କରିବା ସମୟରେ ବାବୁ ରାମଶଙ୍କର ରାୟ କ୍ଷୁଦ୍ର ବକ୍ତୃତାଟିଏ କରିଥିଲେ ଆଉ ବକ୍ତୃତାର ପ୍ରୟୋଜନ ହୋଇ ନାହି। ବାସ୍ତବରେ ଯାହା ଓଡ଼ିଶାବାସି କାହାରିକି ଅବିଦିତ ନାହି ତାହା ଦୀର୍ଘବକ୍ତୃତାଦ୍ୱାରା ବୁଝାଇବାର ପ୍ରୟୋଜନ କାହିଁକି ହେବ? ଗବର୍ଣ୍ଣମେଣ୍ଟ କି କାରଣରୁ ଆମ୍ଭେମାନେ କହି ନ ପାରୁଁ ମନେ କରିଅଛନ୍ତି ଯେ ମନ୍ଦିରର ସେବାରେ ଭାରୀ ବିଶୃଙ୍ଖଳା ଘଟିଅଛି। ମାତ୍ର ଯେଉଁ ସେବା ବାହୁଲ୍ୟ ନିୟମାବଳୀଦ୍ୱାରା ବିଧିବଦ୍ଧ ହୋଇ ଅତି ପ୍ରାଚୀନକାଳରୁ ଏକଧାରାରେ ଚାଲି ଆସୁଅଛି ଏବଂ ଭିନ୍ନ୨ କାର୍ଯ୍ୟ ସକାଶେ ଭିନ୍ନ୨ ଲୋକ ନିଯୁକ୍ତ ହୋଇ ପୁରୁଷାନୁକ୍ରମେ କରି ଆସୁଅଛନ୍ତି ତହିଁରେ ଗୁରୁତର ବିଶୃଙ୍ଖଳା ଘଟିବା ଅସମ୍ଭବ। ଅବଶ୍ୟ ଏ କଥା ଆମ୍ଭେମାନେ ସ୍ୱୀକାର କରୁଁ ଯେ ବେଳେ୨ ତତ୍ତ୍ୱାବଧାରଣ ଶିଥିଳତା ଯୋଗୁଁ ନୀତିବିଶେଷରେ ନ୍ୟୂନାଧିକ ବିଳମ୍ବ ଘଟଇ ମାତ୍ର ତହିଁ ସଙ୍ଗେ ଏ କଥା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଅତି ସୁନିର୍ବାହିତ ବ୍ୟାପାରରେ ବେଳେ୨ ଏପରି ହେବା ଆଶ୍ଚର୍ଯ୍ୟ ନୁହଇ ଓ ଲକ୍ଷିତ ହେଉଅଛି। ଅତଏବ ପୁରୀର ରାଜବଂଶୀୟଙ୍କଦ୍ୱାରା ମନ୍ଦିରର କାର୍ଯ୍ୟ ଏତେକାଳ ସୁନ୍ଦରରୂପେ ନିର୍ବାହିତ ହୋଇ ଆସିଥିବା ପ୍ରତ୍ୟକ୍ଷେ ଏଣିକି ସେପରି ହୋଇ ପାରିବ ନାହିଁ ଓ ସେମାନଙ୍କ ହସ୍ତରୁ ଉକ୍ତ ଭାର କାଢ଼ି ନେବାକୁ ହେବ ଏପରି ବିଚାର କାହାରି ମନକୁ ଆସିବ ନାହି। ପକ୍ଷାନ୍ତରେ କମିଟି ଅଧୀନରେ ଥିବା ଅନ୍ୟାନ୍ୟ ଦେବାଳୟର ଯେପରି ଅବସ୍ଥା ଦେଖାଯାଏ ତାହା ସୁଖକର ନୁହଇ। ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କୁ ଏକାନ୍ତ ଅନୁରୋଧ କରୁ ଅଛୁଁ ଯେ ମନ୍ଦିରର ଭାର ପୁରୀରାଜାଙ୍କଠାରୁ କାଢ଼ି ନେବାର କଳ୍ପନା ପରିତ୍ୟାଗ ପୂର୍ବକ ତାହାଙ୍କଦ୍ୱାରା ବାଞ୍ଛିତ ସୁବନ୍ଦୋବସ୍ତମାନ କରାଇ ନେବାର ଚେଷ୍ଟା କରନ୍ତୁ ତାହା ହେଲେ ଉତ୍ତମ ହେବ। କେବଳ

ଜଗନ୍ନାଥଙ୍କୁ ଘେନି ପୁରୀ ରାଜାଙ୍କ ମର୍ଯ୍ୟାଦା ସୁତରାଂ ତାହାଙ୍କଠାରୁ ବଳି କରି କେହି ସେବା ରକ୍ଷା କରିବାକୁ ଯତ୍ନବାନ୍ ହେବେ ନାହି। ସ୍ଥାନୀୟ ହାକିମମାନଙ୍କ ପରାମର୍ଶ ଘେନି ରାଜା ସମସ୍ତ ବିଷୟରେ ସନ୍ତୋଷଜନକ ବନ୍ଦୋବସ୍ତ କରିପାରନ୍ତି ଯେମନ୍ତେ କି ବାବୁ ରାମପ୍ରସାଦସିଂହଙ୍କୁ ଦେବାନୀପଦରେ ରଖି କେତେ ବର୍ଷ ମନ୍ଦିରର କାର୍ଯ୍ୟ ଅତିସୁନ୍ଦରରୂପେ ନିର୍ବାହିତ ହୋଇଥିଲା।

*ଉତ୍କଳ ଦୀପିକା-୧୮୮୬: ପୃଷ୍ଠା ସଂଖ୍ୟା-୪୨୧*

## ପୁରୀ ବଡ଼ଦେଉଳର ମୋକଦ୍ଦମା

ପୁରୀ ବଡ଼ଦେଉଳର ଭାର ସେଠା ରାଜାଙ୍କ ହାତରୁ କାଢ଼ି ନେବାକାରଣ ଗବର୍ଣ୍ଣମେଣ୍ଟ ଯେଉଁ ମୋକଦ୍ଦମା ଦାଏର କରିବେ ବେଲି କେତେ କାଳରୁ ଶୁଣା ଯାଉଥିଲା ଗତ ବୁଧବାର ତାହା ଦାଏର ହେଲା। ପୁରୀର କଲେକ୍ଟର ସାଭେଜ ସାହେବ ସ୍ୱୟଂ ଏଠାକୁ ଆସି ଅଦାଲତରେ ଉପସ୍ଥିତ ହୋଇ ଅରଜି ଦାଖଲ କଲେ ଏବଂ ତହିଁସଙ୍ଗେ ଆଗାମୀ କୋରକୀର ଦରଖାସ୍ତ ଓ ଆଫିଡ଼େବିଟ ଏହି ମର୍ମରେ କଲେ କି ମନ୍ଦିରରେ ରଖାଯାଇଥିବା ଶ୍ରୀ ଜଗନ୍ନାଥଙ୍କର ବହୁମୂଲ୍ୟ ପଦାର୍ଥମାନ ଏବଂ ମନ୍ଦିରର ଆୟ ପୁରୀରାଜବଂଶୀୟ ତତ୍ତ୍ୱାବଧାରକମାନେ ଆତ୍ମସାତ୍ କରି ଅଛନ୍ତି ଏବଂ ଏ ମୋକଦ୍ଦମା ଦାଏର ହେବା କଥା ଶୁଣିଲେ ଆହୁରି ଅନେକ ଦ୍ରବ୍ୟ ଆତ୍ମସାତ୍ ବା ଗୋପନ କରିବାର ସମ୍ଭାବନା। ଅତଏବ ମନ୍ଦିରର ସବୁ ମାଲ କୋରକ କରି ତହିଁମଧ୍ୟରୁ ସେବା ସଂକ୍ରାନ୍ତ ନିତ୍ୟ ପ୍ରୟୋଜନୀୟ ଦ୍ରବ୍ୟମାନ ଯେଉଁମାନ କାରବାର କରନ୍ତି ସେମାନଙ୍କ ଜିମା ରଖାଯିବା ଓ ଅପର ଦ୍ରବ୍ୟମାନ ମୋକଦ୍ଦମା ନିଷ୍ପତ୍ତି ପର୍ଯ୍ୟନ୍ତ ସେବା ଚଳାଇବା କାରଣ ରିସିଭର ନିଯୁକ୍ତ କରି ସେହି ରିସିଭରଙ୍କ ଜିମା ରଖିବାର ପ୍ରାର୍ଥନା କଲେ ଓ ସେହି ପ୍ରାର୍ଥନାମାନ ମଞ୍ଜୁର ହେଲା। କଲେକ୍ଟର ସାହେବଙ୍କ ସୁପାରସ ମତେ ଏମାରମଠର ମହନ୍ତଙ୍କ ଚେଲା ଶ୍ରୀ ରଘୁନନ୍ଦନ ଦାସ ରିସିଭର ବାବୁ ନଦୀୟାଚାନ୍ଦ ଦତ୍ତ ସହକାରୀ ରିସିଭର ଓ ବାବୁ ରାମପ୍ରସାଦ ସିଂହ ତହସିଲଦାର ନିଯୁକ୍ତ ହେଲେ। ରିସିଭର ବିନା ବେତନରେ କାର୍ଯ୍ୟ କରିବେ ସରକାରୀ ରିସିଭରଙ୍କ ମାସକୁ ଟ୧୫୦ଙ୍କା ଏବଂ ତହସିଲଦାରଙ୍କର ମାସକୁ ୧୦୦ଙ୍କା ଲେଖାଏଁ ବେତନ ଧାର୍ଯ୍ୟ ହୋଇଛି। ଏଛଡ଼ା ଜଣେ ସରକାରୀ ତହସିଲଦାର ଟ୫୦ଙ୍କାରେ ଏକଜଣ ଇଂରାଜ କେରାନୀ ଟ୩୦ଙ୍କାରେ ଏବଂ ଦୁଇଜଣ ଓଡ଼ିୟା ଅମଲା ଜଣକେ ଟ୨୦ଙ୍କା ଲେଖାଏ ବେତନରେ ନିଯୁକ୍ତ ହେବେ ଏବଂ ଏ କର୍ମଚାରିମାନଙ୍କୁ ରିସିଭର ଏବଂ ତାହାଙ୍କ ସହକାରୀ ନିଯୁକ୍ତ କରିବେ। ମାଲସବୁ କୋରକ କରି ରିସିଭର ଓ ଅନ୍ୟବ୍ୟକ୍ତିଙ୍କ ଜିମାରେ ରଖାଇ ଦେବା କାରଣ ଅଦାଲତର ନାଜର ସେଠାକୁ ପ୍ରେରିତ ହେବେ। ଏହିପରି ମୋକଦ୍ଦମା ଆରମ୍ଭ ହେଲା ଏବଂ ଏଥିର ଶେଷଫଳ ଯାହା ହେଉ ଆରମ୍ଭ ସଙ୍ଗେ୨ ପୁରୀ ରାଜାଙ୍କର ଅନର୍ଥକ ଅପମାନରେ ଆମ୍ଭେମାନେ ଏପ୍ରଦେଶୀୟ ସର୍ବ ସାଧାରଣଙ୍କ ସହିତ ଅତ୍ୟନ୍ତ ଦୁଃଖିତ ହେଲୁଁ। ପୁରୀ ରାଜାମାନେ ଜଗନ୍ନାଥଙ୍କ ମାଲ ଆତ୍ମସାତ୍ କରି ଅଛନ୍ତି କି ନାହିଁ ପ୍ରମାଣର ବିଷୟ ଅଟଇ। ସମ୍ଭବତଃ ଗବର୍ଣ୍ଣମେଣ୍ଟ ସେପରି କିଛି ପ୍ରମାଣ ପାଇଥିବେ କିନ୍ତୁ ତାହା ହେଲେ ସୁଦ୍ଧା ଆଜି ମୋକଦ୍ଦମା ଦାୟର ହେଲା ବୋଲି ବର୍ତ୍ତମାନର ରାଜା ଅଥବା ତାହାଙ୍କ ଅଭିଭାବକ ମନ୍ଦିରର ଦ୍ରବ୍ୟମାନ ଘେନି ପଳାଇ ଯିବେ ଓ କୌଣସିମତେ ତାହାଙ୍କଠାରୁ

ସେସବୁ ପୁନଃ ପ୍ରାପ୍ତି ହେବ ନାହିଁ ଏପରି ଆଶଙ୍କା କରି ଗବର୍ଣ୍ଣମେଣ୍ଟ ଯାହା ଆଗାମୀ କୋରକୀ ଓ ରିସିଭର ନିଯୁକ୍ତ କରିବାର ପ୍ରାର୍ଥନା କଲେ ବଡ଼ ଦୁଃଖର ବିଷୟ ଅଟଇ ଏବଂ ଏଥିରେ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ କିଛିମାତ୍ର ମହତ୍ତ୍ୱ ପଣିୟା ଦେଖାଗଲା ନାହିଁ। ପୁରୀର ରାଜା ଓଡ଼ିଶାର ଅତି ପ୍ରାଚୀନ ଓ କୀର୍ତ୍ତିମାନ୍ ସମ୍ଭ୍ରାନ୍ତବଂଶୋଭବ ବ୍ୟକ୍ତି। ତାହାଙ୍କର ନିଜର ବିଷୟସମ୍ପତ୍ତି ଅଛି ଓ ଶ୍ରୀ ଜଗନ୍ନାଥଙ୍କୁ ଅବଧି ଆପଣା ଇଷ୍ଟଦେବତା ବୋଲି ଜ୍ଞାନ କରି ଆସୁଥିବାରୁ ତାହାଙ୍କ ସେବାରେ ତାହାଙ୍କର ଯଥେଷ୍ଟ ମମତା ଅଛି। ଏମନ୍ତ ରାଜା ଆଜି ମୋକଦ୍ଦମା ହେଲା ବୋଲି କେବଳ ଅର୍ଥଲୋଭରେ ଆପଣା କୁଳମର୍ଯ୍ୟାଦା ଓ ଇଷ୍ଟଦେବତାଙ୍କ ସେବାରେ ଜଳାଞ୍ଜଳି ଦେଇ ଇତର ଲୋକଙ୍କ ପରି କାର୍ଯ୍ୟ କରିବେ ଏକଥା କିଏ ବିଶ୍ୱାସ କରିବ? ଗବର୍ଣ୍ଣମେଣ୍ଟ ଯେବେ ନିତାନ୍ତସନ୍ଦିହାନ ହେଲେ ତେବେ ରାଜାଙ୍କଠାରୁ ଜାମିନ ନେଇ ମୋକଦ୍ଦମା ନିଷ୍ପତ୍ତି ପର୍ଯ୍ୟନ୍ତ ତାହାଙ୍କୁ ହାତରେ ସବୁ ଭାର ରଖିବାର ପ୍ରାର୍ଥନା ଅଦାଲତରେ କରି ଥାନ୍ତେ ଓ ତହିଁରେ କାହାରି ଏତାଦୃଶ ମନସ୍ତାପ ହୁଅନ୍ତା ନାହିଁ। ଗବର୍ଣ୍ଣମେଣ୍ଟ ଯାହାକୁ ରିସିଭର ମନୋନୀତ କରି ଅଛନ୍ତି ସେ ଅବଶ୍ୟ ଉପଯୁକ୍ତ ଲୋକ କିନ୍ତୁ ରାଜାଙ୍କଠାରୁ କେଉଁ ଅଂଶରେ ଅଧିକ ହେଲେ ଯେ ତାହାଙ୍କୁ ଅଗ୍ରଗଣ୍ୟ କରାଗଲା ଏକା ଆମ୍ଭେମାନେ ବୁଝି ପାରିଲୁ ନାହିଁ।

*ଉତ୍କଳ ଦୀପିକା-୧୮୮୬: ପୃଷ୍ଠା ସଂଖ୍ୟା-୪୨୯*

ପୁରୁଷୋତ୍ତମକ୍ଷେତ୍ରସ୍ଥିତ ଶ୍ରୀଜିଉଙ୍କ ମନ୍ଦିରସମ୍ବନ୍ଧୀୟ ମୋକଦ୍ଦମା ସମ୍ପର୍କରେ ଏସପ୍ତାହରେ ସମ୍ବାଦ ଆସିଅଛି କି ଚଳିତ ମାସ ତା୪ରିଖ ସକାଳଧୂପ ସରିଲା ପରେ ସାହାଣମେଲା ହେବା ସମୟରେ ସରକାରୀ କନେଷ୍ଟବଲ ଓ ହେଡକନେଷ୍ଟବଲ ଦରେସ (Uniform) ସହିତ ଶ୍ରୀଜିଉଙ୍କ ରତ୍ନସିଂହାସନକୁ ଆଉଜି ଠିଆ ହୋଇ ପିଣ୍ଡିକା ଟଙ୍କା କୋରକ କରିବାକୁ ଉଦ୍ୟତ ହୋଇଥିଲେ। ସୁତରାଂ ଦେଉଳ ମାରୁ ହେବାରୁ ତଦ୍ଦଣ୍ଡରେ ଶ୍ରୀଜୀଉଙ୍କର ମହାସ୍ନାନ ହେଲା। ଏବଂ ପିଣ୍ଡିକା ଟଙ୍କା ପ୍ରଚଳିତ ଦସ୍ତୁର ଅନୁଯାୟୀ ଯାହା ଯେ ଅଂଶ ତାହା କେହି ନ ପାଇ ଠାକୁରରାଜାଙ୍କ କୋଠଭୋଗ ନିମିତ୍ତ ସୁଦ୍ଧା ଦିଆ ନ ଯାଇ ଭଣ୍ଡାରରେ ଜମା ହେଲା। ଏପରି ଘଟନା ଦେଖି ହିନ୍ଦୁମାନେ ମହାଦୁଃଖିତ ହୋଇଅଛନ୍ତି ବୋଲିବା ବାହୁଲ୍ୟ ଏବଂ କହୁ ଅଛନ୍ତି କି ହିନ୍ଦୁମାନେ ଆଜି କନେଷ୍ଟବଲ ଦରେସ ପିନ୍ଧି ଜଗନ୍ନାଥଦେବଙ୍କ ଅପବିତ୍ର କଲେ କାଲି ଗୋରାହାକିମ ଦେଉଳକୁ ଯିବାକୁ କେତେଦୂର? ମୋକଦ୍ଦମା ଦାଏର ହୋଇ ଅଛି ଆଇନମତେ ବିଚାର ହେବ। ଏତେ ଲଣ୍ଡଭଣ୍ଡ ହୋଇ କାର୍ଯ୍ୟ କରିବା ଏବଂ ତଦ୍ଦ୍ୱାରା ଲୋକଙ୍କ ଧର୍ମବିଶ୍ୱାସରେ ଆଘାତ ଦେବାର ପ୍ରୟୋଜନ କିସ? ଆମ୍ଭେ ବୁଝିପାରୁ ନାହୁଁ।

*ଉତ୍କଳ ଦୀପିକା-୧୮୮୭: ପୃଷ୍ଠା ସଂଖ୍ୟା-୧୨*

## ହିନ୍ଦୁ ସଭାର ବିବରଣ

ପୁରୀ ଶ୍ରୀଜଗନ୍ନାଥଦେବଙ୍କ ମନ୍ଦିର ମକଦ୍ଦମା ଓ ମନ୍ଦିର ସମ୍ପତ୍ତିମାନ ଆଗାମୀ କୋରକୀ ହୋଇଥିବାରୁ ଜନସମ୍ପର୍କରେ ହିନ୍ଦୁମାନଙ୍କ କର୍ତ୍ତବ୍ୟାକର୍ତ୍ତବ୍ୟ ବିବେଚନା କରିବା ଅଭିପ୍ରାୟରେ

ଗତ ରବିବାର ଅପରାହ୍ନ ଦୁଇ ବାଜିବା ସମୟରେ କ୍ଷଣେ ଶ୍ରୀଜିଉମନ୍ଦିରରେ ଶ୍ରୀଜିଉ...... ଭକ୍ତ ପ୍ରଦାୟନୀସଭାର ଅହ୍ୱାନମତେ ଏ......ହେତୁ ସଭା ହୋଇଥିଲା। ଏ ସଭାରେ ............ ଶ୍ରେଣୀରୁ ପ୍ରାୟ ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ହିନ୍ଦୁ ଭଦ୍ରଲୋକମାନେ ଉପସ୍ଥିତ ହୋଇଥିଲେ। ପ୍ରଥମତଃ ଶ୍ରୀବାବୁ ଦ୍ୱାରିକାନାଥ ଆଚାର୍ଯ୍ୟ ମକ୍ତାର ସଭାକୁ ଆ............ ଶ୍ରୀ ବାବୁ ଯୋଗେଶ୍ୱର ଚନ୍ଦ୍ର ଉକୀଲ ସଭାପତି ଆସନ ଗ୍ରହଣ ପ୍ରସ୍ତାବ କରିବାରୁ ତାହା ଏହ.................. ପଣ୍ଡିତଙ୍କଦ୍ୱାରା ଅନୁମୋଦିତ ହେବାରୁ ଯୋଗେଶ୍ୱର ବାବୁ ସଭାପତି ଆସନଗ୍ରହଣକରି ସଭ୍ୟମାନଙ୍କୁ ସଭାର ଉଦ୍ଦେଶ୍ୟ .......... ଦେଲେ। ତତ୍‌ପରେ ନିମ୍ନଲିଖିତ ପ୍ରସ୍ତାବମାନ ପାର୍ଶ୍ୱଲିଖିତ ଭଦ୍ରଲୋକମାନଙ୍କ ଦ୍ୱାରା ପର୍ଯ୍ୟାୟକ୍ରମେ ପଠିତ ଓ ଅନୁମୋଦିତ ହେଲା ପ୍ରଥମ ପ୍ରସ୍ତାବ - ହିନ୍ଦୁଶାସ୍ତ୍ରାନୁସାରେ ଶ୍ରୀଠାକୁରାଣି ସ୍ୱୟଂ ଉପସ୍ଥିତ ନ ଥିଲେ ଶ୍ରୀ ଶ୍ରୀଜଗନ୍ନାଥ................ ଅନେକ ଅହିକାଦି ଧର୍ମ କର୍ମ ଓ ପୂଜନାଦି ସମ୍ପନ୍ନ ହୋଇ ପାରେ ନାହିଁ ଅତଏବ ରାଜାଙ୍କୁ ଦେଉଳର ସୁପରିନ୍‌ଟେଣ୍ଡେଣ୍ଟ କର୍ମରୁ ...... ବୁଲିବା ହିନ୍ଦୁମାନଙ୍କ ଇଚ୍ଛାବିରୁଦ୍ଧ ଏବଂ ସେମାନଙ୍କ ଧର୍ମ ଓ ବିଶ୍ୱାସପ୍ରତି କଠୋର ............ ............ କାରଣ ଶ୍ରୀଠାକୁରରାଜାଙ୍କୁ .......... ବିଷ୍ଣୁ ............... ସମସ୍ତ ହିନ୍ଦୁମାନେ ପୃଥି....................... ଅଧିକ ମାନ୍ୟ

x x x x x x x x x x x x x x ତ୍ରିକାଳଂ କାରୟେତ୍ ଦୂରେଃ ......... ବିନା କଶ୍ଚିତ ବିଶେତ୍ .................. ବନ୍ଦୋନାନ୍ତେ ଚ ରାଜା ପୁଷ୍ପାଞ୍ଜଳିତ୍ରୟଂ। ପ୍ରକ୍ଷିପେ ଦଡିଭକ୍ତ୍ୟା ଚ ତତଃ କର୍ପୂରବର୍ତ୍ତଭିଃ। ନିରାୟେ ଛାମରାଣାଂ ବ୍ୟଜନସ୍ୟ ଚ ଚାଳନଂ। କୃତ୍ୱାନବ୍ୟାଂଶୁକଯୁଗଂ ଧୃତ୍ୱା ଭୁବି ନମୋନ୍ନୃପଃ। ତତୋ ଲକ୍ଷ୍ମୀଂନିଜସ୍ଥାନେ ସ୍ଥାପୟେ ନୃପସତ୍ତମ। ଶ୍ୱେତଛତ୍ର ବହିଷ୍କୃର୍ଯାଉତୋ ଦେବସ୍ୟଚାଗ୍ରତଃ। ତଚ୍ଛାରୁଚନ୍ଦନଂ ରମ୍ୟାମାଲ୍ୟ ବସ୍ତ୍ରଂ ନୃପଃ ସ୍ୱୟଂ। ଗୃହ୍ନିୟା ଭକ୍ତିଯକ୍ତୋଽପି କୃତାର୍ଥୋଽହମିତ ବୃବନ୍। ତତୋଭବାନ୍ ଦେବତାନାଂ ଜିସୃଣାଂ ପୁରତଃସ୍ଥିତଃ ପୃଥକ୍ ପୁଷ୍ପାଞ୍ଜଳିଂ ଦତ୍ତ୍ୱା ଭକ୍ତ୍ୟା ପରମୟା ନମେତ୍। ଚନ୍ଦ୍ରାତପସମାକୀର୍ଣ୍ଣେ ତୁଳିକାଛାଦିତେ ପଥି। ରାଜମାନେଽପି ଦେବେଶଂ ଭବାନ୍ ପସାପୟେତ୍ ସର୍ନୈଃ। ଇତ୍ୟାଦି ଧର୍ମା ହାନିସମ୍ବନ୍ଧେ - ଯଥ; ଯବନୀୟକଥା ତତ୍ତ ଜାୟତେ ଦୈବଯୋଗତଃ। ଅସୁଭାଷା ଯଦା ଜାତା ନୈବେଦ୍ୟନିକଟେ ତଦା। ତନ୍ନୈବେଦ୍ୟଂ ବହିଷ୍କୃତ୍ୟ ଦୀର୍ଘଖାତେ ନିପାତୟେତ୍।

ବାବୁ ଦ୍ୱାରକାନାଥ ଆଚାର୍ଯ୍ୟ ଏ ପ୍ରସ୍ତାବ ଅନୁମୋଦନ କରିବାକୁ ଦଣ୍ଡାୟମାନ ହୋଇ କହିଲେ କି ଶ୍ରୀ ଜଗନ୍ନାଥଦେବ ଆମ୍ଭମାନଙ୍କର ଇଷ୍ଟଦେବତା, ଆମ୍ଭେମାନେ ତାହାଙ୍କର ନିର୍ମାଲ୍ୟ ନ ପାଇଲେ ଜଳ ଗ୍ରହଣ କରୁ ନାହିଁ ତାହାଙ୍କର ନାମ ସ୍ମରଣ ନ କଲେ ଆମ୍ଭେମାନେ ଘରୁ ବାହାରୁ ନାହିଁ, ଭାରତବର୍ଷ ମଧ୍ୟରେ ଯେତେ ତିର୍ଥସ୍ଥାନ ଅଛି ସବୁ ଦର୍ଶନ କରି ପୁରୁଷୋତ୍ତମ ଦର୍ଶନ ନ କଲେ ତୀର୍ଥପର୍ଯ୍ୟଟନର ସମ୍ପୂର୍ଣ୍ଣ ଫଳଲାଭ ହୁଏ ନାହିଁ। ପଣ୍ଡିତବର ଶ୍ରୀ ନନ୍ଦଶତପଥି ମହାଶୟ ନିଳାଦ୍ରିମହୋଦୟରୁ ଯେଉଁ ବାକ୍ୟଚୟ ଉଦ୍ଧୃତ କରି ଆପଣମାନଙ୍କୁ ଅର୍ଥ କରି ବୁଝାଇ ଦେଲେ ତହିଁରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ ଆମ୍ଭମାନଙ୍କର ଇଷ୍ଟଦେବତା ଶ୍ରୀ ଜଗନ୍ନାଥ ଦେବଙ୍କର ପୂଜା ଠାକୁରରାଜାଙ୍କ ଭିନ୍ନ ଚଳି ନ ପାରେ। ବର୍ତ୍ତମାନ ରାଜାଙ୍କୁ ସୁପରିଣ୍ଟେଣ୍ଡଣ୍ଟ ପଦରୁ ଚ୍ୟୁତ

କଲେ ଶ୍ରୀ ଜଗନ୍ନାଥଙ୍କର ପୂଜାକାର୍ଯ୍ୟ କିପରି ନିର୍ବାହ ହେବ? ଶ୍ରୀ ଠାକୁରରାଜାଙ୍କ ଅଭାବରେ ଶ୍ରୀ ଜଗନ୍ନାଥଙ୍କର ପୂଜା ଅଙ୍ଗହୀନ ହେବ ଏହା ଆମ୍ଭମାନଙ୍କର ଚିରପ୍ରଚଳିତ ପ୍ରଥାଅଛି ଯେ ଜଗନ୍ନାଥଙ୍କୁ ଦର୍ଶନ କରି ଶ୍ରୀ ଠାକୁରରାଜାଙ୍କୁ ଦର୍ଶନ ନ କଲେ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ସଫଳ ହୁଏ ନାହିଁ। ଏହେତୁ ଠାକୁରରାଜାଙ୍କ ପକ୍ଷ ସମର୍ଥନ କରିବା ହିନ୍ଦୁମାନଙ୍କର ବିଶେଷତଃ ଆମମାନଙ୍କର କର୍ତ୍ତବ୍ୟ, ଯେହେତୁ ଆମ୍ଭମାନେ ସୌଭାଗ୍ୟ କରିଅଛୁଁ ଅତଏବ ଆମ୍ଭେ ପଣ୍ଡିତ ମହାଶୟ ଶ୍ରୀ ନନ୍ଦଶତପଥିଙ୍କ ପ୍ରସ୍ତାବକୁ ଅନୁମୋଦନ କରୁଅଛୁଁ।

ଏ ପ୍ରସ୍ତାବ ଏକବାକ୍ୟରେ ହରିବୋଲଧ୍ୱନି ସହିତ ଧାର୍ଯ୍ୟ ହେଲା।

ଦ୍ୱିତୀୟ ପ୍ରସ୍ତାବ - ଶ୍ରୀ ଜଗଗନ୍ନାଥମହାପ୍ରଭୁଙ୍କ ମନ୍ଦିରକାର୍ଯ୍ୟ ନିର୍ବାହରେ ଏପରି କୌଣସି ଦୋଷ ଘଟି ନାହିଁ ଯେ ଯଦ୍ଦ୍ୱାରା ସରକାରଙ୍କର ମକଦ୍ଦମା ଦାଏର କରିବା ନ୍ୟାୟ ସଂଗତ ହେଉଅଛି; ବରଂ ରାଜାଙ୍କଦ୍ୱାରା ଯେପରି କାର୍ଯ୍ୟନିର୍ବାହ ହୋଇ ଆସୁଅଛି ତହିଁରେ ଲୋକେ ଅସନ୍ତୁଷ୍ଟ ନାହାନ୍ତି ଏପରିସ୍ଥଳରେ ମକଦ୍ଦମା ଦାଏର କରି ଶ୍ରୀଠାକୁରରାଜାଙ୍କୁ ନୋଟୀସ ଦେବାପୂର୍ବରୁ ଦେଉଳ ଓ ସମ୍ପତ୍ତିମାନ କ୍ରୋକ କରାଇବା ନ୍ୟାୟସଂଗତ ହୋଇ ନାହିଁ।

ଶ୍ରୀଗୋବିନ୍ଦରଥ ଉପସ୍ଥିତ ଓ ଶ୍ରୀମଥୁରାବାବୁ ଅନୁମୋଦନ କଲାଉତ୍ତାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା।

ତୃତୀୟ ପ୍ରସ୍ତାବ - ପୁରୀରାଣୀଙ୍କର ବର୍ତ୍ତମାନ ଦୁରବସ୍ଥାରେ ଏହି ସଭା ସହାନୁଭୂତି ପ୍ରକାଶ କରୁଥିବା ଜଣାଇ ଏହି ପ୍ରସ୍ତାବମାନଙ୍କର ଏକ ନକଲ ତାହାଙ୍କ ନିକଟକୁ ପଠାଯାଉ।

ଶ୍ରୀହରେକୃଷ୍ଣ ସାହା ଉପସ୍ଥିତ ଓ ଶ୍ରୀରାଧାଶ୍ୟାମମାହାନ୍ତି ମୁକ୍ତାର ଅନୁମୋଦନ କଲାଉତ୍ତାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା।

ଚତୁର୍ଥ ପ୍ରସ୍ତାବ - ଏହି ମହତ୍‌କାର୍ଯ୍ୟରେ ଏକଯୋଗ ହୋଇ ଆପଣା ଧର୍ମରକ୍ଷା ପାଇଁ ଆଇନସଂଗତ କାର୍ଯ୍ୟ କରିବାକୁ ଯତ୍ନବାନ୍ ହେବା ସମସ୍ତ ଭାରତବାସି ହିନ୍ଦୁମାନଙ୍କର କର୍ତ୍ତବ୍ୟ।

ଶ୍ରୀଦୀନାନାଥ ଘୋଷମୁକ୍ତାର ଉପସ୍ଥିତ ଓ ଶ୍ରୀ ସହଦେବ ପଣ୍ଡା ଅନୁମୋଦନ କଲାଉତ୍ତାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା।

ପଞ୍ଚମ ପ୍ରସ୍ତାବ - ଏ ବିଷୟରେ ବଙ୍ଗଳା, ମାନ୍ଦ୍ରାଜ, ବମ୍ବାଇ ଓ ଉତ୍ତରପଶ୍ଚିମ ପ୍ରଦେଶ ଲୋକମାନଙ୍କ ସାହାର୍ଯ୍ୟ ଓ ସହାନୁଭୂତି ପ୍ରାପ୍ତି ନିମନ୍ତେ ବିହିତ ଉପାୟ ଅବଲମ୍ବନ ପରାଯାଉ।

ଶ୍ରୀ ଫକୀରତ୍ରିପାଠୀ ଉପସ୍ଥିତ ଓ ଶ୍ରୀ ଦୀନବନ୍ଧୁ ଶତପଥୀ ଅନୁମୋଦନ କଲାଉତ୍ତାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା।

୬ଷ୍ଠ ପ୍ରସ୍ତାବ - ଏହି ପ୍ରସ୍ତାବମାନଙ୍କର ନକଲ ଦ୍ୱାରା ଭାରତବର୍ଷୀୟ ସମସ୍ତ ହିନ୍ଦୁମହାରାଜା, ରାଜା, ଜମିଦାର, ମହନ୍ତ, ଅଧିକାରୀପ୍ରଭୃତି ଓ ଅପରାପର ଧନବାନ୍ ଓ ମର୍ଯାଦାପନ୍ନ ବ୍ୟକ୍ତି ଓ ସଭାମାନଙ୍କ ସାହାଯ୍ୟ ଓ ସହାନୁଭୁତି ପ୍ରାର୍ଥନା କରାଯାଉ।

ପଣ୍ଡିତ ଶ୍ରୀକପିଳେଶ୍ୱର ନନ୍ଦ ଉପସ୍ଥିତ ଶ୍ରୀବ୍ରଜମୋହନ ଦାସ ଅନୁମୋଦନ କଲାଉତ୍ତାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା।

୭ମ ପ୍ରସ୍ତାବ - ଏ ପ୍ରସ୍ତାବମାନଙ୍କର ନକଲ ଗବର୍ଣ୍ଣମେଣ୍ଟ ପଠାଯାଇ ପ୍ରାର୍ଥନା କରାଯାଉ ଯେ ସରକାର ମକଦ୍ଦମା ଉଠାଇ ନେଉନ୍ତୁ।

ଶ୍ରୀ ବାବୁ ଦୀନବନ୍ଧୁ ମାହାନ୍ତି ମୁକ୍ତାର ଏ ପ୍ରସ୍ତାବକୁ ଉପସ୍ଥିତ କରନ୍ତେ ଶ୍ରୀ ନାରାୟଣ ସୁବୁଦ୍ଧି ଅନୁମୋଦନ କରି କହିଲେ କି ଶ୍ରୀ ମହାରାଣୀ ଆମ୍ଭମାନଙ୍କୁ ପୁତ୍ରବତ୍ ପ୍ରତିପାଳନ କରି ଆସୁଅଛନ୍ତି ମଧ ଆମ୍ଭମାନଙ୍କ ପ୍ରତି ନ୍ୟାୟବ୍ୟବହାର କରୁଅଛନ୍ତି। ସନ୍ ୧୮୫୭ ମସିହାରେ ସର୍କାର ବାହାଦୂର ଆମ୍ଭମାନଙ୍କ ଧର୍ମ ପ୍ରତି ହସ୍ତକ୍ଷେପ କରିବେ ନାହିଁ ବୋଲି ପ୍ରକାଶ କରି ଜିଲ୍ଲା ପର ଜିଲ୍ଲା ଯେଉଁ ବିଜ୍ଞାପନ ଦେଇଥିଲେ ତହିଁରୁ ଦୁଇଖଣ୍ଡ ମୋହକତିରେ ମହଯୁଦଅଛି। ତେବେ ସରକାର ବାହାଦୁର କିପରି ଆମ୍ଭମାନଙ୍କ ଧର୍ମରେ ହସ୍ତକ୍ଷେପଣ କରୁଅଛନ୍ତି? ଏବଡ଼ ଅନ୍ୟାୟ ଯେହେତୁ ଶ୍ରୀ ପୁରୁଷୋତ୍ତମକ୍ଷେତ୍ରଧାମ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଅଛି ତାହାଙ୍କ ଉତ୍ତାରୁ ଯେତେ ରାଜା ହୋଇଅଛନ୍ତି ସେମାନଙ୍କ ଏହା ମୌରସି ସମ୍ପତ୍ତି ଅଟେ। ସରକାର ଯେପରି ସୁଖରେ ଆମ୍ଭମାନଙ୍କୁ ପାଳୁଅଛନ୍ତି, ସେଥିରେ ଆମ୍ଭର ବିଶ୍ୱାସ ହେଉ ନାହିଁ ଯେ ସେ ଆମ୍ଭମାନଙ୍କର ଧର୍ମରେ ବ୍ୟାଘାତ କରି ଆମ୍ଭମାନଙ୍କ ମନରେ କଷ୍ଟ ଦେବେ କେବଳ କେତେଗୋଟା ଚୁଗୁଲିଆ ମିଶି ଏପରି କାର୍ଯ୍ୟ କରାଉଅଛନ୍ତି। ଉକ୍ତ ଅମୃତମଣୋହୀ ଗବର୍ଣ୍ଣମେଣ୍ଟଙ୍କ ଦିଆ ନୁହେ ଓ ସାବକ ହାକିମଙ୍କ ଦିଆ ନୁହେ କେବଳ ଅମୃତମଣୋହିରେ ଖର୍ଚ୍ଚା ସକାଶେ ଭାରତବର୍ଷମଧ୍ୟର ରାଜା ଓ ଜମିଦାର ଓଗେର ଶ୍ରୀଯିଉଙ୍କ ତଳେ ଖଞ୍ଜା ଅମୃତମଣୋହିରେ କରିଅଛନ୍ତି। ତହିଁପ୍ରତି ହସ୍ତକ୍ଷେପ କରା ଅନ୍ୟାୟ! ମହାରାଣୀଙ୍କି ଏ ବିଷୟ ଜ୍ଞାତବ ନାହିଁ ଜ୍ଞାତବ ଥିଲେ ଏମନ୍ତକାର୍ଯ୍ୟ ନ ହୁଅନ୍ତା ଏ ସାମାନ୍ୟ କଥା ପୁରୀରାଜାଙ୍କର ଖାଇବାକୁ ଅର୍ଣ୍ଣ ନାହିଁ ରାଜା କାରାବାସ କରିଅଛନ୍ତି ନାବାଳଗ ପିଲାମାନଙ୍କର ମାତାମହୀ ରାଜମାତା ଭୟାନକଦୁଃଖରେ ଅଛନ୍ତି ତାଙ୍କ ପ୍ରତି ସମସ୍ତ ହିନ୍ଦୁ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଗବର୍ଣ୍ଣମେଣ୍ଟଙ୍କ ଜଣାଉନ୍ତୁ ଯେ ବର୍ତ୍ତମାନ ଦାଏଗ୍ରଯୋଗରୁ କ୍ଷାନ୍ତ ରହନ୍ତୁ ଓ ଆମ୍ଭମାନଙ୍କ ହିନ୍ଦୁଧର୍ମପ୍ରତି କୌଣସି ଅନିଷ୍ଟ ନୋହୁ।

ଏକ ବାକ୍ୟରେ ଧାର୍ଯ୍ୟ ହେଲା।

୮ମ ପ୍ରସ୍ତାବ - ସମସ୍ତ ହିନ୍ଦୁମାନେ ବୁଝି ପାରିବା ସକାଶେ ଏହି ପ୍ରସ୍ତାବମାନ ଭାରତବର୍ଷର ଭିନ୍ନ୨ ଭାଷାରେ ଅନୁବାଦ କରାଯାଉ।

ଶ୍ରୀଦ୍ୱାରିକାନାଥ ଆଚାର୍ଯ୍ୟ ଉପସ୍ଥିତ ଓ ଶ୍ରୀ ଜୟରାମ ମହାପାତ୍ର ଅନୁମୋଦନ କଲାଉତ୍ତାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା

୯ମ ପ୍ରସ୍ତାବ - ପ୍ରଥମ ପ୍ରସ୍ତାବ ଆଗତ କଲା ସମୟେ ଶ୍ରୀ ପଣ୍ଡିତ ନନ୍ଦ ଶତପଥି ଶାସ୍ତ୍ରରୁ ଯେଉଁ ୨ ଶ୍ଳୋକମାନ ଉଦ୍ଧୃତ କରିଅଛନ୍ତି ତାହା ଏହି ପ୍ରସ୍ତାବମାନଙ୍କ ନକଲ ସହିତ ଗବର୍ଣ୍ଣମେଣ୍ଟକୁ ପଠାଯାଉ।

ଶ୍ରୀ ଦୀନବନ୍ଧୁ ମାହାନ୍ତି ମୁକ୍ତାର ଉପସ୍ଥିତ ଓ ବ୍ରହ୍ମାନନ୍ଦ ମହାନ୍ତି ଅନୁମୋଦନ କଲାଉତ୍ତାରୁ ଏକ ବାକ୍ୟରେ ଧାର୍ଯ୍ୟ ହେଲା।

୧୦ମ ପ୍ରସ୍ତାବ - ଏହି ପ୍ରସ୍ତାବମାନ କାର୍ଯ୍ୟରେ ପରିଣତ କରିବା ପାଇଁ ସଭାପତିଙ୍କି

ସାହାଯ୍ୟ କରିବା ନିମନ୍ତେ ଭଗବତଭକ୍ତିପ୍ରଦାୟନୀସଭାର ମେମ୍ବରମାନଙ୍କ ମଧ୍ୟରୁ ଏକ ଶାଖାସଭା ଗଠିତ ହେଉ।

ଶ୍ରୀଗୋବିନ୍ଦ ମାହାପାତ୍ର ଉପସ୍ଥିତ ଓ ଶ୍ରୀଗୌରୀଶଙ୍କର ରାୟ ଅନୁମୋଦନ କଲାଉତ୍ତାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା।

*ଉତ୍କଳ ଦୀପିକା-୧୮୮୭: ପୃଷ୍ଠା ସଂଖ୍ୟା-୯*

## ବଡ଼ଦେଉଳର ସମାଚାର

ଗତ ସନ ଡିସମ୍ବର ମାସ ତା୧୮ରିଖେ ପୁରୀ ବଡ଼ଦେଉଳ ଆଗାମୀ କୋରଖ ହୋଇ ଶ୍ରୀଯୁକ୍ତ ଜଜ ସାହେବଙ୍କ ତରଫ ନାଜରଙ୍କ ଦ୍ୱାରା ଶ୍ରୀଜିଉଙ୍କ ଚଳନ୍ତି ଭଣ୍ଡାରଘରେ ଥିବା ପାଟ ଓ ସୂତା ପ୍ରଭୃତି ଲୁଗାମାନ ତାଲିକା ଶେଷ ହେଲାଣି। ଆଉ ଏହିଭଣ୍ଡାରରେ ଥିବା ବ୍ୟାବହାରିକ ସୁବର୍ଣ୍ଣ ରୌପ୍ୟାଦି ନିର୍ମିତ ପୂଜୋପକରଣ ପାତ୍ର ଓ ଲାଗିଅଳଙ୍କାରମାନ ତାଲିକା ହେଉଅଛି।

ମନ୍ଦିରସମ୍ପର୍କୀୟ କାଗଜପତ୍ରମାନ ଯାହାକି ରାଜାଙ୍କ ନବରରୁ ଦେଉଳକରଣଙ୍କ ଓ ତଢ଼ାଉ ପ୍ରଭୃତିଙ୍କ ଘରୁ କୋରାଖ ହୋଇଥିଲା ସେ କାଗଜମାନ ମାନ୍ୟବର ରିସିଭରଙ୍କ ଅଧୀନ କଚେରୀଘରେ ରଖାଯାଇ ଅଛି।

ଆଜି କାଲି ଶ୍ରୀମତୀ ରାଣୀ ମହୋଦୟା କେବଳ ଶ୍ରୀଜିଉଙ୍କ କୋଠଭୋଗ ମାତ୍ର ଚଳାଉ ଅଛନ୍ତି। ତାଙ୍କ କର୍ମଚାରିମାନେ ଖାଲି ବସିଅଛନ୍ତି। ମନ୍ଦିରନୀତି ଚଳାଇବା ଅମଲାମାନେ ପୂର୍ବବତ୍ ନୀତି ଚଳାଉଅଛନ୍ତି।

ମାନ୍ୟବର ରିସିଭରଙ୍କ ତରଫରୁ ଓସୁଲ ତହସିଲ କାର୍ଯ୍ୟ ଚଳାଇବା ସକାଶେ ଭାରୀଧୂମ ଧାମ ଲାଗିଅଛି। ପୂର୍ବେ ଗୁଣ୍ଡିଚାଘର ରାଣୀଙ୍କ ତରଫରୁ ଇଜାରା ଦିଆ ଯାଇଥିଲା ଏବେ ରିସିଭରଙ୍କ ତରଫରୁ ଇଜରା ଦିଆଗଲା। ପିଣ୍ଡିକାପାଇଁ ସେବକମାନେ ନାନାରକମ ଓଜର କରିବାରୁ ଶ୍ରୀଯୁକ୍ତ ଜଜ ସାହେବଙ୍କ ଛାମୁକୁ ରିପୋର୍ଟ କୈଫିୟତ ଯିବାଆସିବା ଲାଗିଅଛି। ମାତ୍ର ନିଷ୍ପତ୍ତି ହୁକୁମ କିଛି ହୋଇ ନ ଥିବାରୁ ଯାହା ନିତ୍ୟ ପିଣ୍ଡିକା ହେଉଅଛି ତାହା ସବୁ ଦେଉଳର ଭଣ୍ଡାରମେକାପ ମାରଫତ କୋରଖ ଅଛି।

ରୋହିଣୀକୁଣ୍ଡର ଇଜରା ବ୧କୁ ଟ୬୦ଙ୍କା ଅଟେ। ତାହା ଅଟକରହି ଇଜରାଦାରକୁ ବେଦଖଲ କରାଯାଇ ଜଣେ କନେଷ୍ଟବଲ ସେଠାରେ ପହରା ରହି ଯାତ୍ରିମାନେ ସେଠାରେ ଯାହା ଦେଉଅଛନ୍ତି ତହସିଲଦାରଙ୍କ ଦ୍ୱାରା ତାହା ଅସୁଲ ହୋଇ ଜମାହେଉଅଛି।

ସରଘର ରୋଷଚୂଲ୍ଲୀଖଜଣା କୋରାଘର ନିର୍ମାଲ୍ୟ ଶ୍ରୀମହାପ୍ରସାଦ ପସରା କୋଚାଜିଉଣିଆ ପ୍ରଭୃତି ଅମଦାନୀ ରିସିଭରଙ୍କ ତରଫର ଅସୁଲ ତହସିଲ ହେବା ସକାଶେ ଆଗେ ନୋଟିସ ଦିଆଯାଇଥିଲା। ବର୍ତ୍ତମାନ ତହସିଲଦାର ବାବୁଙ୍କ ଦ୍ୱାରା ଅସୁଲ ହେବାର ହୁକୁମ ହୋଇ ଅଛି।

ଧ୍ୱଜା ଲୁଗା ଅଳଙ୍କାର ଶ୍ରୀଜିଉଙ୍କୁ ଯେଉଁ ଯାତ୍ରିମାନେ ଲାଗିକରାନ୍ତି ସେମାନେ ଦକ୍ଷିଣା ସ୍ୱରୂପ କିଛି ରୋସମ ଦିଅନ୍ତି ସେ ଧ୍ୱଜା ପ୍ରଭୃତି ରାଣୀ ସ୍ୱୟଂ ଦେଖି ଲାଗିହେବା ହୁକୁମ ଦିଅନ୍ତି ଉକ୍ତ ରୋଷମରୁ କେତେକ ଅଂଶ ସେବକମାନେ ନେଇ ବାକୀଅଂଶ ନଅରକୁ ଆସେ। ରିସିଭର

ବାବୁ ଦେଉଳକରଣ ପ୍ରଭୃତିଙ୍କୁ କୈଫିୟତ ତଲବ କରିଅଛନ୍ତି ଡିସେମ୍ବର ତା୧୯ରିଖଠାରୁ କେଉଁ କେଉଁ ପଣ୍ଡାମାନଙ୍କର ଯାତ୍ରିମାନେ ଧ୍ୱଜା ଚଢ଼ାଇଅଛନ୍ତି ଓ ସେ ଧ୍ୱଜା କାହାଠାରୁ ଦରସୁଆ ହେଉଅଛି ରୋସମ କେତେ ଅସୁଲ ହୋଇ କାହାକୁ ଦେଉଅଛି ଆଉ ଧ୍ୱଜାବାନ୍ଧିବାର ହୁକୁମ କାହାଠାରୁ ନେଇ ଧ୍ୱଜା ବନ୍ଧା ଯାଉଅଛି।

ତା୧୮ରିଖେ ବଡ଼ଦେଉଳ ଛତିଶାନିଯୋଗ ସେବକମାନେ (ପୂର୍ବବତ୍ ରାଣୀଙ୍କ ମାରଫତ ଦେଉଳ ରଖାଯିବା ଉଦ୍ଦେଶ୍ୟ) ସ୍ୱାକ୍ଷରିତ ଦରଖାସ୍ତ ଶ୍ରୀଯୁକ୍ତ ଜଜ ସାହେବଙ୍କ ହଜୁରକୁ ପ୍ରେରଣ କରିଅଛନ୍ତି। ଆଉ ବଡ଼ ଆଖଡ଼ାରେ ପୁରୀବାସିନ୍ଦାମାନେ ଏକତ୍ର ହୋଇ ମନ୍ଦିରରିସିଭର ନ ହୋଇ ପୂର୍ବବତ୍ ରହିବା ସକାଶେ ସାଧାରଣଙ୍କ ସ୍ୱାକ୍ଷରିତ ଦରଖାସ୍ତ ମାନ୍ୟବର ଶ୍ରୀଯୁକ୍ତ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବ ବାହାଦୁରଙ୍କ ହଜୁରକୁ ପ୍ରେରଣା କରିବାର ସ୍ଥିର କରିଅଛନ୍ତି। ମାତ୍ର ପଠାଇ ପାରି ନାହାନ୍ତି।

ଜଣେ ବେତନଭୋଗୀ ଦିପୋଟି ବାବୁ କୌଣସି କାର୍ଯ୍ୟବଶତଃ ଦେଉଳକୁ ଯାଇ ନଦିଆଚାନ୍ଦଦତ୍ତ ବାବୁ ଆସିଷ୍ଟେଣ୍ଟ ରିସିଭରଙ୍କ ସହିତ ଶ୍ରୀଜିଉଙ୍କ ଛାମୁରେ ଭଣ୍ଡାରଘର ଆଗରେ ଦଣ୍ଡାୟମାନ ହୋଇଥିଲେ ଏହି ସମୟରେ କେହି ସେବକ ପ୍ରସାଦ ଫୁଲ ତୁଳସୀ ଆଉ ଜଣେ ସେବକ ଅବକାଶ ଜଳ ନେଇ ବାବୁମାନଙ୍କୁ ହିନ୍ଦୁଜାଣି ଉକ୍ତ ପ୍ରସାଦ ସମ୍ମାନ ପୂର୍ବକ ଦେବାକୁ ଲାଗିଲେ ଆଶିଷ୍ଟାଣ୍ଟ ବାବୁ ଭକ୍ତିସହିତ ସେବକମାନଙ୍କଠାରୁ ପ୍ରସାଦ ଗ୍ରହଣ କଲେ। ଦିପୋଟି ବାବୁ ସେମାନଙ୍କଠାରୁ ପ୍ରସାଦ ଗ୍ରହନ ନ କରିବା ଇଙ୍ଗିତଦ୍ୱାରା ଜଣାଇ ଦେବାରେ ସେଠାରୁ ସେବକମାନେ ଫେରିଯାଇ ଉକ୍ତ ବାବୁ ହିନ୍ଦୁ କି ନା? ଅନୁସନ୍ଧାନ କରି ବୁଝିଲେ ଯେ ବାବୁ ବ୍ରାହ୍ମ ଥିବାରୁ ପ୍ରସାଦ ଗ୍ରହଣ କରିବାକୁ ଅସମ୍ମତ ହେଲେ। ତେବେ ଆନ୍ଦୋଳନ କରାଗଲା ଯେ ଯେବେ ବାବୁ ପ୍ରସାଦ ଗ୍ରହଣ ନ କଲେ ତେବେ ହିନ୍ଦୁ ନୁହନ୍ତି ଯଦି ଏବ୍ୟକ୍ତି ଦେଉଳରେ ପ୍ରବେଶ କରିବେ ତେତେ ମହାପ୍ରଭୂ ମହାସ୍ନାନଲାଗି ନୋହିବେ କାହିଁକି? ଏହିକଥା ନେଇ ଆଜି କାଲି ବଡ଼ ଆନ୍ଦୋଳନ ଲାଗିଅଛି।

*ଉତ୍କଳ ଦୀପିକା-୧୮୮୭: ପୃଷ୍ଠା ସଂଖ୍ୟା-୩୯*

ପୁରୀ ବଡ଼ଦେଉଳ ମୋକଦ୍ଦମାର ପ୍ରଥମପାଲା ଶେଷହେଲା। କଲିକତାରୁ ତାରଯୋଗେ ସଂବାଦ ଆସିଅଛି କି ରିସିଭର ନିଯୋଗ ବିରୁଦ୍ଧରେ ହାଇକୋର୍ଟରେ ଯେଉଁ ଅପିଲ ହୋଇଥିଲା ତାହା ଡିକ୍ରୀ ଏବଂ ରିସିଭର ଉଠିଯିବାର ଆଦେଶ ହୋଇଅଛି। ହାଇକୋର୍ଟଙ୍କ ନିଷ୍ପତ୍ତି ଯଥାସମୟରେ ଦେଖିପାରି ନାହୁଁ ବୋଲି ଏ ସପ୍ତାହରେର ତହିଁର ପରିଚୟ ପାଠକମାନଙ୍କୁ ଦେବାକୁ ଅକ୍ଷମ ହେଲୁଁ। ଫଳକଥା ଯେବେ ରିସିଭର ଉଠିଗଲା ତେବେ ଅପାତତ ସମସ୍ତଙ୍କର ଚିନ୍ତା ଦୂର ହେଲା। ଜଗନ୍ନାଥଙ୍କର ସେବା ଯେପରି ଚାଲୁଅଛି ସେହିପରି ନିର୍ବିଘ୍ନରେ ଚାଲିବ ଏବଂ ମୂଳମୋକଦ୍ଦମାର ଯୋଗାଡ କରିବାକୁ ଉଭୟପକ୍ଷଙ୍କର ଅବକାଶ ହେବ। ଗବର୍ଣ୍ଣମେଣ୍ଟ ଏହି ରିସିଭରୀ କାଣ୍ଡ ଭିଆଇବା ଅକାରଣରେ ଲୋକଙ୍କ ମନରେ ମହାକଷ୍ଟ ଜାତ କରିଥିଲେ। ହାଇକୋର୍ଟରେ ବିଚାର ହେଲା ବୋଲି ସିନା ରକ୍ଷାହେଲା କିନ୍ତୁ ଏହି ସୁବିଚାର ପାଇବାକୁ

ଯେତେ ଧନ ବ୍ୟୟ ହୋଇଅଛି ତାହା କିଏ କଳନା କରିବ। ପୁରୀର ରାଣୀ ବୋଲି ସେପରି ବ୍ୟୟ କଲେ। ସାମାନ୍ୟଲୋକ କେହି ଏଥିକି ପାରନ୍ତା କି? ଗବର୍ଣ୍ଣମେଣ୍ଟଙ୍କର ମଧ ଏଥିର ବ୍ୟୟ ହୋଇଥିବ କିନ୍ତୁ ତହିଁ ପାଇଁ ଭାବନା କାହାର କୋଡ଼ିହଣା ପରି ଜଣାଯାଏ। ମତାଇ ଦେବାଲୋକ ମତାଇଦେଲେ ପ୍ରଜାଙ୍କର ଧନ ବ୍ୟୟହେଲା। ଯେବେ ଏହି ଟଙ୍କା ଗବର୍ଣ୍ଣମେଣ୍ଟ ଆପଣା କର୍ମଚାରୀଙ୍କଠାରୁ କ୍ଷତିପୂରଣ ସ୍ୱରୂପ ଆଦାୟ କରନ୍ତେ ତେବେ ସେମାନଙ୍କ ଶିକ୍ଷା ହୁଅନ୍ତା ଏବଂ ଆଉ ସରକାରୀ ଟଙ୍କା ଅପବ୍ୟୟ କରିବାକୁ ସାହାସ କରନ୍ତେ ନାହିଁ।

*ଉତ୍କଳ ଦୀପିକା-୧୮୮୭ ପୃଷ୍ଠା ସଂଖ୍ୟା-୧୦୫*

## ପୁରୀ ବଡ଼ଦେଉଳ ମୋକଦ୍ଦମା

ଏ ମୋକଦ୍ଦମାର ଚର୍ଚ୍ଚା ସମ୍ପ୍ରତି ଭାରତବର୍ଷର ନାନାଦିଗରେ ଲାଗିବାର ଦେଖାଯାଏ। ଇଂରାଜୀ ଓ ଦେଶୀୟ ସଂବାଦ ପତ୍ରମାନଙ୍କରେ ବଡ଼ ବଡ଼ ପ୍ରବନ୍ଧ ଓ ପ୍ରେରିତ ପତ୍ରମାନ ବାହାରୁଅଛି ଏବଂ ଏପରି ମୋକଦ୍ଦମାଟିଏ କରିବାରୁ ହିନ୍ଦୁ ଓ ଖ୍ରୀଷ୍ଟିୟାନ ଉଭୟେ ଗବର୍ଣ୍ଣମେଣ୍ଟଙ୍କର ନିନ୍ଦା କରୁଅଛନ୍ତି। କଲିକତା ଷ୍ଟେଟସମାନ ଗବର୍ଣ୍ଣମେଣ୍ଟଙ୍କର ଏହି କାର୍ଯର ତୀବ୍ର ସମାଲୋଚନା କରୁଅଛନ୍ତି ଏବଂ ଡେଲିନିଉସର ଜଣେ ପତ୍ରପ୍ରେରକ ଦେଖାଇ ଦେଇଅଛନ୍ତି କି ଗବର୍ଣ୍ଣମେଣ୍ଟ ଏ ମୋକଦ୍ଦମା ଦାଏରକରି ହିନ୍ଦୁଧର୍ମପ୍ରତି ସହାୟତା କରିଅଛନ୍ତି ଏବଂ ପୁରୀର କଲେକ୍ଟର ପ୍ରକୃତ ଅନୁସନ୍ଧାନ ବିନା କେତେକ ବିଷୟ ଆଫିଡେବିଟ କରିଅଛନ୍ତି। କେଉଁ ଉଦ୍ଦେଶ୍ୟରେ ଗବର୍ଣ୍ଣର ଏ ମୋକଦ୍ଦମା କରି ଅଛନ୍ତି ଅବଧି କେହି ସ୍ଥିର କରି ପାରୁ ନାହାନ୍ତି। ଆମ୍ଭେମାନେ ଏ ବିଷୟରେ ଖଣ୍ଡିଏ ଇଂରାଜୀପତ୍ର ସ୍ଥାନାନ୍ତରେ ପ୍ରକାଶ କଲୁଁ ତହିଁରୁ ପାଠକମାନେ ଦେଖିବେ ଯେ ଅନ୍ୟାନ୍ୟ ସ୍ଥାନପରି ଏଠାଲୋକେ ମଧ ସରକାରଙ୍କ ମତଲବ ଠଉରାଇଁପାରୁ ନାହାନ୍ତି। ପତ୍ରପ୍ରେରକ ନାନାପ୍ରକାରର କଳ୍ପନା କରିଅଛନ୍ତି ଏବଂ ତହିଁ ମଧରେ କିଛି ସତ୍ୟ ହୋଇପାରେ କି ନା କେହି ତାହା ପ୍ରକାଶ କଲେ ଲୋକଙ୍କର ଅନେକ ଭ୍ରମ ଭାଙ୍ଗିଯିବ ଓ ଯଥାର୍ଥକଥା ପ୍ରକାଶ ପାଇବ। ଆମ୍ଭେମାନେ ଅବଧି କିଛି ସ୍ଥିର କରିପାରି ନ ଥିବାରୁ ଆପଣା ମତ ବ୍ୟକ୍ତ କରିବାକୁ ଅକ୍ଷମ କିନ୍ତୁ କାର୍ଯ୍ୟରୁ ଏତିକି ବୁଝୁଅଛୁଁ ଯେ ହିନ୍ଦୁଧର୍ମ ଲୋପକରିବା କାରଣ ଗବର୍ଣ୍ଣମେଣ୍ଟ ଏ ମୋକଦ୍ଦମା କରି ଅଛନ୍ତି। ଗବର୍ଣ୍ଣମେଣ୍ଟ ସ୍ୱୟଂ କହୁଅଛନ୍ତି କି ଶ୍ରୀ ଜଗନ୍ନାଥଙ୍କ ସେବାରେ ଭଲ ବନ୍ଦୋବସ୍ତ କରିବା କାରଣ ଏ ମୋକଦ୍ଦମା ଦାଏର ହୋଇଅଛି। ମାତ୍ର ଏ କଥାରେ ମନ ମାନୁ ନାହିଁ। ହିନ୍ଦୁଧର୍ମର ଉନ୍ନତିସାଧନ ଖ୍ରୀଷ୍ଟୀୟାନ ବା ଗବର୍ଣ୍ଣମେଣ୍ଟଙ୍କ କର୍ତ୍ତବ୍ୟକାର୍ଯ୍ୟ ନୁହଇ ଓ ହିନ୍ଦୁମାନେ ତହିଁନିମିତ୍ତ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା ସୁଦ୍ଧା କରି ନାହାନ୍ତି। ବରଂ ଆପଣାମଧରେ ମାମଲା ଭାଙ୍ଗିବାର ପ୍ରସ୍ତାବ ରାଣୀ କରିଥିଲେ ସୁଦ୍ଧା ସରକାର ତହିଁରେ ସମ୍ମତ ହେଲେ ନାହିଁ। ମୋକଦ୍ଦମାଟି ଯେପରି ଧୁମଧାମରେ ଚାଲୁଅଛି ତହିଁରେ ଅନେକଟଙ୍କା ବ୍ୟୟ ହେବ ଓ ଏଥିମଧରେ ଜିଲ୍ଲା ଅଦାଲତରୁ ହାଇ କୋର୍ଟ ପର୍ଯ୍ୟନ୍ତ ରାଣୀଙ୍କର ଅନେକ ଟଙ୍କା ଖର୍ଚ୍ଚ ହୋଇ ଗଲାଣି। ଏହି ଖର୍ଚ୍ଚ ଯୋଗାଇବା ଦ୍ୱାରା ରାଣୀଙ୍କରର ଭଣ୍ଡାର ଶେଷ ଓ ସମ୍ଭବତ ସର୍ବନାଶ ହେବ ସୁତରାଂ ଆଉ ଦେବସେବା କାହୁଁ ନିର୍ବାହ ହେବ। ଅତଏବ ଆମ୍ଭେମାନେ

ବୁଝୁଅଛୁଁ ଯେ ହିନ୍ଦୁଧର୍ମର ବିନାଶ ସାଧନନିମିତ୍ତ ଏ ମୋକଦ୍ଦମା ହୋଇଅଛି ଯେମନ୍ତ କି କେହି କେହି ବଡ଼ଲୋକ ଆପଣା ଶତ୍ରୁକୁ ଉଛନ୍ନ କରିବା ଅଭିପ୍ରାୟରେ ତାହା ନାମରେ ଅନର୍ଥକ ମୋକଦ୍ଦମା ମାମଲା ଲଗାଇଦିଅନ୍ତି ନତୁବା ଗବର୍ଣ୍ଣମେଣ୍ଟଙ୍କୁ ସୁ ପରାମର୍ଶ ଦେବା କାରଣ ବଡ଼ ବଡ଼ ବାରିଷ୍ଟର ଉକିଲ ଏବଂ ଅନ୍ୟ ଉଚ୍ଚ କର୍ମଚାରୀ ଥିବା ପ୍ରତ୍ୟେକ୍ଷେ କି କାରଣରୁ ଏମନ୍ତ ଭାବରେ ମାମଲା ଚଳିଲା ଯେ ହାଇକୋର୍ଟକୁ ଯିବା ମାତ୍ରକେ ସବୁ ରଦ ହୋଇଗଲା। ବିପକ୍ଷକୁ ଖର୍ଚ୍ଚାନ୍ତ ଓ ହଇରାଣ କରିବା ଉଦ୍ଦେଶ୍ୟ ବିନା ରିସିଭର ଇତ୍ୟାଦି ଧୂମଧାମର ଅନ୍ୟ ପ୍ରୟୋଜନ କିଛି ଦେଖାଯାଉ ନାହିଁ।

*ଉତ୍କଳ ଦୀପିକା-୧୮୮୭: ପୃଷ୍ଠା ସଂଖ୍ୟା-୧୦୬*

## ପୁରୀ ବଡ଼ଦେଉଳର ମୋକଦ୍ଦମା

ଏ ମୋକଦ୍ଦମାରେ ରିସିଭର ନିଯୋଗ ଆଜ୍ଞା ବିରୁଦ୍ଧରେ ଯେଉଁ ଅପିଲ ହାଇକୋର୍ଟରେ ହୋଇଥିଲା ତାହା ଡିଗ୍ରୀ ହେବାର ଗତସପ୍ତାହରେ ପାଠକମାନଙ୍କୁ ଜଣାଇ ଅଛୁଁ। ଏହି ଅପିଲ ବିଚାରର ବିବରଣ ସଂବାଦ ପତ୍ରମାନଙ୍କରେ ବାହାରି ଅଛି ଏବଂ ତହିଁର ତଳଲିଖିତ କଥାମାନ ସଂକଳନ କଲୁଁ, ଯଥା।

ଏ ମୋକଦ୍ଦମାରେ ରାଣୀ ସୂର୍ଯ୍ୟମଣୀ ପାଟମହାଦେଇଙ୍କ ପକ୍ଷରୁ ବାରିଷ୍ଟର ଉଡରୋଫ ଇଭାନସ ଏବଂ ସାଣ୍ଡେଲ ସାହେବମାନେ ଏବଂ ଉକିଲ ଡାକ୍ତର ଗୁରୁଦାସ ବାନୂର୍ଯ୍ୟା ବାବୁ ଅମରନାଥ ବୋଷ ଓ କଲେକ୍ଟରଙ୍କ ପକ୍ଷରୁ ଆଡ଼ଭୋକେଟ ଜେନରଲ ଏବଂ ବାବୁ ଇନ୍ଦ୍ରପ୍ରସାଦ ବାନୁର୍ଯ୍ୟା ଉପସ୍ଥିତ ଥିଲେ।

ପ୍ରଥମେ ଉଡ଼ରୋଫ ସାହେବ ମୋକଦ୍ଦମାର ଅବସ୍ଥା ବର୍ଣ୍ଣନାକରି କହିଲେ କି ଶ୍ରୀ ଜଗନ୍ନାଥ ଅମୃତଣୋହି ପ୍ରତି ଦେବାନୀ କାର୍ଯବିଧି ଆଇନର ୫୩୯ ଧାରା ଖଟଇ ନାହିଁ। ଜଗନ୍ନାଥଙ୍କ ସେବାରେ ଖୋରଧା ରାଜାଙ୍କର ନିଜର ମୌରସି ସ୍ୱତ୍ୱ ଅଛି ଓ ଏଠାରୁ ବିଲାତ ପର୍ଯ୍ୟନ୍ତ ଗବର୍ଣ୍ଣମେଣ୍ଟ ତାହା ପୁନଃ ପୁନଃ ସ୍ୱୀକାର କରିଅଛନ୍ତି। ଏ ସମ୍ପର୍କରେ ସେ ଅନେକ ସରକାରୀ ଚିଠୀପତ୍ରରୁ ବଚନମାନ ଉଦ୍ଧାରାକରି ଶୁଣାଇଲେ। ସେ ଆହୁରି କହିଲେ କି ରିସିଭର ନିୟୋଗ କରିବାର କିଛି ମାତ୍ର ଆବଶ୍ୟକତା ନାହିଁ ଯେହେତୁ ଚଳନ୍ତି ମାଲମାନ ଏକବର୍ଷ ପୂର୍ବରୁ କମିଶ୍ନର ସାହେବଙ୍କ ଆଦେଶମତେ ବାବୁ ରାମ ପ୍ରସାଦ ସିଂହ ଯେ କି ବର୍ତ୍ତମାନ ତହସିଲଦାର ହୋଇଅଛନ୍ତି ତାଲା ମୋହର ଦେଇ ବନ୍ଦ କରିଅଛନ୍ତି ସୁତରାଂ ସେ ସମସ୍ତ ଆତ୍ମସାତ୍ କରିବାର ଭୟ ନାହିଁ ଅଥଚ କେଉଁ ଆଇନଦ୍ୱାରା ତାଲା ମୋହର ଦିୟାଗଲା ଜଣା ଯାଉ ନାହିଁ। ଏହାଙ୍କ ଉତ୍ତାରୁ ରୋଭାନସ ସାହେବ ବକ୍ତୃତା କଲେ।

ଅନ୍ୟପକ୍ଷରେ ଆଡ଼ଭୋକେଟ ଜେନରଲ ବକ୍ତୃତାକଲେ କି ପ୍ରଥମେ ସନ୍ ୧୮୦୯ ସାଲର ଆ୬ଇନ ଓ ତହିଁ ଉତ୍ତାରୁ ସନ ୧୯୪୦ ସାଲର ଆ୧୦ଇନଦ୍ୱାରା ଖୋରଧାର ରାଜାଙ୍କୁ ଜଗନ୍ନାଥ ମନ୍ଦିରର ସୁପ୍ରଣ୍ଡିଣ୍ଟୀ ଦିୟା ଯାଇଥିଲା ଶେଷଲିଖିତ ଆଇନର ୨ ଧାରା ପ୍ରଚଳିତ ଦେବାନୀ କାର୍ଯ୍ୟବିଧିର ଧା୫୦୯ରା ଅନୁସାରେ ରହିତ ହେବାର ବର୍ତ୍ତମାନ ଉକ୍ତ ମନ୍ଦିରର

କେହି ଆଇନସିଦ୍ଧ ତତ୍ତ୍ୱାବଧାରକ ନାହିଁ। ଏଠାରେ ଅଦାଲତ ପଚାରିଲେ କି ଯେସ୍ଥଳେ ତୁମ୍ଭେ ରାଣୀଙ୍କି ଅନଧିକାର ପ୍ରବେଶକାରୀ କହୁ ଅଛି ଅଥଚ ମାରଫତଦାର ସ୍ୱରୂପ ହେସାବନିମିତ୍ତ ତାହାଙ୍କ ନାମରେ ନାଲସ କରୁଅଛି ସେସ୍ଥଳେ ମୋକଦ୍ଦମା ଚାଲିପାରେ ଟିକି, ଆଡ଼ଭୋକେଟ ଜେନରଲ ଏଥିର କିଛି ଉତ୍ତର ନ ଦେଇ କହିଲେ କି ମାରଫତଦାରୀର ସର୍ତ୍ତ ରକ୍ଷା ହେଉ ନାହିଁ ଓ ସମ୍ପତ୍ତିମାନ ରକ୍ଷାକରିବା କାରଣ ରିସିଭର ନିଯୋଗକରିବା ଆବଶ୍ୟକ। ବକ୍ତୃତା ଆରମ୍ଭରେ ସେ ଏକଥା ମଧ୍ୟ କହିଥିଲେ ଯେ ଗବର୍ଣ୍ଣମେଣ୍ଟଙ୍କର ନିଜର ଏ ମୋକଦ୍ଦମାରେ କୌଣସି ସମ୍ପର୍କ ନାହିଁ କେବଳ ସର୍ବସାଧାରଣ ପକ୍ଷରୁ ଅମୃତ ମଣୋହି ରକ୍ଷାନିମିତ୍ତ ନାଲିସ ହୋଇଅଛି।

ଉଡ଼ରୋଫ ସାହେବଙ୍କ ଉତ୍ତର ନ ଶୁଣି ଅଦାଲତ ରାୟ ପ୍ରକାଶ କଲେ। ଇଂରାଜୀ ରାୟଟି ସର୍ବସାଧାରଣଙ୍କ ଜାଣିବା କାରଣ ସ୍ଥାନାନ୍ତରେ ପ୍ରକାଶିତ ହେଲା। ତହିଁର ମର୍ମ ଏହି କି ଜଗନ୍ନାଥଙ୍କ ସେବାକାର୍ଯ୍ୟ ଉତ୍ତମରୂପେ ଚଳାଇବା କାରଣ ପୁରୀ କଲେକ୍ଟର ସର୍ବସାଧାରଣଙ୍କ ପକ୍ଷରୁ ଏ ମୋକଦ୍ଦମା ଉପସ୍ଥିତ କରିଅଛନ୍ତି। ଏଥକୁ ଏପରି ମୋକଦ୍ଦମା ଚାଲିପାରେ କି ନା ଓ ଉଭୟ ପକ୍ଷଙ୍କର କି ସ୍ୱତ୍ୱ ଅଛି ଆମ୍ଭେମାନେ କହି ନ ପାରୁଁ ଓ ବର୍ତ୍ତମାନ ଅବସ୍ଥାରେ ଜାଣିବାର ଉପାୟ ନାହିଁ। ମାତ୍ର ଯେ ସମସ୍ତ ଅଫଡେବୀଟ ହୋଇଅଛି ତହିଁରୁ ଏମନ୍ତ ପ୍ରକାଶ ନାହିଁ ଯେ ଅମୃତମଣୋହି ନଷ୍ଟ ହେଉଅଛି। କେବଳ ଏତିକି ପ୍ରକାଶଯେ ଏଥିର କାର୍ଯ୍ୟ ଭଲରୂପେ ଏମନ୍ତ ସନ୍ଦେହ ହୋଇଅଛି ଏବଂ ବର୍ତ୍ତମାନ ମାନେଜରମାନଙ୍କ ପ୍ରତି ସେବାକାର୍ଯ୍ୟ ମନ୍ଦରୂପେ ନିର୍ବାହ କରିବାର ଅଭିଯୋଗ ହୋଇଅଛି କିନ୍ତୁ କୌଣସି ଶଠତା ବା ଦୁଷ୍ଟଚିତ୍ରତା କି ଯାହା ଶଠତା ମର୍ମରେ ବ୍ୟବହାର ହୋଇପାରେ ପ୍ରଦର୍ଶିତ ହୋଇନାହିଁ। ଏ ଅବସ୍ଥାରେ ବର୍ତ୍ତମାନ ରିସିଭର ନିଯୋଗ କରିବାର କୌଣସି ହେତୁ ଦେଖା ଯାଉ ନାହିଁ। ମୋକଦ୍ଦମା ନିଷ୍ପତ୍ତି ହେଲେ ଉଭୟ ପକ୍ଷଙ୍କର ସ୍ୱତ୍ୱା ସ୍ୱତ୍ୱ ଜଣାପଡ଼ିବ ଏବଂ କାର୍ଯ୍ୟ ନିର୍ବାହର ଉତ୍ତମ ବନ୍ଦୋବସ୍ତ ସ୍ଥିର ହେଲାରୁ ରିସିଭର ମୋକଦ୍ଦମା ହେବାର କଥା ବିବେଚିତ ହେବ। ଅତଏବ ରିସିଭର ନିଯୋଗ ବିଷୟକ ଆଜ୍ଞା ରହିତ ହେଲା ଏବଂ ସେସ୍ଥଳେ ରିସିଭର ଉଠିଗଲା ସେ ସ୍ଥଳେ ତାହାଙ୍କ କାର୍ଯ୍ୟ ସମସ୍ତ ଉଠିଗଲା ଅତଏବ ହାଇକୋର୍ଟରୁ ଜାରୀ ହୋଇଥିବା ରୁଲ ରହିତ ହେବା ଭିନ୍ନ ଆଉକିଛି ବୋଲିବାର ଆବଶ୍ୟକ ନାହିଁ। ଖର୍ଚ୍ଚା ସମ୍ପର୍କରେ ଜଜମାନେ କହିଛନ୍ତି କି କିଛି ଖର୍ଚ୍ଚା ଦେବାର ପ୍ରୟୋଜନ ନାହିଁ କାରଣ ଏ ମୋକଦ୍ଦମାରେ ବାସ୍ତବରେ ଯେତେ ଖର୍ଚ୍ଚା ହୋଇଅଛି ଅଦାଲତ ଯେତେଖର୍ଚ୍ଚା ଦେଲେ ସୁଦ୍ଧା ତହିଁକି ନିତାନ୍ତ ନିଅଣ୍ଟ ହେବ ଓ ତେତେଖର୍ଚ୍ଚାର ଆଦେଶ ଅଦାଲତ ଦେଇ ପାରିବେ ନାହିଁ। ଅତଏବ ଖର୍ଚ୍ଚା ବିଷୟରେ କିଛି ନ କହିବାର ଭଲ।

ବାସ୍ତବରେ ରାଣୀଙ୍କର ଏ ମୋକଦ୍ଦମାରେ ବିସ୍ତର ଖର୍ଚ୍ଚା ହୋଇଅଛି ଓ ଅଦାଲତ ନିୟମାନୁସାରେ ଅଳ୍ପ ଖର୍ଚ୍ଚାର ଡିକ୍ରୀଦେବା ଅପେକ୍ଷା ଖର୍ଚ୍ଚ ନ ଦେଇ ରାଣୀଙ୍କର ସମ୍ମାନ ରକ୍ଷା କରିଅଛନ୍ତି। ବଡ଼ଲୋକଙ୍କ ପକ୍ଷରେ ଡିକ୍ରୀଯଥେଷ୍ଟ ଖର୍ଚ୍ଚା ପାଇଁ କିଛି ଆସେ ଯାଏ ନାହିଁ।

*ଉତ୍କଳ ଦୀପିକା-୧୮୮୭: ପୃଷ୍ଠା ସଂଖ୍ୟା-୧୧୩*

# ବଡ଼ଦେଉଳର ମୋକଦ୍ଦମା

ଏ ମୋକଦ୍ଦମା ରଫାହେବା ସମ୍ବନ୍ଧରେ ଖୋରୋଧା ମହାରାଣୀଙ୍କ ପକ୍ଷରୁ ଯେଉଁ ଆପତ୍ତିମାନ ହୋଇଥିଲା ପାଠକମାନଙ୍କୁ ଜଣାଅଛି। ତହିଁମଧ୍ୟରେ ପ୍ରଧାନ ଆପତ୍ତି ଏହି ଥିଲାକି ନାବାଲଗ ମୁକୁନ୍ଦଦେବ ମହାରାଜଙ୍କୁ ମନ୍ଦିରର ଭାର ଅର୍ପଣ କରିବାବିଷୟରେ ଗବର୍ଣ୍ଣମେଣ୍ଟଙ୍କ ପତ୍ରରେ ଯେପରି ଲେଖାଥିଲା ତହିଁରୁ ଏପରି ସୂଚନା ହେଉଥିଲା ଯେମନ୍ତ କି ଖୋରଧାରାଜାଙ୍କର ମନ୍ଦିରସମ୍ପର୍କରେ କୌଣସି ଅଧିକାର ନ ଥିଲା କେବଳ ବର୍ତ୍ତମାନ ରାଜାଙ୍କୁ ନୂତନ ଅଧିକାର ପ୍ରଦତ୍ତ ହେଲା। ଏଥିପାଇଁ ମହାରାଣୀ ଆପତ୍ତି କରିଥିଲେ। ଆମ୍ଭେମାନେ ଆନନ୍ଦସହିତ ଅବଗତ ହେଲୁଁ ଯେ ନ୍ୟାୟବାନ୍ ଛୋଟଲାଟ ସାର ଷ୍ଟିବାର୍ଟ ବେଲୀ ଗବର୍ଣ୍ଣମେଣ୍ଟଙ୍କର ସେପରିଭାବ ନ ଥିବାର ବ୍ୟକ୍ତକରି ମହାରାଜା ମୁକୁନ୍ଦଦେବ ପୂର୍ବେ ଯେପରି ଅଧିକାର ଚଳାଇ ଆସୁଥିଲେ ସେହିପରି ସେ ଓ ତାହାଙ୍କର ଉତ୍ତରାଧିକାରିମାନେ ଅଧିକାରୀ ହେବେବୋଲି ବୁଝାଇଦେଇ ଅଛନ୍ତି ଏବଂ ରଫାନାମାରେ ଯେପରି ଭାଷାରେ ଉକ୍ତ ଭାବ ପ୍ରକାଶ ହେବ ତାହା ବ୍ୟବହାର କରିବା ନିମିତ୍ତ ଆଦେଶ ଦେଇଅଛନ୍ତି। ମାନ୍ୟବର ଛୋଟଲାଟଙ୍କର ଏହି ଆଦେଶରେ ମହାରାଣୀ ଓ ଓଡ଼ିଶାବାସିମାନେ ସନ୍ତୁଷ୍ଟ ହେବେ ସନ୍ଦେହ ନାହିଁ ଓ ରଫାସମ୍ପର୍କୀୟ ପ୍ରଧାନ ଆପତ୍ତି ଏହି ରୂପେ ନିଷ୍ପତ୍ତି ହୋଇଗଲାରୁ ମୋକଦ୍ଦମା ରଫାନାମ ଦାଖଲ ହୋଇପାରନ୍ତା ମାତ୍ର କେତେଗୁଡ଼ିଏ ଅନୁସଙ୍ଗିକ ବିଷୟ ନିଷ୍ପତ୍ତି ଅପେକ୍ଷାରେ କିଛିକାଳ ବିଳମ୍ବ ହେବ। ସେ ବିଷୟମାନଙ୍କରେ ଯୋଡ଼ିଏ ପ୍ରଧାନ ଅର୍ଥାତ୍ ଗୋଟିଏ ମନ୍ଦିରର କାର୍ଯ୍ୟନିର୍ବାହସମ୍ବନ୍ଧୀୟ ନିୟମାବଳୀ ଏବଂ ଅନ୍ୟଟି ଏଖରାଜାତି ମହାଲର ପ୍ରଜାଙ୍କ ଖଜଣାବୃଦ୍ଧି କରିବାର ଅଧିକାର। ନିୟମାବଳୀର ଚିଠା ମହାରାଣୀ ପ୍ରସ୍ତୁତକରି ପଠାଇବେ ଓ ଗବର୍ଣ୍ଣମେଣ୍ଟ ତାହା ମଞ୍ଜୁର କଲେ ରଫାନାମା ସଙ୍ଗେ ଅଦାଲତରେ ଦାଖଲହେବ ଯେ ସେହି ନିୟମାବଳୀମତେ ମନ୍ଦିରର କାର୍ଯ୍ୟ ନିର୍ବାହ ହେବ। ଏ ନିୟମାବଳୀ ଚିରକାଳନିମିତ୍ତ ହେବ ଏମନ୍ତ ଗବର୍ଣ୍ଣମେଣ୍ଟଙ୍କର ଉଦ୍ଦେଶ୍ୟ ନୁହଇ ମହାରାଜା ମୁକୁନ୍ଦଦେବଙ୍କ ନାବାଲଗୀ ସମୟ ପର୍ଯ୍ୟନ୍ତ ତାହା ପ୍ରବଳ ରହିବାର ଆବଶ୍ୟକ ଓ ମନ୍ଦିର ମଧ୍ୟରେ ଯାତ୍ରିଙ୍କର ରକ୍ଷା ଓ ସୁବିଧାର ଯଥୋଚିତ ବିଧାନ ହେଲେ ଗବର୍ଣ୍ଣମେଣ୍ଟ ସନ୍ତୁଷ୍ଟ ହେବେ। ଖଜଣା ବୃଦ୍ଧି ବିଷୟରେ ମହାରାଣୀଙ୍କର ଆପତ୍ତି ଏହିକି ସେ ଅଧିକାର ତାହାଙ୍କୁ ଦିଆ ନ ଗଲେ ସେବା ଚଳାଇବାର ବଡ଼ କଷ୍ଟ ହେବ କାରଣ ଯେତେବେଳେ ସେବାର ଖର୍ଚ୍ଚନିମିତ୍ତ ମହାଲ ଖଞ୍ଜା ହୋଇଥିଲା ତେତେବେଳେ ଦ୍ରବ୍ୟାଦି ସସ୍ତା ଥିଲା ଓ ସେହି ମୂଲ୍ୟ ଦୃଷ୍ଟିରେ ଯେତେଟଙ୍କା ପ୍ରୟୋଜନ ତେତିକି ଟଙ୍କାର ମହାଲ ଦିଆଯାଇଥିଲା। ବର୍ତ୍ତମାନକୁ ଦ୍ରବ୍ୟାଦିର ମୂଲ୍ୟ ଅନେକ ବୃଦ୍ଧିହୋଇ ଅଛି ତହିପାଇଁ ଗବର୍ଣ୍ଣମେଣ୍ଟ ଅଧିକା ଭୂମି ଦେଇ ନ ପାରନ୍ତି ସୁତରାଂ ଖଜଣା ବୃଦ୍ଧି ବିନା ଅନ୍ୟଉପାୟ ନାହିଁ। ମହାରାଣୀଙ୍କର ଏ ଆପତ୍ତି ନିତାନ୍ତ ଯୁକ୍ତିସଙ୍ଗତ ତହିଁରେ ସନ୍ଦେହ ନାହିଁ ଓ ଗବର୍ଣ୍ଣମେଣ୍ଟ ମଧ୍ୟ ଏଥିର ବିଚାର କରିବାକୁ ପ୍ରସ୍ତୁତ ହୋଇ ରେବନ୍ୟୁ ବୋର୍ଡଙ୍କଦ୍ୱାରା ଏ ପ୍ରସ୍ତାବର ବହୁଲ୍ୟ ବିବରଣ ଲେଖି ପଠାଇବାକୁ ଆଦେଶ ଦେଇଅଛନ୍ତି। ଅତଏବ ପାଠକମାନେ ଦେଖିବେ ଯେ ଖୋରୋଧା ମହାରାଣୀଙ୍କ କୌଣସିମତେ ଦେବା କିମ୍ବା

ତାହାଙ୍କର ଅସନ୍ତୋଷ ଜାତକରିବା ଗବର୍ଣ୍ଣମେଣ୍ଟଙ୍କ ଉଦ୍ଦେଶ୍ୟ ନୁହେ କେବଳ ଯାତ୍ରିଙ୍କ ରକ୍ଷା ଓ ସୁବିଧାନିମିତ୍ତ ଗବର୍ଣ୍ଣମେଣ୍ଟ ବ୍ୟସ୍ତହୋଇ ଏହି ଦୁଃଖଜନକ ମୋକଦ୍ଦମାରେ ପ୍ରବୃତ୍ତ ହୋଇଥିଲା। ପୂର୍ବ ଛୋଟଲାଟ ମାନ୍ୟବର ଟାମସନ ସାହେବ କାର୍ଯ୍ୟଦ୍ୱାରା ସେ ଉଦ୍ଦେଶ୍ୟରୁ ବହକି ଯାଇଥିଲେ ମାନ୍ୟବର ବେଲୀ ବାହାଦୁର ସମସ୍ତ ସମ୍ଭାଳିନେଇଁ ଖୋରୋଧାମହାରାଣୀ ଓ ଓଡ଼ିଶାବାସିଙ୍କ ସହିତ ସମସ୍ତ ହିନ୍ଦୁସମ୍ପ୍ରଦାୟ ବିଶେଷ ଧନ୍ୟବାଦର ପାତ୍ର ହେଲେ ବଡ଼ ଆନନ୍ଦର ବିଷୟ ଅଟଇ।

*ଉତ୍କଳ ଦୀପିକା-୧୮୮୭: ପୃଷ୍ଠା ସଂଖ୍ୟା-୩୧୭*

## ପୁଣି ପୁରୀମନ୍ଦିର ମାମଲା

ଓଡ଼ିଶା ପ୍ରଧାନତଃ ହିନ୍ଦୁଙ୍କର ରାଜ୍ୟ ଏବଂ ପୁରୀର ଜଗନ୍ନାଥଦେବ ଏମାନଙ୍କର ପ୍ରଧାନ ଆରାଧ୍ୟ ଦେବତା। ପୁରୀମନ୍ଦିରର ପ୍ରତି ଟିକିଏ ଅନ୍ୟାୟ ବା ଅବିଚାର ହେଲେ ସମସ୍ତ ହିନ୍ଦୁଙ୍କର ମନୋବେଦନା ହୁଅଇ। ଗବର୍ଣ୍ଣମେଣ୍ଟ କର୍ମଚାରିମାନେ ଏକଥା ବିଶେଷରୂପେ ଜାଣନ୍ତି ଏବଂ କାହାରି ଧର୍ମପ୍ରତି ହସ୍ତକ୍ଷେପ ନ କରିବା ଗବର୍ଣ୍ଣମେଣ୍ଟଙ୍କର ଗୋଟିଏ ମୂଳ ରାଜନୀତି। କିନ୍ତୁ କାଳର ଗତି କେମନ୍ତ ଯେ ପୁରୀମନ୍ଦିର ପ୍ରତି ପୁନଃ ପୁନଃ ଆକ୍ରମଣ ହେଉଅଛି ଏବଂ ତାହା ଦେଖି ଶୁଣି ସର୍ବସାଧାରଣ ବ୍ୟାକୁଳସମୁଦ୍ରରେ ଭାସୁଅଛନ୍ତି। ସେଦିନ ଗବର୍ଣ୍ଣମେଣ୍ଟ ତରତରିଆପଣିଆ କରି ପୁରୀମନ୍ଦିରର ବିରୁଦ୍ଧରେ ଏକ ମୋକଦ୍ଦମା ଛିଡ଼ା କରି ଲୋକଙ୍କୁ ମହାଚିନ୍ତାରେ ପକାଇଥିଲେ। ଭାଗ୍ୟବଶତଃ ଛୋଟଲାଟ ମାନ୍ୟବର ସ୍ଟିଆଟ ବେଲି ସୁବିଚାର ପୂର୍ବକ ତହିଁର ସୁନ୍ଦର ମୀମାଂସା କରି ସର୍ବସାଧାରଣଙ୍କରସନ୍ତୋଷଭାଜନ ହେଲେ। ସେ ଗୋଳମାଳ ଭାଙ୍ଗିବା ପଛେ ପଛେ ମନ୍ଦିରରେ ପାଇଖାନାଟାକ୍ସ ଏବଂ ବଡ଼ଛତାର ଗୋଳମାଳ ଉପସ୍ଥିତ ହେଲା ତାହା ମଧ୍ୟ ସେହି ମହାତ୍ମା ବେଲି ବାହାଦୂରଙ୍କର ଏ ପ୍ରଦେଶକୁ ଶୁଭାଗମନ ଅବସରରେ ଭାଙ୍ଗି ଗଲା। ବର୍ତ୍ତମାନ ପୁଣି ଏକକାଣ୍ଡ ଉପସ୍ଥିତ ହୋଇଅଛି। ପୁରୀ ମିଉନିସିପାଲଟୀର ଜଣେ ଇନ୍‌ସ୍ପେକ୍ଟର ମନ୍ଦିର ମଧ୍ୟରେ କିସ ମାପିବା ସକାଶେ ମାପଫିତା ଚର୍ମାଚ୍ଛାଦିତ ଖୋଳ ସହିତ ଘେନି ଗଲେ। ମନ୍ଦିର ମଧ୍ୟକୁ ଚର୍ମ୍ମ ଯିବାର ନିଷେଧ। ସୁତରାଂ ଅପବିତ୍ର ଦ୍ରବ୍ୟ ଯିବାରୁ ଜଗନ୍ନାଥଙ୍କ ମହସ୍ନାନ ହେଲା ଏବଂ ମନ୍ଦିରମଧ୍ୟରେ ସେସମୟରେ ପାକ ହେଉଥିବା ସମସ୍ତଦ୍ରବ୍ୟ ନଷ୍ଟ ହେଲା। ସୁଆରମାନେ କ୍ଷତିଗ୍ରସ୍ତ ହେବାରୁ ଦୁଇଦିନପର୍ଯ୍ୟନ୍ତ ଭୋଗ ରାନ୍ଧିବା ବନ୍ଦକଲେ। ଚଢ଼ାଉ ଗୋପୀନାଥ ପଟ୍ଟନାୟକଙ୍କ ନାମରେ ଫଉଜଦାରୀ ନାଲିସ ଉପସ୍ଥିତ ହୋଇଅଛି।

ପୁରୀର ମହାରାଣୀ ଆପଣା ଓକୀଲଙ୍କ ନିକଟକୁ ଯେଉଁ ତାରସମ୍ବାଦ ପଠାଇଥିଲେ ତହିଁରୁ ଉପରଲିଖିତ ସଂକ୍ଷେପ ସମ୍ବାଦ ଆମ୍ଭେମାନେ ଅବଗତ ହୋଇଅଛୁଁ। ବିସ୍ତାରିତ ବିବରଣ ଏପଛେ ଜଣାପଡ଼ିବ। ପୁରୀ କଲେକ୍ଟରଙ୍କ ପ୍ରାର୍ଥନାମତେ ଶ୍ରଯୁକ୍ତ କମିଶନର ସାହେବ ମହାରାଣୀଙ୍କ ଓକୀଲଙ୍କ ସହିତ ପରାମର୍ଶ କରି ବାବୁ ହରେକୃଷ୍ଣ ଦାସ ସେ କି ପୁରୀ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ସକାଶେ ମନୋନୀତ ହୋଇଅଛନ୍ତି ତାହାଙ୍କୁ ଏକ ସପ୍ତାହ ନିମିତ୍ତ ପଠାଇ ଅଛନ୍ତି। ବାବୁ ମହାଶୟ ଗତ ମଙ୍ଗଳବାର ଏଠାରୁ ଡାକରେ ଯାତ୍ରା କଲେ। ଭରସା ହୁଅଇ ଏଥିମଧ୍ୟରେ ଏ ଗୋଳମାଳର କୌଣସି ଗୋଟାଏ ମୀମାଂସା ହୋଇଥିବ ଏବଂ ଯଥାସମୟରେ ତାହା ପାଠକଙ୍କୁ ଜଣାଇବୁଁ।

ସବିଶେଷ ବୃତ୍ତାନ୍ତ ଜାଣିବା ପୂର୍ବେ କୌଣସି ମତାମତ ପ୍ରକାଶ କରିବାକୁ ଆମ୍ଭେମାନେ ଉଚିତ ବିଚାର କରୁ ନାହିଁ କେବଳ ଏତିକି କହିବୁଁ ଯେ ମନ୍ଦିର ପ୍ରତି ପୁନଃ ପୁନଃ ଏପରି ଅତ୍ୟାଚାରମାନ ନିତାନ୍ତ ଗର୍ହିତ ଏବଂ ଦୁଃଖ ଜନକ ଅଟଇ।

ଉପରଲିଖିତ ବିଷୟମାନ ଲେଖା ହେଲା ଉତ୍ତାରୁ ଶ୍ରୀ ଜଗନ୍ନାଥ ସନାତନ ଧର୍ମରକ୍ଷଣୀସଭାରୁ ତଳଲିଖିତ ନିର୍ଦ୍ଧାରଣ ପ୍ରାପ୍ତ ହୋଇ ଏଠାରେ ପ୍ରକାଶ କଲୁଁ ପାଠକମାନେ ତହିଁରୁ ସବିଶେଷ ଜାଣି ପାରିବେ। ଯଥା;-

୧ମ ବିବରଣ- ଗତ ବୁଧବାର ପ୍ରାତଃ ସମୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ମଙ୍ଗଳ ଆରତୀ ଓ ଅବକାଶ ସମାପ୍ତ ହେଲା ପରେ ମିଉନିସିପାଲିଟୀର କର୍ମଚାରୀ ଏକ ଚର୍ମବିନିର୍ମିତ ଖୋଳ ସହିତ (ମେଜରିଂ ଟେପ) ମାପଫିତା ଶ୍ରୀ ମନ୍ଦିର ବେଢ଼ା ମଧ୍ୟକୁ ଆଣି ପଢ଼ିହାରୀ ନିଯୋଗଙ୍କ ବୈଠକସ୍ଥାନକୁ ମାପ କରିଥିଲେ ଯେ ସେହି ଚର୍ମ ପ୍ରବେଶ କରିବା ହେତୁ ସରଘରମାନଙ୍କରେ ଥିବା ମହାପ୍ରଭୁଙ୍କର ଅହ୍ଣଣୀୟା ସାମଗ୍ରୀ ଓ ମୃତ୍ତିକାଭାଣ୍ଡ ଇତ୍ୟାଦି ବହୁମୂଲ୍ୟର ଜିନିସାତମାନ ମାରା ହୋଇ ସେଦିନ ସନ୍ଧ୍ୟା ସମୟକୁ ମହାପ୍ରଭୁଙ୍କର ବଡ଼ ମହାସ୍ନାନ ହୋଇଅଛି ମହାସ୍ନାନ ଖର୍ଚ୍ଚ ଶ୍ରୀ ରାଣୀମହୋଦୟା ହାତରୁ ଦେଇ ଅଛନ୍ତି ଓ ମଧ ଉକ୍ତ ବୁଧବାର ଏବଂ ଗୁରୁବାର ଦୁଇ ଦିବସ କେବଳ କୋଠଭାଗ ହୋଇ ଆଉ ଛତ୍ରଭୋଗ ଆଦି ବନ୍ଦ ହୋଇଥିଲା ଉକ୍ତ ଭୋଗ ବନ୍ଦ ହେତୁ ଚୂଡ଼ା ଟ୧ଙ୍କାକୁ ସେ ୫ର ଭାଉରେ ଖୋଜି ମଧ ମିଳିଲା ନାହିଁ ଅକସର ବ୍ରାହ୍ମଣ ଓ ବୈଷ୍ଣବବାନେ ଓ ସଦାବର୍ତ୍ତରେ ଖାଉଥିବା କାଙ୍ଗାଳିମାନେ ବିଶେଷ କଷ୍ଟ ପାଇ ଅଛନ୍ତି ଏହା ଅତି ଧର୍ମହାନିଜନକ ଶୋଚନୀୟ ବ୍ୟାପାର ଅଟେ ଇତି।-ସନ ୧୮୮୯ ସାଲ।

*ଉତ୍କଳ ଦୀପିକା-୧୮୮୯: ପୃଷ୍ଠା ସଂଖ୍ୟା-୬୬*

ପୁରୀ ଜଗନ୍ନାଥ ସନାତନଧର୍ମରକ୍ଷଣୀସଭାର ଚଳିତମାସ ତା୨ରିଖରେ ଯେଉଁ ଅଧିବେଶନ ହୋଇଥିଲା ତହିଁର କାର୍ଯ୍ୟବଳୀ ପାଠ କରି ଅବଗତ ହେଲୁଁ ଯେ ଉକ୍ତସଭା ଯେଉଁ ଧର୍ମଶାସ୍ତ୍ରପୁସ୍ତକାଳୟ ସ୍ଥାପନ କରିବାକୁ ସଂକଳ୍ପ କରିଅଛନ୍ତି ତହିଁନିମନ୍ତେ ଏଥିମଧ୍ୟରେ ଟ୬୪ଙ୍କା ଭେଦା ସ୍ୱାକ୍ଷରିତ ହୋଇଅଛି ଏବଂ ତହିଁମଧ୍ୟରୁ ଟ୫ଙ୍କା ଉସୁଲହୋଇ ଅଛି। ସର୍ବୋଚ୍ଚ ଦାନ ଟ୫ଙ୍କା ଓ ତାହା ଶ୍ରୀ ନୀଳମଣୀ ବିଦ୍ୟା ରତ୍ନ ମାନେଜର ଓ ଶ୍ରୀ ଭାଗ୍ୟରଥି ପାଣି ମହାଜନ ଏହି ଦୁଇଜଣ ସ୍ୱାକ୍ଷର କରିଅଛନ୍ତି। ଆଉମାନେ ଏଥିରୁ ଊଣା ଅର୍ଥାତ୍ ଟ ୪,୩, ୨ ଓ ୧ ଙ୍କା ଲେଖାଁଏ ଓ କେହି୨ ଏକଟଙ୍କାରୁ ଊଣା ମଧ ଲେଖିଅଛନ୍ତି। ସ୍ଥାନାଭାବରୁ ସମସ୍ତଙ୍କର ନାମ ପ୍ରକାଶ କରିବାକୁ ଅକ୍ଷମ ହେଲୁଁ। ଯାହା ହେଉ ପୁରୀର ପଣ୍ଡା ପଢ଼ିଆରୀ ଓକୀଲ ମୁକ୍ତାର ମହାଜନପ୍ରଭୃତି ନାନା ଶ୍ରେଣୀର ଲୋକ ଏ ବିଷୟରେ ସାହାଯ୍ୟ କରିବାକୁ ଅଗ୍ରସର ହେବାର ଦେଖି ମନରେ ଭରସା ହେଉଛି ଯେ କାର୍ଯ୍ୟଟି ସିଦ୍ଧ ହୋଇ ପାରିବ। ମାତ୍ର ଗୋଟିଏ ଭଲ ପୁସ୍ତକାଳୟ ସକାଶେ ଅନେକ ଟଙ୍କାର ପ୍ରୟୋଜନ। ବଡ଼ଲୋକମାନଙ୍କୁ ଏ ବିଷୟରେ ସାହାଯ୍ୟ କରିବାକୁ ଦେଖିଲେ ବଡ଼ ଆନନ୍ଦିତ ହେବୁଁ।

*ଉତ୍କଳ ଦୀପିକା-୧୮୯୧: ପୃଷ୍ଠା ସଂଖ୍ୟା-୨୫୬*

# ଚନ୍ଦନଯାତ୍ରା

## ଜଗନ୍ନାଥଦେବ

ପୁରୁଷୋତ୍ତମକ୍ଷେତ୍ରରେ ଜଗନ୍ନାଥଦେବଙ୍କ ନୀତିରେ ଗୋଳମାଳ ଉପସ୍ଥିତ ହୋଇଥିବାର ଆମ୍ଭେମାନେ ଅବଗତ ହୋଇ ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ। ଗତ ଶନିବାର ଏବଂ ରବିବାର ଦୁଇପ୍ରହରିଆ ଧୂପ ହେଉଁ୨ ରାତ୍ର ହୋଇଗଲା। ସୁତରାଂ ରାତ୍ରକୁ ଠାକୁର ଚନ୍ଦନଯାତ୍ରାକୁ ବିଜେ କରି ପୋଖରୀରେ ଥରେ ମାତ୍ର ଭ୍ରମଣ କରି ସାରି ଚନ୍ଦନମଣ୍ଡପକୁ ଗଲା ସମୟକୁ ଅନେକ ରାତ୍ର ହୋଇଥିଲା ଏବଂ ରବିବାରଦିନ ରାତ୍ର ଚାପ କି ଭୋଗ ଆଦୌ ହୋଇ ନାହିଁ। ଠାକୁର ବସି୨ ଭୋର୨ ଉଠି ଚାଲିଗଲେ। ତେଣେ ବଡ଼ଦେଉଳରେ ଦିଅଙ୍କର ବଡ଼ସିଂହାର ସେ ଦୁଇଦିନ ବନ୍ଦ ହୋଇଥିଲା। ହିନ୍ଦୁମାନଙ୍କର ପ୍ରଧାନତୀର୍ଥରେ ଦେବସେବାର ଏପରି ଅନୀତି ଦେଖି ଆମ୍ଭେମାନେ ଯପୃରୋନାସ୍ତି କ୍ଷୁବ୍ଧ ହୋଇଅଛୁଁ। ରୀତିମତ ଭୋଗ ଦ୍ରବ୍ୟାଦି ସଂଗୃହୀତ ହେବାରେ ଅସୁବିଧା ପଡୁଥିବାରୁ ଏହା ଘଟନା ହୋଇଅଛି। ଅର୍ଥହୀନତା ସମସ୍ତ ବିଷୟର ମୂଳ ଅଟେ। ଯେଉଁ ମହାଜନ ଘିଅ ଗୁଡ଼ ଦିଏ ଶୁଣିଲୁଁ ତାହାର ପଚିଶହଜାର ଟଙ୍କା ବାକୀ ପଡ଼ିଅଛି ଯେ ଇତିମଧ୍ୟରେ ତାହାକୁ ଅଠରହଜାରଟଙ୍କାର ତନୁଖା ଦିଆଯାଇଥିଲା ମାତ୍ର ବିଚାରକୁ ମିଳିଲା ଦଶହଜାରଟଙ୍କା। ଏମନ୍ତ ସ୍ଥଳରେ ମହାଜନ ଟଙ୍କା ନ ପାଇବା ହେତୁ ଘିଅ ଗୁଡ଼ ଯୋଗାଇବାକୁ ଅକ୍ଷମ ହେଲା ସୁତରାଂ କେତେକ ଭୋଗ ବିଳମ୍ବ ଓ କେତେକ ଭୋଗ ବନ୍ଦ ହେଲା। ଲାଟବନ୍ଦୀ ଟଙ୍କା ଦାଖଲ କରିବାକୁ ରାଣୀ ମହୋଦୟା ବଡ଼ ହରବରରେ ପଡ଼ିଥିବାର ମଧ୍ୟ ସହସ୍ରର ମୁଦ୍ରା ରଣ କରି ତାଙ୍କୁ ଲାଟବନ୍ଦୀ ରକ୍ଷା କରିବାକୁ ହେଲା। ଏଥିରୁ ସ୍ପଷ୍ଟ ଦେଖାଯାଏ ରାଣୀଙ୍କ ହାତରେ ଟଙ୍କା ନାହିଁ। ତେଣେ ଘର ପୋଡ଼ିଯାଇଥିବାରୁ ତାହା ପକ୍କା ନ କରି ଗତି ନାହିଁ। ସେ ପକ୍କା ହେବାରୁ ତହିଁରେ ଟଙ୍କା ଖର୍ଚ୍ଚ ପଡୁଅଛି। ତହିଁ ଉପରେ ବଡ଼ଠାକୁରଙ୍କର ପ୍ରତିଦିନର ଲୋଡ଼ା କିଛି ଊଣା ନୂହେ ବରଂ ଦ୍ରବ୍ୟାଦିର ମୂଲ୍ୟ ଚଢୁଥିବାରୁ ଦିନକୁ ଦିନ ଅଧିକ ଟଙ୍କାର ପ୍ରୟୋଜନ ହେଉଅଛି। ଏହାସବୁ ସମ୍ଭାଳିବା ସହଜକଥା ନୁହଇ। ତଥାପି ସମ୍ଭାଳିବା ତ ଉଚିତ। ଲକ୍ଷ୨ ଲୋକଙ୍କ ଭକ୍ତିପୂର୍ଣ୍ଣ ହୃଦୟକୁ ବେଦନା ଦେବା କଦାପି ଉଚିତ ନୁହେ। ରାଣୀ ମହୋଦୟା ଯଦି ଏ ସମସ୍ତ ନିର୍ବାହ କରିବାକୁ ଅକ୍ଷମ ତେବେ ପ୍ରକାଶ୍ୟଭାବରେ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇ ଏଥିର ବନ୍ଦୋବସ୍ତ କରନ୍ତୁ। କାର୍ଯ୍ୟ କରି ନ ପାରିଲେ ତାହା ଛାଡ଼ିଦେବା ଉଚିତ ମାତ୍ର ଛାଡ଼ିଦେଲେ ମର୍ଯ୍ୟାଦା ନଷ୍ଟ ହେବ ବୋଲି ଯେଉଁ କାର୍ଯ୍ୟ ଆଉ ଚଳିପାରିବ ନାହିଁ ତାହାକୁ ଘେନି ବସିବା ହାସ୍ୟସ୍ପଦ ହେବା ଭିନ୍ନ ଆଉ କିଛି ନୁହଇ। ଗବର୍ଣ୍ଣମେଣ୍ଟଙ୍କ ସହିତ ରଫା ହେଲା ଦିନରୁ ଏପର୍ଯ୍ୟନ୍ତ ତିନି ମେନେଜର ଭୋଗ ହୋଇଗଲା ମାତ୍ର କେହି କିଛି କରି ପାରିଲେ ନାହିଁ। ବର୍ତ୍ତମାନ ମେନେଜର କେହି ନାହିଁ। ଦେବାନ ଆନନ୍ଦବାବୁହିଁ ସର୍ବେସର୍ବା ଏ ଗଣ୍ଡଗୋଳ ଉତ୍ତାରୁ ପୁଣି ନବକଳେବରର ଧୂମଧାମ ପଡ଼ିଅଛି। ଟଙ୍କା ଅଭାବରେ ରାଣୀ ମହୋଦୟା ନବକଳେବର କରିବାକୁ ନାସ୍ତି କରି କେବଳ

ଶ୍ରୀଅଙ୍ଗ ଫିଟାହେବାର ଅନୁମତି ଦେଇଅଛନ୍ତି। ଏ ଆଦେଶରେ କିନ୍ତୁ ଲୋକେ ସନ୍ତୁଷ୍ଟ ନାହାନ୍ତି ଏବଂ ଦାରୁ ଅନେକ ପୁରୁଣା ହୋଇଥିବା ସ୍ଥଳେ ନୂଆକଳେବର ହେବାର ସମସ୍ତେ ବାଞ୍ଛା କରନ୍ତି। ମାତ୍ର ଯେସ୍ଥଳେ ଟଙ୍କା ନାହିଁ ସେ ସ୍ଥଳେ କହିଲେ ଅବା କି ହେବ। ବଡ଼ ୨ ମଠଧାରିମାନେ ଜଗନ୍ନାଥଙ୍କୁ ଘେନି ବଡ଼ଲୋକ ହୋଇ ରହିଥିବା ସ୍ଥଳେ ସେମାନେତ ରାଣୀଙ୍କି ସୁପରାମର୍ଶ କି ସାହାଯ୍ୟ ଦେବାର ଦେଖାଗଲା ନାହିଁ। ଏମନ୍ତସ୍ଥଳେ ରାଣୀ ଏଡ଼େବଡ଼ ଲଟ ନେଇ କିରୂପ ଚଳିବେ? ଜଗନ୍ନାଥଦେବଙ୍କର ନୀତିରେ ଏପରି ସଙ୍କଟ ଉପସ୍ଥିତ ହୋଇଥିବାର ଅବଗତ ହୋଇ ଆମ୍ଭେମାନେ ଆନ୍ତରିକ ଦୁଃଖିତ ହୋଇଅଛୁଁ ଭରସା କରୁଁ ରାଣୀମହୋଦୟ ଶୀଘ୍ର ଏଥିର ନିହିତ ବନ୍ଦୋବସ୍ତ କରି ଲୋକଙ୍କର ସନ୍ଦେହ ଭଞ୍ଜନ କରିବେ।

*ଉତ୍କଳ ଦୀପିକା-୧୮୯୩: ପୃଷ୍ଠା ସଂଖ୍ୟା-୧୪୨*

# ପୁରୀମନ୍ଦିରର ମେଳି

## ପୁରୀମନ୍ଦିରର ମେଳି

ଗତ ସପ୍ତାହରେ ପୁରୀ ଶ୍ରୀଜଗନ୍ନାଥ ଦେବଙ୍କ ମନ୍ଦିରସ୍ଥ ସେବକମାନେ ମେଳି କରି ତିନିଦିନ କୋଠଭୋଗ ଛଡ଼ା ଅନ୍ୟ ସମସ୍ତ ଭୋଗ ବନ୍ଦ କରିଦେଇଥିଲେ ଏବଂ ତହିଁ ପାଇଁ ନଗରରେ ମହା ଅନ୍ନକଷ୍ଟ ଘଟିଥିଲା। ଏକମାତ୍ର ମନ୍ଦିରର ଅନ୍ନମହାପ୍ରସାଦ ସମସ୍ତ ମଠଧାରୀ ଓ ତଦଧିନ ପ୍ରତିପାଳିତ ବହୁସଂଖ୍ୟକ କର୍ମଚାରୀ ଅତିଥି ଅଭ୍ୟାଗତ ଦରିଦ୍ର କଙ୍ଗାଳି ଏବଂ ନିଷ୍ଠାବାନ୍ ଯାତ୍ରିଙ୍କ ଜୀବନ ଧାରଣର ଉପାୟ। ତାହା ବନ୍ଦ ହେବାରୁ ସହସ୍ତ ସହସ୍ର ଲୋକ ମୁଠାଏ ମୁଠାଏ ଚୂଡ଼ା ଖାଇ ଜୀବନ ବଞ୍ଚାଇଲେ ଏବଂ କାର୍ଯ୍ୟ ଦି୫ନ ଦୁର୍ଭିକ୍ଷ ଭୋଗ ହୋଇଗଲା। ମହାପ୍ରଭୂ ଏତିକିରେ ନିୟମ ରଖି ଆଶଙ୍କିତ ଦୁର୍ଭିକ୍ଷକୁ ଓଡ଼ିଶାରୁ ବିଦାୟ ଦେଉନ୍ତୁ ଏତିକି ଆମ୍ଭମାନଙ୍କ ପ୍ରାର୍ଥନା, ମେଳିର କାରଣ ଏହି କି ଜଣେ ଯାତ୍ରୀ ଗୋଟିଏ ଚମଡ଼ାର ମୁଣି କି ଯାହାକୁ ଇଂରାଜରେ ମନିବ୍ୟାଗ କହନ୍ତି ପକେଟରେ ମନ୍ଦିର ମଧ୍ୟକୁ ଘେନି ଯାଇଥିଲା। କାହାରିକି କିଛି ଦେବା ସମୟରେ ଦେଖା ଗଲା ମନ୍ଦିର ମଧ୍ୟକୁ ଚମଡ଼ା ଯିବା ନିଷେଧ। ଭୋଗ ପ୍ରସ୍ତୁତ ସମୟରେ ତାହା ଘଟିବାରୁ ଠାକୁରଙ୍କୁ ମହାସ୍ନାନ ହେଲା ଏବଂ ସମସ୍ତ ଭୋଗ ମାରାଯିବାରୁ ପୋତାଗଲା। ଯାତ୍ରିଠାରୁ କେବଳ କୋଠ ଭୋଗ ଓ ପୂଜାର କ୍ଷତି ପୂରଣ ନିୟାଗଲା ମାତ୍ର ଅନ୍ୟମାନଙ୍କର ଖଟଣି ଏବଂ ଶୁଆରମାନଙ୍କର ରାନ୍ଧିବା ପରିଶ୍ରମର କ୍ଷତି ପୂରଣ ହେଲା ନାହିଁ। ଏଥିପାଇଁ ସୁଆରମାନେ କୋଠ ଭୋଗଛଡ଼ା ଆଉ କାହାରି ଖଟଣି ରାନ୍ଧି ନ ଦେବା ବିଷୟରେ ମେଳି କଲେ। ଦୁଇଦିନ ଗତେ ୩ୟ ଦିନ ଅର୍ଥାତ ଗତ ଶନିବାର ସନ୍ଧ୍ୟା ସମୟରେ ପଣ୍ଡା ପଡ଼ିଆରି ସନ୍ଥ ମହନ୍ତ ଏବଂ ସନ୍ଥମାନଙ୍କର ମନ୍ଦିର ମଧ୍ୟରେ ଏହି ବିରାଟ ସଭା ବସି ଅନେକ ତର୍କ ବିତର୍କ ଉତ୍ତାରୁ ସ୍ଥିର ହେଲା କି ଚର୍ମମୁଣି ବା ବଟୁଆ ମନ୍ଦିରକୁ ଘେନିଯିବା କେମନ୍ତ ଗୁରୁତର ଦୋଷ ଏବଂ ତହିଁପାଇଁ ଅମଣୋହି ଅନ୍ନାଦି ମାରାଯିବ କି ନା ଦି୧୫ନ ମଧ୍ୟରେ ପଣ୍ଡିତମାନେ ଏଥିର ପ୍ରମାଣ ସହିତ ବ୍ୟବସ୍ଥା ସ୍ଥିତ କଲେ

ସଭାରେ ବିଚାର ହେବ ଏବଂ ସୁଆରମାନଙ୍କର ଆପତ୍ତିର ମଧ୍ୟ ସୁବିଚାର ହେବ। ସୁଆରମାନେ ଏଥିରେ ବୋଧପାଇ ସେହି ରାତ୍ରରୁ ଯଥା ନିୟମରେ ଭୋଗ ପ୍ରସ୍ତୁତ କରିବା ଆରମ୍ଭ କଲେ ଏବଂ ପୁରୀବାସିଙ୍କର ଅନ୍ନକଷ୍ଟ ଦୂର କରିବା ଲାଗି ମନିବ୍ୟାଗ ବା ଟଙ୍କା ଆଜିକାଲି ବହୁତ ...... ଘେନି ବୁଲନ୍ତି ବଶେଷତଃ ରେଲ ପ୍ରସାଦରୁ ଏଣିକି ଛୋଟ ବଡ଼ ମନିବ୍ୟାଗ ବା ଅନ୍ୟପ୍ରକାର ବ୍ୟାଗ ବିଶେଷ ପ୍ରଚଳନ ହେବ। ଅନେକ ଯାତ୍ରୀ ବସା ନ କରି ସଙ୍ଗେ ସଙ୍ଗେ ତାହା ଘେନି ମନ୍ଦିରରେ ଦର୍ଶନ କରି ରେଳରେ ଲୋଉଟି ଯିବେ। ସୁତରାଂ ଅଧିକ ଦୁର୍ଘଟନା ଘଟିବାର ସମ୍ଭାବନା ପରନ୍ତୁ ରବରର ମୁଣିକୁ ଭ୍ରମରେ କେତେକ ଲୋକ ଚମଡ଼ା ମନେ କରି ପାରନ୍ତି। ଏମନ୍ତ ସ୍ଥଳେ ସକଳ ଦିଗ ଦେଖି ବିଚାର କରିବାକୁ ହେବ। ଚର୍ମ ନିର୍ମିତ ବାଦ୍ୟଯନ୍ତ୍ର ପୂର୍ବରୁ ନିଷେଧ ନାହିଁ। ଛୋଟ ......... କାଗଜ ଏବଂ ଚମଡ଼ାବନ୍ଧା ଧର୍ମଗ୍ରନ୍ଥ ମନ୍ଦିରକୁ ବିନା ବାଧାରେ ଯାଉଅଛି। ଏ ସ୍ଥଳେ ଚର୍ମ ନିର୍ମିତ ନିଷିଦ୍ଧ ଦ୍ରବ୍ୟ ଦେଶ କାଳ ପାତ୍ର ବି .......... ସୁକ୍ଷ୍ମରୂପେ ଧାର୍ଯ୍ୟ କଲା ଉତ୍ତାରୁ ଯେବେ ମନ୍ଦିରର ପଣ୍ଡା ଓ ପ୍ରହରୀମାନଙ୍କୁ ଦାୟଗ୍ରସ୍ତ କରାଯିବ ତେବେ ଉଚିତ ପ୍ରତିକାର ହେବ। ପଣ୍ଡାମାନେ ଯାତ୍ରିଙ୍କୁ ପ୍ରଥମରୁ ବାଧା ନ କରିଦେଲେ ସେମାନେ କନାବଟୁଆ ଛଡ଼ା ଅନ୍ୟ ମନିବ୍ୟାଗ ମନ୍ଦିରକୁ ଘେନିଯିବେ ନାହିଁ। କୌଣସି ଯାତ୍ରିଠାରୁ ନିସିଦ୍ଧଦ୍ରବ୍ୟ ବାହାରିଲେ ତାହାର ପଣ୍ଡା ଦେଉଳ ବାସନ୍ଦ ବା ଅନ୍ୟ ପ୍ରକାରେ ଦଣ୍ଡିତ ହେବ ଏବଂ କ୍ଷତିପୂରଣ ଦେବ। ପହରବାଲାମାନେ ମଧ୍ୟ ସନ୍ଦେହ ସ୍ଥଳେ ତଲାସି ନେଇ ଯାତ୍ରୀ ଛାଡ଼ିବେ ଏବଂ ଭୋଗ ବୁହା ହେବାର କଞ୍ଚିତ୍‌କାଳ ପୂର୍ବରୁ ଯାତ୍ରିମାନଙ୍କୁ ଆଦୌ ଛାଡ଼ି ଦିଆଯିବ ନାହିଁ। ଏପରି ନିୟମ ହେଲେ ଭବିଷ୍ୟତ୍‌ରେ ନିଷିଦ୍ଧ ଦ୍ରବ୍ୟ ପ୍ରବେଶ କରିପାରିବ ନାହିଁ।

*ଉତ୍କଳ ଦୀପିକା-୧୮୯୭: ପୃଷ୍ଠା ସଂଖ୍ୟା-୮୪*

## ପୁରୀମନ୍ଦିରର ମେଳି

ଦୀପିକାରେ ଦୁଃଖର ସହିତ ପାଠ କଲୁଁ ଗତସପ୍ତାହକରେ ପୁରୀ ଶ୍ରୀ ଜଗନ୍ନାଥ ଦେବଙ୍କ ମନ୍ଦିରର ସେବକମାନେ ମେଳିକରି ତିନିଦିନ କୋଠାଭୋଗଛଡ଼ା ଅନ୍ୟ ସମସ୍ତଭୋଗ ବନ୍ଦକରି ଦେଇଥିଲେ। ମେଳିରକାରଣ ଏହି ଯେ ଜଣେ ଯାତ୍ରୀ ଗୋଟିଏ ଚମଡ଼ାର ମୁଣି (ମନି ବ୍ୟାଗ) ପକେଟରେ ମନ୍ଦିରମଧ୍ୟକୁ ଘେନିଯାଇଥିଲା। ତାହା ଜଣାପଡ଼ିବାରୁ ଠାକୁରଙ୍କ ମହାସ୍ନାନ ହେଲା ଏବଂ ସମସ୍ତଭୋଗମାରାଯିବାରୁ, ପୋତା ଗଲା, ପରେ ଯାତ୍ରୀଠାରୁ କେବଳ କୋଠଭୋଗ ଓ ପୁଜାର କ୍ଷତିପୂରଣ ନିଆଗଲା। ମାତ୍ର ଅନ୍ୟମାନଙ୍କର ଖଟଣୀର ଏବଂ ସୁଆରମାନଙ୍କର ରାନ୍ଧିବା ପରିଶ୍ରମର କ୍ଷତିପୂରଣ ହେଲା ନାହିଁ, ଏଥିପାଇଁ ସୁଆରମାନେ କୋଠଭୋଗ ଛଡ଼ା ଆଉ କାହାରି ଖଟଣି ରାନ୍ଧିନଦେବା ବିଷୟରେ ମେଳିକଲେ। ଦୁଇଦିନ ଗତେ ୩ୟ ଦିନ ପଣ୍ଡା, ପଢ଼ିଆରି ସନ୍ଥ ମହନ୍ତ ଏବଂ ସଜ୍ଜନ ମାନଙ୍କର ମନ୍ଦିରମଧରେ ଏକବିରାଟ ସଭାବସି ଅନେକ ତର୍କ ବିତର୍କ ଉତ୍ତାରୁ ସ୍ଥିର ହେଲାକି ଚର୍ମ୍ମ ମୁଣି ମନ୍ଦିରକୁ ଘେନିଆସିବା କିପରି ଗୁରୁତର ଏବଂ ତହିଁପାଇଁ ଅମଣୋହି ଅନ୍ନାଦିମାରା ଯିବକିନା ୧୫ ଦିନ ମଧ୍ୟରେ ପଣ୍ଡିତମାନେ ଏଥିର ପ୍ରମାଣ ସହିତ ବ୍ୟବସ୍ଥା ଉପସ୍ଥିତ କଲେ ସଭାରେ ବିଚାର ହେବ ଏବଂ ସୁଆରମାନଙ୍କର ଆପତ୍ତିର ମଧ୍ୟ ସୁବିଚାର ହେବ।

ସୁଆରମାନେ ଏଥିରେ ବୋଧ ପାଇ ଯଥାନିୟମରେ ଭୋଗପ୍ରସ୍ତୁତ କରିବାକୁ ଆରମ୍ଭ କଲେ ଏବଂ ପୁରୀବାସୀଙ୍କର ଅନ୍ନକଷ୍ଟ ଦୂରହେଲା। ପୁରୀ ପଣ୍ଡିତମାନେ ମନିବ୍ୟାଗ ପ୍ରବେଶ ସମ୍ବନ୍ଧରେ କିପରି ବ୍ୟବସ୍ଥା ପ୍ରଦାନ କରିବେ ଜାଣିପାରିଲେ ଯଥା କାଳରେ ପ୍ରକାଶ କରିବୁଁ।

*ସମ୍ବଲପୁର ହିତୈଷିଣୀ-୧୮୯୭: ପୃଷ୍ଠା ସଂଖ୍ୟା-୪୧*

# ବିଦ୍ୟାପତି ବଂଶ

ପୁରୀ ଶ୍ରୀ ଜଗନ୍ନାଥ ଜିଉଙ୍କର ପ୍ରାଚୀନ ସେବକ ବିଦ୍ୟାପତି ବଂଶରେ କେବଳ xxx ଗୋଟିଏ ମାତ୍ର ଏକାଦଶବର୍ଷିୟ ବାଳକ ବିଦ୍ୟାମାନ ଥିଲା ଯେ ତଦ୍ୱାରା ମହାପ୍ରଭୁଙ୍କର ପ୍ରଧାନ ଆବଶ୍ୟକୀୟ ନୀତିମାନ ଚଳୁଥିଲା। ବର୍ତ୍ତମାନ୍ ଗତ ପୂର୍ବ ସପ୍ତାହ ଉକ୍ତ ବାଳକଟି ହଠାତ୍ କାଳକବଳରେ ପତିତ ହେବାରୁ ବିଦ୍ୟାପତି ବଂଶ ଉତ୍ସନ୍ନ ହୋଇଯାଇଥିବା ସ୍ଥଳେ ପ୍ରଭୁଙ୍କର ନୀତି କିପରି ନିର୍ବାହ ହେବ ଏ ବିଷୟରେ ବିଶେଷ ଆନ୍ଦୋଳନ ଲାଗି କିଛି ସ୍ଥିର ହୋଇ ନାହିଁ। ବଂଶାନ୍ତରରୁ ପୋଷ୍ୟପୁତ୍ର ଆଣି କୁଳରକ୍ଷା କରିବା ନୀତି ତାହାଙ୍କ ମଧ୍ୟରେ ନ ଥିବା ବିଶେଷ ଚିନ୍ତାର କାରଣ ହୋଇଅଛି।

*ଉତ୍କଳ ଦୀପିକା-୧୮୯୭: ପୃଷ୍ଠା ସଂଖ୍ୟା-୧୧୫*

# ବୋଗଲା ଧର୍ମଶାଳା

## ବୋଗଲା ଧର୍ମଶାଳା

ପୁରୀ କ୍ଷେତ୍ରରେ ଯାତ୍ରିମାନଙ୍କର ବସାଘରର ଉନ୍ନତି ନିମନ୍ତେ କଲିକତା ସହରର ମୁଙ୍ଗେଇ ରାମ କହ୍ନାଇ ଲାଲ ନାମକ କୋଠିର ଅନ୍ତର୍ଗତ ବାବୁ କହ୍ନାଇଲାଲ ବୋଗଲା କଲିକତା ନିବାସୀ ରାୟ କୈଳାସଚନ୍ଦ୍ର ବସୁ ବାହାଦୂରଙ୍କ ମାରଫତରେ ବଙ୍ଗଳାର ସନିଟରୀ କମିଶନରଙ୍କ ନିକଟକୁ ଟ ୨୫୦୦୦ଙ୍କା ଦାନ ସ୍ୱରୂପ ପଠାଇ ଦେଇ କମିଶନର ସାହେବଙ୍କ ଆଦେଶମତେ ସେ ଟଙ୍କା ବ୍ୟୟ କରିବାର ଅଧିକାର ଦେଇ ଅଛନ୍ତି। ବଙ୍ଗୀୟ ଛୋଟଲାଟ ଏହି ଉତ୍କୃଷ୍ଟ ଦାନ ନିମନ୍ତେ ଦାତାଙ୍କୁ ଯଥୋଚିତ ଧନ୍ୟବାଦ ଦେଇ ଏବଂ ସର୍ବସାଧାରଣଙ୍କ ଜାଣିବା ନିମନ୍ତେ ଏ ବିଷୟ କଲିକତା ଗଜେଟରେ ପ୍ରଚାର କରି ଆଦେଶ ଦେଇଅଛନ୍ତି କି କମିଶନର ସାହେବ ଉକ୍ତ ଟଙ୍କା କି ପ୍ରକାରେ ବ୍ୟୟ କରିବାକୁ ଇଚ୍ଛା କରନ୍ତି ତାହା ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବେ ଏବଂ ମଞ୍ଜୁରୀ ନେଇ ଖରଚ କରିବେ। ଗତ ରଥଯାତ୍ରା ବେଳେ ପୁରୀଠାରେ ଯାତ୍ରୀଙ୍କର ବସାଘରର କଷ୍ଟ ଶୁଣି ବୋଗଲା ମହାଶୟ ଏ ଦାନ କରି ଅଛନ୍ତି ସ୍ପଷ୍ଟ ଜଣା ଯାଉଅଛି ଏବଂ ଏହା ତାହାଙ୍କର ଦୟାର୍ଦ୍ର ଚିତ୍ତର ଉତ୍କୃଷ୍ଟ ପରିଚୟ ଦେଉଅଛି। ଏମନ୍ତ ଧର୍ମପରାୟଣ ବ୍ୟକ୍ତି ଅବଶ୍ୟ ଦୁର୍ଲ୍ଲଭ ଅଟନ୍ତି।

*ଉତ୍କଳ ଦୀପିକା, ୧୮୯୯, ପୃଷ୍ଠା-୩୭୮*

# ବୋଗଲା ଧର୍ମଶାଳା

ପୁରୀରେ ବାବୁ କହ୍ନାୟାଲାଲ ବୋଗଲାଙ୍କର ବଦାନ୍ୟତାରେ ଯେଉଁ ଧର୍ମଶାଳା ନିର୍ମିତ ହୋଇଅଛି ଓ ଯାହାର ପ୍ରତିଷ୍ଠା ବା ଦ୍ୱାରା ଉନ୍ମୋଚନ କାର୍ଯ୍ୟ ମାନ୍ୟବର ବଙ୍ଗେଶ୍ୱର ଗତ ସପ୍ତାହରେ ସେ ନଗରକୁ ଆସ ସମାଧା କରିଥିଲେ ତାହାର ଖଣ୍ଡିଏ ରିପୋଟ ଯାହାକି ସେ ସମୟରେ ପଠିତ ହୋଇଥିଲା ସେହି ରିପୋଟର ସାର ମର୍ମ ଏହିକି ସନ୍ ୧୮୯୯ ସାଲ ରଥଯାତ୍ରା ସମୟରେ ପୁରୀରେ ଓଲାଉଠାର ଭୟଙ୍କର ଉତ୍ପାତ ହୋଇଥିଲା ଓ ସହସ୍ର ସହସ୍ର ଯାତ୍ରୀ ମରାପଡ଼ିଥିଲେ। ସରକାରୀ ସ୍ୱାସ୍ଥ୍ୟ କମିଶନର ସେ ବିଷୟର ସ୍ଥାନୀୟ ଅନୁସନ୍ଧାନ କରି ସନ୍ତୋଷଜନକ ଓ ସ୍ୱାସ୍ଥ୍ୟକର ବସାଘରର ଅଭାବ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇଥିଲେ। ବୋଗଲା ମହାଶୟ ସେ ବିଷୟ ଅବଗତ ହୋଇ ପୁରୀରେ ଯାତ୍ରିଙ୍କ ପାଇଁ ଗୋଟିଏ ପ୍ରଶସ୍ତ ଏବଂ ସ୍ୱାସ୍ଥ୍ୟକର ଘର ନିର୍ମାଣାର୍ଥେ ୨୫ ହଜାର ଟଙ୍କା ଦାନ କରିବାର ଇଚ୍ଛା ପ୍ରକାଶ କଲେ ଏବଂ ସନ ୧୮୯୯ ସାଲରେ ସେହି ଟଙ୍କା ବଙ୍ଗସ୍ୱାସ୍ଥ୍ୟ କମିଶନରଙ୍କ ନାମରେ ବଙ୍ଗାଳବାଙ୍କରେ ଜମା ଦେଲେ। ଘରର ନକସା ଓ ଇଷ୍ଟମିଟ ଇତ୍ୟାଦି ହେବାର ଜଣାଗଲା ଯେ ଜମିର ମୂଲ୍ୟ ସହିତ ଟ୨୯୫୮୦ଙ୍କା ଖରଚ ପଡ଼ିବ। ଅବଶିଷ୍ଟ ଟଙ୍କା ସକାଶେ ଦାତାଙ୍କ ନିକଟରୁ ପତ୍ର ଯିବାରୁ ସେ ଆହୁରି ୧୦ ହଜାର ଟଙ୍କା ଦାନ କଲେ। ଘରର ଶେଷ ନକ୍ସା ଇଷ୍ଟମିଟ ଇତ୍ୟାଦି ମଞ୍ଜୁର ହେଉ ହେଉ କେତେକାଳ ବାହାରିଗଲା ଏବଂ ସନ ୧୯୦୪ ସାଲ ଯୁଲାଇ ମାସରେ ଧର୍ମଶାଳାର ନିର୍ମାଣ କାର୍ଯ୍ୟ ଟ୩୩,୫୦୦ଙ୍କାରେ ଶେଷ ହେଲା। ଏଥିରେ ୪୪ ବଖରା ଘର ଅଛି ଏବଂ ଅଗଣାରେ ଗୋଟିଏ ପକାକୂଅ ଅଛି। କୂଅରେ କଳ ବସିଅଛି ଯେ ତଦ୍ଦ୍ୱାରା ଜଳ କଢ଼ା ହେଇ ଯାତ୍ରାଙ୍କ ବ୍ୟବହାର ସକାଶେ ଭରତି ହେବା କାରଣ ଗୋଟିଏ ପକ୍କା କୁଣ୍ଡ ତିୟାର ହୋଇଅଛି। ଧର୍ମଶାଳାର ରକ୍ଷାରକ୍ଷଣ ପାଇଖାନା ଝାଡ଼ିବା ପୁଣି ବାର୍ଷିକ ମରାମତିର ବ୍ୟବସ୍ଥା କିଛି ହୋଇନାହିଁ। ଅନ୍ତତଃ ଜଣେ ଚୌକୀଦାର ନ ରହିଲେ ଚଳିବ ନାହିଁ। ଏଥିପାଇଁ ଧର୍ମଶାଳାରେ ରହିବା ଯାତ୍ରିମାନଙ୍କଠାରୁ ଜଣ ପ୍ରତି ଦାନ ଦୁଇଅଣା ଲେଖାଏଁ ଭଡ଼ା ଆଦାୟର ନିୟମ ହୋଇଥିଲା ମାତ୍ର ଗତରଥ ଯାତ୍ରା ବେଳେ ବହୁକଷ୍ଟରେ କେବଳ ଟ୯୦ଙ୍କା ଆୟ ହୋଇଥିଲା ଏବଂ ଭଡ଼ାର ନାମ ଶୁଣି ଯାତ୍ରିମାନେ ବାହାରି ଗଲେ। ଏକା ରଥଯାତ୍ରା ଓ ଦୋଳଯାତ୍ରା ଛଡ଼ା ଅନ୍ୟବେଳେ ଭଲ ଘରର ଭଡ଼ା ଜଣ ପ୍ରତି ଦିନକୁ ଏକଅଣାରୁ ଅଧିକ ନୁହେଁ। ସୁତରାଂ ଭଡ଼ାଦ୍ୱାରା ଅଧିକ ଆୟର ଆଶା ନାହିଁ ଏବଂ ସମ୍ଭବତଃ ତାହା ଦାତାଙ୍କର ମନୋନୀତ ନୁହେଁ। ଅଥଚ ବାର୍ଷିକ ଏକହଜାର ଟଙ୍କା ଧର୍ମଶାଳାର କାର୍ଯ୍ୟ ନିର୍ବାହାର୍ଥେ ଦରକାର। ଏଥିପାଇଁ ରିପୋର୍ଟରେ ପ୍ରସ୍ତାବ ହୋଇଅଛି କି ଉଣାଦରରେ ଭଡ଼ା ଧାର୍ଯ୍ୟ ହେବ ଅଥବା ଦାତା ଯେବେ ଆହୁରି ୨୫ ହଜାର ଟଙ୍କା ଦାନ କରିବେ ତେବେ ତାହା ସରକାରୀ ଋଣକାଗଜରେ ଜମା ହୋଇ ତହିଁର ବାର୍ଷିକ ସୁଦରୁ ଉକ୍ତ ବ୍ୟୟ ନିର୍ବାହ ହେବ ଏବଂ ଯାତ୍ରିମାନେ ବିନା ଭଡ଼ାରେ ରହିବାଦ୍ୱାରା ତାହାଙ୍କର ଦାନ ସମ୍ପୂର୍ଣ୍ଣରୂପେ ସ୍ୱାର୍ଥ ହେବ।

ଉପର ଲିଖିତ ରିପୋର୍ଟ ଅବଶ୍ୟ ଜିଲାମାଜିଷ୍ଟ୍ରେଟ୍ ପ୍ରସ୍ତୁତ କରିଥିଲେ ଓ ତହିଁର ଶେଷ ଭାଗରେ ଲିଖିତ ପ୍ରସ୍ତାବ ଦାତାଙ୍କୁ ଜଣାଇ ଦିୟା ଯାଇଥିବାର ପ୍ରକାଶ ନାହିଁ। ସେଦିନ ସଭାରେ

ଦାତାଙ୍କର ପ୍ରତିନିଧିସ୍ୱରୂପ ଡାକ୍ତର କୈଳାଶଚନ୍ଦ୍ର ବୋଷ ରାୟ ବାହାଦୁର ଉପସ୍ଥିତ ଥିଲେ। ସମ୍ଭବତଃ ଦାତାଙ୍କ ସଙ୍ଗେ ସଙ୍ଗେ ବିଚାରି ନ ଥିବାରୁ ଏଥିର କିଛି ଉତ୍ତର ଦେଇ ପାରିଲେ ନାହିଁ। ଆମ୍ଭମାନଙ୍କ ବିବେଚନାରେ ଦାତା ମହାଶୟ ଅତ୍ୟନ୍ତ ବଦାନ୍ୟତା ସହିତ ୩୫ ହଜାର ଟଙ୍କା ଦାନ କରି ଧର୍ମଶାଳା ନିର୍ମାଣ କରି ଦେଇଥିବା ସ୍ଥଳେ ଭଡ଼ା ଆଦାୟଦ୍ୱାରା ତହିଁରେ କଳଙ୍କ ଲଗାଇବା ଅଧର୍ମ ଅଟେ ପୁଣି ଆହୁରି ୨୫ହଜାର ଟଙ୍କା ତାହାଙ୍କୁ ପ୍ରାର୍ଥନା କରିବା ମଧ୍ୟ ନିତାନ୍ତ ଖୁଦ୍ରତାର ପରିଚାୟକ। ବାର୍ଷିକ ବ୍ୟୟ ମଧ୍ୟ ଅତ୍ୟନ୍ତ ଅଧିକ ଧରା ଯାଉଅଛି ଏବଂ ମିଉନିସିପାଲଟି ଓ ଲଜିଂହାଉସ କମିଟୀ ଦୁହେଁ ମିଶି ତାହା ଯୋଗାଇବାକୁ ଅକ୍ଷମ ବୋଲିବାର ମଧ୍ୟ କୌଣସି ହେତୁ ନାହିଁ। ଯାତ୍ରୀ ଗଛମୂଳେ ପଡ଼ି ରହିଲେ ମିଉନିସିପାଲିଟି ସେମାନଙ୍କୁ ଖଟୁଅଛି। ଦାତବ୍ୟ ଧର୍ମଶାଳାରେ କାହିଁକି ସେ କାର୍ଯ୍ୟ ନ କରିବେ। ଯାତ୍ରିଙ୍କ ହିତାର୍ଥେ ସୃଷ୍ଟ ଲଜିଂ ହାଉସ ଫଣ୍ଡରୁ ଅନ୍ୟ ବ୍ୟୟ ଦିଆଯିବା ଅସଙ୍ଗତ ନୁହେଁ। ପରନ୍ତୁ ଯୁକ୍ତି ସଙ୍ଗତ ଅନୁରୋଧ କଲେ ଦାତା ଆଉ ୩/୪ ହଜାର ଟଙ୍କା ଦେଇପାରନ୍ତି ଏବଂ ତହିଁର ସୁଦ ଜଣେ ଚୌକି ଦ୍ୱାର ବରଂ ଲେଖାପଢ଼ା ଜାଣିବା ସରକାରତ ବେତନ ସକାଶେ ଯଥେଷ୍ଟ ହେବ।

*ଉତ୍କଳ ଦୀପିକା-୧୯୦୬: ପୃଷ୍ଠା ସଂଖ୍ୟା-୬୯*

# ଭଣ୍ଡାରଘର

## ପୁରୀମନ୍ଦିରର ଭଣ୍ଡାର

ପୁରୀରୁ ସମ୍ବାଦ ପାଇଅଛୁଁ କି ପୁରୀ ରାଜାଙ୍କର ଦେଣା ପରିଶୋଧ କାରଣ ଶ୍ରୀ ଜଗନ୍ନାଥ ଦେବଙ୍କ ବହୁକାଳ ରକ୍ଷିତ ଭଣ୍ଡାର ଖୋଲାହୋଇ ବହୁମୂଲ୍ୟ ଦ୍ରବ୍ୟାଦି ବିକ୍ରୟ ଦ୍ୱାରା ଯେତେଟଙ୍କା ଆୟ ହେବ ରାଜା ତମସୁକଦ୍ୱାରା ତାହା ନେଇ ପଶ୍ଚାତ୍ ଭଣ୍ଡାରକୁ ପରିଶୋଧ କରିବେ। ଏହି ମର୍ମରେ ଗୋଟିଏ ଜନରବ ସେଠାରେ ଉଠିଅଛି ଏବଂ ତାହା ଶୁଣି ପୁରୀର ସନ୍ଥ, ମହନ୍ତ ସେବକ ଓ ଜନସାଧାରଣ ମହା ଚିନ୍ତାସାଗରରେ ମଗ୍ନ ହୋଇଅଛନ୍ତି। ଗତ ବଡ଼ ଏକାଦଶୀଦିନ ରାଜମାନେଜରଙ୍କ ଦ୍ୱାରା ଏକ ସଭା ଆହୁତ ହୋଇଥିଲା ମାତ୍ର କଥିତ ହୁଅଇ ଇଉରୋପୀୟ ଏବଂ ଦେଶୀୟ ହାକିମ ବୃନ୍ଦ ଏବଂ ଏମାରମଠର ମହନ୍ତ ଛଡ଼ା ଅଧିକ ଲୋକ ଉପସ୍ଥିତ ହୋଇ ନ ଥିଲେ। ସୁତରାଂ ସଭାରେ କି ସ୍ଥିର ହେଲା ଜଣାପଡ଼ି ନାହିଁ। ଏ ଜନରବରେ କିଛି ସତ୍ୟ ଅଛି କି ନାହିଁ ଆମ୍ଭେମାନେ କହି ନ ପାରୁଁ ମାତ୍ର ଯେ ସ୍ଥଳେ କଥା ଉଠିଅଛି ସେ ସ୍ଥଳେ ସାଧାରଣ ମତ ପ୍ରକାଶ କରିବା ଉଚିତ ବୋଧ ହେଉଅଛି। ହିନ୍ଦୁମାନେ ଯେମନ୍ତ ଶ୍ରୀ ଜଗନ୍ନାଥ ଦେବଙ୍କୁ ତେମନ୍ତ ତାହାଙ୍କର ମନ୍ଦିର ଓ ମନ୍ଦିରସ୍ଥ ଭଣ୍ଡାରକୁ ମାନ୍ୟ କରନ୍ତି। ସେ ଭଣ୍ଡାରରେ ଥିବା ବହୁମୂଲ୍ୟ ଦ୍ରବ୍ୟମାନ ଅନେକାନେକ ରାଜା ଓ ଅପର ଧନାଢ଼୍ୟ ହିନ୍ଦୁମାନେ ପ୍ରାଚିନକାଳରୁ ଦାନ କରିଅଛନ୍ତି ଏବଂ ସେ ସବୁ ହିନ୍ଦୁମାନଙ୍କର ସାଧାରଣ ସମ୍ପତ୍ତି ବୋଲିବାକୁ ହେବ। ପୁରୀ ରାଜା ମନ୍ଦିରର ସୁପ୍ରଣ୍ଟେଣ୍ଟ ସ୍ୱରୂପ ତହିଁର ରକ୍ଷକ ଓ ମାରଫତଦାର କ୍ଷେତ୍ର ମହାତ୍ମ୍ୟରେ ପ୍ରକାଶ ଯେ ଓଡ଼ିଶାରେ ଯେ

କେହି ରାଜ୍ୟଭାର ଗ୍ରହଣ କରିବେ ସେ ଜଗନ୍ନାଥ ଦେବଙ୍କ କାର୍ଯ୍ୟ ନିର୍ବାହ କାରଣ ତତ୍ତ୍ୱାବଧାରକ ସ୍ୱରୂପ ନିଯୁକ୍ତ ରହି ଶ୍ରୀ ଜିଉଙ୍କର ସେବା ପୂଜା ଚଳାଇବ ଏହି ଆଦେଶ ଇନ୍ଦ୍ରଦ୍ୟୁମ୍ନ ମହାରାଜ ଗାଲମାଧବ ରାଜାଙ୍କୁ ଦେଇଥିଲେ ଏବଂ ତଦନୁସାରେ ଏପର୍ଯ୍ୟନ୍ତ କାର୍ଯ୍ୟ ଚାଲିଆସୁଅଛି।

କେହି କହିପାରନ୍ତି ସେ ଖଞ୍ଜା ସମ୍ପତ୍ତିର ଆୟ ସେବା କାର୍ଯ୍ୟକୁ ନିଅଣ୍ଟ ହେଲେ ସଞ୍ଚିତ ଚଳନ୍ତି ସମ୍ପତ୍ତିଦ୍ୱାରା ତାହା ଚଳାଇବା ତତ୍ତ୍ୱାବଧାରକଙ୍କର ଅଧିକାରର ବହିର୍ଭୁତ ନୁହେ। ମାତ୍ର ଆୟ କାହିଁକି ନିଅଣ୍ଟ ହେଲା ଓ ତାହା ନିବାରଣ କି କି ଉପାୟ କରି ସୁଦ୍ଧା ସେ ସମ୍ଭାଳିପାରିଲେ ନାହିଁ ତତ୍ତ୍ୱାବଧାରକଙ୍କର ଅଗ୍ରେ ତାହା ସନ୍ତୋଷଜନକ ରୂପେ ଦେଖାଇବା ଉଚିତ। ତାହା ନ କରି ଭଣ୍ଡାର ହସ୍ତକ୍ଷେପ କଲେ ସାଧାରଣ ହିନ୍ଦୁ ସମାଜ ଅତ୍ୟନ୍ତ ସନ୍ତାପିତ ଓ ବିରକ୍ତ ହେବେ ସନ୍ଦେହ ନାହିଁ।

*ଉତ୍କଳ ଦୀପିକା-୧୯୦୦: ପୃଷ୍ଠା ସଂଖ୍ୟା-୨୩୧*

# ମନ୍ଦିର ମ୍ୟାନେଜର ରାୟ ରାଜକିଶୋର ଦାସ ବାହାଦୂରଙ୍କ ଅମଳ

ପୁରୀରୁ ସମ୍ବାଦ ପାଇଅଛୁଁ ଯେ ଆଜି କାଲି ଶ୍ରୀଜିଉଙ୍କ ନୀତି ଯଥାସମୟରେ ନିର୍ବାହିତ ହେଉ ଅଛି। ମଧ୍ୟାହ୍ନ ଧୂପ ପରେ ଦିବସରେ ପହୁଡ଼ ଏବଂ ରାତ୍ର ପ୍ରାୟ ଘ ୧ ୨ ଣ୍ଟା ମଧରେ ବଡ଼ ସିଂହାର ଭୋଗ ହୋଇ ପହୁଡ଼ ହେଉଅଛି। ବଡ଼ ସୁଖର ବିଷୟ। ମେନେଜର ମହୋଦୟଙ୍କ ଆଦେଶ ମତେ ମନ୍ଦିର ମଧକୁ ପାନଖାଇଯିବାର ନିଷେଧ ହୋଇଅଛି। ଯେଉଁମାନଙ୍କ ନିକଟରେ ପାନ ଥିବାର ଦେଖା ଯାଉଅଛି ସେମାନଙ୍କ ସମୁଚିତ ଅର୍ଥଦଣ୍ଡ ହେଉଅଛି। ବାସ୍ତବିକ ଲୋକେ ମନ୍ଦିର ମଧରେ ପାନ ଖାଇ ମନ୍ଦିରର ଅନେକାଂଶ ପାନପିକ ଦ୍ୱାରା ନିତାନ୍ତ ବିଶ୍ରୀ କରି ଦେଉଥିଲେ। ମେନେଜର ମହୋଦୟ ତାହାର ପ୍ରତିବିଧାନ କରି ଧନ୍ୟବାଦର ପାତ୍ର ହୋଇଅଛନ୍ତି ମନ୍ଦିରର ଭଣ୍ଡାର ମଧରେ ଥିବା ଠାକୁରଙ୍କର ଅବ୍ୟବହାର୍ଯ୍ୟ କେତେକ ପାଟ, ଲୁଗା, ଶେଯ, ମଖମଲ ପ୍ରଭୃତି ମେନେଜରଙ୍କ ଆଦେଶରେ ଉଚିତ ମୂଲ୍ୟରେ ନିଲାମ ହେଉଅଛି।

*ଉତ୍କଳ ଦୀପିକା-୧୯୦୩: ପୃଷ୍ଠା ସଂଖ୍ୟା-୨୧୯*

## ପୁରୀ ରଥଯାତ୍ରା

ଜୁଲାଇ ତା୨ରିଖ ଗୁରୁବାର ଦିନ ସୁଦ୍ଧା ତିନି ରଥ ଦକ୍ଷିଣମୂର୍ତ୍ତି ହୋଇଥିଲେ। ପରଦିନ ଶୁକ୍ରବାର ସନ୍ଧ୍ୟାଦର୍ଶନ ଶେଷ ରାତ୍ରରେ ଖେଚଡ଼ି ଭୋଗ ହୋଇ ତା୪ରିଖ ଶନିବାର ସନ୍ଧ୍ୟା ସମୟରେ ଠାକୁରମାନେ ବାହୁଡ଼ା ବିଜୟ କରି ରଥାରୋହଣ କଲେ।

ଅନ୍ୟାନ୍ୟ ବର୍ଷ ରଥର ଦକ୍ଷିଣମୁହାଁ ଶେଷ ହେଉ ନ ଥିବାରୁ ଠାକୁରମାନେ ବାହୁଡ଼ା ବିଜୟ କରି ଅନେକ ଦିନ ଜଗମୋହନ ସ୍ତମ୍ଭରେ ବିରାଜମାନ କରି ରହନ୍ତି। କିନ୍ତୁ ଏ ବର୍ଷ ମେଜର ମହୋଦୟ ରୀତିମତ ମଫସଲରୁ ବେଠିଆ ଅଣାଇ ବାହୁଡ଼ା ପୂର୍ବଦିନରୁ ଦକ୍ଷିଣମୂର୍ତ୍ତି ଶେଷ

କରିଥିବାରୁ ଠାକୁରମାନେ ଜଗମୋହନରେ ନ ରହି ବିଧିମତେ ଦଶମୀ ଦିନ ବାହୁଡ଼ା ବିଜୟ କରିଥିଲେ। ଏପରି ବହୁକାଳରୁ ଦେଖା ନ ଥିଲା।

ତା୫ରିଖ ରବିବାର ବଳଦେବ ଜୀଉଙ୍କ ରଥ ଦୁଇବେଳା ଟଣା ହୋଇ ସିଂହଦ୍ୱାରରେ ଲାଗିଲା।

ତା୬ରିଖ ସୋମବାର ସୁଭଦ୍ରା ଦେବୀଙ୍କ ରଥ ଅପରାହ୍ନରେ ଟଣା ହୋଇ ସିଂହଦ୍ୱାରସ୍ଥ ହେଲା।

ତା୬ରିଖ ମଙ୍ଗଳବାର ଅପରାହ୍ନରେ ଶ୍ରୀ ଜଗନ୍ନାଥ ଦେବଙ୍କ ରଥ ଟଣା ହୋଇ କାଞ୍ଜି ହାଉସ ପର୍ଯ୍ୟନ୍ତ ଆସିଥିବା ସମୟେ ଦୈବାତ୍ ଗୋଟିଏ ଚକର ତୁମ୍ବ ଫାଟିଯିବାରୁ ରଥ ସେହି ସ୍ଥାନରେ ରହିଲା।

ତା୮ରିଖ ଦିନ ଉକ୍ତ ଭଗ୍ନସ୍ଥାନ ମରାମତୀ ହୋଇଥିଲା। ସୁତରାଂ ଏ ଦିନ ରଥ ଚଳି ନ ଥିଲା।

ତା୯ରିଖ ଗୁରୁବାର ଉକ୍ତ ରଥ ରାଜବାଟି ପର୍ଯ୍ୟନ୍ତ ଆସି ସେଠାରେ ଲକ୍ଷ୍ମୀନାରାୟଣ ଭେଟ ହେବା ପରେ ସିଂହଦ୍ୱାରରେ ଲାଗିଲା।

ତା୧୦ରିଖ ଶୁକ୍ରବାର ଅପରାହ୍ନ ଘ୪ଣ୍ଟା ସମୟରେ ପ୍ରଭୂମାନେ ପହଣ୍ଡି ବିଜୟ କରି ଶ୍ରୀ ମନ୍ଦିରର ରତ୍ନ ସିଂହାସନାରୋହଣ କଲେ।

ଗତବର୍ଷ ଗହ୍ମାପୂର୍ଣ୍ଣିମା ପୂର୍ବଦିନ ଠାକୁରମାନେ ନୀଳାଦ୍ରି ବିଜୟ କରିଥିଲେ। ସୁତରାଂ ପ୍ରାୟ ଦେଢ଼ମାସରେ ରଥଯାତ୍ରା ଶେଷ ହୋଇଥିଲା। ଏ ବର୍ଷ ଦି୧୫ନରେ ଠାକୁରମାନେ ଶ୍ରୀମନ୍ଦିରରେ ପହୁଞ୍ଚିବା ଅତ୍ୟନ୍ତ ସୁଖର ବିଷୟ ଅଟେ।

ମନ୍ଦିରର ରୋଷଘର ଜୀର୍ଣ୍ଣ ଓ ଭଗ୍ନ ପ୍ରାୟ ହୋଇଥିବାରୁ ମେନେଜର ମହୋଦୟଙ୍କ ଆଦେଶମତେ ଆଜି କାଲି ରୋଷଘରେ ପାକକାର୍ଯ୍ୟ ହେଉ ନାହିଁ। କେବଳ କୋଠଭୋଗ କ୍ଷୁଦ୍ର (ମେରେଦା) ରୋଷଘରେ ହେଉଅଛି। ସୁତରାଂ ଏକଅଣାର ମହାପ୍ରସାଦ ସମୟେ ସମୟେ ଏକଟଙ୍କାରେ ବିକ୍ରୟ ହେଉଅଛି ଏବଂ ସମୟାନୁସାରେ ତାହା ମିଳୁ ନାହିଁ।

*ଉତ୍କଳ ଦୀପିକା-୧୯୦୩: ପୃଷ୍ଠା ସଂଖ୍ୟା-୨୮୧*

ଶ୍ରୀ ରାମଚନ୍ଦ୍ର ଦାସ- ପୁରୀମନ୍ଦିରର ମାନେଜର ବାବୁ ରାଜକିଶୋର ଦାସ ଏଥର ଚନ୍ଦନ ଯାତ୍ରାର ଏମନ୍ତ ସୁବିଧାମାନ କରିଅଛନ୍ତି ଯାହା କି ଗତ ବ୨୫ର୍ଷ ହେଲା ଦେଖା ନ ଥିଲା ଏବଂ ଏହା ଏତିକି ନୁହେଁ ମାତ୍ର ମହାପ୍ରଭୁଙ୍କର ଦୈନିକ ଓ ପର୍ବାଦି ସକଳ ନୀତି ଅତ୍ୟନ୍ତ ସୁଦକ୍ଷତା ସହିତ ଯଥା ନିୟମରେ ନିର୍ବାହ କରି ଏଥିମଧ୍ୟରେ ପ୍ରାୟ ୩୦ ହଜାର ଟଙ୍କା ମନ୍ଦିର ପାଣ୍ଠିରେ ଜମା କରିଅଛନ୍ତି ବୋଲି ତାହାଙ୍କର ଏହି କୀର୍ତ୍ତି ମନ୍ଦିରର ମାଦଳା ପାଞ୍ଜିରେ ଅମର ଅକ୍ଷରରେ ଲିଖିତ ହେବା ଉଚିତ। ବୋଲିବା ବାହୁଲ୍ୟ ଯେ ଲେଖକ ମହାଶୟ ସାଧାରଣ ମତ ଯଥାର୍ଥରୂପେ ପ୍ରକାଶ କରିଅଛନ୍ତି।

ପ୍ରେରିତପତ୍ର

ପତ୍ରପ୍ରେରକଙ୍କ ମତାମତ ନିମନ୍ତେ ଆମ୍ଭେମାନେ ଦାୟୀ ନୋହୁଁ।

*ଉତ୍କଳ ଦୀପିକା-୧୯୦୪: ପୃଷ୍ଠା ସଂଖ୍ୟା-୨୦୫*

# ପୁରୀ ରଥଯାତ୍ରା

ଗତ ସୋମବାର ଦି ୧୫ନ ଅନବସର ପୁଣି ହେବାରୁ ମଙ୍ଗଳବାର ପୂର୍ବାହ୍ଣ ପ୍ରାୟ ଘ ୮ ଣ୍ଟାଠାରୁ ନବଯୌବନ ଦର୍ଶନ ଆରମ୍ଭ ହୋଇଥିଲା। ମନ୍ଦିରର ପୁଲୀଶ ଓ ପ୍ରତିହାରୀମାନଙ୍କ ଦ୍ୱାରା ଦର୍ଶନର ସୁବ୍ୟବସ୍ଥା କରା ହୋଇଥିଲା ଯାତ୍ରିମାନେ ସୁଖରେ ନବଯୌବନ ଦର୍ଶନ କରିଥିଲେ ଓ କୌଣସି ଅନିଷ୍ଟ ଘଟି ନ ଥିଲା। ଏକ ଏକ ଥର ସରକାରୀ ପୁଲୀଶ ଯେପରି ନବଯୌବନ ଦର୍ଶନ ବନ୍ଦ କରି ଦେଉଥିଲେ ଓ କେତେଯାତ୍ରୀ ପ୍ରହରୀ ଜର୍ଜ୍ଜରିତ ହୋଇ ଯେପରି କଷ୍ଟ ଅନୁଭବ କରୁଥିଲେ ଏବର୍ଷ ତାହା ନ ହେବାରୁ ବହୁଦୂରାଗତ ବିଦେଶୀ ଯାତ୍ରିମାନେ ମେନେଜର ବାବୁଙ୍କର ବିଶେଷ ସୁଖ୍ୟାତି କରିଥଲେ।

ବୁଧବାର ଉଭାଯାତ୍ରା ସକାଳ ଧୂପ ପରେ ରଥକୁ ଆଜ୍ଞାମାଳ ଆସିଥିଲା। ପୂର୍ବରୁ ରଥ ମଣ୍ଡଳ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଶେଷ ହୋଇଥିଲା। ରଥର ଯେଉଁ ଦଉଡ଼ି ଏଠାରେ ତିଆର ହେଉଥିଲା ଏବର୍ଷ ତାହା ହୋଇ ନାହିଁ। ଗତବର୍ଷ ପରୀକ୍ଷାସ୍ୱରୂପ କଲିକତାରୁ ଯେଉଁ ଦଉଡ଼ି ଆସିଥିଲା ସେ ଦଉଡ଼ି ସବୁ ହାଲକା ଓ ସୁଦୃଢ଼ ହେବାରୁ ଏବର୍ଷ ରଥର ସମସ୍ତ ଦଉଡ଼ି କଲିକତାରୁ ଆସିଅଛି।

ଅପରାହ୍ଣ ଘ୩ଣ୍ଟା ସମୟରେ ରଥ ସିଂହଦ୍ୱାରକୁ ଯିବାର ଉଦ୍ୟୋଗ ହୋଇ ରଥଟଣା ଆରମ୍ଭ ହେଲା ଏବଂ ଚାରି ଘଣ୍ଟାଠାରେ ତିନିରଥ ସିଂହଦ୍ୱାରସ୍ଥ ହୋଇଥିଲା। ରଥଟଣା ସମୟରେ ପୁଲୀଶ ସାହେବ ସଦଳରେ ଓ ମେନେଜର ମହୋଦୟ ଉପସ୍ଥିତ ଥିଲେ। ପୂର୍ବେ ରଥ ଚଳିବା ସମୟେ ଯେପରି ଠିକାଦାରମାନେ ରହିଥିଲେ ଏ ବର୍ଷ ତାହା ନ ହୋଇ ପୁଲୀଶ କନେଷ୍ଟବଲମାନେ ରହିଥିଲେ।

ଏ ବର୍ଷ ରଥର ଅଦ୍ଭୁତପୂର୍ବ ସୌନ୍ଦର୍ଯ୍ୟ ଲୋକଙ୍କର ବିଶେଷ ଚିତ୍ତାକର୍ଷିତ ହୋଇଅଛି। ବହୁ କାଳ ପୂର୍ବେ ଯେପରି ହେଉଥିବାରୁ ଶୁଣାଥିଲା ଏ ବର୍ଷ ଦେଖିବାରେ ଆସିଲା। ତହିଁ ଉପରେ ସୁଯୋଗ୍ୟ ମେନେଜରଙ୍କର କଳ୍ପନାପ୍ରସୁତ କାର୍ଯ୍ୟ ମିଶି ଅଧିକ ସୁନ୍ଦର ହୋଇଅଛି। ରଥର ଦୃଢ଼ତା ଓ ଶୋଭା ଉଭୟ ବିଷୟରେ ମେନେଜର ଦୃଷ୍ଟିରେ ରଖି ଏବଂ ଅଧିକ ଏକମାସ ସମୟ ପାଇ କାରିଗରମାନଙ୍କୁ ନିଜର ବୁଦ୍ଧିଚାତୁର୍ଯ୍ୟ ପ୍ରକାଶ ଓ ଅବ୍ୟଗ୍ରଭାବେ କାର୍ଯ୍ୟ କରିବାକୁ ଉତ୍ସାହ ଦେଇଥିଲେ। ଚତୁପାର୍ଶ୍ୱସ୍ଥ ରଥର ପାର୍ଶ୍ୱଦେବତାମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ ସୁଚିତ୍ରିତ ବିମାନମଧ୍ୟସ୍ଥ ହୋଇଅଛନ୍ତି ଏବଂ ରଥର ତଳପୀଢ଼ର ସର୍ବାଂଶ ଚକ ପର୍ଯ୍ୟନ୍ତ ବିବିଧ ରଙ୍ଗରେ ରଞ୍ଜିତ ହୋଇଅଛି। ସିଂହାସନ ଉପରିସ୍ଥ କଚକମଣ୍ଡପ ଉପରେ ମୋଟା ଲୁଗାଜଡ଼ିତ ହୋଇ ସେଥିରେ ଉତ୍ତପ୍ତ ଝୁଣା ଦିଆ ଯାଇଥିବାରୁ ଶ୍ରୀଜିଉଙ୍କ ଉପରେ ବୃଷ୍ଟିଜଳ ପଡ଼ିବାର କୌଣସି ଆଶଙ୍କା ନାହିଁ। ଝରାଫରୁଆ ପ୍ରଭୃତି ଯଥାସ୍ଥାନରେ ସନ୍ନିବିଷ୍ଟ ହୋଇଅଛି। ପୁର୍ବେ ଶ୍ରୀଜିଉଙ୍କ ସିଂହାସନର ଚାରିପାଖ ଯେପରି ବସ୍ତ୍ରାବୃତ୍ତ ହୋଇଥାଏ ଏ ବର୍ଷ ସେପରି ନ ହୋଇ କଟକର କେତେକ କାରିଗରମାନଙ୍କ ଦ୍ୱାରା କାଠର ଫାରମା ଉପରେ ମୋଟା ଲୁଗା ଦିଆ ହୋଇ ସେଥିରେ ଦଶାବତାର, ଯୁଗଳମୂର୍ତ୍ତି, ଚାମର ବ୍ୟଜନ ଧାରଣୀ ରମଣୀ ମୂର୍ତ୍ତି ପ୍ରଭୃତି ନାନାରୂପ

ଚିତ୍ର କରା ହୋଇଅଛି। ଅଭିନୟର ପରଦା (ସୀନ୍) ପରି ପ୍ରତ୍ୟେକ ରଥର ଚାରିଦ୍ୱାର ସକାଶେ ଚାରି ଗୋଟି ଲେଖାଏଁ ପଟରେ ନାନାରଙ୍ଗର ମୂର୍ତ୍ତି ଚିତ୍ରିତ ହୋଇ ଦ୍ୱାର ଘଡ଼ାତଳ ଦ୍ୱାରମାନଙ୍କରେ ଦିଆ ହୋଇଅଛି ଓ ପ୍ରତ୍ୟେକ ଦ୍ୱାରର ଉଭୟ ପାର୍ଶ୍ୱରେ ସୁଚିତ୍ରିତ ଗଙ୍ଗା, ଯମୁନା, ଜୟ ବିଜୟାଦି କାଷ୍ଠମୟୀ ମୂର୍ତ୍ତି ସ୍ଥାପିତ ହୋଇଅଛି।

ଅକାଳ, ରେଳ ଦୁର୍ଘଟଣା, ନଦୀବୃଦ୍ଧି ବର୍ଷାଦି କାରଣରୁ ବଙ୍ଗାଳୀ ଯାତ୍ରୀ ଆଶାନୁରୂପ ହୋଇ ନ ଥିଲେ। ବୁଧବାର ସୁଦ୍ଧା ପନ୍ଦର ହଜାର ପଶ୍ଚିମା ଓ ପାଞ୍ଚହଜାର ବଙ୍ଗ ଯାତ୍ରୀ ହୋଇଥିବାର ଅନୁମାନ କରାଯାଇଥିଲା। ଆଉ ମଧ୍ୟ ଅନେକ ପଶ୍ଚିମା ଯାତ୍ରୀ ଆସୁଅଛନ୍ତି। ଟ୍ରେନ୍ ଦୈନିକ ୫/୬ ବାର ଆସୁଅଛି। ଘରଭଡ଼ା ପ୍ରତ୍ୟେକ ଯାତ୍ରୀ ସକାଶେ ଗତ ବୁଧବାର ପର୍ଯ୍ୟନ୍ତ ଦୁଇଟଙ୍କା ହୋଇଥିଲା।

ତା୧୪ରିଖ ଗୁରୁବାର ଠିକ୍ ସୂର୍ଯ୍ୟୋଦୟ ବେଳାରେ ପ୍ରଭାତୀ ଖେଚଡି ଭୋଗ ଶେଷ ହୋଇ ରଥପ୍ରତିଷ୍ଠାପରେ ପହଣ୍ଡିର ଉଯୋଗ ହୋଇଥିଲା। ପୂର୍ବାହ୍ନ ପ୍ରାୟ ଘ୮ଣ୍ଟାରେ ପହଣ୍ଡିବିଜେ ଆରମ୍ଭ ହୋଇ ଘ୧୦ଣ୍ଟା ସମୟରେ ଠାକୁରମାନେ ରଥାରୁଢ଼ ହେଲେ। ରଥର ସାରଥିମାନେ ସୁଚିତ୍ରିତ ଓ ସୁସଜ୍ଜିତ ପରିଚ୍ଛଦପରି ଧ୍ୟାନପୂର୍ବକ ରଥସ୍ଥ ହେଲେ ଏବଂ ପୁରୀର ରାଜା ସ୍ୱୟଂ ରଥମାନଙ୍କରେ ଛେରାପହରା କରିଥିଲେ। ନୂତନନିର୍ମିତ ରଥବାହୀ ଅଶ୍ୱମାନେ ରଥମାନଙ୍କରେ ଯୋଜିତ ହେଲେ। ମଧ୍ୟାହ୍ନ ପ୍ରାୟ ଘ୧୨ଣ୍ଟାଠାରେ ବଳଦେବଜିଉଙ୍କର ରଥ ଓ ତତ୍‌ପଶ୍ଚାତ୍ ଦେବୀରଥ ତାଙ୍କ ପଛରେ ଶ୍ରୀ ଜଗନ୍ନାଥଙ୍କ ରଥ ଏକସଙ୍ଗେ ଟଣା ହୋଇଥିଲା। ବଡ଼ରଥ ଓ ଠାକୁରାଣୀଙ୍କ ରଥରେ ପୁଲୀଶ ଓ ଡାକ୍ତରସାହେବ, x x x x ଇଲାକା ସାହେବବାନେ x x x x ଏବଂ ଜଗନ୍ନାଥଦେବଙ୍କ x x x x ସାହେବ ଓ ମେନେଜର ଉପସ୍ଥିତ x x x x ସାହେବମାନେ ହାତରେ ପତାକାଧରି ସମୟେ ସମୟେ ରଥଦଉଡ଼ି ଟାଣିବା ଓ ଦଉଡ଼ି ବାନ୍ଧିବା ବିଷୟରେ ବିଶେଷ ପରିଶ୍ରମ ଓ ଯତ୍ନସହିତ ସାହାଯ୍ୟ କରୁଥିବାର ଦେଖାଗଲା। ଏକସଙ୍ଗେ ତିନିରଥ ଚଳିବାଦୃଶ୍ୟ ଅତିଚମତ୍କାର ହୋଇଥିଲା। ଅପରାହ୍ନ ପ୍ରାୟ ଘ୪ଣ୍ଟାଠାରେ ତିନିରଥ ଗୁଣ୍ଡିଚାମନ୍ଦିରରେ ଲାଗିଲେ।

"ଗତାଗତଂ ପରିତ୍ୟଜ୍ୟ ସପ୍ତାହଂ ମଣ୍ଡପେ ସ୍ଥିତଂ" ଅର୍ଥାତ୍ ଯିବାଆସିବାରେ ଦୁଇଦିନ ଏବଂ ଗୁଣ୍ଡିଚାମନ୍ଦିର ସିଂହାସନରେ ଦି୭ନ ରହିବା ନୀଳାଦ୍ରି ମହୋଦୟ ଓ ମାଦଳାପାଞ୍ଜିରେ ଉଲ୍ଲେଖ ଥିବା ସମସ୍ତେ ଜାଣିଥିଲେ କିନ୍ତୁ ଏହା ୬୦/୭୦ବର୍ଷ ମଧ୍ୟରେ କେହି ଦେଖି ନ ଥିଲେ। ଏ ବର୍ଷରେ ଶ୍ରୀଗୁଣ୍ଡିଚାଦିନ ତିନିରଥ ଗୁଣ୍ଡିଚାମନ୍ଦିରରେ ଲାଗିଥିବାର ଦେଖି ସମସ୍ତେ ଏକବାକ୍ୟରେ ମେନେଜରଙ୍କୁ ଧନ୍ୟ ଧନ୍ୟ କହୁଅଛନ୍ତି ଏବଂ ସର୍ବତ୍ର ମେନେଜରଙ୍କ ସୁଖ୍ୟାତିପ୍ରଚାରିତ ହୋଇଅଛି। ବାସ୍ତବିକ ମେନେଜରଙ୍କ ଏହି କୀର୍ତ୍ତି ଚିରକାଳ ଅକ୍ଷୟ ହୋଇ ରହିଲା। ସୁତରାଂ ଏବର୍ଷ ଗୁଣ୍ଡିଚାମନ୍ଦିରରେ ସମ୍ପୂର୍ଣ୍ଣ ସାତଦିନ ଅନ୍ନଭୋଗ ହେବ। ଖରା ଓ ବର୍ଷା ନ ଥାଇ ମେଘାଚ୍ଛନ୍ନ ଥିବାରୁ ରଥଟଣା ଆହୁରି ସୁଖକର ହୋଇଥିଲା। ଯାତ୍ରିସଂଖ୍ୟା ପ୍ରାୟ ୩୦୦୦୦ ହଜାର ହୋଇଥିଲା। ଏଥିମଧ୍ୟରେ ତିନିଭାଗ ପଶ୍ଚିମା ଅବଶିଷ୍ଟ ବଙ୍ଗାଳୀ ଓ ଅପରଦେଶୀୟ ଥିଲେ।

*ଉତ୍କଳ ଦୀପିକା-୧୯୦୪: ପୃଷ୍ଠା ସଂଖ୍ୟା-୩୨୪*

## ପୁରୀ ମନ୍ଦିରର ସଞ୍ଚିତ ଧନ

ଗତ ମାସ ତା୨୩ରିଖଠାରୁ ଶ୍ରୀଜିଉଙ୍କର ବହୁକାଳରୁଦ୍ଧ ଭଣ୍ଡାର ମେନେଜର ମହୋଦୟଦ୍ୱାରା ଉଦ୍‌ଘାଟିତ ହୋଇଅଛି। ପ୍ରତିଦିନ ଶ୍ରୀଜିଉଙ୍କର ଦ୍ୱିପ୍ରହର ଧୂପ ପରେ ପହୁଡ଼ ହୋଇ ଭଣ୍ଡାର ଖୋଲା ହେଉଅଛି। ପ୍ରଥମଦିନ କେବଳ ଆବର୍ଜନା ଅଳିଆପୂର୍ଣ୍ଣ ଥିବାର ଦେଖାଯିବାରୁ ତାହା ସବୁ ପରିଷ୍କାର କରାଯାଇ ଥିଲା ଏବଂ କେତେ ଗୁଡ଼ିଏ ଭଗ୍ନ ଓ ଜୀର୍ଣ୍ଣ ସିନ୍ଦୁକ ଦେଖାଗଲା। ଏପର୍ଯ୍ୟନ୍ତ ପାଞ୍ଚଗୋଟି ସିନ୍ଦୁକ ଖୋଲା ହୋଇଅଛି। ଗୋଟିଏ ସିନ୍ଦୁକରେ ପିତ୍ତଳର କେତେକ ପଦାର୍ଥ ଓ ନାନାବିଧ ମୂର୍ତ୍ତି ଥିଲେ। ଦୁଇଗୋଟି ସିନ୍ଦୁକରୁ ଅନେକ ପାଟଲୁଗା ବାହାରି ଥିଲା ମାତ୍ର ସେ ସବୁ ପଚି ଏକବାରରେ ନଷ୍ଟ ଓ ଅନିବାର୍ଯ୍ୟ ହୋଇ ଯାଇଅଛି। ତହିଁରୁ କେତେକ ଭଲ ଜରୀ ମାତ୍ର ବାହାରିଅଛି। ଅବଶିଷ୍ଟ ଦୁଇଗୋଟି ସିନ୍ଦୁକରୁ ସୁବର୍ଣ୍ଣ ନିର୍ମିତ ରତ୍ନଜଡ଼ିତ ନାନା ଅଳଂକାର ଅର୍ଥାତ ମଣିଖଚିତ କୁଣ୍ଡଳ, ଶିରପେତ, ବଜ୍ର, ଅଳକା ଏବଂ ଅନେକ ହୀରା, ନୀଳା, ମାଣିକ୍ୟ, ମୁକ୍ତା ପ୍ରଭୃତି ବହୁମୂଲ୍ୟ ଦ୍ରବ୍ୟ ବାହାରି ଅଛି। ଏହାଛଡ଼ା ସୁନା ଓ ରୂପାର ଥାଳୀ, ଗିନା ଓ ନାନାବିଧ ମୂର୍ତ୍ତି ବାହାରିଅଛି। ନାନା ପ୍ରକାର ପ୍ରାଚୀନ କାଣ୍ଡ ଓ ତରବାରି ବନ୍ଧୁକାଦି ଅସ୍ତ୍ର ମଧ୍ୟ ବାହାରି ଅଛି। ଅଷ୍ଟରତ୍ନ ଖଚିତ ଯେଉଁ ଅଳଙ୍କାରମାନ ଦେଖା ଗଲା ତାହାର ଉଚିତ ମୂଲ୍ୟ ଏଠାରେ ସ୍ଥିର ହେବା କଠିନ।

ରାଜଗୋପାଳ ମଠର ମହନ୍ତ ଶ୍ରୀ ରଘୁନନ୍ଦନ ରାମାନୁଜ ଦାସ, ମହାଜନ ଓ ଅନରୋରୀ ମାଜିଷ୍ଟ୍ରେଟ ଶ୍ରୀ ଭିକାରି ମିଶ୍ର ଏବଂ ପ୍ରଧାନ ପ୍ରଧାନ ସେବକମାନେ ଥାଇ ଭଣ୍ଡାରରୁ ସିନ୍ଦୁକ ଆସି ବେହରଣ ତଳେ ଖୋଲା ହେଉଅଛି। ତେତେବେଳେ ସେଠାରେ ଲୋକାରଣ୍ୟ ହେଉଅଛି। ମେନେଜର ମହୋଦୟ ବହୁମୂଲ୍ୟ ଦ୍ରବ୍ୟମାନ ସ୍ୱହସ୍ତରେ ବାକ୍ସ ମଧ୍ୟରେ ପୃଥକ୍ ପୃଥକ୍ ରଖୁ ଅଛନ୍ତି। ସାମାନ୍ୟ ଦ୍ରବ୍ୟଠାରୁ ବହୁମୂଲ୍ୟ ମଣି ମୁକ୍ତା ପର୍ଯ୍ୟନ୍ତ ପାଞ୍ଚ ସାତ ଜଣ ଲୋକଙ୍କ ଦ୍ୱାରା ରୀତିମତେ ତାଲିକା ହେଉଅଛି। ପରେ ସମସ୍ତ ପଦାର୍ଥ ପରିଷ୍କୃତ ହୋଇ ପୁନରାୟ ସେହି ଭଣ୍ଡାର ମଧ୍ୟରେ ରଖା ଯାଉଅଛି।

*ଉତ୍କଳ ଦୀପିକା-୧୯୦୫: ପୃଷ୍ଠା ସଂଖ୍ୟା-୯୯*

## ପୁରୀରେ ରଘୁନାଥବେଶ

ଗତ ଅପ୍ରେଲ ମାସ ତା୨୭ରିଖ ଗୁରୁବାର ନବମୀଦିନ ଚଞ୍ଚଳ ଦୈନିକ ନୀତି ନିର୍ବାହିତ ହେଲା ପର ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ରଘୁନାଥ ବେଶ ଆରମ୍ଭ ହୋଇଥିଲା ଏବଂ ସନ୍ଧ୍ୟାଧୂପ ପରେ ସାହାଣ ମେଳା ହୋଇ ଯାତ୍ରିମାନଙ୍କର ଦର୍ଶନ ହେବାର ସ୍ଥିର ହୋଇଥିଲା। ମାତ୍ର ସେ ସମୟରେ ଦେଖାଗଲା ପ୍ରାୟ ୫୦/୬୦ ହଜାରରୁ ଉର୍ଦ୍ଧ ଯାତ୍ରିରେ ମନ୍ଦିର ବେଢ଼ା ପୂର୍ଣ୍ଣ ହୋଇ ଅଛି। ଏମାନଙ୍କ ମଧ୍ୟରେ ଅଧିକାଂଶ ଉତ୍କଳବାସୀ ଥିଲେ। ବଙ୍ଗାଳୀ ଓ ପଶ୍ଚିମାଯାତ୍ରୀ ପ୍ରଭୃତିର ସଂଖ୍ୟା ୨୦ ହଜାର ହୋଇଥିଲା। ରାତ୍ରୀ ଘ୧୦ଣ୍ଟା ସମୟରେ ଦର୍ଶନ ଆରମ୍ଭ ହୋଇଥିଲା। ଜଗନ୍ନାଥ ରାମଚନ୍ଦ୍ର ବେଶ ହୋଇଥିଲେ, ବଳଦେବ ଲକ୍ଷ୍ମଣ ହୋଇଥିଲେ। ରାମଚନ୍ଦ୍ରଙ୍କ ବାମ

ପାର୍ଶ୍ୱରେ ଭରତ ଶତ୍ରୁଘ୍ନ ଠିଆ ହୋଇ ଚାମର ଓ ଛତ୍ରି ଧରିଥିଲେ, ବଳଦେବଙ୍କ ଦକ୍ଷିଣରେ ବ୍ରହ୍ମା ବଶିଷ୍ଠ ଇତ୍ୟାଦି ଠିଆ ହୋଇଥିଲେ, ରାମଚନ୍ଦ୍ରଙ୍କ ବାମଜାନୁ ଉପରେ ଲକ୍ଷ୍ମୀ ସୀତା ରୂପେ ବସିଥିଲେ, ହନୁମାନ ସମ୍ମୁଖରେ କର ଯୋଡ଼ି ବସିଥିଲେ। ରତ୍ନସିଂହାସନକୁ ଲାଗି ସରୁ ପଟ୍ଟା ପଡ଼ିଥିଲା ତହିଁ ଉପରେ ଅଙ୍ଗଦ ଚାମର ଧରି, ଜାମ୍ବୁବାନ କର ଯୋଡ଼ି, ବିଭୀଷଣ କରଯୋଡ଼ି, ନଳ ନୀଳ ଗବୟ ଗବାକ୍ଷ ବାନରଦଳ ବସିଥିଲେ। ସୁଭଦ୍ରା କେବଳ ସଜ ହୋଇଥିଲେ। ରାମ ଲକ୍ଷ୍ମଣ ଧନୁ ଧରିଥିଲେ ମଧ୍ୟ ହାର, ବାଲା, ବାଜୁ ଇତ୍ୟାଦି ଅଳଙ୍କାର ପରିଧାନ କରିଥିଲେ ଓ ତହିଁ ଉପରେ ଅଳଙ୍କାର ପରିଧାନ କରିଥିଲେ ଓ ତହିଁ ଉପରେ ନାକରେ ନାକଦଣ୍ଡ ଲଗାଇଥିଲେ ମାତ୍ର ନାକ ଦଣ୍ଡଟା ମାନୁ ନ ଥିଲା। ଘରଟି ମଧ୍ୟ ବେସ୍ ସଜ୍ଜିତ ହୋଇଥିଲା। ମେନେଜର ବାବୁ ରାଜକିଶୋର ଦାସ ସ୍ୱୟଂ ଉପସ୍ଥିତ ଥାଇଁ ଦର୍ଶନର ବ୍ୟବସ୍ଥା କରିଥିଲେ। ମାତ୍ର ଯାତ୍ରୀ ସ୍ରୋତ ବିଶେଷ ପ୍ରବଳ ଓ ଅତ୍ୟନ୍ତ ଭିଡ଼ ହୋଇଥିଲା। ମନ୍ଦିର ପୁଲିସର ଅନବରତ ବେତ୍ର ପ୍ରହାରରେ ଜର୍ଜ୍ଜରିତ ହୋଇ ସୁଦ୍ଧା ବିଧି ନିଷେଧ ଓ ବ୍ୟବସ୍ଥା କିଛି ନ ମାନି ବଳବାନ୍ ଲୋକମାନେ ଭିଡ଼ ଭେଦ କରି କଥାଞ୍ଚିତ୍ ଦର୍ଶନ କରିଥିଲେ। ମାତ୍ର ଭଦ୍ରଶ୍ରେଣୀର ଦୁର୍ବଳ ବ୍ୟକ୍ତିମାନେ ଭୟଙ୍କର ଭିଡ଼ ମଧ୍ୟରେ ପ୍ରବେଶ କରି ପାରି ନ ଥିଲେ। ସମାଗତ ଯାତ୍ରିବୃନ୍ଦଙ୍କ ମଧ୍ୟରୁ ଅଧିକାଂଶ ଦର୍ଶନ କରି ପରି ନାହାନ୍ତି। ଯେଉଁମାନେ ଦର୍ଶନ କରିଥିଲେ ସେମାନେ ଭିଡ଼ରୁ ବାହାରିବା ସମୟେ ରୁଦ୍ଧଶ୍ୱାସ ଓ ସ୍ୱେଦୋକ୍ତ ହେଇ କିଛିକ୍ଷଣ ଶାନ୍ତ ହୋଇ ପଡ଼ିଥିଲେ। ପ୍ରଭାତ ପର୍ଯ୍ୟନ୍ତ ସାହାଣ ମେଲା ହୋଇ ପରେ ମନ୍ଦିର ଚାରିଦ୍ୱାର ବନ୍ଦ ହେଲା। ଏଥି ମଧ୍ୟରେ ଚାରିଆଡ଼େ ଚହଳ ପଡ଼ିଗଲା ଯେ ସାହାଣ ମେଲା ଭିଡ଼ରେ ଲୋକ ମରିଅଛନ୍ତି। ମାଜିଷ୍ଟ୍ରେଟ ସାହେବ ମଧ୍ୟ ପ୍ରାତଃ କାଳରେ ଉପସ୍ଥିତ ହୋଇ ଚାରିଦ୍ୱାରରେ ପୁଲୀଶ ରଖାଇ ତଦନ୍ତ କରିଥିଲେ। ମାତ୍ର ଲୋକ ମରିବା ବିଷୟ ମିଥ୍ୟା ଥିବାର ଜଣାଗଲା।

ପୁନଶ୍ଚ ଅନ୍ୟ ଏକଦିନ ବେଶ ହେବା ଆଶାରେ ଅଧିକାଂଶ ଯାତ୍ରୀ ତିନି ଚାରିଦିନ ରହିଥିଲେ। କେତେକ ମଧ୍ୟ ନିରାଶ ମନରେ ଫେରି ଯାଇଥିଲେ ଏବଂ ବେଶ ଆଶାରେ କେତେକ ଯାତ୍ରୀ ମଧ୍ୟ ଦୁଇ ତିନିଦିନ ପର୍ଯ୍ୟନ୍ତ ଆସିଥିଲେ। ଯେଉଁମାନେ କଷ୍ଟରେ ଦର୍ଶନ କରିଥିଲେ ସେମାନେ ଆପଣାକୁ ଧନ୍ୟ ମଣି ଆନନ୍ଦରେ ଫେରି ଯାଇଅଛନ୍ତି। କିନ୍ତୁ ଯେଉଁ ମାନେ ଦର୍ଶନ କରି ପାରି ନ ଥିଲେ ସେମାନେ ପୁନଶ୍ଚ ବେଶ ହେବା ଆଶାରେ ତିନି ଚାରିଦିନ ରହି ଦୁଃଖିତ ହୋଇ ଫେରି ଚାଲି ଯାଉଅଛନ୍ତି। ତଥାପି ଏପର୍ଯ୍ୟନ୍ତ ୧୦/୧୨ ହଜାର ଯାତ୍ରୀ ଅଛନ୍ତି। ସହର ବାସିମାନେ କେହି ଦର୍ଶନ କରି ନାହାନ୍ତି। ସେମାନଙ୍କ ସକାଶେ ଗତ ବୁଧବାର ତା୩ରିଖେ ବେଶ ହେବାର ସ୍ଥିର ହୋଇ ଦ୍ୱିପ୍ରହର ଧୂପ ପର୍ଯ୍ୟନ୍ତ ସମସ୍ତ ନୀତି ହୋଇ ବେଶ ଆରମ୍ଭ ହୋଇଥିଲା। ବେଶ ସାଙ୍ଗ ହେଲାରୁ ପ୍ରଥମେ ରାଜପରିବାରଙ୍କର ଦର୍ଶନ ହେବା ପରେ ଅନ୍ୟାନ୍ୟ ସାଧାରଣ ସହରବାସୀ ସପରିବାରରେ ଦର୍ଶନ କରିବାର ବ୍ୟବସ୍ଥା ହୋଇଥିଲା।

*ଉତ୍କଳ ଦୀପିକା-୧୯୦୫: ପୃଷ୍ଠା ସଂଖ୍ୟା-୨୦୬*

## ପୁରୀ-ରଥଯାତ୍ରା

ଗତ ତା୫ରିଖ ବୁଧବାରଠାରୁ ତା୧୧ରିଖ ମଙ୍ଗଳବାର ସୁଦ୍ଧା ଶ୍ରୀଜିଉଙ୍କର ଗୁଣ୍ଡିଚା ମଣ୍ଡପରେ ଶାସ୍ତ୍ରାନୁସାରେ ପୂର୍ଣ୍ଣ ଦି୭ନ ଅନ୍ନଭୋଗ ହୋଇଥିଲା। ଯାତ୍ରୀ ଓ ସାଧାରଣଲୋକେ ଗୁଣ୍ଡିଚା ମଣ୍ଡପରେ ଶ୍ରୀପ୍ରଭୁଙ୍କର ସପ୍ତାହାବଧି ଦର୍ଶନ ଓ ଅନ୍ନମହାପ୍ରସାଦ ପ୍ରାପ୍ତହୋଇ ମେନେଜର ବାବୁଙ୍କୁ ଆନ୍ତରିକ ଧନ୍ୟବାଦ ଦେଇଥିଲେ।

ଗତ ରବିବାର ତା୯ରିଖ ସୁଦ୍ଧା ତିନିରଥ ଦକ୍ଷିଣମୂର୍ତ୍ତି କାର୍ଯ୍ୟ ଶେଷ ହୋଇଥିଲା

ସନ୍ଧ୍ୟା ଦର୍ଶନଦିନ ପୁରୀବାସୀ ଆବାଳବୃଦ୍ଧ ସମସ୍ତେ ଗୁଣ୍ଡିଚା ମନ୍ଦିରରେ ପ୍ରବାସକରି ଦର୍ଶନାଦି କରିବାର ପୂର୍ବପ୍ରଥା ଅଛି। ଏବଂ ଅନେକେ ଗୁଣ୍ଡିଚାମନ୍ଦିରରେ ନବଦିନ ରହିବା ସକାଶେ ବସାଘର କରିଥାନ୍ତି। ଏ ବର୍ଷ ତା୧୦ରିଖ ସୋମବାର ସନ୍ଧ୍ୟା ଦର୍ଶନ ଦିନ ଅପରାହ୍ନରେ ବର୍ଷା ହେବାରୁ ଲୋକେ ବିଶେଷ କଷ୍ଟ ଭୋଗ କରି ବସାଘର ଓ ଦୋକାନମାନଙ୍କରେ ଆଶ୍ରୟ ନେଇଥିଲେ।

ତା୧୨ରିଖ ବୁଧବାର ବଡ଼ ଏକାଦଶୀ ଦିନ ଠାକୁରମାନେ ପ୍ରାୟ ଘ୧୦ଣ୍ଟା ସମୟରେ ଗୁଣ୍ଡିଚା ମନ୍ଦିରରୁ ବାହୁଡ଼ା ବିଜେ କରି ଘ୧୨ଣ୍ଟା ଠାରେ ରଥାରୁଢ଼ ହେଲେ ଏବଂ ଅଳ୍ପକ୍ଷଣପରେ ତିନି ରଥ ଏକସଙ୍ଗେ ଚଳିଲା। ଖରା ବର୍ଷା ନ ଥିବାରୁ ଲୋକେ ଆନନ୍ଦରେ ରଥ ଟାଣିଥିଲେ। ଅପରାହ୍ନ ଘ୪ଣ୍ଟାଠାରେ ତିନି ରଥ ସିଂହଦ୍ୱାରରେ ଲାଗିଲା।

ଶାସନୀୟ ବ୍ରାହ୍ମଣମାନେ ପ୍ରତିବର୍ଷ ରଥ କତା ଦେବାର ପୂର୍ବରୁ ନିୟମ ଅଛି। କଲିକତାରୁ ଦଉଡ଼ି ଆସିବାରୁ ସମ୍ଭବତଃ ବ୍ରାହ୍ମଣମାନେ କତା ଦେଇ ନ ଥିବାରୁ ସେମାନଙ୍କୁ ଏ ବର୍ଷ ଗୁଣ୍ଡିଚା ମନ୍ଦିର ବାସନ୍ଦ ହୋଇଥିଲା। ସୁତରାଂ ମନ୍ଦିର ପ୍ରହରିମାନେ ବ୍ରାହ୍ମଣ ଦେଖିଲେ ସେମାନଙ୍କଠାରୁ ପ୍ରକୃତ ପରିଚୟ ନେଇ ଛାଡୁଥିଲେ।

ପ୍ରାୟ ସମସ୍ତ ଯାତ୍ରୀ ଚାଲି ଯାଇଅଛନ୍ତି। ଅତ୍ୟଳ୍ପ ସଂଖ୍ୟକ ଯାତ୍ରୀ ଶ୍ରୀଜିଉଙ୍କର ନୀଳାଦ୍ରି ବିଜୟ ଦେଖି ପ୍ରସ୍ଥାନ କରିବେ। ରଥଯାତ୍ରା ଶେଷ ହୋଇ ଯାଇଥିବାରୁ ଆଜିକାଲି ପଞ୍ଚକୋଶୀ ଏବଂ ଅନ୍ୟାନ୍ୟ ଉତ୍କଳୀୟ ଯାତ୍ରୀ ଅନେକ ଆସୁଛନ୍ତି। ଶେଷ ଦିନ ଅର୍ଥାତ୍ ବାହୁଡ଼ାରେ ରଥ ଚଳିବା ସମୟେ ପ୍ରାୟ ହ୮୦ଜାର ଉତ୍କଳୀୟ ଯାତ୍ରୀ ହୋଇଥିଲେ।

*ଉତ୍କଳ ଦୀପିକା-୧୯୦୫: ପୃଷ୍ଠା ସଂଖ୍ୟା-୩୩୨*

## ପୁରୀ ରଥଯାତ୍ରା

ବୁଧବାରଦିନ ନବଯୌବନ ଯାତ୍ରା। ପ୍ରାୟ ତିନି ଚାରି ଦିନ ହେଲା ଅତିରିକ୍ତ ରେଲ ଯୋଗେ ଯାତ୍ରୀ ସଂଖ୍ୟା କ୍ରମଶଃ ବୃଦ୍ଧି ହେଉଥିଲା। ମଙ୍ଗଳବାର ରାତ୍ର ଶେଷ ଘ୪ଣ୍ଟା ସମୟଠାରୁ ପରଦିନ ବୁଧବାର ତା୧୦ରିଖ ପ୍ରାୟ ମଧ୍ୟାହ୍ନ ଘ୧୧ଣ୍ଟା ପର୍ଯ୍ୟନ୍ତ ଯାତ୍ରିମାନେ ଶ୍ରୀ ଜିଉଙ୍କର ନବଯୌବନ ଦର୍ଶନ କରିଥିଲେ। ଏ ପର୍ଯ୍ୟନ୍ତ ହ୨୦/୨୫ଜାର ଯାତ୍ରୀ ହୋଇ ଅଛନ୍ତି। ଅଧିକାଂଶ ବଙ୍ଗାଳୀ। ଶ୍ରୀଗୁଣ୍ଡିଚାକୁ ଆହୁରି ଯାତ୍ରୀ ଆସୁଅଛନ୍ତି। ଦିନ ମଧ୍ୟରେ ଅନେକବାର ରେଳ ଲାଗୁଅଛି। ନବଯୌବନ ଦର୍ଶନ ଶେଷେ ଶ୍ରୀଜିଉଙ୍କର ଦୈନିକ ନୀତି ଓ ନେତ୍ରୋତ୍ସବାଦି ବିଧି ହୋଇଥିଲା

ମନ୍ଦିର ପୁଲୀଶ ଓ କର୍ମଚାରୀମାନେ ଏଦିନ ଯାତ୍ରିମାନଙ୍କ ଦର୍ଶନରେ ବିଶେଷ ସତର୍କତା ଓ କାର୍ଯ୍ୟତତ୍ପରତା ଦର୍ଶାଇ ଥିଲେ।

ତା୧୧ରିଖ ଗୁରୁବାର ଉଭାଯାତ୍ରା। ଏଦିନ ମଧ୍ୟାହ୍ନ ଘ୨ଣ୍ଟା ୦ାରେ ସକାଳ ଧୂପପରେ ରଥମାନଙ୍କୁ ଆଜ୍ଞାମାଳ ଆସିଥିଲା। ଏବଂ ମାଜିଷ୍ଟ୍ରେଟ ଓ ପୁଲୀଶ ଉପସ୍ଥିତ ଥାଇ ଘ୩ଣ୍ଟା ସମୟେ ରଥଟଣା ଆରମ୍ଭ ହୋଇ ଘ୪/୧୫୦ାରେ ତିନିରଥ ସିଂହଦ୍ୱାରେ ଲାଗିଲେ।

ଆଜ୍ଞାମାଳ ଆସିବା ପୂର୍ବରୁ ରଥମାନଙ୍କର ମଣ୍ଡନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଶେଷ ହୋଇଥିଲା ଗତବର୍ଷଠାରୁ ଏବର୍ଷ ରଥର କାର୍ଯ୍ୟ ବିଶେଷ ସୁନ୍ଦର ହୋଇଥିଲା ରଥର ପ୍ରତ୍ୟେକ ଚକ ସ୍ଥାୟୀ ଗାଢ଼ ରଙ୍ଗରେ ସୁଚିତ୍ରିତ ହୋଇ ବଡ଼ ଶୋଭା ପାଉଥିଲା। ଚତୁଃପାର୍ଶ୍ୱସ୍ଥ ପରଦାମାନଙ୍କରେ କଟକଜିଲାକାରିଗରମାନଙ୍କ ଦ୍ୱାରା ନାନାବିଧ ସୁଦୃଶ୍ୟ ଦେବ ଦେବୀ ମୂର୍ତ୍ତିମାନ ଚିତ୍ରିତ ହୋଇଥିଲା। ରଥର ପ୍ରତ୍ୟେକ ଅଂଶ ସୁସଜ୍ଜିତ ଏବଂ ପାର୍ଶ୍ୱଦେବତା, ସାରଥି ଓ ହଂସ ପଟା ପ୍ରଭୃତି ନାନାରଙ୍ଗର ରଞ୍ଜିତ ହୋଇ ଯଥା ସ୍ଥାନରେ ସନ୍ନିବିଷ୍ଟ ହୋଇଥିଲା। ମୂଲ୍ୟବାନ୍ ଚିକ୍କଣ ବିବିଧବର୍ଣ୍ଣର ବନାତ, ଚାମର, ପତାକା, ସୁଗଠିତ ପୁତ୍ତଳିକା ଏବଂ ଚିତ୍ରବାଚି, ପରୁଆମାନଙ୍କରେ ରଥତ୍ରୟ ବିଭୂଷିତ ହୋଇ ଅପୂର୍ବ ଶୋଭା ବିସ୍ତାର କରୁଥିଲା। ରଥର କୌଣସି ଅଂଶରେ ସାଜସଜ୍ଜା ଓ ଚିତ୍ରାଦିର ଅଭାବ ନ ଥିଲା। ତିନିରଥ ଦୂରରୁ ବାସବ ପ୍ରେରିତ ପୁଷ୍ପକ ବିମାନର ଅନୁପମ ସୌନ୍ଦର୍ଯ୍ୟ ଧାରଣ କରି ସାଧାରଣ ଲୋକଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା।

ତା୧୨ରିଖ ଶୁକ୍ରବାର ମହାପ୍ରଭୁଙ୍କର ପହଣ୍ଡି ସକାଳ ଘ୯ଣ୍ଟା ସମୟରେ ଆରମ୍ଭ ହେଲା। ଦିବା ଘ୧୨ଣ୍ଟା ସମୟକୁ ମହାପ୍ରଭୁମାନେ ରଥାରୂଢ଼ ହେଲେ। ଦିବା ଘ୧୨ଣ୍ଟା ସମୟରେ ରଥଟଣା ଆରମ୍ଭ ହେଲା। ନୂତନ ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ହାମିଲ୍ଟନ ଓ ପୋଲୀଶ ସାହେବ ଉପସ୍ଥିତ ଥାଇ ରଥ ଟଣା ହୋଇଥିଲା। ଯାତ୍ରି ସଂଖ୍ୟା ଆନ୍ଦାଜ ୮୦୦୦୦ ହେବ। ଯାତ୍ରିମାନଙ୍କ ଦର୍ଶନ ନିମନ୍ତେ ପାଗ ଉତ୍ତମ ଥିବାରୁ ସବୁ ସୁବିଧାଜନକ ହୋଇଥିଲା ଅତି ଆହ୍ଲାଦରେ ଯାତ୍ରିମାନେ ମହାପ୍ରଭୁଙ୍କ ଦର୍ଶନଲାଭ କରିଥିଲେ। କୌଣସି ବାଧାବ୍ୟାଘାତ ଘଟିନାହିଁ।

ଯାତ୍ରୀସଂଖ୍ୟା ଅଧିକ ହେବାରୁ ଘରଭଡ଼ା ବୃଦ୍ଧି ହୋଇଅଛି। ଯାତ୍ରା ଶେଷ ପର୍ଯ୍ୟନ୍ତ ପକ୍କା ଘରଭଡ଼ା ପ୍ରତ୍ୟେକ ଯାତ୍ରୀ ସକାଶେ ପାଞ୍ଚଟଙ୍କା ଓ କଚା ଘର ୩/୪ଟଙ୍କା ହୋଇଅଛି। ଯାତ୍ରାମାନଙ୍କରେ ଦାଣ୍ଡ ପରିଷ୍କାର ଓ ପରିଚ୍ଛନ୍ନ ରଖିବା ବିଷୟରେ ସ୍ଥାନୀୟ ମିଉନିସିପାଲଟୀ ବିଶେଷ ଯତ୍ନପର।

ସୁଯୋଗ୍ୟ ମେନେଜର ବାବୁ ରାଜକିଶୋର ଦାସଙ୍କର ପ୍ରଗାଢ଼ ଅଧ୍ୟବସାୟ ଏବଂ ଦକ୍ଷତା ଓ ଶ୍ରଦ୍ଧାର ସହିତ କାର୍ଯ୍ୟ ପରିଚାଳନା ଯୋଗୁଁ ପୂର୍ବେ ଯାହା ଦେଖି ନ ଥିଲେ ତାହା ଦେଖି ଭାରତର ନାନା ପ୍ରଦେଶୀୟ ଲେକେ ମେନେଜର ବାବୁଙ୍କୁ ଅଶେଷ ସୁଖ୍ୟାତି କରୁଅଛନ୍ତି।

*ଉତ୍କଳ ଦୀପିକା-୧୯୦୭: ପୃଷ୍ଠା ସଂଖ୍ୟା-୩୪୯*

ପୁରୀ ମନ୍ଦିର ମେନେଜର ନୋଟିସ ପ୍ରଚାର କରିଅଛନ୍ତି ଯେ ନୂତନ ରୋଷରେ ପ୍ରଚୁର ଅର୍ଥ ବ୍ୟୟ ହୋଇଥିବା ଏବଂ ତାହାର ସାମୟିକ ମରାମତି ସକାଶେ ଅର୍ଥର ଆବଶ୍ୟକତା

ହେତୁ ଆସନ୍ତା ତା୨୬ରିଖଠାରୁ କୋଠଭୋଗ ବ୍ୟତିତ ଅନ୍ୟାନ୍ୟ ବାଜେ ଭୋଗ ଉପରେ ମାସୁଲ ଧାର୍ଯ୍ୟ ହେବ। ଅନ୍ନ, ବ୍ୟଞ୍ଜନ, ଓ ପିଠା ଇତ୍ୟାଦିର ପରିମାଣ ଏବଂ ମୂଲ୍ୟର ତାରତମ୍ୟ ଅନୁସାରେ ମାସୁଲ ନିର୍ଦ୍ଦିଷ୍ଟ ହୋଇ ନୋଟିସରେ ଉଲ୍ଲିଖିତ ହୋଇଅଛି। ଏ ପ୍ରଥା ପରମ୍ପରାରୁ ନ ଥିବା ଏବଂ ଆଜିକାଲି ମହାର୍ଘକାଳରେ ମହାପ୍ରସାଦର ମୂଲ୍ୟ ଦୁଇତିନିଗୁଣ ବୃଦ୍ଧି ହୋଇଥିବା ସ୍ଥଳେ ନୂତନବିଧି ଅନୁସାରେ ତାହା ଉପରେ ମାସୁଲ ବସିବାରୁ ସର୍ବସାଧାରଣଙ୍କ ମନରେ ବିଶେଷ ଅସନ୍ତୋଷ ଜାତ ହୋଇଅଛି। ନୋଟିସ ପ୍ରାପ୍ତ ହୋଇ ସୁଆରମାନେ ମନଯୋଗରେ ଗତ ବୁଧବାରଠାରୁ କୌଣସି ବାଜେ ଭୋଗ ରାନ୍ଧୁ ନାହାନ୍ତି। କେବଳ ସରକାରୀ କୋଠଭୋଗ ହେଉଅଛି ସାଧାରଣ ଭୋଗ ବନ୍ଦ ହୋଇଥିବାରୁ ସର୍ବତ୍ର ଆନ୍ଦୋଳନ ଲାଗିଅଛି। ଆଶାକରୁ ସୁଯୋଗ୍ୟ ମେନେଜର ମହାଶୟ ଏହାର ଯଥାଯୋଗ୍ୟ ସୁମୀମାଂସା କରି ଶୀଘ୍ର ଲୋକଙ୍କ ମନରୁ କଷ୍ଟ ଦୂର କରିବେ।

*ଉତ୍କଳ ଦୀପିକା-୧୯୦୭: ପୃଷ୍ଠା ସଂଖ୍ୟା-୫୮୯*

## ପୁରୀର ଚନ୍ଦନ ପୋଖରୀ

ପୁରୁଷୋତ୍ତମର ଚନ୍ଦନଯାତ୍ରା ଓଡ଼ିଶାରେ ପ୍ରାଚୀନ କାଳରୁ ଡାକ। ଏ ଯାତ୍ରା ଯେମନ୍ତ ଦୀର୍ଘକାଳ ବ୍ୟାପୀ ତେମନ୍ତ ଆନନ୍ଦକର। ପୁରୀ ରାଜା ବା ରାଜକର୍ମଚାରିଙ୍କ ଅମନୋଯୋଗରେ କେତେବର୍ଷ ଏଯାତ୍ରାର ଆଡ଼ମ୍ବର ଅନେକ ଊଣା ପଡ଼ିଯାଇଥିଲା। ବର୍ତ୍ତମାନ ବାବୁ ରାଜକିଶୋର ଦାସ ମାନେଜରଙ୍କର ଯତ୍ନ ଓ ସୁବନ୍ଦୋବସ୍ତରେ ଏ ଯାତ୍ରା ପୂର୍ବ ଶ୍ରୀ ଧାରଣ କରିଅଛି ଏବଂ କ୍ରମେ ଉନ୍ନତି ଲଭୁଅଛି। ଚନ୍ଦନ ମନ୍ଦିର ଚାପ ଇତ୍ୟାଦି ସୁନ୍ଦରରୂପେ ମଣ୍ଡିତ ହୋଇଅଛି ଏବଂ ଏ ବର୍ଷ ୬ ହଜାର ଟଙ୍କାରେ ଗୋଟିଏ ରତ୍ନସିଂହାସନ ବନାରସରୁ ପ୍ରସ୍ତୁତ ହୋଇ ଆସି ଅଧିକ ଶୋଭା ବଢ଼ାଉଅଛି। ଏଥିପାଇଁ ସମ୍ବାଦ ପତ୍ରମାନଙ୍କରେ ମାନେଜର ଦାସ ମହାଶୟଙ୍କର ଅଧିକ ଯଶ ଘୋଷଣା ହୋଇଅଛି। ମହାପ୍ରଭୁଙ୍କର ସେବା ନୀତିପ୍ରତି ଦାସ ମହାଶୟଙ୍କର ସଦା ମନୋଯୋଗ ରହିବା ଓ ଯଥାସମୟରେ ଦୈନିକ ଓ ସାମୟିକ ନୀତିମାନ ଅନୁଷ୍ଠିତ ହେବା ପ୍ରଂଶସାର ଓ ଏହା ତାହାଙ୍କର ବର୍ତ୍ତବ୍ୟ ପରାୟଣତାର ଉତ୍ତମ ପରିଚୟ ଅଟେ। ମାତ୍ର ଏହି ଚନ୍ଦନଯାତ୍ରା ସମ୍ବନ୍ଧରେ ଆମ୍ଭେମାନେ ମନେ କରୁଁ ଯେ ସେ ତାହାଙ୍କର ପ୍ରଧାନ କର୍ତ୍ତବ୍ୟ ପ୍ରତି ଏ ପର୍ଯ୍ୟନ୍ତ ସମୁଚିତ ଦୃଷ୍ଟି ଦେଇ ନାହାନ୍ତି। ଚନ୍ଦନଯାତ୍ରାର ପ୍ରଧାନ ଅଙ୍ଗ ଜଳକ୍ରୀଡ଼ା। ଗ୍ରୀଷ୍ମକାଳରେ ମହାପ୍ରଭୁ ଶୀତଳ ଜଳରେ ଅବଗାହନ କରିବେ, ଚନ୍ଦନଲାଗି ହେବେ ଓ ନୌକା ଖେଳିବେ ଏହି ସମସ୍ତ ଚନ୍ଦନ ଯାତ୍ରାର କାର୍ଯ୍ୟ ସୁତରାଂ ଏ ସମସ୍ତ ମୂଳ ହେଉଅଛି ନିର୍ମଳ ସ୍ୱଚ୍ଛ ଜଳ। ନରେନ୍ଦ୍ର ପରି ଗୋଟିଏ ବୃହତ୍ ପୁଷ୍କରିଣୀ ଚନ୍ଦନ ଯାତ୍ରାର ଉପଯୁକ୍ତ ସ୍ଥାନ ମାତ୍ର ତହିଁର ଜଳ ଏମନ୍ତ ମନ୍ଦ ହୋଇଅଛି ଯେ ତାହା ମନୁଷ୍ୟର ପାନ କରିବା ଦୂରେ ଥାଉ ସ୍ନାନର ଯୋଗ୍ୟ ସୁଦ୍ଧା ନୁହେ। ଏମନ୍ତ ଜଳରେ ଦେବଙ୍କୁ ବୁଡ଼ାଇବା ନାବ ଖେଳାଇବା ପ୍ରୀତି ଭକ୍ତର କାର୍ଯ୍ୟ ନୁହେ। ଦେବ ପ୍ରୀତିରେ ଅନେକ ଲୋକ ସେହି ପୁଷ୍କରିଣୀରେ ସ୍ନାନ ଓ ସନ୍ତରଣାଦି କ୍ରୀଡ଼ା କରନ୍ତି ମାତ୍ର ତାହା ଯେ ସ୍ୱାସ୍ଥ୍ୟର ହାନିକର ଏହା ଅନାୟାସରେ ବୁଝା ଯାଉଅଛି। ସେହି ପୁଷ୍କରଣୀର ଜଳ ପରିଷ୍କାର କରି ଦେବଯୋଗ୍ୟ କରିବା

ସର୍ବୋଗ୍ରେ କର୍ତ୍ତବ୍ୟ। ଦୂଷିତ ଜଳରେ ସୁସଜ୍ଜିତ ଚାପ ଉପରେ ସୁବର୍ଣ୍ଣ ସିଂହାସନରେ ବସି ବିହାର କରିବା ଦୃଶ୍ୟଟା କି ପ୍ରକୃତ ଆନନ୍ଦକର? ଯେଉଁ ମହାତ୍ମା ସେହି ପୁଷ୍କରିଣୀରେ ଚନ୍ଦନ ଯାତ୍ରାର ବ୍ୟବସ୍ଥା କରିଥିଲେ ସେ ତାହାର ଜଳ ପରିଷ୍କାର ରଖିବାର ସୁନ୍ଦର ବ୍ୟବସ୍ଥା କରିଥିଲେ। କାଳକ୍ରମେ ତହିଁର ବ୍ୟତିକ୍ରମ ଘଟି ଜଳ ଦୂଷିତ ହୋଇଅଛି। ବର୍ତ୍ତମାନ ଏହାର ସଂସ୍କାର ବହୁ ବ୍ୟୟ ସାଧ ଏ କଥା ଆମ୍ଭେମାନେ ଅସ୍ୱୀକାର କରୁ ନାହୁଁ। ମାତ୍ର ମହାପ୍ରଭୂଙ୍କର ଭଣ୍ଡାର ନିତାନ୍ତ ଶୂନ୍ୟ ନୁହେ ଅନ୍ତତଃ ଯେଉଁ ଭଣ୍ଡାରରୁ ୬ହଜାର ଟଙ୍କାର ସିଂହାସନ ନିର୍ମାଣ ହୋଇ ପାରେ ଚେଷ୍ଟା କଲେ ସେହି ଭଣ୍ଡାର ପୁଷ୍କରିଣୀ ସଂସ୍କାରର ବ୍ୟୟ ଯୋଗାଇବାକୁ ଅକ୍ଷମ ହେବ ଏମନ୍ତ ମନେ ହେଉ ନାହିଁ। କୌଣସି ଯାତ୍ରାର ନାନା ଅଙ୍ଗ ମଧ୍ୟରେ ଯେଉଁଟି ଅଧିକ ପ୍ରୟୋଜନ ସେହି ଦିଗକୁ ଆଗେ ଦୃଷ୍ଟି ଦେବା ବିବେକର କାର୍ଯ୍ୟ ଅଟେ। ନରେନ୍ଦ୍ର ପୁଷ୍କରିଣୀ ଦେବ ସେବାର ଗୋଟିଏ ପ୍ରଧାନ ଅଙ୍ଗ ଓ ଗୋଟିଏ ପ୍ରଧାନ ତୀର୍ଥ। ଏଥିରେ ସ୍ନାନ ଓ ଏହାର ଜଳପାନ ଯାତ୍ରିମାନେ ପୁଣ୍ୟକାର୍ଯ୍ୟ ମନେ କରନ୍ତି ଏପରି ପୁଷ୍କରଣୀର ସୁରକ୍ଷାରେ ହେଳା କରିବା ଉଚିତ କି? ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ ଯେ ସୁଯୋଗ୍ୟ ମାନେଜର ଏକାନ୍ତ ମନୋଯେଗୀ ହେଲେ ଏ ପୁଷ୍କରିଣୀର ଦୁର୍ଦ୍ଦଶା ମେଣ୍ଟିଯିବ ଏବଂ ସେଥିପାଇଁ ତାହାଙ୍କୁ ବିଶେଷ ଅନୁରୋଧ କରୁଅଛୁଁ।

*ଉତ୍କଳ ଦୀପିକା-୧୯୦୯: ପୃଷ୍ଠା ସଂଖ୍ୟା-୧୩୬*

## ପୁରୀ ରାଜା ଓ ମାନେଜର

ପୁରୀରାଜା ଓ ମାନେଜର ମଧ୍ୟରେ ମନାନ୍ତର ଘଟିବା ଏବଂ ସେ ସମ୍ବନ୍ଧେ ଦେବାନି ମୋକଦ୍ଦମାର ଉଦ୍ୟମ ହେଉଥିବା ଏ ପ୍ରଦେଶର ଚାରି ଆଡ଼େ ରାଷ୍ଟ୍ର ହୋଇଅଛି ଏବଂ ଉତ୍କଳ ସମ୍ବାଦପତ୍ର ସମୂହରେ ନାନା ସମ୍ବାଦ ବାହାରୁ ଅଛି। ମାତ୍ର ମନାନ୍ତର ଘଟିବା କାରଣ ଅବଧି ଆମ୍ଭେମାନେ ବୁଝି ପାରିନାହୁଁ। ଏ ସପ୍ତାହରେ ଜଣେ ପୁରୀବାସୀ ଭଦ୍ରଲୋକର ଖଣ୍ଡିଏ ଇଂରାଜୀ ପତ୍ର ଗତ ତା୧୩ରିଖ ହିନ୍ଦୁପେଟ୍ରିଅଟ ପତ୍ରିକାରେ ବାହାରିଅଛି ଏବଂ ତହିଁରେ ଯାହା ଲେଖା ଅଛି ସୁସଙ୍ଗତ ବୋଧ ହେବାରୁ ତହିଁର ସଂକ୍ଷେପ ମର୍ମ ଏଠାରେ ପ୍ରକାଶ କଲୁଁ। ସେ ଲେଖି ଅଛନ୍ତି କି ଗତ ବର୍ଷ ପୁରୀରାଜା ଜଣେ ପାଖଲୋକ ପ୍ରତିପାଳନର ସ୍ଥାୟୀ ବନ୍ଦୋବସ୍ତ କରିବାର ଇଚ୍ଛା ପ୍ରକାଶ କଲେ। ମାତ୍ର ରାଜାଙ୍କ ସମସ୍ତ ସମ୍ପତ୍ତି ମହାଜନଙ୍କଠାରେ ଆବଦ୍ଧ ଥିବା ଦେଖି ମନ୍ଦିରରେ ତାହାକୁ ଗୋଟାଏ ସେବାରେ ଖଞ୍ଜିଦେଇ ମାସକୁ ଟ୧୧୦ଙ୍କା ପୁତ୍ର ପୌତ୍ରାଦିକ୍ରମେ ପାଇବା ଓ ରାଜା ଏବଂ ତାହାଙ୍କର ଉତ୍ତରାଧିକାରୀ ପ୍ରଭୃତି ଚିରକାଳ ତହିଁରେ ଆବଦ୍ଧ ରହିବାର ଏକ ଖଣ୍ଡ ଦସ୍ତାବିଜ ଲେଖି ରେଜଷ୍ଟରୀ କରାଇ ଦେଲେ ମନ୍ଦିର ସେବକମାନଙ୍କର ସେ ଲୋକପ୍ରତି ଆପତ୍ତି ହେଲେ ହେଁ କିଛିକାଳ ସେ ଉକ୍ତ ବେତନ ପେନ୍‌ସନ୍ ପରି ଭୋଗ କରୁଥିଲା। ମାନେଜର ସେ ଦସ୍ତାବିଜର ଅନିଷ୍ଟ ଫଳ ଏବଂ ସେପରି ସେବା ଅନାବଶ୍ୟକ ବୁଝିପାରି ବେତନ ବନ୍ଦ କରିବାରେ ସେ ଲୋକ ସେଠା ମୁନସଫ ଅଦାଲତରେ ନାଲସ କଲା ଏବଂ ରାଜା ଦାବୀ ସ୍ୱୀକାର କରିବାରେ ମୁନସଫ ଡିଗ୍ରୀ ଦେଲେ। ଡିଗ୍ରୀ ଜାରୀରେ ସେ ଲୋକ ରାଜାଙ୍କର ଅନ୍ୟ ଚଳନ୍ତି ଦ୍ରବ୍ୟ ଛାଡ଼ି ତାହାଙ୍କର ଥିବା ବଗି ଘୋଡ଼ା କୋରକ କରନ୍ତେ ମାନେଜର ବଗି ଘୋଡ଼ା

ମନ୍ଦିରର ଥିବା ଆପତ୍ତିରେ ମୁଳାହେମ ହେଲେ ଏବଂ ମୁନସଫଙ୍କ ବିଚାରରେ ତାହା ପ୍ରମାଣ ହୋଇ କୋରକି ଉଠିଗଲା। ମନ୍ଦିର ସମ୍ପତ୍ତି ନଷ୍ଟକରିବା ଅବୈଧ ଉପାୟ ବିଫଳ ହୁଅନ୍ତେ ରାଜା ଓ ତାହାଙ୍କର ଅନୁସରଣିୟା ଓ ପରାମର୍ଶ ଦାତାମାନେ ମନ୍ଦିରରୁ ମାନେଜର ଉଠାଇଦେବାର ଉପାୟ ପାଞ୍ଚିଲେ। ଏବଂ ସେଥିପାଇଁ ଉକୀଲ ପୂର୍ବ ମୋକଦ୍ଦମାରେ ଉକୀଲାତୀ କରୁଥିଲେ ତାହାଙ୍କ ନାମରେ କ୍ଷମତା ପତ୍ର ଦେଲେ। ମ୍ୟାନେଜର ତହିଁରେ ସମ୍ମତ ହେଲେ ନାହିଁ। ତେଣୁ ଅଦାଲତରେ ମୋକଦ୍ଦମା ଚଳାଇବାର ଉଦ୍ୟମ ହେଉଅଛି। ସେହି ପତ୍ରରେ ଆହୁରି ପ୍ରକାଶ ଯେ ପୁରୀର ହିନ୍ଦୁ ସମାଜ ରାଜାଙ୍କର ଏହି କାଣ୍ଡ ଦେଖି ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ଅଛନ୍ତି ଏବଂ କେତେଜଣ ହିନ୍ଦୁ ଭଦ୍ରଲୋକ ଏକତ୍ର ହୋଇ ଜିଲା ମାଜିଷ୍ଟ୍ରେଟଙ୍କୁ କଥା ଜଣାଇଁ ସାହାଯ୍ୟ ଲୋଡ଼ିଅଛନ୍ତି। ମାଜିଷ୍ଟ୍ରେଟ ସାହେବ ନିରପେକ୍ଷ ବିଚାରକରି ଗବର୍ଣ୍ଣମେଣ୍ଟଙ୍କୁ ସମସ୍ତ କଥା ଜଣାଇ ବିହିତ ପ୍ରତିକାର କରିବେ ସନ୍ଦେହ ନାହିଁ ଏକା ହିନ୍ଦୁ ସମ୍ପ୍ରଦାୟ କାହିଁକି ସମସ୍ତ ପୁରୀବାସୀ ଓ ସରକାରୀ କର୍ମଚାରିମାନେ ବିଲକ୍ଷଣ ବୁଝିଅଛନ୍ତି ଯେ ବାବୁ ରାଜ କିଶୋର ଦାସ ମାନେଜରଙ୍କର ଦ୍ୱାରା ମନ୍ଦିରର ଓ ନିଜେ ରାଜାଙ୍କର ମଧ୍ୟ ପ୍ରଭୁତ ଉପକାର ହୋଇଅଛି ଏବଂ ସେଥିପାଇଁ ଗବର୍ଣ୍ଣମେଣ୍ଟଠାରେ ସମସ୍ତେ କୃତଜ୍ଞ। ମାନେଜର ଉଠିଯାଇ ମନ୍ଦିର ରାଜାଙ୍କ ହାତକୁ ଗଲେ ପୂର୍ବ ବିଶୃଙ୍ଖଳା ଅବିଳମ୍ବେ ଘଟିବ ଏବଂ ପ୍ରଭୁଙ୍କର ସେବା ଓ ଯାତ୍ରିଙ୍କ କଷ୍ଟର ସୀମା ରହିବ ନାହିଁ। ଆମ୍ଭେମାନେ ଏକାନ୍ତ ଆଶା କରୁଁ ଉପରଲିଖିତ ବିଷୟରେ କିଛି ଭ୍ରମ ବା ଅଯଥାର୍ଥ କଥା ଥିଲେ କେହି ଅନୁଗ୍ରହ କରି ପ୍ରକାଶ କରିବେ। କୌଣସି ମତେ ପୁରୀରାଜା ଯେ ସ୍ଥଳେ ପ୍ରାର୍ଥନା କରିବାରେ ସରକାର ସୁଯୋଗ୍ୟ ମାନେଜର ଦେଇଅଛନ୍ତି ଏବଂ ସେ ମାନେଜର ବିଚକ୍ଷଣରୂପେ କାର୍ଯ୍ୟ ନିର୍ବାହ ଦ୍ୱାରା ସର୍ବସାଧାରଣର ଯଶୋଭାଜନ ହୋଇଅଛନ୍ତି ସେ ସ୍ଥଳେ ତାହାଙ୍କ ବିରୁଦ୍ଧରେ ରାଜାଙ୍କର କିଛି କହିବାର ହେଲେ ସରକାରଙ୍କୁ ଜଣାଇବା କର୍ତ୍ତବ୍ୟ ବୋଲି ଇଂରାଜୀ ସ୍ତମ୍ଭରେ ଯାହା କହିଅଛୁଁ ତଦପେକ୍ଷା ଯୁକ୍ତିସଙ୍ଗତ ପରାମର୍ଶ ନାହିଁ।

*ଉତ୍କଳ ଦୀପିକା-୧୯୧୧: ପୃଷ୍ଠା ସଂଖ୍ୟା-୬୩*

## ପୁରୀମନ୍ଦିର ମେନେଜର

ପାଠକମାନେ ଅବଗତ ଅଛନ୍ତି ଯେ ପୁରୀମନ୍ଦିର ମେନେଜର ବାବୁ ରାଜକିଶୋର ଦାସଙ୍କ ନାମରେ ଦେଓ୍ୱାନି ଅଦାଲତରେ ଆୟ ବ୍ୟୟର ହେସାବ ପାଇବା ଦାବିରେ ପୁରୀରାଜା ନାଲସ କରିଅଛନ୍ତି। ଏଥକୁ ମେନେଜରଙ୍କ ନିୟୋଗ ସମ୍ବନ୍ଧେ ପୁରୀରାଜା ଯେଉଁ ଏକରରନାମା ଲେଖି ଦେଇଅଛନ୍ତି ତାହା ପୁରୀର ଜଣେ ପତ୍ର ପ୍ରେରକ କଲିକତାର ଗତ ତା ୧୩ରିଖର ହିନ୍ଦୁ ପେଟ୍ରିଅଟରେ ଇଂରାଜୀରେ ପ୍ରକାଶ କରିଅଛନ୍ତି ଏ ସମୟରେ ସର୍ବସାଧାରଣ ସେ ବିଷୟ ଜାଣିବା ଆବଶ୍ୟକ ବିବେଚନା କରି ତହିଁର ଅନୁବାଦ ଅବିକଳ ଏଠାରେ ପ୍ରକାଶ କଲୁ। ସେହି ଏକରାରନାମା ଇଂରାଜିରେ ଅଥବା ଓଡ଼ିଆରେ ଲେଖା ହୋଇଅଛି ଆମ୍ଭେମାନେ ଜାଣିନାହୁଁ। ଭରଷା କରୁଁ ଆମ୍ଭରାଜାଙ୍କ ପ୍ରକାଶିତ ଅନୁବାଦର ବାକ୍ୟବଳି ଠିକ ନ ହେଲେ ହେଁ ମର୍ମ ଏଥିରୁ ବୁଝା ଯାଉଅଛି। ବେବେ କିଛି ବ୍ୟତିକ୍ରମ ଥାଏ କେହି ପାଠକ ଅନୁସନ୍ଧାନ କରି ଜଣାଇଲେ ଭ୍ରମ ସଂଶୋଧନ କରିବୁଁ।

"ଆମ୍ଭେ ପୁରୀମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ରାଜା ମୁକୁନ୍ଦଦେବ ଏହି ଏକରାର ନାମା ଲେଖିଦେଇ ସ୍ୱୀକାର କରୁଅଛୁଁ କି ଯେ ଢେଙ୍କାନାଳର ବର୍ତ୍ତମାନ ମେନେଜର ଶ୍ରୀ ବାବୁ ରାଜକିଶୋର ଦାସଙ୍କୁ ଉକ୍ତ ମନ୍ଦିରର ଓ ତତ୍‌ସମନ୍ଧୀୟ ଯାବତୀୟ ମେନେଜର ନିଯୁକ୍ତ କରି ତାଙ୍କ ହସ୍ତେ ଉକ୍ତ ମନ୍ଦିର ଓ ତତ୍‌ସମନ୍ଧୀୟ ଯାବତୀୟ ଚଳନ୍ତି ଓ ଅଚଳନ୍ତି ସମ୍ପତ୍ତିମାନ ନିମ୍ନ ଲିଖିତ ସର୍ତ୍ତରେ ଅର୍ପଣ କଲୁଁ।

(୧) ଆମ୍ଭର ନିଜର ପୂଜା ବିଧି କାର୍ଯ୍ୟ ବ୍ୟତୀତ ଅନ୍ୟସବୁ କାର୍ଯ୍ୟରେ ଆମ୍ଭେ ମେନେଜର ମଉସଫଙ୍କୁ ଆମ୍ଭର ମନ୍ଦିର ଏବଂ ତଦଧୀନ ସମସ୍ତ ମମ୍ପତ୍ତି ସମନ୍ଧୀୟ ସମସ୍ତ ସ୍ୱତ୍ୱ ଏବଂ କ୍ଷମତା ପାଞ୍ଚବର୍ଷ ନିମନ୍ତେ ଯେଉଁ ଦିନଠାରୁ ସେକାର୍ଯ୍ୟ ଭାର ଗ୍ରହଣ କରିବେ ଅର୍ପଣ କଲୁଁ। ଆମ୍ଭେ ଉକ୍ତ ପାଞ୍ଚବର୍ଷ ମଧ୍ୟରେ ଉକ୍ତ ସ୍ୱତ୍ୱ ଏବଂ କ୍ଷମତାର କୌଣସି ବ୍ୟବହାର କରିବୁଁ ନାହିଁ। କିନ୍ତୁ ମେନେଜରଙ୍କ ଦ୍ୱାରା ରକ୍ଷିତ ହେସାବପତ୍ର ସେ କୌଣସି ସମୟରେ ତଲବ ଓ ପରୀକ୍ଷା କରିବାର ସମ୍ପୂର୍ଣ୍ଣ କ୍ଷମତା ଆମ୍ଭର ରହିଲା।

(୨) ଯଦ୍ୟପି ଆମ୍ଭେ କୌଣସି ସମୟରେ ମେନେଜରଙ୍କ କାର୍ଯ୍ୟ ପ୍ରଣାଳୀରେ ଅସନ୍ତୁଷ୍ଟ ହେଉ ତେବେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ନିକଟରେ ଅସନ୍ତୁଷ୍ଟ ହେବାର କାରଣମାନ ଉଲ୍ଲେଖ କରି ରିପୋର୍ଟ ଦେବା ଆମ୍ଭର ଇଚ୍ଛାଧୀନ। ଯାହାହେଉ ଆମ୍ଭେ ସେଥି ସକାଶେ ମେନେଜରଙ୍କୁ ଏତ୍‌ଦ୍ୱାରା ପ୍ରଦତ୍ତ ହୋଇଥିବା କ୍ଷମତା ସମନ୍ଧରେ କୌଣସି ପ୍ରକାର ବାଧା ଦେବୁ ନାହିଁ।

(୩) ମେନେଜରଙ୍କ ଅତି ମନ୍ଦାଚରଣ କିମ୍ବା କର୍ତ୍ତବ୍ୟର ଅବହେଳା ଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା ପ୍ରମାଣିତ ନ ହେବା ପର୍ଯ୍ୟନ୍ତ ଆମ୍ଭେ ମେନେଜରଙ୍କୁ କାର୍ଯ୍ୟରୁ ଅପସୃତ କରି ପାରିବୁ ନାହିଁ।

(୪) ଆବହମାନ ପ୍ରଚଳିତ ପ୍ରଥାଅନୁଯାୟୀ ଆମ୍ଭର ପ୍ରାପ୍ୟଛଡ଼ା ଆମ୍ଭେ ମନ୍ଦିରରୁ କିମ୍ବା ତତ୍ ସମନ୍ଧୀୟ କୌଣସି ସମ୍ପତ୍ତି ମାନର ଉପସତ୍ୱ ଏହି ପାଞ୍ଚବର୍ଷ ମଧ୍ୟରେ ଆତ୍ମସାତ୍ କରିବୁଁ ନାହିଁ। ଯଦି କୌଣସି ଉପସତ୍ୱ ଉପରୋକ୍ତମତେ ଆମ୍ଭର ନିଜର ପ୍ରାପ୍ୟ ଥିବା ସମ୍ବନ୍ଧରେ କୌଣସି ବିବାଦ ଉପସ୍ଥିତ ହୁଏ ତେବେ ମେନେଜର ଯାହା ନିଷ୍ପତ୍ତି କରିବେ ତାହା ଚୂଡ଼ାନ୍ତ ହେବ ଏବଂ ତହିଁରେ ଆମ୍ଭେ ବାଧ ହେବୁଁ। ମାତ୍ର ସେହି ନିଷ୍ପତ୍ତି ପାଞ୍ଚବର୍ଷ ଉତ୍ତାରେ ଉପରୋକ୍ତ ଉପସ୍ୱତ୍ୱ ପ୍ରତି ଆମ୍ଭର ଦାବି ଉପରେ ଖଟିବ ନାହିଁ।

(୫) ଆମ୍ଭଙ୍କୁ ନ ପଚାରି ମନ୍ଦିରର ସେବକ, ଭୃତ୍ୟ ଓ ପରିଚାରକମାନଙ୍କୁ ନିଯୁକ୍ତ ବରଖାସ୍ତ ସସ୍‌ପେଣ୍ଟ ଜୋରିମାନା କରିବା କିମ୍ବା ଅନ୍ୟ ପ୍ରକାରେ ଦଣ୍ଡ ଦେବାର ସମ୍ପୂର୍ଣ୍ଣ କ୍ଷମତା ମେନେଜରଙ୍କ ହାତରେ ରହିବ ସେଥିରେ ଆମ୍ଭେ କୌଣସି ମତେ ହସ୍ତକ୍ଷେପ କରିବୁଁ ନାହିଁ କିମ୍ବା ଆମ୍ଭେ ମେନେଜରଙ୍କୁ ନ ପଚାରି ସେହି କ୍ଷମତାମାନ ନିଜେ ଚଳାଇବୁ ନାହିଁ

(୬) ଆବହମାନ ପ୍ରଚଳିତ ପ୍ରଥାନୁଯାୟୀ ମନ୍ଦିର ସମ୍ବନ୍ଧୀୟ ନୀତି ଓ ପୂଜା ଚଳାଇବା ଓ ଆଦେଶ କରିବାରେ ମାନେଜରଙ୍କ ପୂର୍ଣ୍ଣ ଅଧିକାର ରହିବ ଏବଂ ଆମ୍ଭେ ସେପରି ବନ୍ଦୋବସ୍ତରେ କୌଣସିରୂପେ ହସ୍ତ କ୍ଷେପଣ ନ କରିବୁଁ।

(୭) ଏହି ପାଞ୍ଚବର୍ଷ ମଧ୍ୟରେ ଆମ୍ଭେ ମାନେଜରଙ୍କୁ ନ ଜଣାଇ ଛାମୁ ଚିଟାଉ ଲେଖା

ଏବଂ ତଦନୁରୂପ କୌଣସି ନିଜ ହୁକୁମନାମ ଜାରି କରି ପାରିବୁଁ ନାହି। ଏପରି କୌଣସି ଦଲିଲ ମେନେଜରଙ୍କ ହସ୍ତଖତ ନ ଥିଲେ ଅଗ୍ରାହ୍ୟ ହେବ ଏବଂ ମେନେଜର କୌଣସି କାରଣ ବଶତଃ ଉଚିତ ବିବେଚନା କଲେ ଏପରି କୌଣସି ହୁକୁମନାମା ଜାରୀ ରହିତ କରିବା ମେନେଜରଙ୍କ ଅଧିକାର ରହିବ।

*ଉତ୍କଳ ଦୀପିକା-୧୯୧୧: ପୃଷ୍ଠା ସଂଖ୍ୟା-୮୮*

## ପୁରୀରାଜା ମୋକଦ୍ଦମା

ପୁରୀ ଠାକୁର ରାଜା ଶ୍ରୀ ମୁକୁନ୍ଦଦେବ ମହୋଦୟ ଶ୍ରୀମନ୍ଦିରର ମେନେଜର ବାବୁ ଶ୍ରୀ ରାଜକିଶୋର ଦାସଙ୍କ ନାମରେ ହେସାବ ବୁଝାଇବା ସମ୍ବନ୍ଧରେ ଯେଉଁ ନାଲସ ଦାଏର କରିଥିଲେ ତାହା ଗତ ମାର୍ଚ୍ଚ ମାସ ତା୨୧ରିଖେ ଏଠା ସବ ଜଜଙ୍କ ବିଚାରରେ ଡିସମିସ ହୋଇଥିବା ପାଠକଙ୍କ ଜଣାଇଅଛୁଁ। ସବ ଜଜ ମହୋଦୟ ରାୟରେ ଲେଖିଅଛନ୍ତି ଯେ ମେନେଜର ମୁକରର ହେବା ସମୟ ସନ୍ ୧୯୦୩ ମସୀହା ଅପ୍ରେଲ ମାସ ତା୨୫ରିଖେ ରାଜା ଗବର୍ଣ୍ଣମେଣ୍ଟଙ୍କୁ ଯେଉଁ ଏକରାରନାମା ଲେଖି ଅଛନ୍ତି ତହିଁରେ ମେନେଜରଙ୍କଠାରୁ କେବଳ ହେସାବପତ୍ର ତଲବ କରି ଦେଖିବାର ଲେଖା ଅଛି। ମାତ୍ର ମେନେଜର ସାଧାରଣ ଚାକରଙ୍କପରି ତାଙ୍କୁ ହେସାବପତ୍ର ବୁଝାଇଦେବା ଲେଖା ନାହିଁ। ବର୍ତ୍ତମାନ ମୋକଦ୍ଦମା ଦାଏର ହେବା ପୂର୍ବେ ମେନେଜର ରାଜାଙ୍କୁ ହେସାବପତ୍ର ଦେଖିବା କାରଣ ପତ୍ର ଲେଖିଥିଲେ ମାତ୍ର ରାଜା ତାହା ନ ଦେଖି ହେସାବ ବୁଝାଇଦେବା କାରଣ ଦାବୀ କଲେ ଏବଂ ମେନେଜର ତାହା କରିବାକୁ ନାସ୍ତି କଲାରୁ ନାଲସ ଦାଏର କଲେ। ବିଚାରପତି ଏକରାର ନାମାର ସର୍ତ୍ତମତେ ମୋକଦ୍ଦମା ଡିସମିସ କରିଅଛନ୍ତି। ସେହି ଏକରାର ନାମାରେ ଆହୁରି ସର୍ତ୍ତ ଅଛି ଯେ ରାଜା ହେସାବପତ୍ର ଦେଖି କିଛି ଅନ୍ୟାୟ ବା ତ୍ରୁଟି ଜାଣିପାରିଲେ ମେଜେଷ୍ଟରସାହେବଙ୍କୁ ଜଣାଇବେ ଏବଂ ବିଚାରପତି ସିଦ୍ଧାନ୍ତ କରିଅଛନ୍ତି ଯେ ମେନେଜର କିଛି ଆତ୍ମସାତ୍ କରିବା ପ୍ରକାଶ ହେଲେ ତତ୍ସମ୍ବନ୍ଧେ ମୋକଦ୍ଦମା ଚଳିବାରେ ମାତ୍ର ମେନେଜରଙ୍କଠାରୁ ସେ ହେସାବପତ୍ର ବୁଝିବାରେ ହକଦାର ନୁହନ୍ତି। ଏହି ମୋକଦ୍ଦମାରେ ସରକାରପକ୍ଷଭୁକ୍ତ ହେବା ଓ ସରକାରଙ୍କ ପକ୍ଷରୁ ମେନେଜର ନିଯୋଗ ହୋଇଥିବାରୁ ମୋକଦ୍ଦମା ଅଚଳ ଥିବା ବିଷୟରେ ଆପତ୍ତି ହୋଇଥିଲା ମାତ୍ର ବିଚାରପତି ତାହା କାଟି ଦେଇଅଛନ୍ତି। ଏକରାରନାମା ଅନୁଯାୟୀ ୫ ବର୍ଷ ସକାଶେ ରାଜକିଶୋର ବାବୁ ନିଯୁକ୍ତ ହୋଇଥିଲେ। ସେ ମିଆଦ ଶେଷ ହେବାରୁ ରାଜକିଶୋର ବାବୁ ଅତ୍ୟୁତ୍ତମ କାର୍ଯ୍ୟ କରୁଥିବା ଓ ମନ୍ଦିରର ବିଶେଷତଃ ମହାପ୍ରଭୁଙ୍କ ସେବା ପୂଜାରେ ଅନେକ ଉନ୍ନତି କରିଥିବା ହେତୁ ଆହୁରି ପାଞ୍ଚବର୍ଷ ତାଙ୍କୁ ସେହି ସର୍ତ୍ତରେ ରଖିବାକାରଣ ରାଜା ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରି ନିତାନ୍ତ ତରବର ହୋଇ ଏ ଭଳି ନାଲସ କରିବା ରାୟରେ ଉଲ୍ଲେଖ ହୋଇଅଛି। ଉକ୍ତ ନିଷ୍ପତ୍ତି ଅପିଲ ଯୋଗ୍ୟ ଥିବାରୁ ଆମ୍ଭେମାନେ କୌଣସି ମତାମତ ପ୍ରକାଶ କରିବାରୁ କ୍ଷାନ୍ତ ହେଲୁଁ ମାତ୍ର ଦେଖାଯାଏ ଯେ ରାଜା ଏହି ମୋକଦ୍ଦମାରେ ବଡ଼ ୨ ଓକୀଲ ଦେଇ ଅନେକ ଖର୍ଚ୍ଚାନ୍ତ ହୋଇଅଛନ୍ତି। ଆଶା କରୁଁ ଅପିଲ ଦାଏର ପୂର୍ବେ ଆପଣାର ସ୍ୱାର୍ଥ ଉତ୍ତମରୂପେ ବୁଝି କାର୍ଯ୍ୟ କରିବେ। ରାଜକିଶୋର ବାବୁ ସରକାରୀ ଅଡିଟର ଅଣାଇ

ହେସାବ ତଦନ୍ତ କରାଇଅଛନ୍ତି ଏବଂ ତହିଁରେ କିଛି ଗୋଳମାନ ବାହାରି ନ ଥିବା ଓ ଗବର୍ଣ୍ଣମେଣ୍ଟ ତାହା ଗ୍ରହଣ କରିଥିବା ବିଷୟ ମଧ୍ୟ ରାଜା ବିଚାର କରିବେ। ଆମ୍ଭମାନଙ୍କର ଉଦ୍ଦେଶ୍ୟ ଏହି ଯେ ଅକାରଣ ଯେପରି ସାଧାରଣ ସମ୍ପତ୍ତି ନଷ୍ଟ ନ ହୁଏ।

*ଉତ୍କଳ ଦୀପିକା-୧୯୧୨: ପୃଷ୍ଠା ସଂଖ୍ୟା-୮୭*

## ପୁରୀରାଜାଙ୍କ ଦେଓ୍ୱାନ

ଆମ୍ଭେମାନେ ସଂବାଦ ପାଇଅଛୁ ରାୟ ରାଜାକିଶୋର ଦାସ ବାହାଦୂରଙ୍କ ମସ୍ତକରେ ଗତ ଏକାଦଶୀ ଦିନ ପୁରୀରାଜାଙ୍କର ଦେଓ୍ୱାନ ଶାଢ଼ୀ ବନ୍ଧାହୋଇଅଛି। ବଡ଼ ଆନନ୍ଦର ବିଷୟ।

*ଉତ୍କଳ ଦୀପିକା-୧୯୨୬: ପୃଷ୍ଠା ସଂଖ୍ୟା-୩୩୦*

# ତଡ଼ିତାଲୋକ

ଶ୍ରୀଯୁକ୍ତ ଉତ୍କଳଦୀପିକାର ସମ୍ପାଦକ ମହାଶୟ

ସମୀପେଷୁ

ମହାଶୟ!

ଚଳିତମାସ ତା୧୨ରିଖ ଅପରାହ୍ନ ଘ୪ଣ୍ଟା ସମୟରେ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ରଥ ସିଂହଦ୍ୱାରେ ଆସି ଲାଗିଲା। ଅନ୍ୟ ଦୁଇରଥ ତହିଁର କିଛିକ୍ଷଣ ପୂର୍ବରୁ ଆସି ଲାଗିଥିଲା। ସେଦିନ ନୀଳାଦ୍ରି ବିଜୟ ନ ହୋଇ ପରଦିବସ ଘ୨ଣ୍ଟା ସମୟରେ ପହଣ୍ଡି ଆରମ୍ଭ ହେବାର ସ୍ଥିର ହୋଇଥିବାର ଶୁଣିଥିଲୁଁ। ତଦ୍‌ହେତୁ ତା୧୩ରିଖରେ ସ୍କୁଲ କଚେରିମାନ ଶୀଘ୍ର ଶୀଘ୍ର ବନ୍ଦ ହୋଇଗଲା। ଛାତ୍ରମାନେ କାଖରେ ପୁସ୍ତକ ଯାକି ସିଂହଦ୍ୱାରଭିମୁଖେ ପ୍ରଧାବିତ ହେଲେ। ଅମଲାମାନେ ମଧ୍ୟ ଗୃହକୁ ନ ଯାଇ କାଖରେ ଛତା ଘେନି ସିଂହଦ୍ୱାରେ ଉପସ୍ଥିତ ହେଲେ। ଦୁଇଟା ବାଜିବା ପୂର୍ବରୁ ସିଂହଦ୍ୱାର ସମ୍ମୁଖସ୍ଥ ସ୍ଥାନଟି ଯାତ୍ରୀରେ ପୂର୍ଣ୍ଣ ହୋଇଗଲା। ପୋଲୀଶ କର୍ମ୍ମଚାରିମାନେ ଯେ ଯାହାର ନିର୍ଦ୍ଦିଷ୍ଟ ସ୍ଥାନରେ ରହି ଶାନ୍ତିରକ୍ଷା କରିବାକୁ ଲାଗିଲେ। ସୂର୍ଯ୍ୟଦେବ କ୍ରମେ କ୍ରମେ ପଶ୍ଚିମଦିଗକୁ ଗମନ କରିବାକୁ ଲାଗିଲେ। ଦୁଇଟା ଯଥାସମୟରେ ବାଜିଲା ପରେ ତିନିଟା, ଚାରିଟା ଓ ପାଞ୍ଚଟା ମଧ୍ୟ ବାଜିଲା। କିନ୍ତୁ ପହଣ୍ଡି ହେବାର କୌଣସି ଆୟୋଜନ ଦେଖାଗଲା ନାହିଁ। ଦର୍ଶକବୃନ୍ଦ "ଚାଲ ଯିବା ଆଜି ପହଣ୍ଡି ହେବ ନାହିଁ।"କେହି କହିଲେ "ସାହାବ ଆସିଲେ ପହଣ୍ଡି ହେବ।"ଏହିରୂପେ ନାନା ଲୋକେ ନାନା କଥା କହିବାକୁ ଲାଗିଲେ। ପ୍ରାୟ ସାର୍ଦ୍ଧ ପାଞ୍ଚଘଣ୍ଟା ସମୟରେ ପହଣ୍ଡି ଆରମ୍ଭ ହେଲା। ତୁରୀ ଧ୍ୱନି ଶ୍ରୁତ ହେଲାକ୍ଷଣି ଚତୁର୍ଦ୍ଦିଗରୁ ହରିବୋଲ ଓ ଉଲୁଧ୍ୱନି ଉଥିତ ହେଲା। ରାତ୍ର ଘ୯ଣ୍ଟା ମଧ୍ୟରେ ତିନି ଠାକୁରେ ମନ୍ଦିର ମଧ୍ୟରେ ପ୍ରବେଶ କଲେ। ଆମ୍ଭେମାନେ ଅନୁସନ୍ଧାନରେ ବୁଝିଲୁଁ ଯେ ମନ୍ଦିର ମଧ୍ୟରେ ସୌଦାମିନୀଙ୍କ ନିମନ୍ତେ ଆସନ ପ୍ରସ୍ତୁତ ହୋଇଥିବାରୁ ପହଣ୍ଡି ଏପରି ଅଯଥା ବିଳମ୍ବ ଘଟିଥିଲା।

ଗତ ନବେମ୍ବର ମାସରେ ବରୋଦାଧିପ ପୁରୀକୁ ଶୁଭାଗମନ କରିଥିଲେ। ତାଙ୍କୁ ଅଭ୍ୟର୍ଥନା କରିବା ନିମନ୍ତେ ପୁରୀ ଜଗନ୍ନାଥବଲ୍ଲଭ ମଠରେ ଏକ ସଭା ହୋଇଥିଲା ଓ ସେଠାରେ ତାଙ୍କୁ ଅଭିନନ୍ଦନପତ୍ରମାନ ପ୍ରଦତ୍ତ ହୋଇଥିଲା। ଆମ୍ଭେମାନେ ସେହିଦିନ ଶୁଣିଲୁଁ ଯେ ଶ୍ରୀମନ୍ଦିର ଆଲୋକିତ କରିବା ନିମନ୍ତେ ସୌଦାମିନୀଙ୍କୁ ନିଯୁକ୍ତ କରିବାର ପ୍ରସ୍ତାବ ହେଉଅଛି। ଉକ୍ତ ପ୍ରସ୍ତାବ ସମ୍ବନ୍ଧେ ବରୋଦାଧିପ ଯାହା କହିଲେ ତାହା ଆପଣଙ୍କ ମତାମତ ସହ ଯଥା ସମୟରେ ଦୀପିକା ପ୍ରକାଶିତ ହୋଇଥିଲା। ତାହା ପାଠ କରି "ପ୍ରଜାବନ୍ଧୁ" ରମ୍ଭାରୁ ରଡ଼ି ଛାଡ଼ିଥିଲେ। କେତେକ ଦିନ ପର୍ଯ୍ୟନ୍ତ ଏହିରୂପ ବାଦାନୁବାଦ ହୋଇ ସମସ୍ତେ ନୀରବ ହୋଇଗଲେ। ଆମ୍ଭେମାନେ ଭାବିଲୁଁ ବୋଧହୁଏ ଏ ପ୍ରସ୍ତାବ ଆଉ କାର୍ଯ୍ୟରେ ପରିଣତ ହେବ ନାହିଁ। କିନ୍ତୁ ବର୍ତ୍ତମାନ ଦେଖୁଅଛୁଁ ଆମ୍ଭମାନଙ୍କର ଅନୁମାନ ଯଥାର୍ଥ ନୁହେଁ।

ଶ୍ରୀଜିଉ ଗୁଣ୍ଡିଚା ଯାତ୍ରା କଲାପରେ ଚପଳାର ଚରମାନେ ଆସି ତାଙ୍କ ଗମନାଗମନ ନିମନ୍ତେ ମନ୍ଦିରମଧ୍ୟସ୍ଥ ପାକଶାଳାଠାରୁ ଭୋଗ ଯିବାର ପଥ ଓ ଜଗମୋହନ ମଧ୍ୟଦେଇ ରତ୍ନବେଦୀ ପର୍ଯ୍ୟନ୍ତ ତାର ବସାଇଦେଲେ। ଏହାହିଁ ପହଣ୍ଡି ବନ୍ଦ ହେବାର ପ୍ରଧାନ କାରଣ। ପଣ୍ଡା ପଡ଼ିଆରୀ ଓ ସେବକ ପ୍ରଭୃତି ଏଥିର ପ୍ରତିବାଦ କରଣାର୍ଥେ ତା ୧୩ରିଖ ଘ ୧୨ଣ୍ଟା ସମୟରେ ମନ୍ଦିର ମଧ୍ୟରେ ଏକ ବୃହତ୍ ସଭା କରିଥିଲେ। ପୁରୀର ପ୍ରଧାନ ପ୍ରଧାନ ମଠଧାରୀ ମହନ୍ତମାନେ ମଧ୍ୟ ଉକ୍ତ ସଭାରେ ଯୋଗଦାନ କରିଥିଲେ। ଅନେକ ତର୍କ ବିତର୍କ ପରେ ସ୍ଥିର ହେଲା ମନ୍ଦିର ମଧ୍ୟରେ ବିଜୁଳୀବତୀ ଜଳିବା ନୀତି ବହିର୍ଭୁତ କାର୍ଯ୍ୟ ଅଟେ ସୁତରାଂ ଯେଉଁ ତାର ବସିଅଛି ତାହା ଉଠାଇ ଦିଆ ନ ଗଲେ ଠାକୁରେ ମନ୍ଦିରକୁ ଆସି ପାରିବେ ନାହିଁ ଏବଂ ସେବକମାନନେ ପହଣ୍ଡି କାର୍ଯ୍ୟାରମ୍ଭ କରିବେ ନାହିଁ। ମନ୍ଦିରର ତତ୍ତ୍ୱାବଧାରକ ଏବଂ ସୌଦାମିନୀଙ୍କର ପ୍ରଧାନ ପୃଷ୍ଠପୋଷକ ମେନେଜର ବାବୁ ବାଧ୍ୟ ହୋଇ ରତ୍ନଦେବୀ ସମ୍ମୁଖସ୍ଥ ପୋଖରୀଆ ମଧ୍ୟରୁ ତାର ଉଠାଇଦେଲେ। ଅନ୍ୟାନ୍ୟ ସ୍ଥାନରେ ତାର ଯେପରି ବସିଥିଲା ସେହିପରି ଅଛି। କିନ୍ତୁ ସେ ଗୁଡ଼ାକ ମଧ୍ୟ ମନ୍ଦିର ମଧ୍ୟରେ ରହିବା ଉଚିତ କି ନା ସେ ବିଷୟରେ ଘେନି ଭାରୀ ଆନ୍ଦୋଳନ ଲାଗିଅଛି। କିଛି ମୀମାଂସା ନୋହିବା ପର୍ଯ୍ୟନ୍ତ ତାଡ଼ିତାଲୋକ ମମ୍ବନ୍ଧୀୟ କାର୍ଯ୍ୟ ସ୍ଥଗିତ ଅଛି। ଯାହା ସିଦ୍ଧାନ୍ତ ହେବ ପରେ ଜଣାଯିବ।

ସମ୍ପାଦକ ମହାଶୟ, ଉପସ୍ଥିତ ଘଟଣାରୁ ବୋଧ ହେଉଅଛି ଯେ ମେନେଜର ବାବୁ ପଣ୍ଡା ପଡ଼ିଆରୀ ଓ ମହନ୍ତମାନଙ୍କ ସଙ୍ଗେ ପରାମର୍ଶ ନ କରି ଗୋଟିଏ ନୂତନ ପ୍ରଥା ମନ୍ଦିର ମଧ୍ୟରେ ପ୍ରବର୍ତ୍ତନ କରିବାକୁ ଉଦ୍ୟମ ହେବାରୁ ତାଙ୍କୁ ଏତେ ହରବରରେ ପଡ଼ିବାକୁ ହେଲା। ଯେଉଁ କାର୍ଯ୍ୟରେ ଆଦ୍ୟରୁ ପ୍ରତିବାଦ ହେଉଅଛି ସେ କାର୍ଯ୍ୟ କରିବାକୁ ତାଙ୍କର ଏଡ଼େ ଜିଦି କାହିଁକି ତାହା ଆମ୍ଭେମାନେ କିଛି ବୁଝି ପାରୁନାହୁଁ ମନ୍ଦିର ମଧ୍ୟସ୍ଥ ଅନେକ ସ୍ଥାନରେ ଜୀର୍ଣ୍ଣସଂସ୍କାର ଆବଶ୍ୟକ ହୋଇଅଛି। ତାଡ଼ିତାଲୋକର ଟଙ୍କାଟା ସେଥିରେ ବ୍ୟୟ କଲେ ଅର୍ଥର ଅପବ୍ୟୟ ନ ହୋଇ ବରଂ ତାଙ୍କର ନାମ ଚିରସ୍ମରଣୀୟ ହୋଇ ରହିବ।

ଜଗନ୍ନାଥ ଦେବ କାହାରି ଗୃହ ଦେବତ ନୁହନ୍ତି, ସେ ହିନ୍ଦୁ ସାଧାରଣଙ୍କର ଦେବତା ସୁତରାଂ

ତାଙ୍କର ସେବା ଆଦିର କୌଣସି ପରିବର୍ତ୍ତନ କରିବାକୁ ହେଲେ ସାଧାରଣଙ୍କର ମତାମତ ଗ୍ରହଣକରା ଉଚିତ। ପୁଣି ଯେଉଁ ମତ ସର୍ବବାଦୀସମ୍ମତ ହେବ ତଦନୁସାରେ କାର୍ଯ୍ୟକରା ଉଚିତ। ଯେ ସ୍ଥଳେ ମତାନୈକ୍ୟ ଘଟିବ ସେ ସ୍ଥଳେ "ମହାଜନୋ ଯେନ ଗତଃ ସ ପନ୍ଥା।" ଏହି ନୀତି ଅନୁସରି କାର୍ଯ୍ୟ କଲେ ସକଳ ଦିଗ ବଜାୟ ରହିବ।ଇତି।

ବିଶମ୍ବଦ

ଆପଣଙ୍କର ପୂର୍ବ ପରିଚିତ ପାଠକ

ପୁରୀ, ୧୭/୭/୦୫

*ଉତ୍କଳ ଦୀପିକା-୧୯୦୫: ପୃଷ୍ଠା ସଂଖ୍ୟା-୩୪୭*

## ପୁରୀ ଓଲାଉଠା

ଏ ସପ୍ତାହରେ ଓଲାଉଠାର ପ୍ରାଦୁର୍ଭାବ ଊଣା ଥିଲେହେଁ ଦୈନିକ ୧୦/୧୨ ମୃତ୍ୟୁ ଲାଗିଅଛି। ଜଣେ ପ୍ରଧାନ ସେବକକୁ ଶ୍ରୀଜିଉଙ୍କର ସ୍ୱପ୍ନାଦେଶ ହେଲା କି "ବିଜୁଳୀବତୀ ପ୍ରବେଶ କରିବା ଦିନଠାରୁ ମୁଁ କିଛିମାତ୍ର ଭୋଜନ କରି ନାହିଁ। ଶୀଘ୍ର ଉକ୍ତ ବତୀ ବାହାର କରି ନ ଦେଲେ ଘୋର ଅନିଷ୍ଟ ହେବ।" ଏ ବିଷୟ ସେବକମାନେ ମେନେଜର ବାବୁଙ୍କ କର୍ଣ୍ଣଗୋଚର କରାଇ ବୈଦ୍ୟୁତିକ ଆଲୋକର ଯନ୍ତ୍ରାଦି ଉଠାଇଦେବା ସକାଶେ ଅନୁରୋଧ କରିବାରୁ ବାବୁ ମହୋଦୟଙ୍କ ଆଦେଶମତେ ଉକ୍ତ ଯନ୍ତ୍ରାଦି ଗତ ରବିବାର ମନ୍ଦିର ମଧ୍ୟରୁ ଉଠାଇ ଦିଆଯାଇଅଛି। ଆଉ ଏକ କଥା ଉଠିଲା ଯେ ଗତ ରଥଯାତ୍ରାରେ ରଥ ଉପରେ ଯେଉଁ ଅଧରପଣା ଭୋଗ ହୋଇଥିଲା ସେହି ପଣାହାଣ୍ଡି ଏ ବର୍ଷ ରଥ ଉପରେ ଭାଙ୍ଗିଯାଇ ନ ଥିବାରୁ ଅନ୍ୟାନ୍ୟ ଦେବୀମାନେ ପ୍ରସାଦ ଅଧରପଣା ନ ପାଇବା କାରଣରୁ ଏପରି ଅନିଷ୍ଟ ଘଟିଅଛି ସେହି କାରଣରୁ ଗତ ମଙ୍ଗଳବାର ଦିନ ପୂନରାୟ ଶ୍ରୀଜିଉଙ୍କର ଅଧରପଣା ଭୋଗ ଲାଗିବା ପରେ ଭଙ୍ଗା ଯାଇଥିଲା ଏବଂ ଅନେକ ଲୋକେ ମଧ୍ୟ ନିଜେ ନିଜେ ପଣା ଭୋଗ କରି ସେହି ମନ୍ଦିର ମଧ୍ୟରେ ଭାଙ୍ଗି ଦେଇଥିଲେ। ମହାମାରୀ ନିବାରଣାର୍ଥ ଏହି ଦିନ ଦିପ୍ରହର ଧୂପ ପରେ ଶ୍ରୀନୃସିଂହ ଦେବ ଶ୍ରୀମନ୍ଦିରରୁ ବିଜେ କରି ସାତସାହୀ ଭ୍ରମଣ କରିଥିଲେ। ସିଂହଦ୍ୱାର ସମ୍ମୁଖସ୍ଥ ଅରୁଣ ସ୍ତମ୍ଭ ନିକଟରେ ଚାଳି ଘର ତିଆର ହୋଇ ସେଥିମଧ୍ୟରେ ହୋମ ହେବାର ବ୍ୟବସ୍ଥା ହେଉଅଛି। ସ୍ଥାନୀୟ ହାକିମମାନେ କିଛିଦିନ କଚେରୀ ବନ୍ଦ ରଖିବା ସକାଶେ ରିପୋର୍ଟ କରିଥିଲେ ମାତ୍ର ମଞ୍ଜୁର ହେଲା ନାହିଁ। ଏଠାର ସିଭିଲ ସର୍ଜନ ଡାକ୍ତର ବାଲଟର ସାହେବ ଏବଂ ମିଉନିସିପାଲଟି ରୋଗ ନିବାରଣ ଏବଂ ଚିକିତ୍ସା ବିଷୟରେ ପ୍ରଶଂସନୀୟରୂପେ ମନୋଯୋଗୀ ହୋଇଅଛନ୍ତି। ଡାକ୍ତର ସାହେବ କେତେ ଜଣ ଅଧିକା ଇଂରାଜୀ ଚିକିତ୍ସକ ନିଯୁକ୍ତ କରିଅଛନ୍ତି ଯେ ସେମାନେ ରାତ୍ରରେ ସୁଦ୍ଧା ଲଣ୍ଠନ ନେଇ ବୁଲି ରୋଗୀ ଦେଖୁଅଛନ୍ତି ଏବଂ ଔଷଧ ବାଣ୍ଟୁ ଅଛନ୍ତି। ମୁଉନିସିପାଲିଟି ଅଧିକ କୁଲି ନିଯୁକ୍ତ କରି ବାଟ ଘାଟ ଉପରେ ବିନା ଖରଚରେ ଲୋକଙ୍କର ଘରବାରି ଓ ପଡିୟା ଜମିମାନ ସଫା କରାଉଅଛନ୍ତି। ଏ ସପ୍ତାହରେ ବର୍ଷା ନାହିଁ। ଧାରାଶ୍ରାବଣରେ ଗ୍ରୀଷ୍ମବୋଧ ହେଉଅଛି। କେବଳ ମେଘ ଘୋଡ଼ାଇ ରହିଅଛି।

*ଉତ୍କଳ ଦୀପିକା-୧୯୦୫: ପୃଷ୍ଠା ସଂଖ୍ୟା-୩୭୯*

# ମନ୍ଦିରରେ ତାଡିତାଲୋକ

ସ୍ଥାନାନ୍ତରେ ପ୍ରକାଶିତ 'ପାଠକ' ସ୍ୱାକ୍ଷରିତ ପ୍ରେରିତପତ୍ରରୁ ପାଠକମାନେ ଅବଗତ ହେବେ ଯେ ପୁରୀ ଶ୍ରୀମନ୍ଦିରରେ ତାଡିତାଲୋକ ପ୍ରଦାନର ବନ୍ଦୋବସ୍ତ ହୋଇଅଛି ଏବଂ ତହିଁ ସଙ୍ଗେ ସଙ୍ଗେ ମହନ୍ତ ସେବକ ପ୍ରଭୃତିଙ୍କର ଘୋର ପ୍ରତିବାଦ ଉପସ୍ଥିତ ହୋଇଅଛି। ଗତ ନବମ୍ବର ମାସରେ ଏହି ଆଲୋକ ଚର୍ଚ୍ଚା ହୋଇ ମତାନ୍ତର ଘଟିଥିଲା। ତହିଁ ଉତ୍ତାରୁ ଏତେକାଳ କିଛି କଥା ନ ହୋଇ ଏକାବେଳେ କାର୍ଯ୍ୟାନୁଷ୍ଠାନ ମହାମାନ୍ୟ ଲଡ କର୍ଜନଙ୍କର ବଙ୍ଗପ୍ରଦେଶ ବିଭାଗ ନୀତି ପରି ହୋଇଅଛି ଏବଂ ସେପରି ନୀତି ଭଲ ନୁହେ ବୋଲି ସମସ୍ତେ କହୁ ଅଛନ୍ତି। ପ୍ରତିବାଦ ମୀମାଂସା ପର୍ଯ୍ୟନ୍ତ କାର୍ଯ୍ୟ ସ୍ଥଗିତ ରଖି ମାନେଜର ବିବେଚନାର କାର୍ଯ୍ୟ କରିଅଛନ୍ତି। କିନ୍ତୁ ଏତେକାଳ ନୀରବ ନ ରହି ମହନ୍ତ ସେବକ ପ୍ରଭୃତିଙ୍କ ସଙ୍ଗେ ଯୁକ୍ତି କରି ବୁଝାଇ ସେମାନଙ୍କ ସମ୍ମତ ନେଇ କାର୍ଯ୍ୟ କରିଥିଲେ କିଛି ଗଣ୍ଡଗୋଳ ହୋଇ ନ ଥାନ୍ତା। ଏକାବେଳେ ରତ୍ନବେଦୀ ପର୍ଯ୍ୟନ୍ତ ଆଲୋକ ନ ନେଇ ସିଂହଦ୍ୱାର ସମ୍ମୁଖ ଏବଂ ସ୍ନାନ ମଣ୍ଡପଠାରୁ ବେଢ଼ା ଭିତରେ ଆଲୁଅ ଦେଇଥିଲେ ଲୋକେ ଦେଖି ତାହା ନିର୍ଦୋଷ ଏବଂ ହିତକର ଥିବାର ଅନୁଭବ କଲା ଉତ୍ତାରୁ କ୍ରମେ କ୍ରମେ ପ୍ରସାରର ବିବେକତାର କାର୍ଯ୍ୟ ହୋଇଥାନ୍ତା। ତାହା ହୋଇ ନ ଥିବାରୁ ଅନର୍ଥ ଘଟିଅଛି। ବୋଲିବା ବାହୁଲ୍ୟ ଯେ ଆମ୍ଭେମାନେ ଆଦ୍ୟରୁ ମନ୍ଦିରରେ ତାଡ଼ିତାଲୋକ ପ୍ରଦାନ ସମ୍ବନ୍ଧରେ ଯେଉଁ ମତ ପ୍ରକାଶ କରିଅଛୁଁ ତାହା ପରିବର୍ତ୍ତନ କରିବାର ଉପଯୁକ୍ତ କାରଣ ଅବଧି ପାଇ ନାହୁଁ ଏବଂ ପତ୍ରପ୍ରେରକଙ୍କ ସହିତ ଏକମତ ହୋଇ କହୁଅଛୁଁ ଯେ ମନ୍ଦିରର ତହବିଲରେ ଯେବେ ଉଦ୍ଦର୍ତ୍ତ ଟଙ୍କା ରହିଅଛି ତେବେ ଅଗ୍ରେ ମନ୍ଦିରର ଜୀର୍ଣ୍ଣ ସଂସ୍କାରରେ ତାହା ବ୍ୟୟ ନ କରି ତାଡ଼ିତା ଲୋକ ବିଳାସିତାରେ ଲଗାଇବା ସୁବିବେଚନାର କାର୍ଯ୍ୟ ନୁହେ। ଶୁଣିଅଛୁଁ ଏହି ଆଲୋକ ବ୍ୟାପାରରେ ପ୍ରାୟ ଟ୨୫୦୦୦ଙ୍କା ମୂଳଧନ ଲାଗିବ। ଏଥି ଉପରେ କାର୍ଯ୍ୟ ଚଳାଇବା ବ୍ୟୟ ଅଛି।

*ଉତ୍କଳ ଦୀପିକା-୧୯୦୫: ପୃଷ୍ଠା ସଂଖ୍ୟା-୩୪୩*

ପୁରୀ ମନ୍ଦିରରେ ବୈଦ୍ୟୁତିଲୋକ ଦେବା ନିମନ୍ତେ ମନ୍ଦିରର ମ୍ୟାନେଜର ମହୋଦୟ ବହୁଅର୍ଥ ବ୍ୟୟକରି ଯନ୍ତ୍ରାଦି ଅଣାଇ ଥିଲେ। ମାତ୍ର ସର୍ବସାଧାରଣ ଏଥିରେ ଘୋର ପ୍ରତିବାଦ କରିବାରୁ ମ୍ୟାନେଜର ମହୋଦୟ ବାଧହୋଇ ମନ୍ଦିର ଭିତରେ ତାର ଉଠାଇ ଆଣିଅଛନ୍ତି ବର୍ତ୍ତମାନ ସେହି ଯନ୍ତ୍ରାଦି କଣ ହେଲା ତାହାର କୌଣସି ସମ୍ବାଦ ମିଳୁନାହିଁ ଏତେ ଅଧିକ ଅର୍ଥ ବ୍ୟୟକରି ତାହା କୌଣସି କାର୍ଯ୍ୟରେ ନ ଆସିବା ମନ୍ଦିରର ସମୂହ କ୍ଷତି ହୋଇଅଛି। ପୂର୍ବରୁ ଏ ସମ୍ବନ୍ଧରେ ସମସ୍ତଙ୍କର ମତାମତ ନେଇ ଏହି କାର୍ଯ୍ୟରେ ହାତ ଦେଇଥିଲେ ଶେଷକୁ ଏପରି କ୍ଷତିଗ୍ରସ୍ତରେ ପଡ଼ି ନଥାନ୍ତେ। ଏଲେକ୍ଟ୍ରିକ ଯନ୍ତ୍ରାଦି କ୍ରୟ କରିବାରେ ଯେଉଁ ଅର୍ଥବ୍ୟୟ ହୋଇଅଛି ବର୍ତ୍ତମାନ ତହିଁରେ ଦାୟୀ କିଏ? କି ଉପାୟ ଦ୍ୱାରା ଏହି ଅଭାବ ପୂରଣ ହେବ? ଆଶାକରୁଁ ସହୃଦୟ ହିନ୍ଦୁ ସନ୍ତାନମାନେ ଏହାର ସଦୁତ୍ତର ପ୍ରଦାନ କରିବେ।

*ସମ୍ବଲପୁର ହିତୈଷିଣୀ-୧୯୦୫: ପୃଷ୍ଠା ସଂଖ୍ୟା-୧୫୨*

## ପୁରୀ ଦେଉଳରେ ବିଦ୍ୟୁତାଲୋକ

ପୁରୀ ଦେଉଳରେ ବର୍ତ୍ତମାନ ବିଜୁଳିବତୀ ସେବା ବ୍ୟବସ୍ଥା ହେଉଥିବାର ଶୁଣି ବିଶେଷ ଆନନ୍ଦିତ ହେଲୁଁ। ଦେଉଳ ମଧ୍ୟରେ ଅନେକ ସ୍ଥାନ ଅତ୍ୟନ୍ତ ଅନ୍ଧକାରମୟ, ତେଲ ଓ ଘିଅର ଦୀପ ବସିବା ଏପର୍ଯ୍ୟନ୍ତ ବ୍ୟବସ୍ଥା ଥିଲା, କିନ୍ତୁ ତଦ୍ଦ୍ୱାରା ଆଲୁଅ ଭଲ ହୁଏ ନାହିଁ, ବିଶେଷତଃ ଧର୍ମହିସାବରେ ଧରିବାକୁଗଲେ ଘିଅରେ ଯେ ପ୍ରକାର ଅପଦାର୍ଥମାନ ମିଶ୍ରିତ ହେଉଥିବାର ଶୁଣାଯାଏ ସେ ପ୍ରକାର ଘିଅ ଦେଉଳରେ ବ୍ୟବହାର ହେବା ଆଦୌ ଉଚିତ ନୁହେଁ। ବିଶୁଦ୍ଧ ଘିଅ ପାଇବା କଠିନ। ବିଜୁଳି ବତୀରେ କୌଣସି ଦୋଷ ଦେଖାଯାଉନାହିଁ। ବିଜୁଳିବତୀ ବସିଲେ ଦର୍ଶକମାନଙ୍କର ବିଶେଷ ସୁବିଧା ହେବ ସନ୍ଦେହ ନାହିଁ।

*ଉତ୍କଳ ଦୀପିକା-୧୯୨୮: ପୃଷ୍ଠା ସଂଖ୍ୟା-୪୬୯*

## ପୁରୀ ଦେଉଳରେ ବିଜୁଳିବତୀ

ପୁରୀ ଦେଉଳମଧ୍ୟରେ ବିଜୁଳିବତୀ ଆଲୋକର ବ୍ୟବସ୍ଥା ରାଜାସାହେବ କରୁଥିବାର ଶୁଣି ଆମ୍ଭେମାନେ ବିଶେଷ ଆନନ୍ଦିତ ହେଉଅଛୁଁ। ମନ୍ଦିର ମଧ୍ୟରେ ଅନେକ ସ୍ଥଳ ଏପରି ଅନ୍ଧକାରମୟ ଯେ ଦିବସରେ ମଧ୍ୟ ଘୋର ଅନ୍ଧକାର ହୋଇ ରହିଥାଏ। ବିନା ଆଲୋକରେ କିଛି ଦେଖାଯାଏ ନାହିଁ। କ୍ଷୀଣ ପ୍ରଦୀପର ଅଲୋକ ଆଦୌ କୌଣସି କାର୍ଯ୍ୟରେ ଲାଗେ ନାହିଁ। ବିଜୁଳୀବତୀ ବସିଲେ ଏସମସ୍ତ ଅସୁବିଧା ଅକ୍ଳେଶରେ ଦୂରୀଭୂତ ହେବ। ବିଜୁଳିବତୀ ବସିବା ସମ୍ବନ୍ଧେ କେହି କେହି ନାନା ପ୍ରତିବାଦ ଉଠାଇ ଥିବାର ଶୁଣିଅଛୁଁ। ମାତ୍ର ବିଜୁଳୀବତୀ ସମ୍ବନ୍ଧେ କୌଣସି ପ୍ରକାର ଯୁକ୍ତି ଯୁକ୍ତ ଆପତ୍ତି ଦେଖୁନାହୁଁ। ବିଶେଷତଃ ପାଓ୍ୱାର ହାଉସ୍ ମନ୍ଦିରଠାରୁ ବହୁଦୂରେ ଅବସ୍ଥିତ ସେଠାରେ କିରାସିନୀ ତୈଳ ବ୍ୟବହାର ହେଲେହେଁ ମନ୍ଦିର ମଧ୍ୟକୁ କିରାସିନୀ ଯିବ ନାହିଁ। ଏଥିପୂର୍ବରୁ ବାରାଣସୀ, କାଶୀବିଶ୍ୱନାଥ, ବମ୍ବେଇରେ ଲକ୍ଷ୍ମୀମନ୍ଦିର ପ୍ରଭୃତିରେ ବିଜୁଳିବତୀ ବସିଯାଇଅଛି। ମାତ୍ର କେହି କୌଣସି ପ୍ରକାର ଆପତ୍ତି କରିନାହାନ୍ତି। ମୁକ୍ତିମଣ୍ଡପ ସଭା ପୁରୀଦେଉଳ ମଧ୍ୟରେ ଅବସ୍ଥିତ। ହିନ୍ଦୁସମାଜର ଯେ ସର୍ବ ପ୍ରକାର କାର୍ଯ୍ୟ ଓ ଅକାର୍ଯ୍ୟ ସମ୍ବନ୍ଧେ ଉକ୍ତ ସଭା ବ୍ୟବସ୍ଥା ଦିଅନ୍ତି। ମାତ୍ର ଉକ୍ତସଭା ଏସମ୍ବନ୍ଧରେ ଆପତ୍ତି କରୁନାହାନ୍ତି। ଏପରିସ୍ଥଳେ ଅଯଥା କୌଣସି ବାରଣରେ ଆପତ୍ତି ପ୍ରତି ଦୃଷ୍ଟିଦେବା ଅନାବଶ୍ୟକ। ଦେଉଳ ମଧ୍ୟରେ ବିଜୁଳିବତୀ ବସିଲେ ଜନସାଧାରଣଙ୍କର ଗୋଟିଏ ବିଶେଷ ଅସୁବିଧା ଦୂର ହେବ। ରାଜାମହୋଦୟଙ୍କର ଉଦ୍ୟମ ଶୀଘ୍ର କାର୍ଯ୍ୟରେ ପରିଣତ ହେଉ ଏତିକି ଆମ୍ଭମାନଙ୍କର କାମନା ଏବଂ ଏହି ଉଦ୍ୟମ ସକାଶେ ଆମ୍ଭେମାନେ ରାଜାମହୋଦୟଙ୍କ ଧନ୍ୟବାଦ ଅର୍ପଣ କରୁଅଛୁଁ।

*ଉତ୍କଳ ଦୀପିକା-୧୯୨୯: ପୃଷ୍ଠା ସଂଖ୍ୟା-୬୮*

# ପୁରୀ
## ବଡ଼ ଦେଉଳରେ ବିଜୁଳିବତୀ

ଗତ ତା ୧୩ରିଖ ପ୍ରାୟ ୧ଟା ବେଳେ ପୁରୀର ମାଜିଷ୍ଟ୍ରେଟ, ପୁଲିସ ସାହେବ ଏବଂ ରିଜର୍ଭ ପୁଲିସଙ୍କ ଉପସ୍ଥିତିରେ ବଡ଼ ଦେଉଳରେ ବିଜୁଳିବତୀ ଜଳିବା କାମ ଆରମ୍ଭ ହେଲା। ପ୍ରଥମଦିନ ଆନନ୍ଦ ବଜାରରେ (ଯେଉଁଠାରେ ମହାପ୍ରସାଦ ବିକ୍ରୟ ହୁଏ) ଲଗାଗଲା ୨ୟ ଦିନ ମନ୍ଦିରର ଚର୍ତୁପାର୍ଶ୍ୱରେ ଓ ଝୁଲଣ ମଣ୍ଡପରେ ଲଗା ଯାଇଥିଲା।

*ଉତ୍କଳ ଦୀପିକା-୧୯୨୯: ପୃଷ୍ଠା ସଂଖ୍ୟା-୨୯୭*

# ନନ୍ଦୋତ୍ସବ

## ପୁରୀରେ ନନ୍ଦୋତ୍ସବ

ପୁରୀର ସମ୍ବାଦଦାତା ଲେଖିଅଛନ୍ତି କି ଜନ୍ମାଷ୍ଟମୀ ଭାଦ୍ର ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କର ଯାବତୀୟ ଲୀଳା ଅର୍ଥାତ୍ ନନ୍ଦୋତ୍ସବ ପୂତନା ବଧ, ଅଘାସୁର, ବକାସୁର, ଷଣ୍ଡାସୁର ଶକଟାସୁରାଦି ବଧ, କୋଳିବିକା, କାଳୀୟ ଦମନ, ଗୋବସ୍ତ୍ରାହରଣ, ଗୋବର୍ଦ୍ଧନୋଦ୍ଧାରଣ ଓ ବସ୍ତ୍ର ହରଣ ପ୍ରଭୃତି ଗୋପଲୀଳା ଏବଂ ଶେଷୋକ୍ତ ଦିନ କୁଣ୍ଢାଇବେଣ୍ଟାସାହୀ ଲବଣିଖିଆଠାରେ ମଥୁରାର ସମସ୍ତ କାର୍ଯ୍ୟ ନିର୍ବାହିତ ହୁଏ। ଏହି ଦି୧୮ନରେ ପ୍ରାୟ ପ୍ରତିଦିନ ମନ୍ଦିରରୁ ଶ୍ରୀ ମଦନମୋହନ ଓ ରାମକୃଷ୍ଣ ଦେବମାନେ ଯାତ୍ରାର ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କର ବିଜେ କରି ଦୈନିକ ଲୀଳା ଶେଷ ଶୀତଳମଣୋହି ଓ ଆରତୀ ବନ୍ଦାପନା ସାରି ଫେରି ଆସନ୍ତି।

ଏହି ଯାତ୍ରାମାନଙ୍କରେ ଶ୍ରୀଜୀଉଙ୍କ ସେବକମାନେ ନନ୍ଦ ଗୋପାଳାଦି ବେଶ ପରିଧାନ କରି ସେହି ସେହି ଦିନର ଯାତ୍ରା ନିର୍ବାହ କରନ୍ତି। ଯାହାର ଯେଉଁ ସେବା ତାହା ପୂର୍ବରୁ ନିର୍ଦ୍ଧାରିତ ରହିଅଛି। ଜନ୍ମାଷ୍ଟମୀ ପରଦିନ ନନ୍ଦୋତ୍ସବ ହୁଏ। ଏ ଦିନ ସେବକ ନିଯୋଗର ଉଚ୍ଚ ଶ୍ରେଣୀଭୁକ୍ତ ଭିତର୍ଚ୍ଛ ମହାପାତ୍ର ନନ୍ଦବେଶ ଧାରଣ କରି ସ୍ୱୟଂ ମନ୍ଦିରରେ ଗାଈଠାରୁ ରୌପ୍ୟ ପାତ୍ରରେ ଦୁଗ୍ଧ ଦୋହନ କରି ଠାକୁରଙ୍କୁ ଭୋଗ ଦେବାର କାର୍ଯ୍ୟ ଏ ପର୍ଯ୍ୟନ୍ତ ଚଳି ଆସୁଅଛି। ମାତ୍ର ଅଧିକାଂଶ ଯାତ୍ରାରେ ଯାହାର ଯେଉଁ ସେବା ସେ ସେହି ସେହି କାର୍ଯ୍ୟରେ ଉପସ୍ଥିତ ନ ହେବାରୁ ଠାକୁରମାନେ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇ ଯାତ୍ରା ଅଭାବେ କେବଳ ଭୋଗ ସାରି ଫେରି ଆସୁଥିବାର ଦେଖାଯାଏ। କେବଳ ସେବକମାନଙ୍କର ଅବହେଳା ହେତୁ ଜାନିଯାତ୍ରାର ଅଙ୍ଗହାନୀ ହେଉଅଛି। ଏ ବର୍ଷ ମଧ୍ୟ ବସ୍ତ୍ରହରଣ ବ୍ୟୋମାସୁର ରାସ ଓ କେଶୀବଧାଦି ଅଭିନେତାମାନଙ୍କ ଅଭାବରେ ବନ୍ଦ ହୋଇଥିଲା। ଏବଂ ଶେଷଦିବସ ମଥୁରାହାଟଦିନ ଆମ୍ଭେ ଉପସ୍ଥିତ ଥାଇ ଦେଖିଲୁଁ ଯେ କୁବ୍ଜା ଭିନ୍ନ ଅନ୍ୟ କୌଣସି ଯାତ୍ରା ହେଲା ନାହିଁ। ଠାକୁରମାନେ ଲବଣିଖିଆଠାରେ ଭୋଗ ସାରି କେବଳ କୁବ୍ଜାରୂପଧାରୀ ଘଟୁଆରୀଠାରୁ ଅଙ୍ଗରାଗ ଘେନି ଫେରିଲେ। ବାଟରେ ଦୁଇ ତିନିଟା ବାଜେ ଟୋକାଙ୍କ ଦ୍ୱାରା ମଲ୍ଲଯୁଦ୍ଧ ଶେଷ ହେଲା। ଅକ୍ରୁର, ରଜକ, କଂସ ଓ କୁବଳୟା ହସ୍ତୀ ପ୍ରଭୃତିର

ସାକ୍ଷାତ୍ ନାହିଁ। ସୁତରାଂ ସେ ସମସ୍ତ ନିତି ବନ୍ଦ ହେଲା। ପୁଣି କେତେକ ସେବକ ବେଶ ଧାରଣ ପୂର୍ବକ ଶ୍ରୀ ଜିଉଙ୍କ ନୀତି କରିବାକୁ ଲଜ୍ଜା ବୋଧ କରି କେବେ କେବେ ପ୍ରତିନିଧି ଦ୍ୱାରା କାର୍ଯ୍ୟ ନିର୍ବାହ କରିଥାନ୍ତି ମାତ୍ର ଏଣିକି ତାହାସୁଦ୍ଧା ବନ୍ଦ ହେବାର ଦେଖି ବିଶେଷ ଦୁଃଖିତ ହେଲୁଁ। ଏହି ଜାନିଯାତ୍ରା ବିଧି ଚଳାଇବା ସକାଶେ ସେମାନେ ପିଠାଖିଆ ଓ ଖେୟୀ ପାଇଥାନ୍ତି। ପୂର୍ବରୁ ଯାହା ଚଳିଆସୁଅଛନ୍ତି ଏବଂ ଯେ ଯେଉଁ ସେବା କରିବାର ନିୟମ ଅଛି ସେ ତାହା ନ କଲେ ତାହାର ଉପଯୁକ୍ତ ଶାସ୍ତିବିଧାନ ମେନେଜର ମହୋଦୟଙ୍କର ଅଧିକାର ବହିର୍ଭୂତ ନୁହେଁ। ଆଶା କରୁ ତାହାଙ୍କର ଏ ବିଷୟରେ ଦୃଷ୍ଟି ପଡ଼ିବ। ବେଶ, ଅଙ୍ଗଭଙ୍ଗ, କଥା ଗୀତ ଇତ୍ୟାଦିର ଯାହା କଦର୍ଯ୍ୟ ବା ଅଶ୍ଳୀଳ ତାହା ରହିତ ହେବା ଉଚିତ। ସେ ପ୍ରକାର ଦୋଷ ଥିବାରୁ ସମ୍ଭବତଃ ସେବକମାନେ ଲଜ୍ଜା ବୋଧ କରିଆସୁଅଛନ୍ତି। ମାତ୍ର ଚେଷ୍ଟା କଲେ ଅନାୟାସରେ ସୁରୁଚି ସମ୍ପନ୍ନ ମତେ ଯାତ୍ରା ହୋଇପାରିବ ଏବଂ ତହିଁର ମୂଳ ଉଦ୍ଦେଶ୍ୟ ଭଗବାନଙ୍କ ପ୍ରତି ଭକ୍ତି ଓ ପ୍ରେମ ଉତ୍ତେଜିତ ହେବ।

*ଉତ୍କଳ ଦୀପିକା-୧୯୦୫: ପୃଷ୍ଠା ସଂଖ୍ୟା-୪୫୧*

# ଶୋଧ

କେନ୍ଦୁଝର ରାଜା ଓ ରାଣୀ ବିଧିମତେ ଶ୍ରୀମନ୍ଦିର ଶୋଧ କରାଇ ଦର୍ଶନ କରିଥିବାର ଗତ ସପ୍ତାହ ପୁରୀ ସମ୍ବାଦରୁ ପାଠକମାନେ ଅବଗତ ହୋଇଅଛନ୍ତି। ସେ ପ୍ରସଙ୍ଗରେ ଜଣେ ପତ୍ରପ୍ରେରକ ଲେଖିଅଛନ୍ତି କି ବ୫/୬ର୍ଷ ହେଲା କେନ୍ଦୁଝର ରାଜା ତୀର୍ଥ ଭ୍ରମଣାଦିରେ ଥିଲେ ଓ ପୁତ୍ର ପରିବାର ସଙ୍ଗେ ତାହାଙ୍କ ସାକ୍ଷାତ ନ ଥିଲା। ଗତ କେତେମାସ ହେଲା ପୁରୀରେ ବାସ କରନ୍ତେ ତାହାଙ୍କ ପଣ୍ଡା ଶ୍ରୀ ଭାଗୀରଥି ମହାପାତ୍ରଙ୍କ ସୁକୌଶଳ ପ୍ରବୋଧ ଓ ପ୍ରବର୍ତ୍ତନରେ ରାଜା ମହୋଦୟ ରାଣୀ ଓ ପୁତ୍ର କନ୍ୟାଙ୍କୁ ଗଡ଼ରୁ ଅଣାଇ ସେମାନଙ୍କ ସଙ୍ଗେ ସସ୍ନେହରେ ପୁରୀ ସମୁଦ୍ର ତଟସ୍ଥ ବୃହତ୍ ପ୍ରାସାଦରେ ବାସ କରୁଅଛନ୍ତି। କିଛି ଦିନପରେ ନିଜଗଡ଼କୁ ଯାତ୍ରା କରିବାର ଶୁଣାଯାଏ। ଏହି ଶୁଭଘଟନା ସକାଶେ ପତ୍ରପ୍ରେରକ ପଣ୍ଡା ଶ୍ରୀ ଭାଗୀରଥି ମହାପାତ୍ରଙ୍କୁ ଧନ୍ୟବାଦ ଦେଇଅଛନ୍ତି। ବାସ୍ତବରେ ଏଥିପାଇଁ ପଣ୍ଡା ମହାଶୟ ଅଶେଷ ଧନ୍ୟବାଦର ପାତ୍ର ସେ ଯଥାର୍ଥ କୁଳ ପଣ୍ଡାର କାର୍ଯ୍ୟ କରିଅଛନ୍ତି। ଆମ୍ଭେମାନେ ଏକାନ୍ତ କାମନାକରୁ କି କେନ୍ଦୁଝଡ଼ ରାଜା ଶ୍ରୀ ଜଗନ୍ନାଥଙ୍କୁ ସ୍ମରଣ କରି ସପରିବାରେ ନିଜ ରାଜ୍ୟକୁ ଯାଇ ସୁଖରେ ରାଜ୍ୟ କରି ପ୍ରଜାପୁଞ୍ଜର ମଙ୍ଗଳସାଧନ କରନ୍ତୁ।

*ଉତ୍କଳ ଦୀପିକା-୧୯୧୧: ପୃଷ୍ଠା ସଂଖ୍ୟା-୧୬*

## ମନ୍ଦିର ଶୋଧ

ପୁରୀ ଧାମରେ ବିଧାନ ଅଛି ଯେକେହି ନଗଦ ପାଞ୍ଚଶତ ଟଙ୍କା ଦେଲେ ଜଗନ୍ନାଥ ମନ୍ଦିରକୁ ନିର୍ଜନକରି ଦେଇ ଅର୍ଥ ଦାତାଙ୍କର ସପରିବାରରେ ଦେବ ଦର୍ଶନର ସୁବିଧାକରି ଦିଆଯାଏ।

ପର୍ଦ୍ଦାନଶୀନ ଧନୀମହିଳାମାନଙ୍କ ଦେବଦର୍ଶନ ସକାଶ ଏପରି ସୁବିଧା କରିଦେବା ଅବଶ୍ୟ ଉଚିତ, ମାତ୍ର ସର୍ବସାଧାରଣଙ୍କ ଦର୍ଶନରେ ବାଧା ନଘଟିବାର ବ୍ୟବସ୍ଥାକରି ଏପରି କରିବା ଉଚିତ ନୁହେଁ। ମନ୍ଦିର ଶୋଧନ କରିବାକୁ ହେଲେ ପୂର୍ବରୁ ଦର୍ଶକମାନଙ୍କୁ ଶୋଧର ସମୟ ଜଣାଇ ଦେବା, ତତ୍‌ପୂର୍ବେ ବା ପରେ ସେମାନଙ୍କର ଦେବଦର୍ଶନ ସମୟ ନିର୍ଦ୍ଦେଶ କରିଦେବା କର୍ତ୍ତବ୍ୟ। ସେ ଦିନ ଦରଭଙ୍ଗାଧିଶ୍ୱର ସପରିବାରରେ ଦେବଦର୍ଶନ କରିବା ସକାଶ ସାଧାରଣଙ୍କ ଦର୍ଶନ ସମୟରେ ମନ୍ଦିର ଶୋଧ ହେବାରୁ ସେ ଓଳି ସାଧାରଣ ଦର୍ଶକ ମାନେ ଦେବଦର୍ଶନ ନ ପାଇ ଦୁଃଖିତ ହୋଇଥିବା କଥା ପ୍ରକାଶ ପାଇଅଛି। ସାଧାରଣଙ୍କ ଦର୍ଶନ ସମୟରେ ଦେବାଳୟ ଶୋଧ ନକରିବା ବିଷୟରେ ମନ୍ଦିର ମେନେଜରଙ୍କର ସୁଦୃଷ୍ଟି ଆବଶ୍ୟକ।

*ଉତ୍କଳ ଦୀପିକା-୧୯୨୪: ପୃଷ୍ଠା ସଂଖ୍ୟା-୪୨*

# ନବକଳେବର

## ନୂଆ କଳେବର ଆୟୋଜନ

ଏ ବର୍ଷ ଆଷାଢମାସରେ ମଳମାସ ପଡିବାହେତୁ ଶ୍ରୀ ଜଗନ୍ନାଥ ମହାପ୍ରଭୂଙ୍କ ନୂଆ କଳେବର ହେବାର ସ୍ଥିର ହୋଇଅଛି। ଆସନ୍ତା ଶ୍ରାବଣମାସ ଆରମ୍ଭ ଅର୍ଥାତ୍ ଜୁଲାଇ ତା୧୫ରିଖ ନବଯୌବନ ଓ ତହିଁ ଆରଦିନ ଗୁଣ୍ଡିଚା ଯାତ୍ରା ହେବ। ନବକଳେବରେ ପ୍ରଭୂଙ୍କର ନୂତନ ମୂର୍ତ୍ତି ଓ ରଥ ସମସ୍ତ ନୂତନ ହୁଅଇ। ସୁତରାଂ ଅଧିକା କାର୍ଯ୍ୟ ବଢେ। ଗତ ୧୯ବର୍ଷ ପରେ ଏଥର ଯାତ୍ରା ପଡିବା ହେତୁ ପୁରୀରେ ଭାରି ଚହଳ ପଡ଼ିଅଛି ଏବଂ ସମସ୍ତେ ଅଧିକାଯାତ୍ରି ସମାଗମରେ ଅଧିକା ଲାଭ ଆଶାରେ ବ୍ୟସ୍ତ ଅଛନ୍ତି। ଜଗନ୍ନାଥ ପ୍ରତିମା ନିମନ୍ତେ ନୂତନ ଦାରୁସଂଗ୍ରହ ହୋଇ ଯଥା ବିଧିରେ ମନ୍ଦିରକୁ ଆସି ଅଛି ଓ ମନ୍ଦିରର ସୁଯୋଗ୍ୟ ମାନେଜର ସେ ସମ୍ବନ୍ଧୀୟ ସମସ୍ତ କାର୍ଯ୍ୟ ପରମ୍ପରା ବିଧାନନୁସାରେ କରାଉଅଛନ୍ତି। ସେଥି ସକାଶ ଅନ୍ୟ କାହାରି ଚିନ୍ତା କରିବାର କିଛି ନାହିଁ। ସାଧାରଣ ରଥଯାତ୍ରାରେ ପ୍ରାୟ ଲକ୍ଷେ ଯାତ୍ରୀ ହୁଅନ୍ତି। ଏଥର ବିଶେଷ ଯାତ୍ରା ଯୋଗେ ୨/୩ ଲକ୍ଷ ଯାତ୍ରୀ ହେବା ସମ୍ଭବ। ସେମାନଙ୍କ ଅବସ୍ଥାନ ଓ ସୁରକ୍ଷା ସକାଶେ ଜିଲ୍ଲା କର୍ତ୍ତୃପକ୍ଷ ଓ ଜନସାଧାରଣ ବ୍ୟସ୍ତ ହେବାର ଦେଖାଯାଏ। ରେଳବେ ପୁରୀ ରେଳ ଷ୍ଟେସନରେ ତିନିଟା ବୃହତ୍ ଛପରଘର ପ୍ରସ୍ତୁତ କରୁଅଛନ୍ତି ଯେ ଯାତ୍ରିମାନେ ସେଠାରେ ବସା ଉଠା କରି ପାରିବେ। ମିଉନିସିପାଲିଟି ମଧ୍ୟ ଅନେକ ଗୁଡ଼ିଏ ଅସ୍ଥାୟି ଛପରଘର ପ୍ରସ୍ତୁତକରୁଅଛନ୍ତି। ସର୍ବାପେକ୍ଷା ଲୋକମାନଙ୍କୁ ଭଡାଘର ନିର୍ମାଣ କାର୍ଯ୍ୟରେ ଅତ୍ୟନ୍ତ ବ୍ୟସ୍ତ ଦେଖାଯାଏ। ଯାହାର ସ୍ଥାନ ଅଛି ସେ ସେଠାରେ ନୂଆଘର ନିର୍ମାଣ କରୁଅଛି ଓ ଯାହାର ଘର ଟିକିଏ ବଢାଇବାର କି ଘର ସଂଲଗ୍ନ ଚାଳିୟା ଖଣ୍ଡେ ପକାଇବାର ସୁବିଧା ଅଛି ସେ ତାହା କରିବାକୁ ଛାଡୁ ନାହିଁ। ଏଥି ଯୋଗେ ବାଉଁଶ କାଠ ଛଣ ଇତ୍ୟାଦି ଉପରେ ବହୁମୂଲ୍ୟ ହୋଇଅଛି। ଓ କୁଲି ମଜୁରି ଯଥେଷ୍ଟ ବଢ଼ିଅଛି। କୋଠାଘର ମଧ୍ୟ ନିର୍ମାଣର ବିରାମ ନାହିଁ। ବସାଘର ପାସଦେବା ବିଳମ୍ବ ହେଲେ ପାସ ଦେବା କଷ୍ଟ ହେବା ଶୁଣାଇ ଦେବାରୁ ଲୋକେ ଅଧିକ ଚଞ୍ଚଳ ହୋଇ ଅଛନ୍ତି। ଆୟୋଜନରୁ

ଜଣାଯାଏ ଯାତ୍ରିମାନେ ଭଡାଘର ପାଇବାର ଅସୁବିଧା ହେବ ନାହିଁ ଓ ତାହା ହେଲେ ଘରଭଡା ଦର ମଧ୍ୟ ଅତିରିକ୍ତ ବଢ଼ିବ ନାହିଁ। ଏଥିରେ ଘରବାଲାଙ୍କର ଅଧିକା ଆଶାପୂର୍ଣ୍ଣ ହେଉ ବା ନ ହେଉ ଯାତ୍ରିଙ୍କର ସୁବିଧା ହେଲେ ବଡ଼ ଆନନ୍ଦର କଥା ହେବ। ଏ ସମ୍ବନ୍ଧରେ ଆମ୍ଭେମାନେ ଅବଗତ ହେଲୁଁ ଯେ କେହି ୨ ଘରବାଲା ଏମାନଙ୍କ ମଧ୍ୟରେ କେତେଜଣ ମଠାଧିକାରୀ ସୁଦ୍ଧା ଅଧିକା ଲାଭ ଆଶାରେ ସ୍ଥାୟି ଭଡାଟିୟା ବ୍ୟକ୍ତିମାନଙ୍କୁ ଉଠାଇ ଦେବା ନୋଟିସ ଦେଉ ଅଛନ୍ତି ଯେ ସେ ଘରମାନ ଖାଲି ହେଲେ ଯାତ୍ରୀ ରଖିବାର ଲାଇସେନସ ନେବେ। ମଠାଃଧିକାରିଙ୍କର ଏ ପ୍ରକାର ଲୋଭ ଓ ଧର୍ମଛଡା କଳ୍ପନା ଅତ୍ୟନ୍ତ ପରିତାପର ବିଷୟ ଅଟେ। ମଠାଧିକାରିଗଣ ପ୍ରାୟ ସମସ୍ତେ ସାଧୁ ବୈରାଗୀ ଏବଂ ଅଧିକାଂଶ ଭଡାଘରର ମାଲିକ ଏମାନେ ଅଟନ୍ତି। ଦୟା ଧର୍ମସହିତ ପ୍ରଜାପାଳି ଲୋକଙ୍କୁ ଉଦାହରଣ ଦ୍ୱାରା ଧର୍ମ ଶିକ୍ଷାଦେବା ଏବଂ ନିସ୍ୱାର୍ଥ ଭାବେ ଉପସତ୍ତ୍ୱ ବ୍ୟୟ କରିବା ଉଦ୍ଦେଶ୍ୟରେ ଏମାନଙ୍କ ହାତରେ ବୃହତ୍ ସମ୍ପତ୍ତିମାନ ଖଞ୍ଜା ହୋଇଅଛି। ଏମାନଙ୍କ ମଧ୍ୟର କେହି ୨ ସାମାନ୍ୟ ଅର୍ଥ ଲୋଭରେ ପଡି ଅନ୍ୟାୟ ଜନକ ଅନିଷ୍ଟକର ଉପାୟ ଅବଲମ୍ବନ କଲେ ଅପର ଲୋକମାନେ ସେପରି କରିବା ବିଚିତ୍ର ନୁହେଁ। ସୁତରାଂ ସେମାନଙ୍କର ବିଶେଷ ସାବଧାନ ହେବା ଆବଶ୍ୟକ।

*ଉତ୍କଳ ଦୀପିକା-୧୯୧୨: ପୃଷ୍ଠା ସଂଖ୍ୟା-୧୦୯*

## ପୁରୀ ନୂଆକଳେବର ବିଧି

ଗତ ତା୯ରିଖ ରବିବାର ଦାରୁ ପ୍ରତିଷ୍ଠାଦି କାର୍ଯ୍ୟ ସମାପନ ହୁଅନ୍ତେ ପ୍ରାୟ ଦୁଇସହସ୍ର ନିମନ୍ତ୍ରିତ ବ୍ରାହ୍ମଣ ମନ୍ଦିରମଧ୍ୟସ୍ଥ ବୈକୁଣ୍ଠରେ ଉପାଦେୟ ଶ୍ରୀମହାପ୍ରସାଦ ସେବା କରି ଦକ୍ଷିଣା ପାଇ ବିଦାୟ ହୋଇଥିଲେ। ଏହି ପ୍ରତିଷ୍ଠାବିଧିମଧ୍ୟରେ ଶ୍ରୀ ଜିଉଙ୍କର ନୂତନ ମୂର୍ତ୍ତି ନିର୍ମାଣ କାର୍ଯ୍ୟ ଅତିଗୋପନରେ ସମାଧା ହୋଇଥିଲା। ସେବକ ବା ଅନ୍ୟାନ୍ୟ କେହି ଲୋକ ସେ ସ୍ଥାନକୁ ଯିବାର ନିଷେଧ ହୋଇଥିଲା ତା୧୩ରିଖ ଗୁରୁବାର ନବକଳେବର ବିଧି ସେହିପରି ଗୋପନୀୟଭାବେ ସମ୍ପାଦିତ ହେଲା। ଏ ଦିନ ଶ୍ରୀଜିଉଙ୍କର ଦୈନିକ ନୀତି ଶୀଘ୍ର ଶେଷ ହୋଇ ରାତ୍ରରେ ମନ୍ଦିର ଶୋଧ ହୋଇଥିଲା। ମନ୍ଦିରପୁଲୀଶ, ଦଇତା ଓ ପତିଙ୍କୁ ଚାରିଦ୍ୱାରର ଚାବି ଦେଇ ବାହାରକୁ ଚାଲି ଆସିଥିଲେ। ଉକ୍ତ ଦଇତା ପତି ଛଡା ସେ ରାତ୍ରରେ ମନ୍ଦିରମଧ୍ୟରେ ଆଉ କାହାରିକୁ ରଖାଯାଇ ନ ଥିଲା। ସେଥିମଧ୍ୟରେ ସେ ରାତ୍ରରେ ଯେଉଁ ୨ ବିଧି ଅନୁଷ୍ଠିତ ହୋଇଥିଲା ତାହା ସାଧାରଣରେ ଅପ୍ରକାଶ୍ୟ ବ୍ରହ୍ମ ପରିବର୍ତ୍ତନ କାର୍ଯ୍ୟ ଥିଲା। ଶେଷରାତ୍ରରେ ମନ୍ଦିର ମଧ୍ୟରେ ଘଣ୍ଟାଶବ୍ଦ ଶୁଣି ପୁରାତନମୂର୍ତ୍ତି ପାତାଳଗାମୀ ହେଉଥିବାର କେବଳ ବୁଝାଯାଉଥିଲା। ପରଦିନ ପୂର୍ବାହ୍ନରେ ଦଇତାମାନେ ଏକତ୍ର ଶ୍ରୀ ମନ୍ଦିର ମଧ୍ୟରେ ତେଲ ଲଗାଇ ଶୋକ ପ୍ରକାଶପୂର୍ବକ ପାଣିବୁଡ଼ କରିବାକୁ ମାର୍କଣ୍ଡେୟ ପୁଷ୍କରିଣୀକୁ ଯାଇଥିଲେ। ସେହିଦିନଠାରୁ ଦଇତାମାନେ ଅଶୌଚ ଗ୍ରହଣ କରିଅଛନ୍ତି। ଦଶଦିନ ପରେ କ୍ଷୌର ହୋଇ ଶୁଦ୍ଧି ଲାଭ କରିବେ। ବର୍ତ୍ତମାନ ଦଇତାମାନେ ଅଶୌଚ ଧାରଣ କରିଥିଲେ ହେଁ ଅନବସର ପିଣ୍ଡିରେ ଠାକୁରଙ୍କର ଦୈନିକ କାର୍ଯ୍ୟ ପୂର୍ବପରି ନିର୍ବାହ କରୁଅଛନ୍ତି।

*ଉତ୍କଳ ଦୀପିକା-୧୯୧୨: ପୃଷ୍ଠା ସଂଖ୍ୟା-୧୨୯*

# ପୁରୀ-ରଥଯାତ୍ରା

ଗତ ତା୧୨ରିଖ ଦ୍ୱାଦଶୀ ଦିନ ଶ୍ରୀ ଜିଉଙ୍କର ରାଜପ୍ରସାଦ ବାହାରି ପ୍ରଥମେ ରାଜବାଟୀ ପରେ ଅନ୍ୟାନ୍ୟ ସ୍ଥାନରେ ବିତରିତ ହୋଇଥିଲା। ତା୧୪ରିଖ ରବିବାର ରାତ୍ର ତାଟି ଫିଟି ନବଯୋବନ ଦର୍ଶନ କଥା ଥିଲା, କିନ୍ତୁ ଅତିରିକ୍ତ ଯାତ୍ରିସଂଖ୍ୟା ଓ ଅନ୍ୟାନ୍ୟ ନୂତନ କଳେବର ସମୟରେ ଉକ୍ତ ଦର୍ଶନ ହୋଇ ନ ଥିବା ବିବେଚନାରେ ଶ୍ରୀଯୁକ୍ତ ମାଜିଷ୍ଟ୍ରେଟ ସାହେବଙ୍କ ଆଦେଶମତେ ନବଯୌବନ ଦର୍ଶନ ବନ୍ଦ ହେଲା ତା୧୫ରିଖ ସୋମବାର ଉଭା ଯାତ୍ରା ଦିନ ନେତ୍ରୋତ୍ସବାଦି ବିଧି ପରେ ସକାଳ ଧୂପ ଶେଷ ହୋଇ ରଥମାନଙ୍କୁ ଆଜ୍ଞାମାଳ ଆସିଥିଲା।

ଯଥା ସମୟେ ରଥ ନିର୍ମାଣପରେ ରବିବାର ସୁଦ୍ଧା ତିନିରଥ ଚିତ୍ର, ମଣ୍ଡନାଦି ସମସ୍ତ କାର୍ଯ୍ୟ ଶେଷ ହୋଇଥିଲା ପ୍ରତିବର୍ଷ ରଥ ନୂଆ ହେଉଥିଲେ ହେଁ ସାରଥୀ ପ୍ରଭୃତି ମୂର୍ତ୍ତି ପ୍ରତିବର୍ଷ ନୂଆ ତିଆରି ନ ହୋଇ କେବଳ ମରାମତି ଓ ଚିତ୍ରତ ହୁଅନ୍ତି। ପ୍ରଭୂଙ୍କ ଶ୍ରୀଅଙ୍ଗ ପରିବର୍ତ୍ତନ ସଙ୍ଗେ ରଥର ସମସ୍ତ ଉପକରଣ ନୂଆ ଗଢ଼ାହେବା ବିଧିହେତୁ ସାରଥୀ, ଘୋଡ଼ା ପାର୍ଶ୍ୱଦେବତା ଏବଂ ଝରା, ଫରୁଆ ସମସ୍ତ ନୂତନ ନିର୍ମିତ ହୋଇଥିଲା କୌଣସି ପୁରାତନ ଉପକରଣ ବ୍ୟବହୃତ ହୋଇ ନାହିଁ ରଥତ୍ରୟର ଦଧିନଉତି ଉପରେ ପିତଳ କଳଶ ପରିବର୍ତ୍ତେ ସୁବର୍ଣ୍ଣ ସ୍ଥାପନ ଏ ବର୍ଷ ରଥ ସଜ୍ଜାର ପ୍ରଧାନ ବିଶେଷତ୍ୱ ଅଟେ।

କେତେକ ବର୍ଷ ହେଲା ରଥ ଚାରିପାଖରେ ନାନାମୂର୍ତ୍ତି ଚିତ୍ରିତ ପରଦାବାଡ଼ ଦିଆଯାଉ ଥିଲା। ସମ୍ଭବତଃ ତଦ୍ଦ୍ୱାରା ସମ୍ମୁଖ ଭାଗ ଛଡ଼ା ଅନ୍ୟାନ୍ୟ ପାଖ ବନ୍ଦ ହେବାରୁ ଲୋକଙ୍କର ଦର୍ଶନରେ ଅସୁବିଧା ହେବାରେ ପୂର୍ବ ପ୍ରଚଳିତ ପ୍ରଥାମତେ ଏବର୍ଷ ଲୁଗା ଘେରାହୋଇ ଥିଲା। ଉପରୋକ୍ତ ଦିନ ଅପରାହ୍ନ ଘ୩ଣ୍ଟା ଅଧେ ସମୟରେ ପୁଲୀସ ପ୍ରଭୃତି ମୁତୟନ ଥାଇ ରଥ ଟଣା ଆରମ୍ଭ ହେଲା। ପ୍ରାୟ ଘ୫ଣ୍ଟା ଅଧେ ଠାରେ ତିନିରଥ ସିଂହଦ୍ୱାରେ ଲାଗିଲେ।

ପରଦିନ ତା୧୬ରିଖ ମଙ୍ଗଳବାର ଶ୍ରୀ ଗୁଣ୍ଡିଚା, ଏଦିନ ରଥ ପ୍ରତିଷ୍ଠା ଓ ଶ୍ରୀଜିଉଙ୍କ ଖେଚଡ଼ୀ ଭୋଗ ହୋଇ ଘ୧୦ଣ୍ଟା ପରେ ପହଣ୍ଡି ବିଜୟ ଆରମ୍ଭ ହେଲା ଏବଂ ମଧ୍ୟାହ୍ନ ଘ୧ଣ୍ଟା ସମୟେ ଠାକୁରମାନେ ରଥାରୂଢ଼ ହେଲେ। ସାରଥୀ, ଘୋଡ଼ା ସ୍ଥାପିତ ହୋଇ ଚାର ଫିଟି ଦଉଡ଼ୀ ଲାଗିବାରେ କିଛି ସମୟ ଅତୀତ ହେବାପରେ ଯଥାକ୍ରମେ ତିନିରଥଟଣା ଆରମ୍ଭ ହେଲା ସ୍ଥାନୀୟ ଓ ବିଦେଶୀୟ ପୁଲୀସ ସକାଳୁ ରଥ ଚାରି ପାଖ ଶାନ୍ତିରକ୍ଷାର୍ଥେ ନିଯୁକ୍ତ ଥିଲେ। ରଥଟଣା ସମୟ ବନ୍ଧୁକଧାରୀ ସୈନିକ ପୁଲୀସ ରଥ ଦୁଇପାଖରେ ରହିବା ଦୃଶ୍ୟ ନୂତନ ଥିଲା। ସନ୍ଧ୍ୟା ପୂର୍ବରୁ ଶ୍ରୀ ବଳଭଦ୍ର ଜୀଉ ଓ ସୁଭଦ୍ରା ଦେବୀଙ୍କ ରଥ ଗୁଣ୍ଡିଚା ମନ୍ଦିରରେ ଉପସ୍ଥିତ ହୋଇଥିଲେ। କିନ୍ତୁ ଶ୍ରୀ ଜଗନ୍ନାଥ ଦେବଙ୍କ ରଥ ସନ୍ଧ୍ୟା ହୋଇଯିବାରୁ ଦୁଇଦଉଡ଼ୀ ମାତ୍ର ବ୍ୟବଧାନରେ ରହିଗଲେ। ପରଦିନ ତା୧୭ରିଖ ବୁଧବାର ଅପରାହ୍ଣରେ ଶ୍ରୀ ଜଗନ୍ନାଥ ଦେବଙ୍କ ରଥ ଗୁଣ୍ଡିଚା ମନ୍ଦିରରେ ପହୁଞ୍ଚିଲେ।

ଦି ୪/୫ନ ପୂର୍ବରୁ ସ୍ପେଶଲଟ୍ରେନ ଦିବାରାତ୍ର ବହୁବାର ଆସିଥିଲା ଏବଂ ଯାତ୍ରୀ ସ୍ରୋତପରି ବହି ଆସିଥିଲେ। ଅନେକ ଯାତ୍ରୀ ଚାଲି ଆସିଥଲେ, କଟକଠାରୁ ପୁରୀ ପର୍ଯନ୍ତ ରାସ୍ତାରେ ସ୍ଥାନେ ୨ ପୁଲୀଶ ରହି ଯାତ୍ରିମାନଙ୍କ ସୁବିଧାପ୍ରତି ସବିଶେଷ ଦୃଷ୍ଟି ରଖି ଥିଲେ। ଚଟିବାଲାମାନେ ପୂର୍ବରୁ

ଖାଦ୍ୟ ଦ୍ରବ୍ୟାଦି ଯଥେଷ୍ଟ ସଂଗ୍ରହ କରି ରଖିଥିଲେ। ରାସ୍ତାରେ କାହାରି କିଛି ଅନିଷ୍ଟ ହୋଇନାହିଁ। ପହଣ୍ଡି ଓ ରଥଟଣା ସମୟ ସିଂହଦ୍ୱାରରୁ ଗୁଣ୍ଡିଚାମନ୍ଦିର ପର୍ଯ୍ୟନ୍ତ ରାସ୍ତା, କୋଠାଛାତ ଜନାକୀର୍ଣ୍ଣ ହୋଇଥିଲା। ଅକାଳ ଯୋଗୁଁ ବଙ୍ଗାଳଯାତ୍ରି ସଂଖ୍ୟା ୧୫/୨୦ ହଜାରରୁ ଅଧିକ ନଥିଲା। ସର୍ବସୁଦ୍ଧା ଦୁଇଲକ୍ଷ ଯାତ୍ରୀ ହୋଇଥିବାର ଅନୁମାନ କରାଯାଏ। ସମାଗତ ଯାତ୍ରିମାନଙ୍କ ମଧ୍ୟରେ ଅଧିକାଂଶ ଗରିବ ଅବସ୍ଥାପନ୍ନ ଯାତ୍ରୀ ବିରଳ ଥିଲେ। ଅଧିକାଂଶ ପଶ୍ଚିମା ଯାତ୍ରୀ ଥିଲେ।

ସ୍ଥାୟୀ ଏବଂ ଠିକାପାଶୁ ଘର ପୂର୍ଣ୍ଣହୋଇ ଯାଇଥିଲା। ବଙ୍ଗାଳି ଯାତ୍ରୀ ନିଜେ ୨ ଭଡା ଦେଇ ରହନ୍ତି କିନ୍ତୁ ପଶ୍ଚିମାମାନେ ପଣ୍ଡା ପ୍ରଦତ୍ତ ଘରେ ରହନ୍ତି। ଘରଭଡା ଓ ଖୋରାକି ସେମାନଙ୍କୁ କିଛି ଦେବାକୁ ପଡ଼େ ନାହିଁ। ପଶ୍ଚିମାଯାତ୍ରି ପଣ୍ଡାମାନେ ଏହି କାରଣରୁ ତୋଟା, ବଗିଚାମାନଙ୍କରେ ଅସ୍ଥାୟି ଚାଳଘର ପ୍ରସ୍ତୁତ କରି ରଖିଥିଲେ ଯେ ସେ ସବୁ ପରିପୁର୍ଣ୍ଣ ହୋଇଯାଇ ଥିଲା। ସରକାର ତରଫରୁ ବଳଗଣ୍ଡ ଓ ତାଳବଣିଆରେ ଅନେକ ଚାଳଘର ତିଆରି ହୋଇଥିଲା ସେହି ମଧ୍ୟରୁ ପ୍ରଥମୋକ୍ତ ଘରମାନ ଜଣେ ପ୍ରଧାନ ପଣ୍ଡା ନିଲାମରେ ନେଇଥିଲେ ତାଳ ବଣିଆଘର କେହି ନ ନେବାରୁ ସରକାର ଜଣପ୍ରତି ଏକଟଙ୍କା ଭଡ଼ାରେ ଯାତ୍ରୀ ରଖିଥିଲେ। ସାଧାରଣ ଘରଭଡ଼ା ପ୍ରତ୍ୟେକ ଯାତ୍ରି ସକାଶେ ଦୁଇ ଟଙ୍କାରୁ ଦଶ ଟଙ୍କା ପର୍ଯ୍ୟନ୍ତ ହୋଇଥିଲା ଗରିବ ଯାତ୍ରିମାନେ ଭଡ଼ା ଦେଇ ନପାରି ଗଛମୂଳ ଓ ସଡ଼କଧାରରେ ପଡ଼ି ରହିଥିଲେ ଏବଂ କେତେକ ଯାତ୍ରୀ ଅଳ୍ପ ଭଡ଼ାରେ ଖଣ୍ଡିଆବନ୍ଧ ଓ ମାଳତୀପାଟପୁର ପ୍ରଭୃତି ନିକଟବର୍ତ୍ତୀ ମଫସଲ ମାନଙ୍କରେ ରହିଥିଲେ।

ଶ୍ରୀଗୁଣ୍ଡିଚା ଦିନ ସକାଳେ ବର୍ଷା ହୋଇଥିଲା ଦଶଘଣ୍ଟା ପରେ ମେଘ ଛାଡ଼ି ଯିବାରୁ ଯାତ୍ରିମାନେ ଆନନ୍ଦରେ ପହଣ୍ଡି ଦର୍ଶନ କରି ରଥଟଣାରେ ଯୋଗ ଦେଇଥିଲେ ବୁଧବାର ରାତ୍ରରୁ ପୁଣି ଲଗାଣ ବର୍ଷା ଆରମ୍ଭ ହୋଇଅଛି।

ଅତ୍ୟନ୍ତ ଆନନ୍ଦର ବିଷୟ ଯେ କର୍ତ୍ତୃପକ୍ଷଙ୍କ ପ୍ରଗାଢ଼ ଯତ୍ନରେ ଯାତ୍ରିମାନେ ବିଶୁଦ୍ଧ ଖାଦ୍ୟ ଓ ପାନୀୟ ଜଳ ବ୍ୟବହାର କରିବା ଏବଂ ଗଳି ୨ ମେହେନ୍ତର ନିଯୁକ୍ତ ହୋଇ ସମସ୍ତ ଦିନ ରାସ୍ତା ପରିଷ୍କାର କରୁଥିବା ଇତ୍ୟାଦି କାରଣ ମାନଙ୍କରୁ ଏତେବଡ଼ ଯାତ୍ରାରେ ସ୍ୱାସ୍ଥ୍ୟ ଅକ୍ଷୁଣ୍ଣ ଥିଲା। କୌଣସି ପୀଡ଼ାର ପ୍ରାଦୁର୍ଭାବ ନ ଥିଲା। ଏଥିସକାଶେ କର୍ମବୀର ଲୋକପ୍ରିୟ ହିନ୍ଦୁ ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ରମାବଲ୍ଲଭ ମିଶ୍ର ଓ ସିଭିଲିସର୍ଜନ ମି: ପୁଲିପାକା ଏବଂ ମିଉନିସିପାଲିଟି କର୍ମଚାରିବୃନ୍ଦ ଧନ୍ୟବାଦର ପାତ୍ର ଅଟନ୍ତି। ଦୁଃଖର ବିଷୟ ଯେ ଏକଜଣ ଭିଡ଼ରେ ମରା ପଡ଼ିବାର କଥିତ ହୁଏ।

*ଉତ୍କଳ ଦୀପିକା-୧୯୧୨: ପୃଷ୍ଠା ସଂଖ୍ୟା-୧୫୧*

# ରାଜାଙ୍କ ପୋଷ୍ୟପୁତ୍ର

## ପୁରୀ ପୋଷ୍ୟପୁତ୍ର

ପୁରୀରାଜାଙ୍କର ପୋଷ୍ୟପୁତ୍ର ଘେନି ମହାଚହଳ ପଡ଼ିଯାଇଅଛି। ଆମ୍ଭେମାନେ ଏ କଥା କେତେକ ମାତ୍ରାରେ ପୂର୍ବରୁ ଶୁଣିଥିଲୁ ଓ ଶୁଣି ଆନନ୍ଦିତ ହୋଇଥିଲୁଁ ଯେ ଅବଶେଷରେ

ଠାକୁରରାଜା ବଂଶ ଏବଂ ବଂଶମର୍ଯ୍ୟାଦା ରକ୍ଷା କରିବାକୁ ମନ ବଳାଇଅଛନ୍ତି। ଆମ୍ଭେମାନେ ଜାଣୁ ଅନେକଦିନରୁ ଏଥିପାଇଁ ଅନେକ ଯତ୍ନ ହୋଇଥିଲା। ରାୟବାହାଦୁର ରାଜକିଶୋର ଦାସ ମେନେଜର ଥିବା ସମୟରେ ଅନେକ ଚେଷ୍ଟା କରିଥିଲେ ମାତ୍ର କୃତକାର୍ଯ୍ୟ ହୋଇପାରି ନ ଥିଲେ। ମହାମାୟା ଖଣ୍ଡୀ ସବୁ ଖଣ୍ଡ୨ କରି ଲଣ୍ଡଭଣ୍ଡ କରିଦେଇ ପୁତ୍ର କରାଇଦେଲା ନାହିଁ। ରାଜାଙ୍କ ମନରେ ଧାରଣା କରାଇଦେଇଥିଲା ସେ ପୁତ୍ର ଗ୍ରହଣ କଲେ ସର୍କାର ମନ୍ଦିରର ଭାର ତାଙ୍କ ହସ୍ତରୁ ବାହାରକରି ଦେବେ। ଏହିପରି ଅନ୍ୟାନ୍ୟ କେତେକ ପ୍ରକାର କୁଧାରଣା ଖଣ୍ଡୀ ଓ ଅନ୍ୟାନ୍ୟ କେତେକ ସ୍ୱାର୍ଥପର ଲୋକେ ରାଜାଙ୍କ ମନରେ ଜନ୍ମାଇ ଦେଇଥିଲେ। ତେବେ ପୋଷ୍ୟପୁତ୍ର କରିବାକୁ ରାଜା ସ୍ୱୀକୃତ ହେଉ ନ ଥିଲେ। ଏହିପରି କେତେବାର ଅତିବାହିତ ହୋଇଗଲା। ଓଡ଼ିଶା ଗଡ଼ଜାତର ଓ ଅନ୍ୟାନ୍ୟ କେତେକ ସ୍ଥାନରେ ରାଜାମାନେ ମଧ୍ୟ ପୁତ୍ର ଦେବାକୁ ପ୍ରସ୍ତୁତ ଥିଲେ ମାତ୍ର ଖଣ୍ଡିର ବ୍ୟୁହ ଭେଦ କରି ଭ୍ରାନ୍ତ ରାଜାଙ୍କୁ ସୁପଥରେ କିଏ ଆଣିବ? ଏପର୍ଯ୍ୟନ୍ତ ଆଉ ପୁତ୍ରଗ୍ରହଣ କଥା ହୋଇ ପାରି ନ ଥିଲା। ଆମ୍ଭେମାନେ ଯେତେବେଳେ ଶୁଣିଲୁଁ ଯେ ରାଜା ପୁତ୍ରଗ୍ରହଣ କରିବାକୁ ସ୍ୱୀକୃତ ହୋଇଅଛନ୍ତି ଏବଂ ସୁରଙ୍ଗୀର ଗୋଟିଏ ରାଜକୁମାରକୁ ଗ୍ରହଣ କରିବେ। ଆମ୍ଭେମାନେ ଅତ୍ୟନ୍ତ ସନ୍ତୋଷ ଲାଭ କଲୁଁ, କାରଣ ଯେ କୌଣସି ପ୍ରକାରେ ଏ ସୁବିଧା ପରିତ୍ୟାଗ କରିବାର ଉଚିତ ନୁହେଁ। କୌଣସି ପ୍ରକାର ଏ କାର୍ଯ୍ୟଟି ସମାଧା ହୋଇଯାଉ ଏବଂ ରାଜବଂଶଟା ରକ୍ଷା ପାଇ ଯାଉ। ସବୁ ରାଜାଙ୍କର ମହୁଡ଼ମଣି ଓଡ଼ିଆମାନଙ୍କର ଗର୍ବ ଗୌରବର ଏକ ମାତ୍ର ଆଧାର ସଞ୍ଜିବ  ରହୁ। ଯେ କୌଣସି ରାଜବଂଶରୁ ତ ପୁତ୍ରଟିଏ ଆଣୁଅଛନ୍ତି ଏହାହିଁ ଯଥେଷ୍ଟ ଆପତ୍ତି କ'ଣ? ଆପତ୍ତି ହେବ ବୋଲି ଆମ୍ଭେମାନେ ଆଶା କରି ନ ଥିଲୁଁ। ଅବ୍ୟସ୍ଥିତ ଚିତ୍ତର କେଉଁ ଠିକଣା? ପ୍ରକୃତିସ୍ତ ଯେଉଁ ମୂହୁର୍ତ୍ତକ ହୋଇଅଛନ୍ତି ଯାହା ପରିହାର୍ଯ୍ୟ ନୁହେ। ଏପରି  ମହେନ୍ଦ୍ର ମୁହୁର୍ତ୍ତ ଆଉ ଘଟିବାର ସମ୍ଭବପର ନୁହେଁ ସୁତରାଂ ଶୀଘ୍ର ହୋଇଗଲେ ଭଲ। ଆମ୍ଭେମାନେ ଏହିପରି ଭାବିଥିଲୁଁ କିନ୍ତୁ ବର୍ତ୍ତମାନ ଦେଖୁଅଛୁଁ ଯେ ଏଥିରେ ଆପତ୍ତି ଉଠିଲାଣି ଓ ଚାରିଆଡ଼େ ନାନାରକମ କଥା ବାହାରିଲାଣି ପ୍ରଧାନ ଆପତ୍ତି ସୁରଙ୍ଗୀ ରାଜାସାହେବ ବିଲାତ ଫେରନ୍ତା। ପ୍ରାୟଶ୍ଚିତ୍ତ କରି ନାହାନ୍ତି। କରିଥିଲେ ତାହା ଗ୍ରହଣୀୟ କି ନା? ସୁରଙ୍ଗୀ ନିଜେ ବିଲାତରୁ ଫେରି ନିଜ ପକ୍ଷରୁ ଯେଉଁ ପୁସ୍ତକ ପ୍ରକାଶ କରିଥିଲେ ତାହା ପ୍ରାୟଶ୍ଚିତ୍ତ ବିରୁଦ୍ଧ। ଏ ଆପତ୍ତିମାନ ଅମୂଳକ ବୋଲି ଉଡ଼ାଇଦେବା ସହଜ ବା ଉଚିତ ନୁହେ। ପୁରୀରାଜା ଆମ୍ଭମାନଙ୍କର ମହୁଡ଼ମଣି ଯେଡ଼େ ଅପଦାର୍ଥ ହେଲେ ଆମ୍ଭମାନଙ୍କର ଶ୍ରଦ୍ଧା, ଭକ୍ତି ଓ ଗର୍ବ ଗୌରବର ମାନଦଣ୍ଡ। ପୁରୀ ଚିରକାଳ ହୀରାହିଁ ରହିବ। ପିତ୍ତଳରେ ଜଡ଼ିତ ହେଲେ ମଧ୍ୟ ହୀରା। ସହଯୋଗୀ ଆଶା ଯଥାର୍ଥରୂପେ କହିଅଛନ୍ତି "ପୁରୀ ରାଜାଙ୍କର ଯାଇଛି ସବୁ ଅଛି କେବଳ ବଂଶ ଗାରିମା; ତାହାହିଁ ତାଙ୍କର ସମ୍ବଳ ଏବଂ ତାହାହିଁ ଓଡ଼ିଆମାନଙ୍କର ଗୌରବ ବସ୍ତୁ"ସହଯୋଗିଙ୍କର ଏ କଥା କେହି ଅସ୍ୱୀକାର କରିପାରିବେ ନାହିଁ। ସ୍ମରଣ କଲେ ଗାତ୍ର କମ୍ପମାନ ଓ ଲୋମହର୍ଷଣ ହୁଅଇ। ଯେତେବେଳେ ମହାଦୀପ ଶ୍ରୀମନ୍ଦିର ଉପରେ ଉଥାପିତ ହୁଏ ସେହି ସମୟରେ ମେକାପଦ୍ୱାରା ଉଚ୍ଚସ୍ତରରେ ଗଜପତି ବଂଶଧର ବର୍ତ୍ତମାନ ରାଜା ମୁକୁନ୍ଦଦେବଙ୍କର ଅପ୍ରତିହତ ଗାରିମା

ଘୋଷଣା ହେଲେ ସେ ସମୟରେ କାହା ଚିତ୍ତରେ ଉକ୍ତ ମୁକୁନ୍ଦଦେବ ରାଜାଙ୍କର ଦୁର୍ଗମ ଜାଗରିତ ହୁଏ କି? ଯେତେ ଅପଦାର୍ଥ ହେଲେ ମଧ୍ୟ ପଦାର୍ଥ ବିଶେଷଭାବରେ ପ୍ରତିୟମାନ ହୁଅନ୍ତି। କାରଣ ମହାଦୀପ ଆଉ କେଉଁ ସ୍ଥଳରେ ଉଦୀପିତ ହୁଅଇ? ଏପରି ସ୍ଥଳ ପୃଥିବୀରେ ଆଉ କେଉଁଠାରେ ଅଛି କି? ନୀଳଚକ୍ର ପରି ଚକ୍ର କୌଣସିଠାରେ ନାହିଁ। ଉଚ୍ଚରୁ ଉଚ୍ଚତର ଗିର୍ଜା, ମସଜିଦ ଚୂଡ଼ା ଥିଲେ ଥାଇପାରେ ମାତ୍ର ଶ୍ରୀ ମନ୍ଦିରର ନୀଳଚକ୍ର ପରି ଉଚ୍ଚ ପୀଠ କୌଣସିଠାରେ ଏ ଜଗତରେ ଅଛି କି? ହିନ୍ଦୁ ଚକ୍ଷୁରେ ତ ନାହିଁ। ଏହି ଶ୍ରୀମନ୍ଦିର ଚୂଡ଼ା ଦୁରଦର୍ଶନରେ ମହାପ୍ରଭୁ ଭଗବାନ୍ ବିଷ୍ଣୁ ଚୈତନ୍ୟଙ୍କର x x x ବିହ୍ୱଳ ଏବଂ ମୂର୍ଚ୍ଛା ଦଶା ଘଟିଥିଲା? ଏବଂ ମହାପ୍ରଭୁଙ୍କର ଶ୍ରୀମୁଖରୁ "x x x ନିବସତି ପୁରୀ  x x x, x x x ସ୍ମିତ x x x ବାଳା ଗୋପାଳମୂର୍ତ୍ତିଃ।"ସ୍ଫୁରିତ ହୋଇଥିଲା ଆଉ ଦୁଇପାଦ ହୋଇପାରିଲା ନାହିଁ। ମହାପ୍ରଭୁ ମୂର୍ଚ୍ଛିତ ଅବସ୍ଥାକୁ ଲଭିଲେ। ଏ ସେହି ସ୍ଥଳ। ମହାଦୀପ ବହନକାରୀ ଏହି ସ୍ୱର୍ଗଧାମରେ ଗଜପତି ବଂଶ ଗରିମା ଘୋଷଣା କରିଦିଏ କରୁଅଛି ଓ କରିବ। କେବେ ଏ ବଂଶର ବଂଶଧର କିଏ ହେବ? ସୁରଙ୍ଗୀ ରାଜବଂଶ ଯଦ୍ୟପି ଏଥକୁ ଯୋଗ୍ୟ ନୁହନ୍ତି ତାହାହେଲେ ସୁରଙ୍ଗୀର ରାଜା ସାହେବ ଏଥିରୁ ନିରସ୍ତ ରହନ୍ତୁ। ସ୍ୱାର୍ଥ ବା ନିଜ ଚକ୍ଷୁରେ ଦେଖିବାକୁ ହେବ ନାହିଁ। ଦେଖିଲେ ତାହା ଚଳିବ ନାହିଁ। ସୁରଙ୍ଗୀର ରାଜାସାହେବ ଅବଶ୍ୟ ବୁଦ୍ଧିମାନ୍ ଓ ସୁଚତୁର ସ୍ୱାର୍ଥଦ୍ୱାରା ଚାଳିତ ହେବା ତାଙ୍କର ଉଚିତ ନୁହଇ। ତାଙ୍କର ବିଶ୍ୱାସ ଚକ୍ଷୁରେ ସମସ୍ତ ଦେଖିବାର ଉଚିତ। ଯଦ୍ୟପି ତାଙ୍କର ଶ୍ରୀ ଜଗନ୍ନାଥ ଦେବଙ୍କ ପ୍ରତି ବିଶ୍ୱାସ ଥାଏ ତାହାହେଲେ ତାଙ୍କର ପୁତ୍ରରୁ ଗୋଟିଏ ଶ୍ରୀ ଜିଉଙ୍କର "ଛେରା ପହରାର" ଅଧିକାରୀ ହେଲେ ବର୍ତ୍ତମାନ ଦୁରବସ୍ଥା ଅପସାରିତ ହେବ କି? ନା, ବାଧା ବଢ଼ିବ। ରୋଗ ଅପେକ୍ଷାରୁ ଔଷଧ ତ ବଳିଯିବ ନାହିଁ? ପୁରୀଲୋକେ ପଚାରୁଅଛନ୍ତି ତେଣୁ ସମସ୍ତ ହିନ୍ଦୁମଣ୍ଡଳୀ ଉଦ୍‌ବିଗ୍ନ ଚିତ୍ତରେ ଚାହୁଁଅଛନ୍ତି ଯେ ଏ ପୁତ୍ର ଗ୍ରହଣଦ୍ୱାରା ଗଜପତି ବଂଶର ଗୌରବ ବଢ଼ିବ ନା ଛିଡ଼ିବ? ଅବଶ୍ୟ "ପ୍ରଭୁ ଇଛା ନିରଙ୍କୁଶା"। ଯଦ୍ୟପି ନୀଳାଚଳ ଚନ୍ଦ୍ରଙ୍କର ଏହି ଇଛା ଥିବ ତାହା କେହି ଅବହେଳା ବା ଉପେକ୍ଷା କରିପାରିବେ ନାହିଁ। ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଚକାଡ଼ୋଳାଙ୍କର ଯାହା ଇଛା ତାହା ଅବଶ୍ୟ ପୂରଣ ହେବ। ସ୍ୱାର୍ଥନ୍ଧଭାବରେ ଦେଖିଲେ କିଛି ଠଉରିବ ନାହିଁ। ଆମ୍ଭେମାନେ ଶୁଣିଲୁଁ କେତେକ ନୀଚ ମନା ଛୋଟଲୋକ ଅର୍ଥଲୋଭରେ ଏ ବିଷୟରେ ପରିଚାଳିତ ହୋଇ ରାଜାଙ୍କୁ ମତାଇ ପ୍ରବର୍ତ୍ତାଇ ଅଛନ୍ତି। ଖଣ୍ଡୀ ଏଥିରେ ଯୋଗଦାନ ଦେଇନାହିଁ ମାତ୍ର "ଖଣ୍ଡ୍ୟାଂଶ" ଅର୍ଥାତ୍ ତାହାର ଚତୁର୍ଭୁଜର ଏକଭୁଜ ଏଥିରେ ଯୋଗଦେଇ ପୋଷ୍ୟପୁତ୍ର କରାଇଦେଉଅଛି। ସତ୍ୟ ମିଥ୍ୟା ଜଗନ୍ନାଥ ଜାଣନ୍ତି। କଥାଟା ମିଥ୍ୟା ବୋଲି ଆମ୍ଭେମାନେ ସହସା କହିପାରୁଁ ନାହୁଁ। ସେ ଯାହା ହେଉ, ଉପସଂହାର ସ୍ଥଳରେ ଆମ୍ଭେମାନେ ପଚାରୁଁ ଯଦ୍ୟପି ସୁରଙ୍ଗୀ ରାଜାସାହେବଙ୍କ ପୁତ୍ର ଗ୍ରହଣଯୋଗ୍ୟ ନ ହୁଅନ୍ତି ତାହାହେଲେ ଠାକୁର ରାଜା ଅନ୍ୟ ଉପଯୁକ୍ତ ବଂଶରୁ ପୁତ୍ର ଗ୍ରହଣ କରିବାକୁ ରାଜି ହେବେ ତ? ଆମ୍ଭେମାନେ ଜାଣୁ କେତେକ ଉଚ୍ଚ କୁଳଶୀଳ ରାଜାମାନେ ପୁତ୍ର ଦେବାକୁ ପ୍ରସ୍ତୁତ ଥିଲେ ଓ ଅଛନ୍ତି ମାତ୍ର ତାହା ହୋଇପାରୁ ନାହିଁ। ଏ ବିଷୟ ସମସ୍ୟା ପୂରଣ ହେବ ଟିକି? ହେଲେ କିଏକରିବ? ବଂଶ ନିବଂଶ ହେବା ଉଚିତ ବା ବାଞ୍ଛନୀୟ ନୁହେଁ। ସହଯୋଗୀ

ଆଶା ସୁରଙ୍ଗୀଙ୍କ ପ୍ରତି କେତେକ ବ୍ୟକ୍ତି ଲାଭ ଦୋଷାରୋପ କରିଅଛନ୍ତି ଯାହା ଆମ୍ଭମାନଙ୍କ ମନକୁ ଘେନିଲା ନାହିଁ ବ୍ୟକ୍ତିଗତ ଦୋଷାରୋପ କରିବାକୁ ଗଲେ କି କାହାର କିଛି ରହିପାରେ? ଗଞ୍ଜାମର ଲଜ ସାହେବ ବିଚାରରେ ମତ ପ୍ରକାଶ କଲେ। ଏଥି ଯୋଗୁଁ ମନୁଷ୍ୟ ବିଶେଷର ଇହକାଳ ପରକାଳ କଳଙ୍କିତ ହୋଇଗଲା କି? ତାହା ହେଲେ ଆମ୍ଭମାନଙ୍କ ଠାକୁରରାଜାଙ୍କର ପିତା କେଉଁ ଅପରାଧରେ ଦୋଷୀ ହୋଇ ଦେଶାନ୍ତର ଓ ଦ୍ୱୀପାନ୍ତର ଲଭିଥିଲେ? ବ୍ୟକ୍ତିବିଶେଷର ଆକ୍ରମଣ ଆମ୍ଭେମାନେ ସମୀଚୀନ ବ୍ୟବସ୍ଥା ବୋଲି କଦାପି ଗ୍ରହଣ କରୁନାହୁଁ।

*ଉତ୍କଳ ଦୀପିକା-୧୯୧୭: ପୃଷ୍ଠା ସଂଖ୍ୟା-୨୨୫*

## ପୁରୀ ପୋଷ୍ୟପୁତ୍ର ମକଦ୍ଦମା

ପୁରୀର ରାଜା ଶ୍ରୀମୁକୁନ୍ଦ ଦେବ, ବାମଣ୍ଡାର ରାଜକୁମାର ଶ୍ରୀ ମୋହନୀମୋହନ ଦେବଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣକରି ପରେ ତାଙ୍କୁ ପୋଷ୍ୟପୁତ୍ର ବୋଲି ସ୍ୱୀକାର ନ କରିବାରୁ ଉକ୍ତ ରାଜକୁମାର ଯେ କି ପୁରୀରାଜାଙ୍କ ପୁତ୍ରରୂପେ ଶ୍ରୀ ଜଗନ୍ନାଥଜେନାମଣି ନାମ ଧାରଣ କରିଅଛନ୍ତି ସେ ଗାଦିର ଉତ୍ତରାଧିକାରୀ ବୋଲି କଟକ ସବ୍‌ଜଜଙ୍କଠାରେ ଆବେଦନ କରିଥିଲେ। ସବ୍‌ଜଜ ତାଙ୍କୁ ଉତ୍ତରାଧାକାରୀ ସ୍ଥିର କରିବାରୁ ପୁରୀରାଜା ଉକ୍ତ ନିଷ୍ପତ୍ତିବିରୁଦ୍ଧରେ ବିହାର ହାଇକୋର୍ଟରେ ଅପିଲ କରିଥିଲେ। ଜେନାମଣି ମହୋଦୟଙ୍କ ପକ୍ଷ ସମର୍ଥନ ସକାଶ ଏ ନଗରର ପ୍ରଧାନ ଓକୀଲ ଶ୍ରୀଯୁକ୍ତ ଜାନକୀନାଥ ବସୁ ଏବଂ ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟ ମହାଶୟମାନେ ନିଯୁକ୍ତଥିଲେ। ବର୍ତ୍ତମାନ ହାଇକୋର୍ଟଙ୍କ ନିଷ୍ପତ୍ତି ପ୍ରକାଶ ପାଇଅଛି। ହାଇକୋର୍ଟ ଜେନାମଣି ଉକ୍ତ ଗାଦିର ହକ୍‌ଦାର ବୋଲି ଆଦେଶ ଦେଇଅଛନ୍ତି, ଏହି ନିଷ୍ପତ୍ତିରେ ହିନ୍ଦୁମାନେ ସନ୍ତୁଷ୍ଟ। ଗଙ୍ଗବଂଶ ଗାଦିରେ ଗଙ୍ଗବଂଶୀୟ ରାଜକୁମାର ଜଣେ ଉତ୍ତରାଧିକାରୀ ହେବା ବଡ଼ ଆନନ୍ଦର ବିଷୟ। ଏତଦ୍ୱାରା ବଂଶର ବିଶୁଦ୍ଧତା ରକ୍ଷା ହେବ। ଉକ୍ତ ରାଜକୁମାର ସଭ୍ୟ ଏବଂ ସୁଶିକ୍ଷିତ ହେତୁ ପୁରୀ ଗାଦିର ଗୌରବ ରକ୍ଷା କରିପାରିବେ। ବର୍ତ୍ତମାନ ଶ୍ରୀ ମୁକୁନ୍ଦ ଦେବଙ୍କୁ ଅନୁରୋଧ ଯେ ସେ ମନୋମାଳିନ୍ୟ ବିସ୍ମୃତିହୋଇ ଜେନାମଣିଙ୍କୁ ଗ୍ରହଣକରି ତାଙ୍କୁ ବିଶ୍ୱସ୍ତଭାବରେ ଅପଣାର ବିଷୟ ବୁଝିବାଭାର ପ୍ରଦାନ କରିବେ।

*ଉତ୍କଳ ଦୀପିକା-୧୯୨୩: ପୃଷ୍ଠା ସଂଖ୍ୟା-୮୩*

# ମ୍ୟାନେଜର ସଖୀଚାନ୍ଦ

## ପୁରୀ ମନ୍ଦିର ମେନେଜର

ପୁରୀର ଜଣେ ଲେଖକ ପୁରୀ ମନ୍ଦିରର ଭୂତପୂର୍ବ ମେନେଜର ମାନଙ୍କ କାର୍ଯ୍ୟର ପ୍ରଶଂସା କରି ବର୍ତ୍ତମାନ ମେନେଜରଙ୍କ କାର୍ଯ୍ୟରେ ଲୋକେ ଅତୃପ୍ତ ଥିବାକଥା ଉଲ୍ଲେଖ କରିଅଛନ୍ତି। ସେ ଲେଖି ଅଛନ୍ତି - "ବର୍ତ୍ତମାନ ମେନେଜର ଓଡ଼ିଆ ଭାଷା ଜାଣୁ ନ ଥିବାରୁ ସେବକ ପ୍ରତିହାରିମାନଙ୍କ

ଦାବୀ ହକିୟତ ବୁଝି ନ ପାରି ସାମାନ୍ୟ କର୍ମଚାରୀ ମାନଙ୍କ କଥାରେ ଚଳୁଅଛନ୍ତି ସରକାରୀ ବେସରକାରୀ କାର୍ଯ୍ୟରୁ ଗୁରୁତର ଅପରାଧରେ ନିଷ୍କାସିତ ଲୋକମାନଙ୍କୁ କର୍ମଚାରୀ ପଦରେ ରଖିଅଛନ୍ତି, ଶ୍ରୀ ଜୀଉଙ୍କ ଦର୍ଶନ ବେଳେ ମନ୍ଦିର ପୁଲିସର ଉତ୍ପୀଡ଼ନ ଆରମ୍ଭ ହୋଇଅଛି ଏବଂ ସେମାନେ ସୁଆରମାନଙ୍କୁ "ସୋରକାବଚ୍ଚା" କହି ଗାଳି ଦେଇ କାନମୋଡ଼ା ଚାପୁଡ଼ାମାନ ଦଣ୍ଡ ଦେଉଅଛନ୍ତି, ମହାପ୍ରସାଦ କୁଡୁଆମାନ ଗୋଡ଼ରେ ଗଡ଼ାଇ ଦେଉଅଛନ୍ତି। ମେନେଜର ଦେଉଳରେ ଲଗାଇଥିବା ଚୂନମାନ ଧୋଇ ହୋଇଗଲାଣି ସେ ତାହାର ହିସାବ-ପତ୍ର ପ୍ରକାଶ ନ କରିବାରୁ ଲୋକମାନେ ନାନା ଆଶଙ୍କା କରୁଅଛନ୍ତି। ଅଚିରେ ଏଥିର ପ୍ରତିକାର ନ ହେଲେ ପଣ୍ଡା ପ୍ରତିହାରୀ ପ୍ରକୃତି ଧର୍ମଘଟ କରିବେ ବୋଲି ଯେଉଁ ଜନରବ ଉଠିଅଛି ତାହା ସତ୍ୟରେ ପରିଣତହେବ।" ପୁରୀରେ ଅକାରଣ ବା ସକାରଣରେ ହେଉ ବର୍ତ୍ତମାନ ମନ୍ଦିର ମେନେଜରଙ୍କ ପ୍ରତି ଅନେକ ଅସନ୍ତୁଷ୍ଟ ବ୍ୟକ୍ତିମାନଙ୍କ ମନର କଥା ପ୍ରକାଶ କରି ମେନେଜରଙ୍କୁ ପ୍ରତିବାଦର ସୁବିଧା କରି ଦେବା ସକାଶ ବର୍ତ୍ତମାନ ଆମ୍ଭେମାନେ ପ୍ରାପ୍ତ ପତ୍ରର ସାରାଂଶ ପ୍ରକାଶ କଲୁଁ। ଆଶାକରୁଁ ମେନେଜର ମହାଶୟଙ୍କ ପକ୍ଷରୁ ଶୀଘ୍ର ଏକଥାମାନଙ୍କର ପ୍ରତିବାଦ ହେବ।"

*ଉତ୍କଳ ଦୀପିକା-୧୯୨୪: ପୃଷ୍ଠା ସଂଖ୍ୟା-୮୮*

## ପୁରୀ ଦେଉଳ ଗୋଳମାଳ

ପୁରୀ ମନ୍ଦିରର ମେନେଜର ରାୟ ବାହାଦୁର ସଖିଚାନ୍ଦଙ୍କ ଅନୁକୂଳ ଏବଂ ପ୍ରତିକୂଳରେ ଦୁଇଦଳ ଲୋକ ପୁରୀରେ ଥିବାର ପୂର୍ବରୁ କହି ଅଛୁଁ। ଦୁଇଗୋଟି ସଭାର ବିବରଣୀ ପ୍ରାପ୍ତ ହୋଇଅଛୁ। ତହିଁରୁ ମଧ ଉକ୍ତ ଧାରଣା ଦୃଢ଼ୀଭୂତ ହେଲା। ମେନେଜର ବାବୁ "ଯାତ୍ରୀଦର୍ଶନ, ଭୋଗ, ଆଟିକା" ସମ୍ବନ୍ଧରେ ଅଯଥା ହସ୍ତକ୍ଷେପ କରିଥିବା ମେନେଜରଙ୍କ ବିପକ୍ଷ ଦଳର ଅସନ୍ତୋଷର ପ୍ରଧାନ କାରଣ ବୋଲି ଏକ ସଭାର ବିବରଣୀରୁ ପ୍ରକାଶ। ଅନ୍ୟ ସଭା ମଧ ସପକ୍ଷରେ କେତେକ ପ୍ରସ୍ତାବ କରିଅଛନ୍ତି ପ୍ରସ୍ତାବ ଦୀର୍ଘ ଥିବା ଓ ସ୍ଥାନାଭାବରୁ ଏଥର ସେଗୁଡ଼ିକ ପ୍ରକାଶ କରିପାରିଲୁ ନାହିଁ। ଏକ ସଭା ନିର୍ଦ୍ଧାରଣ କରିଅଛନ୍ତି ଯେ ମେନେଜରଙ୍କ କାର୍ଯ୍ୟ ପ୍ରଣାଳୀ ବିଷୟରେ ଅନୁସନ୍ଧାନ କରିବା ପାଇଁ ୨୦ ଜଣ ମନୋନୀତ ସଭ୍ୟଙ୍କ ଦ୍ୱାରା ଗୋଟିଏ କମିଟି ଗଠନ ହେବ। ମାତ୍ର ସଭ୍ୟମାନଙ୍କର ନାମ ଦିଆଯାଇ ନାହିଁ। ଯେଉଁମାନେ କୌଣସି ଦଳରେ ନାହାନ୍ତି ସେହିପରି ୨୦ଜଣ ହେଲେ ଭଲ ହୁଅନ୍ତା। ସେହିପରି ସଭ୍ୟମାନଙ୍କ ନିରପେକ୍ଷ ଅନୁସନ୍ଧାନ ଫଳ ପ୍ରକାଶ ପାଇଲେ ପ୍ରକୃତ କଥା ଜଣା ପଡ଼ନ୍ତା। ମୋଟ କଥା ଶ୍ରୀ ଜଗନ୍ନାଥଙ୍କର ଦେଉଳ କାର୍ଯ୍ୟରେ ଦଳାଦଳି ବଡ଼ ଅସୁନ୍ଦର। ଆମ୍ଭେମାନେ ଦୁଇଦଳର ଲୋକମାନଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ସମସ୍ତେ ଏକତ୍ରିତ ହୋଇ ଦଳା ଦଳି ଭାବ ପରିତ୍ୟାଗ କରି ମନ୍ଦିରର ମଙ୍ଗଳ ସାଧନାପକ୍ଷେ ଯାହା ଉପଯୁକ୍ତ ତାହା ହି ସାଧନ କରିବାକୁ ଚେଷ୍ଟା କରନ୍ତୁ।

*ଉତ୍କଳ ଦୀପିକା-୧୯୨୪: ପୃଷ୍ଠା ସଂଖ୍ୟା-୧୬୬*

## ପୁରୀ ଦେଉଳ

ରାୟବାହାଦୂର ସଖୀଚାନ୍ଦ ବର୍ତ୍ତମାନ ଟେମ୍ପଲ ମେନେଜରୀରେ ନାହାନ୍ତି। ସେ ଛୁଟି ନେଇ ଅଛନ୍ତି। ଆଉ ଫେରିବାର ସମ୍ଭବ ନୁହେଁ ପୁରୀର "ଶକ୍ତି" ପତ୍ରିକାରେ ତାଙ୍କ ସମ୍ବନ୍ଧେ ଦୁଇ ଚାରି କଥା ଲେଖା ଅଛି। ବ୍ୟାଙ୍କ୍‌ରେ ଜମାଥିବା ଅର୍ଦ୍ଧ ଲକ୍ଷ ଟଙ୍କା ସମ୍ବନ୍ଧେ ଆମ୍ଭେମାନେ ମଧ୍ୟ ପୂର୍ବେ ଶୁଣିଥିଲୁ। ରାୟବାହାଦୂର ସଖୀଚାନ୍ଦ ମନ୍ଦିର ମାନେଜର ଥାଇ ବହୁତ ଟଙ୍କା ଚାନ୍ଦା ଉଠାଇଥିଲେ। ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ। ଆମ୍ଭେମାନେ ମଧ୍ୟ ଏ ବିଷୟ ଏଥିପୂର୍ବେ ଉଲ୍ଲେଖ କରିଥିଲୁଁ ଯେ ସର୍ବସାଧାରଣଙ୍କ ଠାରୁ ଚାନ୍ଦା ଅସୁଲକରି ତହିଁର ହିସାବ ପ୍ରକାଶ ନକରିବା ଭଲ କଥା ନୁହେଁ। କିନ୍ତୁ ରାୟବାହାଦୂର କଦାପି ହିସାବ ଦେଲେ ନାହିଁ। ଏଥରେ ସ୍ୱଭାବତଃ ସର୍ବସାଧାରଣଙ୍କର ମନରେ ଅବିଶ୍ୱାସ ହେବାର କଥା; ରାୟବାହାଦୂର ଜଗନ୍ନାଥଙ୍କର ଧାନ ଚାଉଳ, ପାଟ, ମକୁଟ, ଓ ସୁନା ରୂପା ଆଦି ଅନେକ ପଦାର୍ଥ ବିକ୍ରୟ ଓ ନିଲାମ କରିଥିବାର ମଧ୍ୟ ଆମ୍ଭେମାନେ ଅନେକଦିନରୁ ଶୁଣି ଆସୁଅଛୁଁ। ରାୟବାହାଦୂରଙ୍କର କାର୍ଯ୍ୟ କଳାପ ଦ୍ୱାରା ଲୋକଙ୍କ ମନରେ ଯେପରି ସନ୍ଦେହ ଜାତ ହେଇଅଛି ତାହା ମୋଚନ ହେବାର ଉପାୟ କରିବା ଉଚିତ ନୂହେଁ କି? କେତେକ କାରଣରୁ ଲୋକଙ୍କ ମନରେ ଧାରଣା ହୋଇଅଛି ଯେ ରାୟବାହାଦୂରଙ୍କ କାର୍ଯ୍ୟରେ ଗୁଡ଼ିଏ ଗଲତ ଅଛି। ସ୍ଥାନୀୟ କର୍ତ୍ତୃପକ୍ଷମାନେ ତାହା ଘୋଡ଼ାଇ ପକାଇବାକୁ ଚେଷ୍ଟା କରୁଅଛନ୍ତି। ଏପ୍ରକାର ଧାରଣା ଠିକ୍ ହେଉ ବା ଚାଲ ହେଉ ତାହା କଦାପି ବାଞ୍ଛନୀୟ ନୁହେଁ। ସରକାରଙ୍କ କାର୍ଯ୍ୟ ସଫା ଓ ସରଳ ହେବା ଉଚିତ। ଜଣେ କେହି କର୍ମ୍ମଚାରୀର ବ୍ୟକ୍ତିଗତ ଭାବେ କୌଣସି ଗଲତ ଥିଲେ ସରକାର ଯେ କାହିଁକି ତାହା ଘୋଡ଼ାଇବେ ଏହାର କିଛି କାରଣ ବୁଝାଯାଉନାହିଁ। ସେ ଯାହାହେଉ ଆମ୍ଭମାନଙ୍କ ମତରେ ରାୟବାହାଦୂରଙ୍କ କାର୍ଯ୍ୟ କଳାପ ସମ୍ବନ୍ଧେ ଯେତେବେଳେ ଏତେକଥା ଉଠୁଛି ତତ୍‌ସମ୍ବନ୍ଧେ ବିଧିମତେ ତଦନ୍ତ କରିବା ବାଞ୍ଛନୀୟ। ତଦନ୍ତ ହୋଇଗଲେ ଏବଂ ରାୟବାହାଦୂର ଟେମ୍ପଲ ମେନେଜର ଥାଇ ଯେତେ ଟଙ୍କା ଚାନ୍ଦା ଉଠାଇ ଅଛନ୍ତି, ତାହା କାହିଁରେ କିପରି ଖରଚ କରିଅଛନ୍ତି ସେଥିର ହିସାବ ପ୍ରକାଶ ହେଲେ ଆଉ କାହାରି କିଛି କହିବାକୁ ଥିବ ନାହିଁ ଓ ସର୍ବସାଧାରଣଙ୍କ ମନରୁ ସର୍ବପ୍ରକାର ଆଶଙ୍କା ଓ ଅବିଶ୍ୱାସ ସହଜରେ ଦୂର ହୋଇଯିବ।

*ଉତ୍କଳ ଦୀପିକା-୧୯୨୫: ପୃଷ୍ଠା ସଂଖ୍ୟା-୧୧*

## ସଖୀଚାନ୍ଦ ଦୟାନିଧି

ପୁରୀର ପତ୍ରିକାମାନଙ୍କରୁ ପ୍ରକାଶ ପୁରୀର ମୁକ୍ତିମଣ୍ଡପ ପଣ୍ଡିତସଭା ରାୟବାହାଦୁର ସଖୀଚାନ୍ଦଙ୍କୁ ଗତ ୩ ତାରଖରେ 'ଦୟାନିଧି' ଉପାଧି ଦେଇଅଛନ୍ତି। ମୁକ୍ତି ମଣ୍ଡପ ସଭା ଉପାଧି ବିତରଣରେ ଖୁବ ଦୟାଶୀଳ। ଉପାଧି ଦେବା ବେଳକୁ ସେ କୌଣସି ଆଡ଼କୁ ଦୃଷ୍ଟି ନ ରଖି ଉପାଧିଦାନ କରନ୍ତି। ଏଥିପୂର୍ବେ ମଧ୍ୟ କାହାରି କାହାରିକୁ ସେହିପରି ଭାବରେ ଉପାଧି ଦେଇଅଛନ୍ତି, ଅନୁସନ୍ଧାନ କରିବାବେଳକୁ ତହିଁମୂଳରେ କେତେ ରହସ୍ୟ ଥିବାର ଜଣାପଡ଼ିଲା।

ବର୍ତ୍ତମାନ ରାୟବାହାଦୂର ସଖିଚାନ୍ଦଙ୍କୁ ନେଇ ଦେଶବାସିମାନେ ନାନାପ୍ରକାର ଆନ୍ଦୋଳନ କରୁଅଛନ୍ତି। ପୁରୀର ବଡ଼ ଦେଉଳ ମରାମତି ସକାଶେ ରାୟବାହାଦୂର ବହୁ ଟଙ୍କା ଚାନ୍ଦା ଉଠାଇ ତାହା କି ପ୍ରକାରେ କ'ଣ ବ୍ୟୟକଲେ ତହିଁର ହିସାବ ସେ କଦାଚ ଦେଲେ ନାହିଁ। ତେଣୁ ତାଙ୍କ ପ୍ରତି ଅନେକେ ନାନାପ୍ରକାର ସନ୍ଦେହପ୍ରକାଶ କରୁଅଛନ୍ତି। ଏ ପର୍ଯ୍ୟନ୍ତ ଅନେକଙ୍କ ମନରୁ ସେ ସନ୍ଦେହ ଦୂର ହୋଇନାହିଁ। ଏହିପରି ଅବସ୍ଥାରେ ତାଙ୍କୁ ଗୋଟିଏ ଉପାଧି ଦାନ କରିବା ମତରେ କିଛି ରହସ୍ୟ ଅଛି କିନା ତାହା ଅଚିରେ ଜଣାପଡ଼ିବ, କଦାପି ଛପିବ ନାହିଁ। ମୁକ୍ତିମଣ୍ଡପ ଏପରି କରିବାଦ୍ୱାରା ନିଜର ବହୁକାଳର ସ୍ଥାୟୀ ସମ୍ମାନ କ୍ଷୁନ୍ନ କରୁଅଛନ୍ତି କିନା ତାହା ମୁକ୍ତିମଣ୍ଡପ ବିବେଚନା କରିବେ।

*ଉତ୍କଳ ଦୀପିକା-୧୯୨୫: ପୃଷ୍ଠା ସଂଖ୍ୟା-୧୨୬*

# ସୁନିଆଁ

## ପୁରୀ ରାଜାଙ୍କର ସୁନିଆଁ

ସୁନିଆଁ ଆମ୍ଭମାନଙ୍କର ଓଡ଼ିଶାରେ ସନର ଆରମ୍ଭ। ସେହିଦିନଠାରୁ ନୂତନ ବର୍ଷର ଆରମ୍ଭ ହୁଏ। ଇଂରାଜ ରାଜାଙ୍କର ଶାସନରେ ଇଂରାଜୀବର୍ଷ ଚଳୁଅଛି, ପୁଣି ଆଇନ କାନୁନଜାରୀ ହୋଇ ବୈଶାଖ ମାସର ପ୍ରଥମ ଦିନକୁ ବର୍ଷର ଆରମ୍ଭଧରି ବର୍ତ୍ତମାନ ଖଜଣା ଆଦି ନାଲିସ୍ ହେଉଅଛି। କିନ୍ତୁ ଯେତେପ୍ରକାର ସନ ଚଳୁନା କାହିଁକି ଯେତେଦୂର ପର୍ଯ୍ୟନ୍ତ ଉତ୍କଳର ନାମ ଅଛି, ବଙ୍ଗଳା ବିହାର ବା ମାନ୍ଦ୍ରାଜ ପ୍ରଭୃତି ଯେଉଁ ପ୍ରଭିନ୍ସରେ ହେଉ ପଛକେ ଯେଉଁସ୍ଥାନରେ ଯେ କେହି ଓଡ଼ିଆ ବାସ କରୁଅଛନ୍ତି ସେମାନଙ୍କର ଜାତକଟି ଖୋଲି ଦେଖିଲେ ସେଥିରେ ପୁରୀର ଗଜପତି ବଂଶଙ୍କର ସନ ଉଲ୍ଲେଖ ଥିବ। ପୃଥିବୀର ଅନ୍ୟକୌଣସି ରାଜା ମହାରାଜାଙ୍କର ଏପରି ସ୍ୱତନ୍ତ୍ର ମାନ ନାହିଁ। ପୁରୀ ରାଜାଙ୍କର ଏହା ସ୍ୱତନ୍ତ୍ର ଅଧିକାର। ଏହି ସନକୁ ଅଙ୍କ ବୋଲାଯାଏ। ସୁନିଆଁଦିନ ଏହି ଅଙ୍କ ଆରମ୍ଭ ହୁଏ। ମୁକୁନ୍ଦଦେବଙ୍କ ଅମଳରେ ସୁନିଆଁ ଦିନର ଉତ୍ସବ ବିଷୟ ଅଧିକାଂଶ ଜାଣିପାରୁ ନ ଥିଲେ। ଗତ ସୁନିଆଁଦିନ ସୁନିଆଁ ଉତ୍ସବ ବିଧିମତେ ଅନୁଷ୍ଠିତ ହୋଇଥିଲା। ଶ୍ରୀଯୁକ୍ତ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କର ନୂତନ ଦୁଇ ଅଙ୍କ ଆରମ୍ଭ ହେଲା। ମହାରାଜା ବିଧିମତେ ସୁନିଆଁ ବେଦୀରେ ବସିଲେ ଏବଂ ପାତ୍ରମିତ୍ରମାନେ ଭେଟିଦେଇ ସମ୍ମାନ ପ୍ରଦର୍ଶନ କଲେ। ପ୍ରାୟ ସହସ୍ରାଧିକ ଲୋକଙ୍କର ମହାପ୍ରସାଦ ସେବାର ଆୟୋଜନ ହୋଇଥିଲା। ରାଜାଙ୍କର ଜଗନ୍ନାଥଙ୍କ ଦର୍ଶନ ଓ ଶୋଭାଯାତ୍ରା ପ୍ରଭୃତି ସମସ୍ତ ସୁଚାରୁରୂପେ ସମାଧାନ ହୋଇଥିଲା; ଅତି ଆନନ୍ଦର ବିଷୟ।

*ଉତ୍କଳ ଦୀପିକା-୧୯୨୬: ପୃଷ୍ଠା ସଂଖ୍ୟା-୪୧୮*

# ଅଛୁଆଁ ପ୍ରବେଶ

## ପଣ୍ଡାଙ୍କ ଉପରେ ପୁରୀ ରାଜାଙ୍କର ନୋଟିସ

ପୁରୀର ପ୍ରସିଦ୍ଧ ପଣ୍ଡା ହଜୁରୀ ବଳଭଦ୍ର ଖୁଣ୍ଟିଆ କେତେକ ଦିନହେଲା ପୁରୀ ମନ୍ଦିରରେ ଅଛୁଆଁ ଜାତିଙ୍କୁ ପୁରାଉଥିବାର ଖବର ରାଜା ଜାଣିପାରିଛନ୍ତି ଏହି କାରଣରୁ ତାଙ୍କୁ କାହିଁକି ଦେଉଳ ବାସନ୍ଦ କରା ନଯିବା ତାହାର କାରଣ ଦର୍ଶାଇବା ମର୍ମରେ ତାଙ୍କ ଉପରେ ନୋଟିସ ଜାରି କରିଅଛନ୍ତି। ହଜୁରୀ ଏପର୍ଯ୍ୟନ୍ତ କୌଣସି ଉତ୍ତର ଦେଇନଥିବାର ପ୍ରକାଶ।

*ଉତ୍କଳ ଦୀପିକା- ୧୯୩୩: ପୃଷ୍ଠା ସଂଖ୍ୟା- ୧୫୧*

## ଓଡ଼ିଶା ସମ୍ବାଦ

ଅସ୍ପୃଶ୍ୟତା ବିଷୟରେ ପଣ୍ଡାମାନଙ୍କର ଇସ୍ତାହାର ପୁରୀରେ କେତେଜଣ ବଡ଼ ପଣ୍ଡା ଗଲା ୧୫ ତାରିଖରେ ପୁରୀ ମନ୍ଦିରରେ ଅସ୍ପୃଶ୍ୟ ଜାତିର ପ୍ରବେଶ ସମ୍ବନ୍ଧରେ ଗୋଟିଏ ଦୀର୍ଘ ଇସ୍ତାହାର ପ୍ରକାଶ କରିଅଛନ୍ତି। ତାହାର ମର୍ମ ପୁରୀମନ୍ଦିରରେ ଦର୍ଶନ ପ୍ରାର୍ଥି ହୋଇ ଭାରତର ନାନା ଅଞ୍ଚଳରୁ ଯେଉଁ ଲୋକମାନେ ଆସନ୍ତି ସେମାନେ ଛୁଆଁ କି ଅଛୁଆଁ, ମନ୍ଦିରଭିତରକୁ ଯିବାର ସେମାନଙ୍କର ଅଧିକାର ଅଛି କି ନା ସେ ବିଷୟରେ ପୁରୀରେ ପଣ୍ଡାମାନଙ୍କ ଭିତରେ କେବେ କିଛି ଗଣ୍ଡଗୋଳ ହୋଇନାହିଁ। ଯାତ୍ରୀମାନଙ୍କୁ ଏକଥା ପଣ୍ଡାମାନଙ୍କ ଭିତରୁ କେହି କେବେ ପଚାରିନାହିଁ କିମ୍ବା ତା'ର ଆବଶ୍ୟକତା ମଧ୍ୟ ଅନୁଭବ କରିନାହିଁ। ବରଂ ଜଗନ୍ନାଥ ମନ୍ଦିର ଭାରତୀୟ ତୀର୍ଥମାନଙ୍କ ମଧ୍ୟରେ ପତିତପାବନ ବୋଲାଉଥିବା ସ୍ଥଳେ ସେଠାକୁ ସ୍ପୃଶ୍ୟାସ୍ପୃଶ୍ୟ ନିର୍ବିଶେଷରେ ଯାତ୍ରୀମାନେ ଆସି ଦର୍ଶନ କରିଯିବା ସ୍ୱଭାବିକ ଏକଥା ପଣ୍ଡାମାନେ ବିଶ୍ୱାସ କରନ୍ତି। ଆଜି ସନାତନୀମାନଙ୍କ ପ୍ରରୋଚନାରେ ଯଦି ଯାତ୍ରୀମାନଙ୍କୁ ଜାତି ପଚାରି ମନ୍ଦିର ଭିତରକୁ ଛାଡ଼ିବାର ବ୍ୟବସ୍ଥା କରାଯାଏ ତେବେ ଏଥିରୁ ଯେ ମହାଅନର୍ଥ ହେବ ପଣ୍ଡାମାନେ ଏହା ବିଶ୍ୱାସ କରନ୍ତି। ତଥାପି ଯଦି ସନାତନୀମାନେ ଚିରାଚରିତ ସାମ୍ୟ ଧର୍ମ ପରିବର୍ତ୍ତନ କରି ଯାତ୍ରୀମାନଙ୍କୁ ଛୁଆଁ ଅଛୁଆଁ ବାଛି ଦର୍ଶନକୁ ଛାଡ଼ନ୍ତି ତେବେ ଖାଲିକଥାରେ କହିଲେ ହେବନାହିଁ। ପୁରୀର ସବୁ ସନ୍ଥ ମହନ୍ତ ମୁକ୍ତି ମଣ୍ଡପର ପଣ୍ଡିତମାନଙ୍କୁ ନେଇ ଗୋଟିଏ ବିରାଟ ସଭାର ଆୟୋଜନ କରନ୍ତୁ। ସେମାନେ ଶାସ୍ତ୍ରବିଧି ଓ ପରମ୍ପରାଗତ ରିତି ଉଭୟକୁ ଧିରଭାବରେ ବିଚାରକରି ଯେପରି ବ୍ୟବସ୍ଥା ଦେବେ ପଣ୍ଡାମାନେ ସେବିଷୟରେ ବିବେଚନା କରି ସେହି ଅନୁସାରେ କାର୍ଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି।

*ଉତ୍କଳ ଦୀପିକା- ୧୯୩୩: ପୃଷ୍ଠା ସଂଖ୍ୟା- ୧୫୫*

## ପୁରୀ ଜଗନ୍ନାଥ ମନ୍ଦିରରେ ଅଛୁଆଁ ପ୍ରବେଶ

ଉତ୍କଳ ଅସ୍ପୃଶ୍ୟତା ନିବାରିଣି ସମିତି କିପରି ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ଅଛୁଆଁ ଜାତର ଭକ୍ତମାନେ ପ୍ରବେଶ ଅଧିକାର ପାଇବେ ଏଥିନିମନ୍ତେ ଗତ କେତେ ମାସ ଧରି ଉଦ୍ୟମ ଲଗାଇଛନ୍ତି। କର୍ମବୀର ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାସଙ୍କ ଉପରେ ଲୋକମତ ସୃଷ୍ଟିକରି ଏ

ବିଷୟରେ ଉଦ୍ୟୋଗ କରିବା ଭାର ନ୍ୟସ୍ତ କରାହୋଇଛି। ତାଙ୍କର ସହକର୍ମିଭାବରେ ପୁରୀର ଓକିଲ ଶ୍ରୀ ଲୋକନାଥ ମିଶ୍ର କାର୍ଯ୍ୟ କରୁଛନ୍ତି। ଏଥି ମଧ୍ୟରେ ଅନେକ ପଣ୍ଡା ପଡ଼ିହାରୀ ଏବଂ ଶାସନ ଅଧିକାରୀ ମଧ୍ୟ ରାଜି ହୋଇ ସେମାନଙ୍କୁ ସାହାଯ୍ୟ କରୁଛନ୍ତି। ପୁରୀର ମୁକ୍ତିମଣ୍ଡପ ସଭାର ପୁନର୍ଗଠନ ନିମନ୍ତେ ମଧ୍ୟ ଖୁବଚେଷ୍ଟା ଚାଲିଛି। ପ୍ରତ୍ୟେକ ଶାସନରୁ କିପରି ପ୍ରତିନିଧି ଆସିବେ ଏବଂ ମୁକ୍ତି ମଣ୍ଡପସଭା ପ୍ରଭୃତ ପଣ୍ଡିତ ସଭା ହେବ ତାହାପାଇଁ ଚେଷ୍ଟା ଖୁବ୍ ଦୃଢ଼ ଗତିରେ ଚାଲିଛି। ପ୍ରକୃତରେ କହିବାକୁ ଗଲେ ବିଦେଶରୁ ଅନେକ ଅଛୁବ ଜାତିର ଲୋକ ଆସି ପ୍ରକାଶ୍ୟରେ ଠାକୁର ଦର୍ଶନକରି ଯାଉଅଛନ୍ତି। ଅଥଚ ଏଠାକାର ଅଛୁବମାନେ ଦର୍ଶନାଧିକାର ପାଉନାହାନ୍ତି। ପୁରୀର ରାଜା ଏବଂ ଆଉ କେତେଜଣ ମହନ୍ତଙ୍କୁ ଛାଡ଼ି ବାକି ସମସ୍ତେ ଏ ଆନ୍ଦୋଳନ ସପକ୍ଷରେ ଥିବାର ଜଣାଯାଏ।

*ଉତ୍କଳ ଦୀପିକା- ୧୯୩୩: ପୃଷ୍ଠା ସଂଖ୍ୟା- ୧୫୫*

# ଭୁବନେଶ୍ୱର ମନ୍ଦିର

ଏହି ମନ୍ଦିରର କାର୍ଯ୍ୟ ବିଶୃଙ୍ଖଳାରେ ଚାଲିବା ଗୁହାରି ପାଠକମାନେ ଅନେକ ଦିନରୁ ଶୁଣି ଆସୁଅଛନ୍ତି। ସମ୍ପ୍ରତି ଆମ୍ଭମାନଙ୍କର ଜଣେ ବିଶ୍ୱପ୍ରସିଦ୍ଧ ବନ୍ଧୁ ସେହି ମନ୍ଦିରର କାର୍ଯ୍ୟ ନୂତନ କମିଟୀଙ୍କ ଯୋଗେ ଉତ୍ତମରୂପେ ନିର୍ବାହ ହେଉଥିବାର ଲେଖିବାର ସେହି ପତ୍ର ଆନନ୍ଦ ସହିତ ସର୍ବସାଧାରଣଙ୍କ ଜାଣିବା କାରଣ ଏଠାରେ ପ୍ରକାଶ କଲୁଁ ଯଥା।

ମହାଶୟ!

ପ୍ରାୟ କେତେକ ଦିନ ହେଲା ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କର ନୀତି ଓ ଭୋଗାଦିର ଯେପରି ବିପ୍ଳବ ଘଟିଥିଲା ତାହା ଆପଣମାନେ ଜାଣନ୍ତି ତହିଁର କାରଣ ଏହି ଯେ ପୂର୍ବକମିଟୀ ଜଣେ ନିର୍ଦ୍ଧନ ମହାନ୍ତିସନ୍ତାନକୁ ଅମୀନ କରି ନିଯୁକ୍ତ କରିଥିବାରୁ ସେ କେବଳ ବସାରେ ବସି ହାକିମୀ କରିବାରେ ଭଦ୍ରାଭଦ୍ର ବିବେଚନା ନ କରି ଯେ ନିକଟରେ ଉପସ୍ଥିତ ହୁଏ ତାଙ୍କୁ ବେଇଜତ କରାଇବାରେ ସମୟ କ୍ଷେପଣ କରି ନାମ ଜଣାଇଁ ଆପଣାର କାର୍ଯ୍ୟ ସାଧନ କରୁଥିଲେ ଏବଂ ତାଙ୍କୁ ଠାକୁରଙ୍କ ନୀତିରୀତି ବିଷୟ କହିଲେ ସେ ବିରକ୍ତ ହୋଇ କହୁଁଥିଲେ କି ତୁମ୍ଭେ ଜାଣ ଠାକୁର ଜାଣନ୍ତି ଭୋଗରାଗକୁ ଆମ୍ଭେ ଦାୟୀ ନୋହୁଁ। ଏହିପରି କହିବାରୁ ସମସ୍ତେ ନିବର୍ତ୍ତି ରହିଥିଲେ। ଏବେ ଶ୍ରୀଯୁକ୍ତ ଜଜସାହେବ ମହୋଦୟ ମନୋଯୋଗୀ ହୋଇ କମିଟୀରେ ନୂତନ ମେମ୍ବର ନିଯୁକ୍ତ କରିବାରୁ ମେମ୍ବର ଓକୀଲ ଶ୍ରୀଯୁକ୍ତ ପ୍ରିୟନାଥ ବାବୁ ସ୍ୱୟଂ ସେସ୍ଥାନକୁ ଯାଇଁ ଉକ୍ତ ଅମୀନକୁ କାଗଜ ପତ୍ର ତଲବ କରିବାରେ ସେ ନ ଦେବାରୁ ତାକୁ ସସ୍ପେଣ୍ଡ ରଖାଇଁ ସେହି ଦେଉଳର ପରକରଣ ଶ୍ରୀ ଆର୍ତ୍ତବନ୍ଧୁ ନାୟକଙ୍କୁ ତାଙ୍କ ସହିତ ରଖାଇଁ ନୀତି ଚଳାଇବାରୁ ଆମ୍ଭେ ଗତ ଦଶହରା ସମୟରେ ଯାଇଁ ଦେଖିଲୁଁ ଯେ ପୂର୍ବ ରାଜଧାନୀର ନିୟମ ପ୍ରାୟ ବେଳ ପ୍ରହରକଠାରେ ସକାଳ ଧୂପ ଦୁଇପ୍ରହରଠାରେ ଦୁଇପ୍ରହର ଧୂପ, ସନ୍ଧ୍ୟାବେଳେ ସନ୍ଧ୍ୟା ଧୂପ ଏବଂ ରାତ୍ରି ପ୍ରହରକ ଭିତରେ ବଡ଼ସିଂଘାର ଶେଷ ହେଉଅଛି। ଆଉ ଭୋଗସବୁ ଉତ୍ତମ ଘିଅରେ ରୀତିମତ ହେଉଅଛି। ଏବଂ ଯାହା କେବେ ହୋଇ ନଥିଲା ବର୍ତ୍ତମାନ ପ୍ରିୟନାଥ ବାବୁଙ୍କ ବୁଝିବାରୁ ତାହା ହୁଅନ୍ତେ ସେବକମାନେ ଭୟରେ ଆପଣା୨ ଇଚ୍ଛା ପୂର୍ବକ ଠିକ ସମୟରେ ଉପସ୍ଥିତ ହୋଇ ସେବା ଚଳାଉ ଅଛନ୍ତି ଏହା ସାମାନ୍ୟ ସୁଖର ବିଷୟ ନୁହଇ। ବିଷୟ ଏହି କି କୌଣସି ହାକିମ ସେବକମାନଙ୍କୁ ଜରିମାନା କରିପାରୁ ନ ଥିବାରୁ ସେମାନଙ୍କର ଭୟ ହେଉ ନ ଥିଲା। ଏବେ ପ୍ରିୟନାଥବାବୁ ଏହି ନିୟମ କରିଅଛନ୍ତି କି ଠିକସମୟରେ ଯେବେ କେହି ସେବାରେ ହାଜର ନୋହିବ ତେବେ ତାକୁ ପାଞ୍ଚଟଙ୍କା ପର୍ଯ୍ୟନ୍ତ ଜରିମାନା କରାଯିବ, ଯେ ଜରୀମାନା ନ ଦେବ ସେ ସେବାରୁ ବାସନ୍ଦ ହୋଇ ରହିବ। ଏକଦିନ ଆମ୍ଭେ ବସିଥାଇଁ ଉକ୍ତ ବାବୁ ଦୁଇଜଣ ବ୍ରାହ୍ମଣ ସେବକ ଓ ବଡୁସେବକଙ୍କୁ ଏକ୨ ଟଙ୍କା ଜରୀମାନା କରି ଆଦାୟ କରାଇ ଠାକୁରତିହବିଲରେ ଜମାଦେଲେ। ଏହି ଜରୀମାନା ଭୟରେ ସେବକମାନେ ନିୟମିତରୂପେ ଉପସ୍ଥିତ ହୋଇ ନୀତି ଚଳାଉ ଅଛନ୍ତି। ଅତଏବ ଆମ୍ଭେମାନେ ସମସ୍ତ ଦେବୋପାସକମାନେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁଁ ଯେ ଶ୍ରୀଯୁକ୍ତ ଜଜସାହେବଙ୍କର ଏବଂ ଅଭିନବ ମେମ୍ବରଙ୍କର (ଯାହାଙ୍କ ଯୋଗେ ନୀତି ଚଳୁଛି) ଈଶ୍ୱର

ଉତ୍ତରୋତ୍ତର ଉନ୍ନତି କରନ୍ତୁ ଆଉ ବର୍ତ୍ତମାନ କାର୍ଯ୍ୟ ବୁଝୁଥିବା ପରକରଣ ଆର୍ତ୍ତବନ୍ଧୁ ନାୟକଙ୍କୁ ଏହିପରି ସୁବୁଦ୍ଧି ସର୍ବଦା ଦିଅନ୍ତୁ କି ଯେପରି ତାଙ୍କ ତତ୍ତ୍ୱାବଧାରଣରେ ସବୁକାର୍ଯ୍ୟ ଚଳିବ।

- ଜଣେ ଦର୍ଶକ

ପ୍ରିୟନାଥ ବାବୁ ଏହି ମନ୍ଦିରର କାର୍ଯ୍ୟ ସୁଶୃଙ୍ଖଳାରେ ଚଳାଇବାକୁ ସମର୍ଥ ହୋଇ ପ୍ରଶଂସାଭାଜନ ହୋଇଅଛନ୍ତି ଏତିକି ନୁହେ। ଅନ୍ୟାନ୍ୟ ମନ୍ଦିରର କମିଟୀମାନେ ଯଥାର୍ଥ ମନୋଯୋଗୀ ହୋଇ କାର୍ଯ୍ୟ କଲେ ଏହିପରି ପ୍ରଶଂସନୀୟ ହେବେ ପ୍ରିୟନାଥ ବାବୁ ଏଥିର ଜୀବନ୍ତ ଉଦାହରଣ ଦେଖାଇ ଅଛନ୍ତି ଭରସା କରୁଁ ସେମାନେ ଏଥିର ପଶ୍ଚାଦ୍‌ଗାମୀ ହୋଇ ଆପଣା୨ ଅଧୀନରେ ଥିବ ମନ୍ଦିରମାନଙ୍କର କାର୍ଯ୍ୟ ସୁଶୃଙ୍ଖଳାରେ ଚଳାଇବା ଦ୍ୱାରା ସର୍ବସାଧାରଣଙ୍କର ଧନ୍ୟବାଦର ପାତ୍ର ହେବେ।

*୧୨-ଉତ୍କଳ ଦୀପିକା-୧୮୯୩_ପୃଷ୍ଠା ସଂଖ୍ୟା-୩୪୩*

## ଭୁବନେଶ୍ୱର ମନ୍ଦିର ସଂସ୍କାର ସଭା

ଭୁବନେଶ୍ୱର ମନ୍ଦିର ସଂସ୍କାରର ବିହିତ ଉପାୟ ଅବଲମ୍ବନ କରିବା କାରଣ ଗତ ରବିବାର ଅପରାହ୍ନରେ କଟକ ପ୍ରିଣ୍ଟିଂକମ୍ପାନୀଙ୍କ କୋଠାରେ ଯେଉଁ ସଭା ହେବାର ପର୍ବରୁ ବିଜ୍ଞାପନ ଦିୟା ଯାଇଥିଲା ତାହା ନିର୍ବିଘ୍ନରେ ହୋଇଥିବାର ଆନନ୍ଦ ସହିତ ପାଠକମାନଙ୍କୁ ଜଣାଉଅଛୁଁ। ସଭାରେ ଅନେକ ଭଦ୍ରଲୋକ ଉପଗତ ହୋଇଥିଲେ ଏବଂ ଦର୍ଶକଙ୍କ ସଂଖ୍ୟା ମଧ୍ୟ ଊଣା ନ ଥିଲା। ଏ ଜିଲ୍ଲାର ସୁଯୋଗ୍ୟ ଜଜ ସାହେବ ଶ୍ରୀଯୁକ୍ତ ବିହାରିଲାଲ ଗୁପ୍ତ ସାହେବ ସଭାପତିର ଆସନରେ ବରିତ ହେଲା ଉତ୍ତାରୁ ବାବୁ ହରିବଲ୍ଲଭ ବସୁ କ୍ଷୁଦ୍ରବକ୍ତୃତାଦ୍ୱାରା ମନ୍ଦିର ସଂସ୍କାରର ଆବଶ୍ୟକତା ଏବଂ ତହିଁନିମନ୍ତେ ଦେଢ଼ଲକ୍ଷଟଙ୍କା ପ୍ରୟୋଜନ ଥିଲା ଓ ମନ୍ଦିରର ଆୟର ସେ ବ୍ୟୟ ନିର୍ବାହ ହୋଇ ନ ପାରିବା କଥାମାନ ବୁଝାଇଦେଇ ଭୁବନେଶ୍ୱରମନ୍ଦିର ସଂସ୍କାରକମିଟୀ ନାମରେ ଗୋଟିଏ ସଭା ଏ ନଗରରେ ସ୍ଥାପିତ ହେବାର ପ୍ରସ୍ତାବ କଲେ ଏବଂ ପଣ୍ଡିତ ହରେକୃଷ୍ଣ ଶତପଥୀ ତାହା ଅନୁମୋଦନକରି ଭୁବନେଶ୍ୱର ମନ୍ଦିରକମିଟୀର ସଭ୍ୟ ସଂଖ୍ୟା ବଢ଼ାଇବା ଇତ୍ୟାଦି କେତେକ କଥା କହିଲେ। ତହିଁ ଉତ୍ତାରୁ ବାବୁ ଲାଲବିହାରୀ ଘୋଷ ବାବୁ ଜଗନ୍ନାଥ ବସୁ ବାବୁ ହରିଚରଣ ବାନୁର୍ଯ୍ୟା ବାବୁ ଖୋସାଲିଚାନ୍ଦ ମାରବାଡ଼ି ଏବଂ ବାବୁ ରାଜେନ୍ଦ୍ରନାଥ ବାନୁର୍ଯ୍ୟାଙ୍କ ପ୍ରସ୍ତାବମତେ ଚୌଧୁରୀ ବୃତ୍ତିବାସ ଦାସ ଓ ରାଜା ଆଠଗଡ଼ ଉକ୍ତ କମିଟୀର ସଭାପତି ବାବୁ ହରିବଲ୍ଲଭ ବସୁ ସହକାରୀ ସଭାପତି ଓ ବାବୁ ରାସବିହାରୀ ନାୟକ ସମ୍ପାଦକ ନିଯୁକ୍ତ ହେବା ଓ ଭାରତବର୍ଷର ସ୍ଥାନେ୨ ଶାଖାକମିଟୀ ଗଠିତ ହେବା, ସର୍ବତ୍ରରେ ଭେଦା ସଂଗ୍ରହର ଚେଷ୍ଟା ହେବା ଏବଂ ଜିଲା ଜଜ ସାହେବଙ୍କ ଯୋଗେ ଗବର୍ଣ୍ଣମେଣ୍ଟଙ୍କୁ ସାହାଯ୍ୟନିମନ୍ତେ ପ୍ରାର୍ଥନା ହେବା ଇତ୍ୟାଦି ବିଷୟମାନ ଧାର୍ଯ୍ୟ ହେଲା। ତଦନ୍ତର ସଭାପତି ମହାଶୟ ଗୋଟିଏ କ୍ଷୁଦ୍ର ଅଥଚ ସୁନ୍ଦର ଉପଦେଶପୂର୍ଣ୍ଣ ବକ୍ତୃତା ପ୍ରଦାନ କରି ସଭା ଭଙ୍ଗ କଲେ। ସେ କହିଲେ କି ଇତିହାସରେ ପଢ଼ିଅଛନ୍ତି ଯେ ଖ୍ରୀଷ୍ଟଙ୍କ ଷଷ୍ଠଶତାଦ୍ଧିରେ ଭୁବନେଶ୍ୱର ମନ୍ଦିରମାନର ନିର୍ମାଣକାର୍ଯ୍ୟ ଆରମ୍ଭ ହୋଇ ଅଢ଼େଇଶତ ବର୍ଷରେ ସମ୍ପୂର୍ଣ୍ଣ ହୋଇଥିଲା। ସେଠାରେ ଦଶ ହଜାର ମନ୍ଦିର ନିର୍ମାଣ

ହେବାର କଥିତ ହୁଅଇ। ଯେ ସମୟରେ ଏ ସମସ୍ତ ମନ୍ଦିର ଭଲ ଅବସ୍ଥାରେ ଥିଲା ସେ ସମୟରେ ଏକାବେଳେ ଦଶହଜାର ମନ୍ଦିରର ସନ୍ଧ୍ୟା ଆରତିର କେଡ଼େ ଧୂମ ହୋଇଥିବ କଳ୍ପନା କରିବା କଠିନ। କାଳକ୍ରମେ ଅଧିକାଂଶ ମନ୍ଦିର ଭୂସାୟୀ ହୋଇଅଛି ଓ ଅନେକ ମନ୍ଦିର ଅର୍ଦ୍ଧଭଗ୍ନ ହୋଇ କାକ ବାଦୁଡ଼ି ପ୍ରଭୃତିଙ୍କର ବସା ହୋଇଅଛି। ଅବଶିଷ୍ଟ ଯାହା ଅଛି ତହିଁର ଜୀର୍ଣ୍ଣସଂସ୍କାର ନ ହେଲେ ଅଧିକଦିନ ରହିବ ନାହିଁ। ଏସବୁ ମନ୍ଦିରର କାରୁକାର୍ଯ୍ୟ ଏମନ୍ତ ଚମତ୍କାର ଓ ମନୋହର ଯେ ଇଉରୋପର ଅତି ଉତ୍କୃଷ୍ଟଶିଳ୍ପ ନୈପୁଣ୍ୟକାର୍ଯ୍ୟରୁ କୌଣସି ଅଂଶରେ ଊଣା ନୁହେ। ପ୍ରକୃତରେ ଏଠାର ଅସାମାନ୍ୟ ଶିଳ୍ପନୈପୁଣ୍ୟ ଦେଖି ଅନେକ ବିଜ୍ଞଲୋକ ମନେ କରନ୍ତି ଯେ ମନ୍ଦିରମାନ ଓଡ଼ିୟାଙ୍କଦ୍ୱାର ନିର୍ମିତ ହୋଇ ନାହିଁ। ଯବନଦେଶୀୟ କାରିଗରମାନେ ଏହାସବୁ ଗଢ଼ିଥିଲେ। ଏ ପ୍ରକାର ଅନୁପମପ୍ରାଚୀନକୀର୍ତ୍ତି ସଂସ୍କାରବିନା ଲୋପ ହେବା କେବଳ ଆକ୍ଷେପର ବିଷୟ ନୁହଇ ବାସ୍ତବରେ ଘୋରକଳଙ୍କ ଅଟଇ। ଇଟାଲିର ପମ୍ପୀନଗର ବହୁକାଳ ହେଲା ଆଗ୍ନେୟଗିରିରୁ ନିର୍ଗତ ଭସ୍ମରାଶିଦ୍ୱାରା ପୋତାପଡ଼ି ହା୨୦ତ ଭୂତଳେ ରହିଥିଲା। ଘଟନାକ୍ରମେ ଜଣାଯିବାରୁ ସେଠାଲୋକେ ସମବେତ ଚେଷ୍ଟାଦ୍ୱାରା ବର୍ତ୍ତମାନ ଉଦ୍ଧାରକରି ପୂର୍ବକାଳର ଦେବମନ୍ଦିର ଓ ଦ୍ରବ୍ୟାଦି ଦେଖି ଆଶ୍ଚର୍ଯ୍ୟ ହେଉଅଛନ୍ତି। ଅଥଚ ସେକାଳର ଧର୍ମ ଓ ସେସବୁ ଦେବତାଙ୍କର ଆଦର ସେଠାରୁ ଉଠି ଯାଇଅଛି। ଭୁବନେଶ୍ୱର ସମ୍ବନ୍ଧରେ ଅବଧି ସେହି ହିନ୍ଦୁଧର୍ମ ଓ ସେହି ଦେବତାପୂଜା ବିଦ୍ୟମାନ ରହିଥିବାସ୍ଥଳେ ଲୋକଙ୍କର ଅଧିକତର ମନୋଯୋଗୀ ହେବା ଆବଶ୍ୟକ ଏଥିରେ ସନ୍ଦେହ ନାହିଁ। ସଂସ୍କାରକାର୍ଯ୍ୟ ବହୁକାଳରୁ ଆରମ୍ଭ ହେବାର ଉଚିତ ଥିଲା। ଏଥିରେ ଯଥେଷ୍ଟ ହେଳା ହୋଇଅଛି। ଭରସା କରୁଁ ବର୍ତ୍ତମାନ ଉଦ୍ୟମ ସଫଳ ହେବ ଓ ସମସ୍ତ ଭାରତବାସୀ ଏଥିରେ ସାହାଯ୍ୟଦାନ କରିବାକୁ ଅଗ୍ରସର ହେବେ।

*ଉତ୍କଳ ଦୀପିକା-୧୮୯୪_ପୃଷ୍ଠା ସଂଖ୍ୟା-୧୧*

## ଭୁବନେଶ୍ୱରର କୀର୍ତ୍ତିରକ୍ଷା

ଭୁବନେଶ୍ୱରର ଅଲୌକିକ ଏବଂ ଅସାଧାରଣ ପ୍ରସ୍ଥରାଙ୍କିତ କାରୁକାର୍ଯ୍ୟପୂର୍ଣ୍ଣ ପ୍ରାଚିନ ମନ୍ଦିରମାନ ଓଡ଼ିଶାର ଗୌରବ ପ୍ରକାଶ ବିଷୟରେ ଅଦ୍ୱିତୀୟ ଏବଂ ଏପରି ସୁଗଠିତ ଏବଂ ସୁଚିତ୍ରିତ ମନ୍ଦିରାଦି ଭାରତବର୍ଷରେ ବିରଳ। କାଳକ୍ରମେ ଏ ସମସ୍ତର ଏମନ୍ତ ଶୋଚନୀୟ ଅବସ୍ଥା ଘଟିଅଛି ଯେ ଆଉ କିଛି କାଳରେ ଅଦୃଶ୍ୟ ହେବା ଅସମ୍ଭବ ନୁହେଁ। ଶୁଭଲକ୍ଷଣରେ ଏନଗରର ଜଣେ ସୁପରିଚିତ ଉକିଲ ବାବୁ ପ୍ରିୟନାଥ ଚାଟୁର୍ଯ୍ୟା ଭୁବନେଶ୍ୱର ମନ୍ଦିରର ସେବା ସମ୍ପତ୍ତିର କାର୍ଯ୍ୟ ନିର୍ବାହ କମିଟିର ଜଣେ ମେମ୍ବର ସ୍ୱରୂପ ନିଯୁକ୍ତ ହୋଇଥିଲେ। ସେ ଉକ୍ତ ପଦରେ ନିୟୋଗ ହେବ ଦିନଠାରୁ ମନ୍ଦିରମାନଙ୍କର ଜୀର୍ଣ୍ଣ ସଂସ୍କାର ବିଷୟରେ ନାନାଚେଷ୍ଟା କରି ବିଫଳକାମ ହୋଇ ପରିଶେଷରେ ସୁଯୁକ୍ତି ପୂର୍ଣ୍ଣ ଅଭିନନ୍ଦନପତ୍ରଦ୍ୱାରା ମାନ୍ୟବର ଛୋଟଲାଟ ସର ଉଡବରନଙ୍କର ଯେପରି ସହାନୁଭୂତି ଲାଭ କରିଅଛନ୍ତି ତାହା ଏଥିପୂର୍ବେ ପାଠକମାନଙ୍କୁ ଜଣାଇଛୁ। ଏଥିପାଇଁ ପ୍ରିୟ ବାବୁ ଏବଂ ମାନ୍ୟବର ସର ଉଡବରନଙ୍କ ସମୁଚିତ ବାକ୍ୟଦ୍ୱାରା ଓଡ଼ିଶାବାସିଙ୍କର କୃତଜ୍ଞତା ପ୍ରକାଶ କରିବା ଅସମ୍ଭବ। ସର୍ବାନ୍ତଃକରଣରେ ସେମାନଙ୍କୁ ଅଶେଷ

ଧନ୍ୟବାଦ ଦେବା ଭିନ୍ନ ଆମ୍ଭେ ଆଉ କିଛି କହିବାକୁ ଅକ୍ଷମ। ପ୍ରିୟବାବୁ ଦୁଃଖ ଜଣାଇବାରେ ଅଗ୍ରସର ହୋଇ ସଫଳ ହେଲେ ଏବଂ ମାନ୍ୟବର ସର ଜନ ଉଡବରନ ସେହି ଦୁଃଖ ମୋଚନର ସଦୁପାୟ କରିଦେଲେ। ସୁତରାଂ ଶେଷଲିଖିତ ମହାତ୍ମାଙ୍କର ଯଶ ଶତଗୁଣ ବୃଦ୍ଧି ହେଲା ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ। ପ୍ରାଚିନ କୀର୍ତ୍ତି ସଂରକ୍ଷଣାର୍ଥେ ସରକାର ବାର୍ଷିକ କେତେ ଟଙ୍କା ଦାନ କରନ୍ତି। ସେ ଦାନ ଉପରେ ଦାବି ଅନେକଙ୍କର ଥିଲେ ହେଁ ଛୋଟଲାଟ ବାହାଦୁର ଦୁଃଖିନୀ ଓଡ଼ିଶାକୁ ତହିଁରୁ ଗୋଟିଏ ଭାଗ ଦେବାକୁ ସମ୍ମତ ହେଲେ ଏଥିରୁ ସ୍ପଷ୍ଟ ବୁଝା ଯାଉଅଛି ଯେ ଭୁବନେଶ୍ୱରର କୀର୍ତ୍ତି ରକ୍ଷାର ଆବଶ୍ୟକତା ସେ ବିଲକ୍ଷଣ ହୃଦୟଙ୍ଗମ କରିଅଛନ୍ତି ଏବଂ ଏହି କୀର୍ତ୍ତି ସଂରକ୍ଷିତ ହେଲେ ସେ ଅତ୍ୟନ୍ତ ଆନନ୍ଦିତ ହେବେ ଏବଂ ତାହାଙ୍କର ନାମ ତହିଁସଙ୍ଗେ ଜଡିତ ରହିବ। ଅତଏବ ଯେଉଁ ବଦାନ୍ୟ ଏବଂ ସ୍ୱଦେଶହିତୈଷୀ ମହାଶୟମାନେ ଛୋଟଲାଟଙ୍କ ଶୁଭାଗମନ ସ୍ମରଣାର୍ଥେ ଦେଶହିତରେ କାର୍ଯ୍ୟ ବିଶେଷନିମନ୍ତେ ଅର୍ଥଦାନ କରିବାକୁ ପ୍ରସ୍ତୁତ ହୋଇଥିଲେ ସେମାନଙ୍କୁ ଅନୁରୋଧ ପୂର୍ବକ ପ୍ରାର୍ଥନା କରୁଅଛୁଁ କି ଜିନ୍ନ ମନ୍ଦିର ସଂସ୍କାର ବଦାନ୍ୟ ବ୍ୟକ୍ତିମାନେ ସାହାଯ୍ୟ କରିବାକୁ ଅଗ୍ରସର ହେଉନ୍ତୁ। ଏହାଦ୍ୱାରା ସେମାନଙ୍କର ସ୍ୱଦେଶହିତୈଷିତା ପ୍ରକାଶି ଉଡବରନଙ୍କର ଶୁଭାଗମନ ସ୍ମରଣ ସକାଶ ସଙ୍କଳ୍ପ ସିଦ୍ଧ ହେବ। ଭୁବନେଶ୍ୱରର ମନ୍ଦିର ସମ୍ପତ୍ତିର ଆୟ ବାର୍ଷିକ ଟ୩୦୦୦ଙ୍କା ଏବଂ ତହିଁରୁ ଟ୪୦୦ଙ୍କା ବାର୍ଷିକ ଦେବାର ବନ୍ଦୋବସ୍ତ ହୋଇଅଛି ତାହା ଯଥେଷ୍ଟ ଓ ସରକାରଙ୍କ ସାହାଯ୍ୟ କାର୍ଯ୍ୟ ଟ ୪୦୦ଙ୍କା ମିଶି ବାର୍ଷିକ ଟ୮୦୦ ମରାମତି ସକାଶେ ଅତିସାମାନ୍ୟ ବୋଲିବାକୁ ହେବ। କାର୍ଯ୍ୟ ଯେପରି ବୃହତ୍ କେତେକ ବର୍ଷ ପର୍ଯ୍ୟନ୍ତ ବାର୍ଷିକ ଆଠହଜାର ଟଙ୍କା ବ୍ୟୟକଲେ ଅଧିକ ହେବ ନାହିଁ। ସୁତରାଂ ସାଧାରଣ ସାହାଯ୍ୟର ବିଶେଷ ଆବଶ୍ୟକତା ବିଷୟରେ ସନ୍ଦେହ ନାହିଁ। ଗରିବ ଓ ଧନୀ ଦାତାମାନେ ଯଥୋଚିତ ସହାନୁଭୂତି ଦେଖାଇଲେ ଅବଶ୍ୟ କାର୍ଯ୍ୟୋଦ୍ଧାର ହେବ। ଏହି ଆଶାରେ ଏ ବିଷୟରେ ସେମାନଙ୍କର ମନୋଯୋଗ ପ୍ରାର୍ଥନା କରୁଅଛି।

*ଉତ୍କଳ ଦୀପିକା-୧୮୯୮_ପୃଷ୍ଠା ସଂଖ୍ୟା-୪୨୦*

ମହାଶୟ!

ମହାମାନ୍ୟ ବଙ୍ଗେଶ୍ୱର ଉତ୍କଳ ପରିଦର୍ଶନ କରି ଯିବା ଦ୍ୱାରା ଆମ୍ଭମାନଙ୍କର ଯେ ଅଶେଷ ଉପକାର ହୋଇଅଛି ସେଥିରେ କେହି ଦ୍ୱିମତ ହେବେ ନାହିଁ ମାତ୍ର ବଙ୍ଗେଶ୍ୱରଙ୍କର ଭୁବନେଶ୍ୱର ସମ୍ବନ୍ଧୀୟ ଅନୁଷ୍ଠାନମାନଙ୍କୁ ଅତ୍ୟନ୍ତ ହୃଦୟଗ୍ରାହୀ ଓ ପ୍ରକୃତ ଦେଶହିତକର ବିଷୟ ଅଟେ।

ଲାଟ ମହୋଦୟ ଭୁବନେଶ୍ୱରରେ ଯେତେ ମନ୍ଦିର ନିକଟକୁ ଯାଇଥିଲେ ସେଥି ମଧ୍ୟରେ ରାଜରାଣୀ ବା ପଞ୍ଚରଥମନ୍ଦିର ସିଦ୍ଧେଶ୍ୱର ମନ୍ଦିର ଓ କେଦାରଶ୍ୱର ମନ୍ଦିରମାନ ସର୍ବୋତ୍କୃଷ୍ଟ ଅଟେ। ଆଉ ସେହି ମନ୍ଦିରମାନ ଶିଳ୍ପ ନୈପୁଣ୍ୟର ପରାକାଷ୍ଠା ଦେଖାଇ ପତନୋନ୍ମୁଖ ହୋଇଥିବାରୁ ସେ ସମସ୍ତର ମରାମତିର ଭାର ନିଜେ ଗବର୍ଣ୍ଣମେଣ୍ଟ ସ୍ୱହସ୍ତରେ ନେଇଅଛନ୍ତି ଏବଂ ଏଥି ମଧ୍ୟରେ ସେ ଅନୁଷ୍ଠାନମାନ କାର୍ଯ୍ୟରେ ପରିଣତ କରିବା ନିମନ୍ତେ ଆଦେଶମାନ ବିଭାଗୀୟ କମିଶନର ଓ କଲେକ୍ଟରମାନଙ୍କ ନିକଟକୁ ଆସି ଯାଇଅଛି।ଏବର୍ଷ ଶେଷ ହେବାକୁ ଅଳ୍ପ ସମୟ

ଅଛି ଯଦି ମନ୍ଦିର ମରାମତି କାର୍ଯ୍ୟ ଏଥି ମଧ୍ୟରେ ଆରମ୍ଭ ହୋଇପାରେ ତେବେ ସରକାରରୁ ଟ୧୦୦୦ଙ୍କା ପ୍ରଦତ୍ତ ହୋଇ ପାରିବ ଆଗାମୀ ବର୍ଷକୁ ଟ୫୦୦୦ଙ୍କା ଭୁବନେଶ୍ୱର କୀର୍ତ୍ତିରକ୍ଷା ନିମନ୍ତେ ବଜେଟରେ ଦେଖାଇବାକୁ ହେବ। ଆଉ ମଧ୍ୟ କମେଟି ଅଥବା ସ୍ଥାନୀୟ ଲୋକମାନେ ଟ ୪୦୦ଙ୍କା ଦେଲେ ବେଢ଼ାମଧ୍ୟସ୍ଥିତ ମନ୍ଦିରମାନ ମରାମତି ସକାଶେ ଟ ୪୦୦ ଙ୍କା ହିସାବ ବ୩ର୍ଷ ପର୍ଯ୍ୟନ୍ତ ଗବର୍ଣ୍ଣମେଣ୍ଟକୁ ଦିଆଯିବ। ଯଦି ହିନ୍ଦୁ ଇଞ୍ଜିନିୟର ନଥାନ୍ତି ତେବେ ଲେଖିଲେ ସେଠାରୁ ଜଣେ ଇଞ୍ଜିନୀୟର ମହାମାନ୍ୟ ପଠାଇବାର ଆଦେଶ ଦେଇଅଛନ୍ତି। ଏଥି ନିମନ୍ତେ ଆମ୍ଭେମାନେ ଲାଟ ମହୋଦୟଙ୍କଠାରେ ସଦା କୃତଜ୍ଞ ରହିଲୁଁ। ଆଉ ମଧ୍ୟ କମେଟିର ସୁଦକ୍ଷ ମେମ୍ବର ବାବୁ ପ୍ରିୟନାଥ ଚାଟୁର୍ଯ୍ୟାଙ୍କୁ ଏଥି ନିମନ୍ତେ ଧନ୍ୟବାଦ ଦେଉଅଛୁଁ ଏବଂ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଅଛି ଯେ ସେ ନିଜର ଦାୟିତ୍ୱ ସୁଚାରୁ ରୂପେ ସମ୍ପନ୍ନ କରିବାକୁ ଉତ୍ତୋରତ୍ତର ସକ୍ଷମ ହେଉନ୍ତୁ।

ପୁରୀ  ନି.ଶ୍ରୀ.ରା.

*ଉତ୍କଳ ଦୀପିକା-୧୮୯୯_ପୃଷ୍ଠା ସଂଖ୍ୟା- ୨୬*

ମହାଶୟ!

ନିମ୍ନଲିଖିତ ବିଷୟଟି ଆପଣଙ୍କ ଜଗତିଖ୍ୟାତ ପତ୍ରିକାର ଏକାଂଶରେ ସ୍ଥାନଦାନ କରି ବାଧିତ କରିବେ।

କୌଣସି ଦେଶ ହିତକର ଅତି ପବିତ୍ର ସତ୍କାର୍ଯ୍ୟର ଅପୂର୍ବ ଅନୁଷ୍ଠାନ ଅବଲୋକନ କଲେ ଅବଶ୍ୟ ସାମାଜିକ ଲୋକର ମନ ଓ ପ୍ରାଣ ବିମୁଗ୍ଧ ହୋଇଥାଏ, ଏଣୁ ତାହା ସର୍ବସାଧାରଣଙ୍କ ଜ୍ଞାତବ୍ୟ ବିବେଚନା କରି ନିମ୍ନରେ ତାହାର ସ୍ମାରକଲିପି ପ୍ରକାଶ କଲି।

ଶ୍ରୀ ଶ୍ରୀ ଲିଙ୍ଗରାଜମହାପ୍ରଭୁଙ୍କ ଦେଉଳ ମରାମତି ସମ୍ବନ୍ଧରେ ଗତ କେତେମାସ ତଳେ ଦୀପିକାରେ ଯେଉଁ୨ ସବୁ ବିବରଣ ସାଧାରଣଙ୍କ ଅବଗତି ନିମିତ୍ତ ପ୍ରକାଶିତ ହୋଇଥିଲା ସମ୍ଭବତଃ ତହିଁରୁ ଦୀପିକାର ପାଠକବର୍ଗ ସମସ୍ତ ଅବଗତ ହୋଇଥିବେ। ବର୍ତ୍ତମାନ ଦେଖାଗଲା ଯେ ଆମ୍ଭମାନଙ୍କର ବର୍ତ୍ତମାନ ଶାସନକର୍ତ୍ତା ମହାମାନ୍ୟ ଦୟାଳୁ ବଙ୍ଗେଶ୍ୱର ସାର୍ ଜନ୍ ଉଡବରନ ବାହାଦୁରଙ୍କ ଶ୍ରଦ୍ଧା, ମମତା, ଆନୁକୂଲ୍ୟ ଓ ବଦାନ୍ୟତା ଯୋଗୁଁ ଭୁବନେଶ୍ୱର ରାଜରାଣୀ ଓ ମୁକ୍ତେଶ୍ୱର ନାମକ ଦୁଇଟି ସୁନ୍ଦର ଶିଳ୍ପ ପୂର୍ଣ୍ଣ ଭଗ୍ନ ମନ୍ଦିରର ମରାମତି କାର୍ଯ୍ୟ ପ୍ରାୟ ଶେଷ ହୋଇ ଆସିଲାଣି। ଏଣେ ଶ୍ରୀ ଲିଙ୍ଗରାଜପ୍ରଭୁଙ୍କ ଦେଉଳ ସଂସ୍କାର ସମ୍ବନ୍ଧରେ ଉକ୍ତ ବାହାଦୂର ମହୋଦୟ ଯେଉଁ ନିୟମ ପ୍ରଣୟନ କରିଥିଲେ ସେହି ନିୟମାନୁସାରେ ସେଠା କମେଟି କେତେକ ଟଙ୍କା ସଂଗ୍ରହ କରନ୍ତେ ସରକାର ବାହାଦୂରଙ୍କ ଦାନ ସହିତ ବର୍ତ୍ତମାନ୍ ହଜାର ଟଙ୍କା ମାତ୍ର ମୂଳଧନରେ ଆଜକୁ ପ୍ରାୟ ସ୩ପ୍ତାହରୁ ଅଧିକକାଳ ଅବଧି ସେହି ପ୍ରଭୁଙ୍କ ଦେଉଳରେ କାର୍ଯ୍ୟ ଆରମ୍ଭ ହୋଇ ଭୋଗମଣ୍ଡପ ଉପରୁ କ୍ରମାନ୍ୱୟେ ବଡ଼ଦେଉଳର ଶୀର୍ଷଭାଗ ପର୍ଯ୍ୟନ୍ତ ଚାରବନ୍ଧା କାର୍ଯ୍ୟ ମାତ୍ର ଶେଷ ହୋଇ ରହିଅଛି ଏବଂ ଭୋଗ ମଣ୍ଡପପର ନିମ୍ନଦେଶରେ ଯେ୨ ସ୍ଥାନରେ ମରାମତି ଆବଶ୍ୟକ ତାହାର ମଧ୍ୟ କାମ ଲାଗି ଅଛି। ମାତ୍ର କାମ ଯେତେଦୂର ଲାଗିବାର ଆବଶ୍ୟକ ତାହା ଦେଖାଯାଉ ନ ଥିବାରୁ ଶୀଘ୍ର କାର୍ଯ୍ୟୋଦ୍ଧାର ହେବାର ଆଶା ଦେଖାଯାଉ ନାହିଁ ତହିଁର କାରଣ ଶୁଣିପାରିଲୁ ଯେ

ଯେତେ କାଳୁଁ ଏହି କାର୍ଯ୍ୟ ସୁତ୍ରପାତ ହେଲାଣି ଅର୍ଥର ଅନାଟନ ନ ଥିଲେ ଆଜିକି ପ୍ରାୟ ଅଧାଅଧି କାମ ଶେଷ ହୋଇଥାନ୍ତା। କେବଳ ଅର୍ଥର ଅଭାବ ହେତୁ ମଧ୍ୟେ୨ କେତେକ କାର୍ଯ୍ୟ ବନ୍ଦ ହୋଇ ପଡ଼ି ରହେ। ମାତ୍ର କମେଟି ନିଜର ଉଦ୍ୟମରେ ତ୍ରୁଟି କରି ନାହାନ୍ତି। ସେ ଯାହାହେଉ ଏହି ଅଭିନବ ମହତ୍‌କାର୍ଯ୍ୟର ଦର୍ଶନ ମାତ୍ରେ ତାହାର ପ୍ରଥମ ଉପଦେଷ୍ଟା ଓ କର୍ତ୍ତା ସେହି ପ୍ରଜାବନ୍ଧୁ ସର ଉଡ଼ବରନ ବାହାଦୁରଙ୍କୁ ମୁକ୍ତ କଣ୍ଠରେ ଶତ୨ ଧନ୍ୟବାଦ ନ ଦେଇ କେଉଁ ହୃଦୟବାନ୍ ଲୋକ ନୀରବ ରହିବ। ତାଙ୍କର ନିର୍ମଳ ଯଶଃ ଓ ଉଦାରଭାବ ଯେତେଦିନ ପର୍ଯ୍ୟନ୍ତ ସେହି ରାଜରାଣୀ ଦେଉଳ ପ୍ରଭୃତି ଅକ୍ଷୁନ୍ନ ରହିଥିବ କେତେଦିନ ଯାଏ ଅବଶ୍ୟ ଏ ଦେଶେ ଅକ୍ଷୟ ରହିବ। ଯଦି ଆମ୍ଭେମାନେ ତାଙ୍କପରି ନିଜର ସହାନୁଭୂତି ସେଥିପ୍ରତି ଦେଖାଇ ଅତିରେ କାର୍ଯ୍ୟ ସାଧନ କରିପାରୁଁ। ମାତ୍ର ତାହା କାହିଁ। ଯେଉଁ ଭୁବନେଶ୍ୱର ମନ୍ଦିର ଆମ୍ଭ ପୂର୍ବ ପୁରୁଷମାନଙ୍କ ମାନ, ଧନ, ମହତ୍ତ୍ୱ, ବିଦ୍ୟା, ବୁଦ୍ଧି ଧର୍ମଭାବର ପରିଚାୟକ ସ୍ୱରୂପ ଅନନ୍ତ କାଳରୁ ଉନ୍ନତ ଶିରରେ ଦଣ୍ଡାୟମାନ ରହିଅଛି, ଯାହାର ଶିଳ୍ପନୈପୁଣ୍ୟର ପରାକାଷ୍ଠା ଦର୍ଶନ କରି ଆଜି କାଲି ପାଶ୍ଚାତ୍ୟମାନେ ବିମୁଗ୍ଧ ହୋଇ ଆମ୍ଭମାନଙ୍କ ବର୍ତ୍ତମାନ ଅବସ୍ଥା ତୁଳନାରେ "ଏହା ଆମ୍ଭ ଉତ୍କଳୀୟ କୀର୍ତ୍ତି, ଏ ବିଷୟରେ ସନ୍ଦିଗ୍ଧ ହେଲେହେଁ ନିଜର ସହାନୁଭୂତି ମଧ୍ୟ ଏଥିଯୋଗୁଁ ଆମ୍ଭଠାରେ ଦେଖାଉ ଅଛନ୍ତି, କିନ୍ତୁ ହାୟ! ଆଜି ସେହି ଆର୍ଯ୍ୟଧର୍ମାବହ ଭୁବନେଶ୍ୱର ମନ୍ଦିରର ଏପରି ଦୁରବସ୍ଥା ଦେଖି ଶୁଣି ସୁଦ୍ଧା ଉତ୍କଳୀୟମାନେ ଏପର୍ଯ୍ୟନ୍ତ ଉଦାସୀନ ରହିଅଛନ୍ତି ଏହା କି କମ ପରିତାପର ବିଷୟ ନୁହେ। ଏହି ଉତ୍କଳରେ ଧନୀ-ମାନୀ ଓ ଦାନୀଲୋକର ଅଭାବ ନାହିଁ କିମ୍ବା ସେମାନଙ୍କର ଧନାଦିରେ ମଧ୍ୟ ବ୍ୟୟ ପରିମାଣ ଅବଶ୍ୟ ଅନ୍ୟ କାର୍ଯ୍ୟରେ କମ ନୁହେ। ଯଦି ସେମାନେ କିଞ୍ଚିତ ପରିମାଣରେ ଏହି ନବୋଦ୍ୟମ ସାଧୁ କାର୍ଯ୍ୟରେ ନିଜର ତ୍ୟାଗ ସ୍ୱୀକାର କରନ୍ତେ ତେବେ ଅକ୍ଲେଶରେ ଏବଂ ଅବିଳମ୍ବେ ସେହି ଭୁବନେଶ୍ୱର ମନ୍ଦିର ସଂସ୍କାର କାର୍ଯ୍ୟ ଶେଷ ହୁଅନ୍ତା। ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ। ଏଥି ନିମିତ୍ତ ମୋର ସବିନୟ ନିବେଦନ ଏହି କି ହେ ଉତ୍କଳୀୟଭ୍ରାତୃଗଣ! ତୁମ୍ଭେମାନେ ରାଜା କିମ୍ବା ପ୍ରଜା ଧନୀ ବା ଦରିଦ୍ର ଯାହା କିଛି ହୁଅ ସମସ୍ତେ ଏତେବେଳେ ନିଜ୨ ସ୍ୱାର୍ଥରେ ଜଡୀଭୂତ ନ ହୋଇ ଉଦାସଭାବ ପରିହାର କରି ଯଦ୍ୱାରା ତୁମ୍ଭମାନଙ୍କ ପୂର୍ବ ଗୌରବ ସ୍ମୃତି ସର୍ବଦା ଜାଗ୍ରତ ରହିବ ଏବଂ ସମାଜ ଓ ଦେଶର ମଙ୍ଗଳ ସାଧିତ ହେବ ତତ୍ପ୍ରତି ଅର୍ଥାତ୍ ଏହି ମହତ୍ ପୁଣ୍ୟକର ଭୁବନେଶ୍ୱର ଶିବ ମନ୍ଦିର ସଂସ୍କାର ବିଷୟରେ ବଦ୍ଧପରିକର ହୋଇ ଉତ୍ସାହ ଓ ଉଦ୍ୟମ ପ୍ରଦର୍ଶନ ପୂର୍ବକ ଯଥାଶକ୍ତି ଅର୍ଥ ସାହାଯ୍ୟ ଦ୍ୱାରା ଶୀଘ୍ର କାର୍ଯ୍ୟୋଦ୍ଧାର ନିମନ୍ତେ ଯତ୍ନବାନ୍ ହୁଅନ୍ତୁ ଏବଂ ଏତଦ୍ଦ୍ୱାରା ଅବଶ୍ୟ ଆମ୍ଭମାନଙ୍କର ଅଶେଷ ଶ୍ରେୟଃ ଓ ପୁଣ୍ୟ ସଞ୍ଚିତ ରହିବ।ଇତି।

ତା ୧୧/୨/୧୯୦୦

ଭିଙ୍ଗାରପୁର

ଏକାନ୍ତ ବଶମ୍ବଦ।

କାବ୍ୟତୀର୍ଥୋପାଧିକ

ଶ୍ରୀ ବାସୁଦେବ ରଥ ଶର୍ମା।

*ଉତ୍କଳ ଦୀପିକା-୧୯୦୦, ପୃଷ୍ଠା ସଂଖ୍ୟା-୧୧୭*

# ପ୍ରେରିତପତ୍ର

ପତ୍ରପ୍ରେରକଙ୍କ ମତାମତ ନିମନ୍ତେ ଆମ୍ଭେମାନେ ଦାୟୀ ନୋହୁଁ।

ମହାଶୟ!

ନିମ୍ନଲିଖିତ କେତେକ ପଂକ୍ତିକୁ ଭବଦୀୟ ଜଗମୋହନୀ ପତ୍ରିକାର ଏକାଂଶରେ ସ୍ଥାନ ପ୍ରଦାନ କଲେ ଚିରୋପକୃତ ହେବି।

ଭୁବନେଶ୍ୱର କ୍ଷେତ୍ର ଅଷ୍ଟତୀର୍ଥ ମଧ୍ୟରୁ ଦେବୀ ପାଦହରା, ଗଙ୍ଗା ଯମୁନା ପାପନାଶିନୀର ଯତ୍ନ କିଞ୍ଚିତ ବିବରଣ ପୂର୍ବେ ପ୍ରକାଶିତ ହୋଇଅଛି। ଅବଶିଷ୍ଟ କୁରୁକ୍ଷେତ୍ର ଅଲାବକୁଣ୍ଡ ବ୍ରହ୍ମକୁଣ୍ଡ, ଅଶୋକ କୁଣ୍ଡ ଏବଂ କୋଟିତୀର୍ଥର ଦୁର୍ଦ୍ଦଶା ଶ୍ରବଣ କଲେ କିମ୍ବା ସନ୍ଦର୍ଶନ କଲେ ମନ ଏକ ପ୍ରକାର ଅଶ୍ରୁତପୂର୍ବ ଏବଂ ଅଦୃଷ୍ଟପୂର୍ବ କ୍ଷୋଭ ରସରେ ପ୍ଲାବିତ ହେବାକୁ ହୁଏ। ଏହି ସମସ୍ତ ତୀର୍ଥର ବିବରଣ ସାଧାରଣରେ ପ୍ରକାଶ କରିବାକୁ ମାଦୃଶ ବ୍ୟକ୍ତିର ଲେଖନୀ ସଞ୍ଚାଳନ କରିବା କେବଳ ବାମନର ଚନ୍ଦ୍ରଲାଭ ତୁଲ୍ୟ ହାସ୍ୟାସ୍ପଦ ବ୍ୟତିତ ଅନ୍ୟ କିଛି ନୁହେଁ। ଯାହା ହେଉ ସେ ସମସ୍ତ ଦର୍ଶନ କରି ମନର ଆବେଶ ଓ କ୍ଷୋଭଦ୍ୱାରା ପ୍ରଣୋଦିତ ହୋଇ ସାଧାରଣରେ ପ୍ରକାଶ ନ କରି ରହି ପାରୁ ନାହିଁ। ଦୁର୍ଭାଗ୍ୟବଶତଃ ପ୍ରୋକ୍ତ ଅଷ୍ଟତୀର୍ଥ ମଧ୍ୟରୁ ଅଲୀବକୁଣ୍ଡ ନାମା ତୀର୍ଥର ଦର୍ଶନ ମୋ ଭାଗ୍ୟରେ ଘଟି ନାହିଁ। ପୁରାଣ ମତରେ ଲୋକେ ଯେଉଁ ସ୍ଥାନରେ ସ୍ନାନ କଲେ ଗଙ୍ଗା ଯମୁନା ପ୍ରୟାଗାଦି ସକଳତୀର୍ଥର ପୁଣ୍ୟ ଯୁଗପତ୍ ପ୍ରାପ୍ତ ହୁଅନ୍ତି। ସେହି ହେତୁରୁ କୋଟିତୀର୍ଥ ବୋଲି ତାହାର ନାମ କରଣ ହୋଇଅଛି। ସେସବୁ କଥା କାଳର ତମୋମୟ ଗର୍ଭ ମଧ୍ୟରେ କେଉଁଆଡ଼େ ଲୀନ ହୋଇ ଯାଇ ଆଜିକାଲି କେବଳ କୃଷକମାନଙ୍କ ବୃଷ୍ୟୁପଯୋଗୀ ଗୋଟିଏ ଆନନ୍ଦର ଅପରିଷ୍କୃତ ଜଳାଶୟରୂପେ ପରିଣତ ହୋଇଅଛି। ଏମନ୍ତ କି ତାହାର ଚତୁଃପାର୍ଶ୍ୱର ବହୁକାଳ ସୁନିର୍ମିତ ଦୃଢ଼ ପଥର ବନ୍ଧ ଅଜ୍ଞ କୃଷକମାନଙ୍କଦ୍ୱାରା ଖଣ୍ଡବିଖଣ୍ଡ ହୋଇ ପୟଃପ୍ରଣାଳୀଦ୍ୱାରା ଶସ୍ୟକ୍ଷେତ୍ରକୁ ଜଳ ନୀତ ହେଉଅଛି।

ବ୍ରହ୍ମକୁଣ୍ଡର ଚତୁଃପାର୍ଶ୍ୱ ବନ୍ୟ ଗଛମାନଙ୍କର ଅନ୍ତର୍ଗତ ହୋଇଥିବାରୁ ତାହା ଲୋକମାନଙ୍କର ଅଗମ୍ୟ ହୋଇ ପଡ଼ି ରହିଅଛି। ଏବଂ ଯାହା କିଛି ସ୍ୱଳ୍ପ ଜଙ୍ଗଲାବୃତ ମାର୍ଗ ଅଛି ତାହା ସ୍ଥାନୀୟ ଲୋକମାନଙ୍କର ମଳମୂତ୍ରରେ ପରିପୂର୍ଣ୍ଣ ହୋଇଅଛି। ତେଣୁ ଉକ୍ତ କୁଣ୍ଡ ସ୍ଥାନୀୟ ଲୋକମାନଙ୍କ ବ୍ୟତୀତ ଜନ ସାଧାରଣଙ୍କର ଅଜ୍ଞାତ ଭାବରେ ଅବସ୍ଥିତ ଅଛି।

ଅଶୋକକୁଣ୍ଡରେ ଦୂରବସ୍ଥା ଆଉ ଲେଖିବାକୁ ହସ୍ତ ଚଳୁ ନାହିଁ। ତାହା ପ୍ରାୟ ଶୁଷ୍କଜଳ ହୋଇ ନାମ ମାତ୍ର ଧାରଣ କରି ପଡ଼ିଅଛି। ସ୍ଥାନୀୟ ଲୋକମାନେ ତାହାର ସଂସ୍କାର କରିବା ଦୂରେ ଥାଉ, ମୂର୍ଖ ଅର୍ଥ ଲୋଲୁପ ପଣ୍ଡାଗଣ ଯାତ୍ରିମାନଙ୍କୁ ରେଳବେ ଷ୍ଟେସନଠାରୁ ଆଣିବା ସମୟରେ ତାହା ମଳମୂତ୍ର ତ୍ୟାଗର ଉପଯୁକ୍ତ ସ୍ଥାନ ବୋଲି ଯାତ୍ରିମାନଙ୍କୁ ନିର୍ଦ୍ଦେଶ କରାଉ ଅଛନ୍ତି। ଅଶୋକ ତୀର୍ଥ ସଂସ୍କୃତ ହେଲେ ସେହି ପଣ୍ଡାମାନଙ୍କର ଅର୍ଥୋପାର୍ଜ୍ଜନର ମାର୍ଗ କେତେ ଦୂର ପ୍ରଶସ୍ତ ହେବ ଏହା ସେମାନଙ୍କ ମନରେ ଜାତ ହେଉ ନାହିଁ କିମ୍ବା କେହି ସୁଦ୍ଧା କରାଉ ନାହାନ୍ତି। ଆହୋଃ କାଳର କି ବିଚିତ୍ର ଗତି ଏକ ସମୟରେ ଏହି ସ୍ଥାନ ଓ ତୀର୍ଥମାନ କିପରି ଅବସ୍ଥାରେ ଅବସ୍ଥିତ ଥିଲା। ବର୍ତ୍ତମାନ୍

କିପରି ହୋଇଅଛି? ଏହାର ସନ୍ନିକଟରେ ଭରତ, ଲକ୍ଷ୍ମଣ ଏବଂ ଶତ୍ରୁଘ୍ନ ନାମରେ ନାମିତ ତିନି ଗୋଟି ମନ୍ଦିର ଭଗ୍ନାବଶେଷରୂପେ ପରିଣତ ହୋଇ ସର୍ବଦା ଦର୍ଶକମାନଙ୍କର କ୍ଷୋଭ ଜାତ କରାଉଅଛି। କୁରୁକ୍ଷେତ୍ର ନାମା ତୀର୍ଥ ମଧ୍ୟ ତଦ୍ରୂପ ଅବସ୍ଥାରେ ଅବସ୍ଥିତ। ତାହାର ଗମନା-ଗମନର ମାର୍ଗ ବନ୍ୟ ଗଛଦ୍ୱାରା ରୁଦ୍ଧ ହୋଇ ଅଛି ଏବଂ ସେ ମଧ୍ୟ ସ୍ଥାନୀୟ ଲୋକମାନଙ୍କର ମଳମୂତ୍ରାଗାରରୂପେ ପରିଣତ ହୋଇଅଛି ତେଣୁ ତାହା ଅବ୍ୟବହାର୍ଯ୍ୟ ଅବସ୍ଥାରେ ପଡ଼ି ଅଛି। ଏହିପରି ବହୁ ତୀର୍ଥ ଏବଂ ପୁଷ୍କରିଣୀ ଅତ୍ୟନ୍ତ ଶୋଚନୀୟ ଅବସ୍ଥା ଧାରଣ କରିଅଛି। ଯେ ସେ ସମସ୍ତ ଦର୍ଶନ କରି ମନ ଏକାନ୍ତ କ୍ଷୁବ୍ଧ ଏବଂ ଜଡ଼ ପ୍ରାୟ ହେବାରୁ ଅନନ୍ୟୋପାୟରେ ପ୍ରତ୍ୟାବର୍ତ୍ତିତ ହେଲି। ଏମାନଙ୍କର ଜୀର୍ଣ୍ଣସଂସ୍କାର ମଳମୁତ୍ର ତ୍ୟାଗ ରହିତ କରିବା ତତ୍ରତ୍ୟ କମେଟି ଓ ସ୍ଥାନୀୟ ଲୋକଙ୍କ କର୍ତ୍ତବ୍ୟ ନୁହେ କି?

ଏମାନଙ୍କର ସଂସ୍କୃତକାର୍ଯ୍ୟ ସାଧନ କରିବାକୁ ବିଶେଷ ଅର୍ଥର ପ୍ରୟୋଜନ ନାହିଁ। ବୋଧ ହୁଏ ଯେବେ କମେଟି ଏବଂ ସ୍ଥାନୀୟ ଲୋକମାନେକ ଟିକିଏ ସଂସ୍କାର ବିଷୟରେ ବଦ୍ଧପରିକର ହୁଅନ୍ତେ ତାହା ହେଲେ ଅକ୍ଳେଶରେ ତାହା ସାଧିତ ହୁଅନ୍ତା।

"ଭୁବନେଶ୍ୱରର ସୁପ୍ରସିଦ୍ଧ ପୀଠ" କେଦାରେଶ୍ୱର ସ୍ଥିତ ପଞ୍ଚକୁଣ୍ଡ ମଧ୍ୟରୁ ଗୌରୀ କୁଣ୍ଡଟି ବହୁ ଦିବସ ପୂର୍ବେ ସୁରୁଚି ସମ୍ପନ୍ନ ହିନ୍ଦୁ ଧର୍ମ ପରାୟଣ ଡ଼େଃ ମାଜିଷ୍ଟ୍ରେଟ ବାବୁ ଶଶିଭୂଷଣ ମୁଖୋପାଧ୍ୟାୟଙ୍କ ଯତ୍ନରେ ଜୀର୍ଣ୍ଣସଂସ୍କୃତ ହୋଇ ଥିବାରୁ ତାହା ଅପେକ୍ଷାକୃତ ବ୍ୟବହାର୍ଯ୍ୟ ହୋଇ ଅଛି। ଅବଶିଷ୍ଟ ଚାରି ଗୋଟି ଅତ୍ୟନ୍ତ ଶୋଚନୀୟ ଅବସ୍ଥାରେ ପଡି ରହିଅଛି। ଏପରି ତନ୍ନିକଟବର୍ତ୍ତୀ କୋଟିଏ କୁଣ୍ଡ ରଜକଙ୍କର ବସ୍ତ୍ର ପରିଷ୍କୃତ ସ୍ଥାନରେ ପରିଣତ ହୋଇ ଥିବାର ଦୃଷ୍ଟି ଗୋଚର ହେଲା। ତହୁଁ ଉକ୍ତ ରଜକକୁ ସେ ସ୍ଥାନରେ ବସ୍ତ୍ର ପରିଷ୍କାର କରିବାକୁ ନିଷେଧ କରିବାରୁ ସେ ଉତ୍ତର ଦେଲା "ଆଜି ମୁଁ ନୂତନ କରି ବସ୍ତ୍ର ପରିଷ୍କାର କରୁ ନାହିଁ ସର୍ବଦା ପରିଷ୍କାର କରେ" ଏହା ଶୁଣି ବିସ୍ମିତ ହୋଇ ପ୍ରତ୍ୟାବର୍ତ୍ତିତ ହେଲି। ପୂର୍ବରୁ ଯେବେ ସ୍ଥାନୀୟ ଭଦ୍ର ଲୋକମାନେ ଏହା ନିଷେଧ କରିଥାନ୍ତେ, ତେବେ ସେ କଦାପି ଏପରି ଉତ୍ତର ଦେବାକୁ ସାହାସୀ ହୋଇ ନ ଥାନ୍ତା। ତୀର୍ଥ ଗୁଡ଼ିକ ହିନ୍ଦୁମାନଙ୍କ ଚକ୍ଷୁରେ ଯେପରି ପବିତ୍ର ଭାବ ସମ୍ପନ୍ନ ତାହାର ଜଳ ମଧ୍ୟ ସେପରି ସୁନିର୍ମଳ ଓ ନିତ୍ୟ ବ୍ୟବହାର୍ଯ୍ୟ। ଅନ୍ୟାନ୍ୟ ଲୋକମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ଯେ ଜଳର ସୁଲଭତା ହେତୁରୁ ଭୁବନେଶ୍ୱର ସ୍ୱାସ୍ଥ୍ୟପ୍ରଦ ଅଟେ। ତେଣୁ ଆଜିକାଲି ବହୁ ଭଦ୍ର ଲୋକମାନେ ସୁବିଧାନୁସାରେ ଜଳ ବାୟୁ ପରିବର୍ତ୍ତନ କରିବାକୁ ସେଠାକୁ ଗମନାଗମନ କରୁଅଛନ୍ତି ଏବଂ ସ୍ଥାୟୀ ଗୃହ ନିର୍ମାଣ କରିବାକୁ ମଧ୍ୟ ପ୍ରୟାସୀ ହୋଇଅଛନ୍ତି। ଯେବେ ଉକ୍ତ କୁଣ୍ଡ ଓ ତୀର୍ଥ ଗୁଡ଼ିକ ଏପରି ଅପରିଷ୍କୃତ ଏବଂ ଅବ୍ୟବହାର୍ଯ୍ୟ ହୋଇ ଦୁରବସ୍ଥାରେ ଅବସ୍ଥିତ ହେବ ତେବେ ଜଳର ଦୁଷ୍ପ୍ରାପ୍ୟତା ସଙ୍ଗେ୨ ସ୍ଥାନଟି ଅସ୍ୱାସ୍ଥ୍ୟକର ବୋଲି ସାଧାରଣରେ ଘୃଣିତ ଓ ପରିତ୍ୟକ୍ତ ହେବ ସନ୍ଦେହ ନାହିଁ।

ଭରସା କରୁଁ କମେଟିର ସୁଯୋଗ୍ୟ ମେମ୍ବର ବାବୁ ପ୍ରିୟନାଥ ଚାଟୁର୍ଯ୍ୟା ମହାଶୟଙ୍କର ମନ ଏ ବିଷୟରେ ଆକୃଷ୍ଟ ହେବ।

ଶ୍ରୀ କାଶୀନାଥ ମହାପାତ୍ର

*ଉତ୍କଳ ଦୀପିକା-୧୯୦୧_ପୃଷ୍ଠା ସଂଖ୍ୟା-୩୦୫*

# ମରିଚକୁଣ୍ଡର ମାମଲା

ପାଠକମାନଙ୍କ ସ୍ମରଣ ଅଛି ଯେ ପୁରୀର ମାଜିଷ୍ଟ୍ରେଟ ଗତ ଅଶୋକାଷ୍ଟମୀଦିନ ଭୁବନେଶ୍ୱର ଜଳବିକ୍ରୟ ବନ୍ଦ କରିଦେବାରୁ ପଣ୍ଡା ଓ ଯାତ୍ରିମାନଙ୍କ ମନରେ ଭାରୀ କଷ୍ଟ ହୋଇଥିଲା ଏବଂ ସେ ସମ୍ବନ୍ଧରେ ସେଦିନ ଏକ ତାରସମ୍ବାଦ ଏବଂ ତହିଁଉତ୍ତାରୁ ଆବେଦନ ପତ୍ର ଓଡ଼ିଶାର କମିଶନର ସାହେବଙ୍କ ନିକଟକୁ ପ୍ରେରିତ ହୋଇଥିଲା। ସାହେବ ମହୋଦୟ ପୁରୀଜିଲାର ମାଜିଷ୍ଟ୍ରେଟଙ୍କଠାରୁ କଇଫିୟତ ନେଇ ସମ୍ପ୍ରତି ସେ ମାମଲା ନିଷ୍ପତ୍ତି କରିଅଛନ୍ତି। ଉକ୍ତ ନିଷ୍ପତ୍ତିର ମର୍ମ ଏହି କି ଖୋରଧାର ହାଲ ବନ୍ଦୋବସ୍ତ ଅନୁସାରେ ମରିଚକୁଣ୍ଡ ସହିତ ସିଦ୍ଧେଶ୍ୱର ଏବଂ ମୁକ୍ତେଶ୍ୱର ମନ୍ଦିରମାନ ହରି ସୁବୁଧି ପ୍ରଭୃତି ସେବାଏତମାନଙ୍କର ସେବାସମ୍ପତ୍ତି ଏବଂ ଅଶୋକାଷ୍ଟମୀର ଆୟ ସେହି ସେବାରେ ଖଞ୍ଜା ହୋଇଅଛି। ପୁରୀର ମାଜିଷ୍ଟ୍ରେଟ ସ୍ୱୀକାର କରିଅଛନ୍ତି କି ସେବାଏତମାନେ ଗତ ୩୦/୪୦ବର୍ଷରୁ ସେହି ତୀର୍ଥ ଜଳ ବିକ୍ରୟ କରିଆସୁଅଛନ୍ତି। ମାତ୍ର ସେ କହନ୍ତି କି ତାହା ସୁନୀତି ନୁହେ ଏବଂ କୌଣସି ଧର୍ମଶାସ୍ତ୍ରରେ ସେ ଅଧିକାର ଦିଆଯାଇ ନାହିଁ। ସେ ଉକ୍ତ ମତ ସପକ୍ଷରେ କେତେ ପୁରାଣର ବଚନ ଉଲ୍ଲେଖ କରିଅଛନ୍ତି। ଏଥକୁ ଧର୍ମଶାସ୍ତ୍ରରେ ଏ ପ୍ରଥାର ଉଲ୍ଲେଖ ନ ଥିବାର ସ୍ୱୀକାର କଲେ ମଧ ଯେସ୍ଥଳେ ଏହା ଦୀର୍ଘକାଳରୁ ଚାଲି ଆସୁଅଛି ସେସ୍ଥଳେ ମାଜିଷ୍ଟ୍ରେଟ ସାହେବଙ୍କର ବିଭାଗୀୟ ଆଦେଶଦ୍ୱାରା ହସ୍ତକ୍ଷେପ କରିବାର ସମୟ ବାହାରିଯାଇଅଛି। ବିଶେଷତଃ ଯେସ୍ଥଳେ ଆଗେ ଜଳ ପାଇଲେ ଅଧିକ ପୁଣ୍ୟ ହେବା ବିଶ୍ୱାସରେ ଲୋକେ ଉଚ୍ଚମୂଲ୍ୟ ଦେଇ ଜଳ ନେଉଅଛନ୍ତି ଏବଂ ଯେଉଁମାନେ ମୂଲ୍ୟ ଦେବାକୁ ଅସମ୍ମତ ବା ଅକ୍ଷମ ସେମାନେ କେତେଘଣ୍ଟାଉତ୍ତାରୁ ଜଳ ପାଇବାର ବାଧା ନାହିଁ ସେସ୍ଥଳେ ସେମାନଙ୍କର କାର୍ଯ୍ୟରେ ବାଧା ଦେବାର କିଛି ପ୍ରୟୋଜନ ନାହିଁ। ଅତଏବ ମାନ୍ୟବର କମିଶନର ସାହେବ ମାଜିଷ୍ଟ୍ରେଟଙ୍କର ଜଳବିକ୍ରୟ ନିଷେଧ ଆଜ୍ଞା ଏହି ସର୍ତ୍ତରେ ରହିତ କଲେ କି ସେବକମାନେ କେବଳ ବର୍ଷରେ ଏକଥର ଅର୍ଥାତ୍ ଅଶୋକାଷ୍ଟମୀର ସକାଳବେଳେ କେତେକଘଣ୍ଟାପର୍ଯ୍ୟନ୍ତ ଜଳ ବିକ୍ରୟର ଅଧିକାର ଭୋଗ କରିବେ। ସାହେବ ମହୋଦୟ ଏହା ମଧ ବୁଝାଇ ଦେଉଅଛନ୍ତି ଯେ ହିନ୍ଦୁ ବା ଅହିନ୍ଦୁ ସରକାରୀ କର୍ମଚାରୀଙ୍କର ଏବଂ ଜନ ସାଧାରଣଙ୍କର ଅନ୍ୟ ସକଳସମୟରେ ମରିଚକୁଣ୍ଡ ପାଖକୁ ଯିବାର ବର୍ତ୍ତମାନ୍ ଯେ ଅଧିକାର ଅଛି ତହିଁରେ ସେବକମାନେ ଅଥବା ଅନ୍ୟ କେହି ବ୍ୟକ୍ତି ହସ୍ତକ୍ଷେପ ବା ଆପତ୍ତି କରିପାରିବେ ନାହିଁ ସିଦ୍ଧେଶ୍ୱର, ମୁକ୍ତେଶ୍ୱର ପରଶୁରାମେଶ୍ୱର, ରାଜରାଣୀ, ଭାସ୍କରେଶ୍ୱର, ବ୍ରହ୍ମେଶ୍ୱର ଏବଂ ଅନ୍ୟାନ୍ୟ ମନ୍ଦିର ଯାହା କି ସରକାରଙ୍କ ପକ୍ଷରୁ ମରାମତ ହୋଇଅଛି ସେ ସମସ୍ତ ମନ୍ଦିରରେ ପ୍ରବେଶ କରିବାର ଅଧିକାର ବର୍ତ୍ତମାନ ଅଛି। ସେ ଅଧିକାରରେ ହସ୍ତକ୍ଷେପ ନ ହେବା ଏବଂ ସକଳ ଶ୍ରେଣୀର ସରକାରୀ କର୍ମଚାରୀମାନେ ଯେତେବେଳେ ଇଚ୍ଛା ସେ ସବୁମନ୍ଦିରକୁ ଯିବାର କୌଣସି ବାଧା ଦେବାପ୍ରତି ସ୍ଥାନୀୟ ହାକିମମାନେ ଦୃଷ୍ଟି ରଖିବେ।

ବୋଲିବା ବାହୁଲ୍ୟ ଯେ ଉପରଲିଖିତ ଆଦେଶ ନ୍ୟାୟସଙ୍ଗତ ହୋଇଅଛି। ସରକାରୀ ଟଙ୍କା ସମ୍ପ୍ରଦାୟ ବିଶେଷର ଟଙ୍କା ନୁହେଁ ତାହା ସକଳ ସମ୍ପ୍ରଦାୟ ଏବଂ ଧର୍ମାବଲମ୍ବିଙ୍କର ଟଙ୍କା

ଅଟେ। ସୁତରାଂ ସେ ଟଙ୍କାରେ ଯେଉଁ ମନ୍ଦିରାଦି କୀର୍ତ୍ତିର ସଂସ୍କାର ଓ ସୁରକ୍ଷା ହେଉଅଛି ତହିଁରେ କାହାରି ପ୍ରବେଶପ୍ରତି ଅଟକ ରହିବାର ଉଚିତ ନୁହେ।

*ଉତ୍କଳ ଦୀପିକା-୧୯୦୨_ପୃଷ୍ଠା ସଂଖ୍ୟା-୩୮୮*

ମହାଶୟ!

ନିମ୍ନଲିଖିତ ବିଷୟଟି ଭବଦୀୟ ପତ୍ରୀକ ପାର୍ଶ୍ୱରେ ସ୍ଥାନଦାନ କରି ଅନୁଗୃହୀତ କରିବେ।

ଭୁବନେଶ୍ୱର ପୂର୍ବେ ଯଜାତିକେଶରୀ ଏବଂ ତଦୀୟ ସୁପୁତ୍ର ଲଲାଟେନ୍ଦ୍ର କେଶରୀଙ୍କ ଦ୍ୱାରା ଶିଳ୍ପ ସୌଷ୍ଟବ ପୂର୍ଣ୍ଣ ସୁତୁଙ୍ଗ ମନ୍ଦିରାବଳୀ ସ୍ଥାପନା ଯୋଗୁଁ ସର୍ବଥା ଶ୍ରୀସମ୍ପନ୍ନ ହୋଇ ଦେଶାନ୍ତରସ୍ଥ ଦର୍ଶକମଣ୍ଡଳୀର ଚିତ୍ତାକର୍ଷକ ହୋଇଥିଲା। ସମ୍ପ୍ରତି ଶତମୁଖରେ ସୁଦ୍ଧା ତାହାର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ, ଜୀର୍ଣ୍ଣତା ଲଭିସୁଦ୍ଧା ମନ୍ଦିରଶ୍ରେଣୀ ଭାରତୀୟ ଅଧୁନାତନ ମନ୍ଦିରବୃନ୍ଦରୁ ସ୍ଥପତିକାର୍ଯ୍ୟ କୁଶଳତା ଯୋଗୁଁ ଶ୍ରେଷ୍ଠତମ।

"ତଦେବରୂପଂ ରମଣୀୟତାୟାଃ
ପ୍ରରିକ୍ଷଣଂ ଯନ୍ନିବତାଂ ବିଧତ୍ତେ"।

ଅର୍ଥାତ୍, ଶୋଭନାକୃତିକୁ ଯେତେଥର ଦେଖିବ ତେତେବାର ତାହାର ନୂତନତ୍ୱ ପ୍ରତୀତି ହେବ। ଏହିରୂପ ଐତିହାସିକ ବର୍ଣ୍ଣନ ତଥ୍ୟ ତାଭିନ୍ନ ପୌରାଣିକ ବର୍ଣ୍ଣନା ଭିନ୍ନରୂପ। ଏକାମ୍ର ପୁରାଣରେ (ତତ୍ରତ୍ୟ କ୍ଷେତ୍ର ମାହାତ୍ମ୍ୟରେ) ଉଲ୍ଲେଖ ଅଛି ଯେ ବିଭିନ୍ନ ଇନ୍ଦ୍ରବରୁଣାଦି ଦେବମାନେ ସେ ସ୍ଥାନ ସଦାଶିବ ବସତିଯୋଗୁଁ ପବିତ୍ରତମ ମଣି ସେଠାରେ ବିଶ୍ୱକର୍ମା (ଦେବଶିଳ୍ପି)ଙ୍କୁ ଆଦେଶ ଦେଇ ଗୋଟିଏ୨ ସୁନ୍ଦର ମନ୍ଦିର ତଡ଼ାଗ ଉପବନାଦି କରାଇ ତହିଁରେ ଶିବମୂର୍ତ୍ତି ସ୍ଥାପନାପୂର୍ବକ ବ୍ରହ୍ମାଦି ଋଷିବୃନ୍ଦଦ୍ୱାରା ପ୍ରତିଷ୍ଠାନନ୍ତର ପୂଜା କରିଥିଲେ। ସେଠାରେ ଆହୋରାତ୍ରିକ ମାତ୍ର ବସତି କାଶୀବାସ ଏକକୋଟୀ ଦିନରୁ ଶ୍ରେଷ୍ଠତମ (ଧର୍ମବିଷୟରେ)। ଧର୍ମାର୍ଜନ କରିବା ବିଷୟରେ ଏହାହିଁ ମର୍ତ୍ତ୍ୟ ବୈକୁଣ୍ଠ ଅବଶ୍ୟ ଭକ୍ତ୍ୟନୁରୁପ।

ପୁନରପି ସାମ୍ପ୍ରତିକ ନବଶିକ୍ଷିତ ପଦବାଚ୍ୟମାନଙ୍କର ଜଳବାୟୁ ପ୍ରଧାନ ସ୍ଥାନହେତୁ, ମୁଖ୍ୟତଃ ଶିଳ୍ପ ଚାତୁର୍ଯ୍ୟ ଦିଦୃକ୍ଷାର ଏ ପୁରାତନ ସ୍ଥାନର ପ୍ରଧାନ ଲକ୍ଷ୍ୟ ହୋଇପଡ଼ିଛି। କିନ୍ତୁ ଆହା କାହାରିକୁ ସୁଦୃଷ୍ଟି ତାହାର ମନ୍ଦିର ସଂସ୍କାର ନିବନ୍ଧକ ସୌନ୍ଦର୍ଯ୍ୟ ରକ୍ଷାନିମିତ୍ତ ପଡୁ ନାହିଁ। ଯାହା ସମସ୍ତ ଭାରତ ଗୌରବ ଓ ପୃଥିବୀର ଶ୍ରେଷ୍ଠତମ ଶିଳ୍ପକଳା ପରିପୂର୍ଣ୍ଣ ମନ୍ଦିରମାଳା ବିଭୂଷିତ ହୋଇଥିଲା ସେ ସ୍ଥାନଆଡ଼କୁ କୌଣସି ବଦାନ୍ୟତମର ଦୃଷ୍ଟି ନାହିଁ। ଅକାତରେ ଗୌରବୋପାଧି ଲାଳସାରେ କେତେ୨ ମହାରାଜା ରାଜା ଓ ଧନିକ ନନ୍ଦନମାନେ ଧନଦାନ ବା କରୁନାହାନ୍ତି କିନ୍ତୁ କାହାରି କୃପାଦୃଷ୍ଟି ତାହାଉପରେ ପଡୁ ନାହିଁ। ଯେଉଁ ହିନ୍ଦୁଶାସ୍ତ୍ରରେ 'ତ୍ୟାଗେ ଶ୍ଳାଘାବିପର୍ଯ୍ୟୟଃ' ବୋଲି ଉଲ୍ଲେଖ ଅଛି ତାହାର ଅନୁକରଣ ତ କେହି କରୁ ନାହାନ୍ତି? ନବୀନରୀତି ଅନୁସାରେ ପୁରାତନ ସାତ୍ତ୍ୱିକ ଦାନ ପଦ୍ଧତିଟା ଆଧୁନିକୀ ଆକୃତିରେ ପରିଣତ ଲଭିଅଛି। ଉପାଧିମୂଳକ ଏଆଡ଼େ ଶୁଷ୍କଦାନରୁ କି ପ୍ରୟୋଜନ। ଆଜିକାଲି "ସର୍ବଃସ୍ୱାର୍ଥଂ ସମୀହତେ" ବିନାସ୍ୱାର୍ଥରେ ପଦେ କଥା ବା ଗୋଟିଏ ପଇସା ଛାଡ଼ିବାର ନୁହେଁ। ହେ ହିନ୍ଦୁ ନରପତିଗଣ! ଆପଣମାନଙ୍କ କୃପାଦୃଷ୍ଟି

ସେଇ ସ୍ଥାନକୁ ପଡୁ। ଆପଣମାନଙ୍କ ଭିନ୍ନ ଆଉ କେହି ଦୃଶ୍ୟ ହେଉନାହାନ୍ତି। ନିଜର ସମ୍ମାନ ଓ ଧର୍ମ୍ମ ଉନ୍ନତିପ୍ରତି ଇଚ୍ଛା ଥିଲେ ସେଠାରେ ପ୍ରତ୍ୟେକେ ଗୋଟିଏ୨ ମନ୍ଦିର ସଂସ୍କାର ଭାର କରାଇ କରି ସ୍ୱକୀୟ ଯଶୋବିସ୍ତାର କରାନ୍ତୁ। ଏଠାରେ ଗୋଟିଏ ପଇସା ବ୍ୟୟ କଲେ କୋଟୀଗୁଣରେ ଲଭିବେ। ହେ ହିନ୍ଦୁବଂଶଜ ଦାନଶୌଣ୍ଡ ଧନିକବୃନ୍ଦ! ଆପଣମାନେ ଆପାତତଃ ସୁନ୍ଦର ପଦବି ଲାଭ ଲୋଭ ପରିତ୍ୟାଗ କରି ପରଲୋକ ସଦ୍‌ଗତି ସାଧକ ତୁଚ୍ଛ ଧନବିନିମୟ ଲଭ୍ୟ କର୍ମ ପରିତ୍ୟାଗ କରନ୍ତୁ ନାହିଁ। ଦେଖନ୍ତୁ ବିଜାତୀୟ ହୋଇ ସୁଦ୍ଧା ପ୍ରାତଃସ୍ମରଣୀୟ ଦୟାମୟ ଉଡ଼ବର୍ଣ୍ଣଙ୍କ କୃପାରୁ ସେ ସ୍ଥାନର କେତେକ ମନ୍ଦିର ପୁଣି ନୂତନତ୍ୱ ଧାରଣ କରି ତାଙ୍କର ନାମକୁ ସ୍ୱର୍ଣ୍ଣାକ୍ଷରେ ନିଜଦେହରେ ଅଙ୍କିତ କରିଅଛି। ଆପଣମାନେ ସବୁ ଦେଖି ଚାହିଁ ସୁଦ୍ଧା ନୀରବ। ନାନାସ୍ଥାନରେ ସଭାସମିତି ହେଉଅଛି କିନ୍ତୁ କୌଣସିଠାରେ କେହି ଜଣେ ପ୍ରତ୍ନ ଶିଳ୍ପରକ୍ଷାର କୌଣସି ଉପାୟ ବିଷୟରେ ପ୍ରସ୍ତାବ କରୁ ନାହିଁ। ଦିଲ୍ଲୀ ଦରବାରରେ ରାଜଭକ୍ତି ପ୍ରଦର୍ଶନାର୍ଥ କେତେ ଟଙ୍କା ବା ବ୍ୟୟ ନ ହେଲା କିନ୍ତୁ ଧର୍ମକର୍ମ୍ମଆଡ଼କୁ ଦାନ ବା ମନ କାହାରି ଦେଖାଯାଉ ନାହିଁ।

କେତେପ୍ରକାର ବା ଅର୍ଥସଂଗୃହୀତ ନ ହେଉଛି କିନ୍ତୁ କେହି ଜଣେ ସ୍ୱଦେଶବତ୍ସଳ ଏଥିନିମିତ୍ତ ଅର୍ଥସଂଗ୍ରହ କରୁ ନାହାନ୍ତି (ଅବଶ୍ୟ ସ୍ୱନାମଧନ୍ୟ ଲୋଭ ବିରହିତ ପ୍ରତିଭାଶାଳୀ ଲୋକ) ଯେକି ନିଜର ସ୍ୱାର୍ଥତ୍ୟାଗ କରି ନିଜର ବାଗ୍ମିତା ଓ ବୁଦ୍ଧି ବଳରେ ଲୋକଙ୍କୁ ପ୍ରବର୍ତ୍ତିତ କରି କାର୍ଯ୍ୟ ସାଧନ କରିପାରିବେ। ପୂନରପି ଧର୍ମ୍ମକର୍ମରେ ପ୍ରବୃତ୍ତ ଜନ୍ମାଇବା ଲୋକର ପୁଣ୍ୟାଂଶ ଯଥେଷ୍ଟ।

ପରିଶେଷରେ ନିବେଦ୍ୟ ଏହି ଯେ ସମସ୍ତ ହିନ୍ଦୁକୁଳୋଦ୍ଭବ ଦେଶହିତୈଷୀ ଜନମାନେ ଏ କାର୍ଯ୍ୟ ପ୍ରତି ଯଥାଶକ୍ତି ଦାନ କରି ସ୍ୱକୀୟ ଜାତୀୟ ଶିଳ୍ପର ସମ୍ମାନ ରକ୍ଷାପୂର୍ବକ ଜଗଦୀଶଙ୍କର ଅଶେଷାଶୀର୍ବାଦଭାଜନ ହେଉନ୍ତୁ। "ଦାତାଶତ ଜୀବତୁ"।

"ଯଦ୍ଦଦାତି ଯଦଶ୍ନାତିତଦେବ ଧନିତାଂ ଧନଂ"
"ଉପାର୍ଜିତସ୍ୟ ବିତ୍ତସ୍ୟ ତ୍ୟାଗଏବ ହି ରକ୍ଷଣଂ
ଇଡ଼ାଗୋଦରସଂସ୍ଥାନାଂ ପରୀବାହଇବାମ୍ଭସାଂ"

ଯାଜପୁର ସ୍କୁଲ
ଇତ୍ୟନଂ ପଲ୍ଲବିତେଜ୍।
ତା ୨୫/୪/୦୩
ତ..... ନିବାସୀ ଶ୍ରୀଗଦାଧର ରଥଶର୍ମ୍ମା
ହେଡ଼: ପଣ୍ଡିତ
*ଉତ୍କଳ ଦୀପିକା-୧୯୦୩, ପୃଷ୍ଠା ସଂଖ୍ୟା-୧୮୫*

# ଶ୍ରୀ ଲିଙ୍ଗରାଜଙ୍କ ସେବା ବିଶୃଙ୍ଖଳା

ଭୁବନେଶ୍ୱର ଓଡ଼ିଶାର ତୀର୍ଥସମୂହ ମଧ୍ୟରେ ଗୋଟିଏ ପ୍ରଧାନ ତୀର୍ଥ। ଏହା ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କ କ୍ଷେତ୍ର ଓ ଜଗଦ୍ବିଖ୍ୟାତ। ପୁରୀ ଜଗନ୍ନାଥ କ୍ଷେତ୍ର ପରି ଏଠା ଅନ୍ନପ୍ରସାଦ ଅବାରିତଭାବେ ସର୍ବସାଧାରଣ ହିନ୍ଦୁଙ୍କ ଗ୍ରହଣୀୟ। ସେବା ସମ୍ବନ୍ଧେ ପୁରୀକ୍ଷେତ୍ର ପ୍ରଥମ ଓ

ଭୁବନେଶ୍ୱରକ୍ଷେତ୍ର ଦ୍ୱିତୀୟ ସ୍ଥାନ ଅଧିକାର କଲେହେଁ ମନ୍ଦିରସଂଖ୍ୟା ଏବଂ କାରୁକାର୍ଯ୍ୟ ଓ ପ୍ରାକୃତିକ ଦୃଶ୍ୟ ହେତୁ ଏହା ପୁରୀକୁ ବଳିପଡ଼ିବା ଅତୁକ୍ତି ନୁହେଁ। ଏହି ମନ୍ଦିର ସଂରକ୍ଷଣ ଏବଂ ସେବାପରିଚାଳନ ବିରୁଦ୍ଧେ ମତ ଉତ୍କଳଦୀପିକାରେ ପ୍ରକାଶିତ ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ପତ୍ର ପାଠକରି ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହୋଇ ଅଛୁଁ। ବୋଧ କରୁ ଓଡ଼ିଶାବାସୀ ପାଠକମାତ୍ରେ ଅତ୍ୟନ୍ତ ଦୁଃଖିତ ହୋଇଥିବେ। ପ୍ରକୃତରେ ଉତ୍କଳବାସୀ କେଉଁ ସ୍ୱଦେଶାନୁରାଗୀ ଓ ସାଧାରଣ ହିତୈଷୀ ବ୍ୟକ୍ତି ସ୍ୱଦେଶର ଗୋଟିଏ ପ୍ରଧାନ କୀର୍ତ୍ତି ଓ ତୀର୍ଥର ଦୁରବସ୍ଥା ଶୁଣି ମର୍ମ୍ମାନ୍ତିକ ଚିନ୍ତା ଓ କ୍ରୋଧରେ ବିଚଳିତ ନ ହୋଇ ରହିପାରିବ? ଆଚାର୍ଯ୍ୟ ମହାଶୟ ଏ ପତ୍ରିକାର ପାଠକମାନଙ୍କଠାରେ ଅପରିଚିତ ନୁହନ୍ତି। ସେପରି ଉଚ୍ଚପଦସ୍ଥ ସ୍ୱଦେଶଭକ୍ତ ଉଲ୍ଲିଖିତପତ୍ରରେ ଯେଉଁ ଗୁରୁତର ଅଭିଯୋଗମାନ ଆଗତ କରିଅଛନ୍ତି ସେଥିର ଅବିଶ୍ୱାସ କରିବାର କୌଣସି କାରଣ ଦେଖୁ ନାହୁଁ ବରଂ ଅନ୍ୟାନ୍ୟ ସୂତ୍ରରେ ଯାହା ଶୁଣାଯାଏ ତଦ୍ଦ୍ୱାରା ତାହା ସମର୍ଥିତ ହେବା ବୋଲାଯିବ। ତାହାଙ୍କ ଲେଖ ଅନୁସାରେ ଭୁବନେଶ୍ୱର ମନ୍ଦିର କମିଟିର ଶିଥିଳତା ଓ ଅମନୋଯୋଗ ସେହି ମନ୍ଦିର ରକ୍ଷଣାବେକ୍ଷଣ ଓ ସେବା ପରିଚାଳନ ସମ୍ବନ୍ଧୀୟ ସମସ୍ତ ତ୍ରୁଟିର ମୂଳକାରଣ ଅଟେ ଏବଂ ଏହା ଅସ୍ୱୀକାର କରିବାର ବାଟ ଦେଖୁନାହୁଁ। ଆମ୍ଭେମାନେ ଜାଣୁ ଯେ ଭାରତ ଗଭର୍ଣ୍ଣମେଣ୍ଟଙ୍କର ଏ ମନ୍ଦିରପ୍ରତି ସର୍ବଦା ଶୁଭଦୃଷ୍ଟି ରହିଅଛି ଏବଂ ଏ କୀର୍ତ୍ତି ରକ୍ଷା ନିମନ୍ତେ ଯେମନ୍ତ ଗଭର୍ଣ୍ଣମେଣ୍ଟ ସାଧାରଣ ଅର୍ଥ ବ୍ୟୟ କରିବାକୁ ପ୍ରସ୍ତୁତ ତେମନ୍ତ ଗଭର୍ଣ୍ଣର ଜେନେରଲଠାରୁ ବିଭାଗୀୟ ଉଚ୍ଚ କର୍ମଚାରିଗଣ ସୁଯୋଗ ପାଇଲେ ଏହା ଦର୍ଶନ କରିବାକୁ ଛାଡ଼ନ୍ତି ନାହିଁ। ପ୍ରଚଳିତ ରାଜନୀତି ଅନୁସାରେ ଭାରତର ବିଭିନ୍ନ ଧର୍ମ ସଂକ୍ରାନ୍ତ ବ୍ୟାପାରରେ ହସ୍ତକ୍ଷେପ କରିବା ଗଭର୍ଣ୍ଣମେଣ୍ଟଙ୍କ କର୍ତ୍ତବ୍ୟ ନୁହେ ବୋଲି ସେସମସ୍ତ ବୁଝାସୁଝା ନିମନ୍ତେ ଭିନ୍ନ୨ କମିଟି ଗଠିତ ହୋଇ ସେମାନଙ୍କୁ ଦେବାନୀ ଅଦାଲତ ଅଧୀନ ରଖା ଯାଇଅଛି। କିନ୍ତୁ ଦେବାନୀ ଅଦାଲତର ଭାର ଜିଲା ଜଜ୍‌ଙ୍କୁ ଅର୍ପିତ ହୋଇଅଛି ଏବଂ ଜିଲ୍ଲା ଜଜ୍‌ମାନେ ଗଭର୍ଣ୍ଣମେଣ୍ଟ କର୍ମଚାରୀ। ଅତଏବ ପ୍ରତ୍ୟକ୍ଷ ନ ହେଉ ପଛକେ ପରୋକ୍ଷଭାବେ ଗବର୍ଣ୍ଣମେଣ୍ଟଙ୍କ ଦାୟିତ୍ୱ ରହିଅଛି ଏବଂ ଯଦ୍ୟପି କି ନାନାକାରଣବଶତଃ ମନ୍ଦିରସମ୍ବନ୍ଧୀୟ ଆଇନ ଓ ଜନସାଧାରଣଙ୍କ ପୁନଃ ପ୍ରାର୍ଥନା ଏବଂ ଗଭର୍ଣ୍ଣମେଣ୍ଟଙ୍କ ଇଚ୍ଛା ସତ୍ତ୍ୱେ ସଂଶୋଧନ ହୋଇପାରୁନାହି ଓ ସେହେତୁ ଦେବସେବା ସମ୍ପତ୍ତି ମାରଫତଦାରଙ୍କ ସହିତ ସେ ସମ୍ପର୍କୀୟ କମିଟିମାନେ ସୁବାଟରେ ଚାଲିବାପ୍ରତି ସମୁଚିତ ଦୃଷ୍ଟି ରହିପାରୁ ନାହିଁ ତଥାଚ ଗଭର୍ଣ୍ଣମେଣ୍ଟ ଇଚ୍ଛା କଲେ ଯେମନ୍ତ ପୁରୀ ମନ୍ଦିରରେ ମାନେଜର ରଖାଇ ସୁବ୍ୟବସ୍ଥା କରିଦେଇଅଛନ୍ତି ଭୁବନେଶ୍ୱର ମନ୍ଦିର ସମ୍ବନ୍ଧେ ଯେପରି କିଛି କରିବାକୁ ଅକ୍ଷମ ନୁହନ୍ତି। ଜିଲା ଜଜ ସାହେବଙ୍କର ମନ୍ଦିର କମିଟି ଉପରେ କର୍ତ୍ତୃତ୍ୱ ଥିବାସ୍ଥଳେ ସେ ଇଚ୍ଛା କଲେ କମିଟି କାର୍ଯ୍ୟ ପରିଦର୍ଶନ ଏବଂ ତ୍ରୁଟି ନିବାରଣ କରିବାକୁ ଅକ୍ଷମ। ଅତଏବ ଗଭର୍ଣ୍ଣମେଣ୍ଟ ଏବଂ ଜିଲା ଜଜ ସାହେବଙ୍କୁ ଭୁବନେଶ୍ୱର ମନ୍ଦିରସମ୍ବନ୍ଧେ ଆଗତ ହୋଇଥିବା ଗୁରୁତର ଅଭିଯୋଗମାନଙ୍କର ବିହିତ ତଦନ୍ତ ଏବଂ ପ୍ରତିବାଦର ପ୍ରଦାନ କରିବା କାରଣ ଏକାନ୍ତ ପ୍ରାର୍ଥନା କରୁଅଛୁଁ। କମିଟି ମେମ୍ବରମାନେ

ସ୍ଥାନୀୟ ଭଦ୍ରଲୋକ ଏବଂ ଆପଣା ଗୁରୁଦାୟିତ୍ୱ ଅବଶ୍ୟ ବୁଝୁଅଛନ୍ତି। ନିଜକାର୍ଯ୍ୟର ତ୍ରୁଟି ଗୁହାରି ହେଉଥିବାସ୍ଥଳେ ସେମାନଙ୍କର ମଧ୍ୟ ନିଶ୍ଚିନ୍ତ ରହିବା ଭଲ ନୁହେ। ସେମାନେ କର୍ତ୍ତବ୍ୟ ସାଧନରେ ଯତ୍ନବାନ୍ ହେଲେ କାହାରି କିଛି କହିବାର ବାଟ ରହିବ ନାହିଁ।

*ଉତ୍କଳ ଦୀପିକା-୧୯୧୬_ପୃଷ୍ଠା ସଂଖ୍ୟା-୧୬୩*

## ଭୁବନେଶ୍ୱର ମନ୍ଦିର

ଭୁବନେଶ୍ୱର ମନ୍ଦିର ଭାରତରେ ବିଖ୍ୟାତ ବର୍ଷମଧ୍ୟରେ ଅନେକ ସମୟରେ ଏଠାକୁ ଯାତ୍ରୀ ଓ ଦର୍ଶକମାନଙ୍କର ସମାଗମ ହୋଇଥାଏ। ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମହାପ୍ରଭୂଙ୍କର ଯେପରି ଭୋଗରାଗର ବନ୍ଦୋବସ୍ତ ଅଛି ଏଠାରେ ମଧ୍ୟ ସେହିପରି ଏକା କାର୍ଯ୍ୟ ଚଳିଆସୁଥିଲା। ଯେଉଁ ସମୟରେ ଦେଉଳରେ ପରୀକ୍ଷା ଥିଲେ ସେ୍ ସମୟରେ କୌଣସି ପ୍ରକାରେ ନିୟମିତ ଭୋଗ ଯାନିଯାତ୍ରା ହେଉଥିଲା। ପରୀକ୍ଷାଙ୍କ ମୃତ୍ୟୁପରେ ଦେଉଳକମିଟି କ୍ରମାନ୍ୱୟରେ ଅମୀନ ମୁକରର କରି କାର୍ଯ୍ୟ ଚଳାଉଅଛନ୍ତି। ଆମ୍ଭେମାନେ ଶୁଣି ଦୁଃଖିତ ହେଲୁଁ ଯେ ପରୀକ୍ଷାଙ୍କ ମୃତ୍ୟୁ ସମୟଠାରୁ ଆଜଅବଧି ଅନେକ ବିଶୃଙ୍ଖଳା ଘଟି କେତେକ ସମୟରେ ଦୈନିକ ଭୋଗ ଓ ଯାନି ଯାତ୍ରା ମଧ୍ୟ ବନ୍ଦ ହୋଇଯାଇଥିଲା ଏବଂ ପୂର୍ବେ ଯେଉଁ ସବୁ ଭୋଗ ହେଉଥିଲା ତାହା ସବୁ କ୍ରମେ୨ ବନ୍ଦ ହୋଇ ନାମମାତ୍ର ଭୋଗ ହେଉଅଛି। ଉକ୍ତ ମନ୍ଦିର ନିୟମ ଏହି ଯେ ପ୍ରତିବର୍ଷ କନ୍ୟାସଂକ୍ରାନ୍ତିଦିନ ମନ୍ଦିରର ଭୋଗ ବିଷୟରେ ବର୍ଷକ ନିମନ୍ତେ ବନ୍ଦୋବସ୍ତ ହୋଇ କାର୍ଯ୍ୟ ଚାଲୁଥାଏ। ଆଜିକି ଦି୧୫ନ ହେବ ଗତ କନ୍ୟାସଂକ୍ରାନ୍ତିଦିନ ଭୋଗର ନୂତନ ବନ୍ଦୋବସ୍ତ ହେବାରୁ କମିଟିମେମ୍ବରମାନଙ୍କ ତତ୍ତ୍ୱାବଧାନରୁ ଉକ୍ତ ଦିନ ଭୋଗ ସମ୍ପୂର୍ଣ୍ଣରୂପେ ବନ୍ଦ ହୋଇ କ୍ରମେ ସାୟଂକାଳ ଉପସ୍ଥିତ ହେଲା। ସେଠାରେ ଯେଉଁମାନେ ମନ୍ଦିରକମିଟି ତରଫରୁ କର୍ମଚାରୀ ନିଯୁକ୍ତ ଥାଇ ରାତ୍ରଦିନ ମନ୍ଦିର ଅର୍ଥ ଶୋଷଣ କରୁଅଛନ୍ତି ସେମାନେ ସେ ବିଷୟରେ କ'ଣ କଲେ ସମ୍ପୂର୍ଣ୍ଣରୂପେ ବୁଝିପାରିଲୁ ନାହିଁ। କିନ୍ତୁ ସ୍ଥାନୀୟ ଓ ଆଗତ ଭଦ୍ରଲୋକ କେତେଜଣ ଏବଂ ପୁଲୀସ କର୍ମଚାରୀଙ୍କ ଯତ୍ନରୁ ବହୁକଷ୍ଟରେ ଠାକୁରଙ୍କ ସକାଳଧୂପ ଠିକ୍ ସନ୍ଧ୍ୟା ସମୟରେ ଅନୁଷ୍ଠିତ ହୋଇଥିଲା। ଆମ୍ଭେମାନେ ପଚାରୁ ଯେଉଁ କର୍ମଚାରିମାନେ ମନ୍ଦିର ଅର୍ଥରେ ପୋଷିତ ସେମାନଙ୍କର ସେ ସମୟକୁ ସକାଳ ଧୂପ ବାକୀ ଥିଲା କି ଭୋଗମଣ୍ଡପ ଶେଷ ହୋଇଥିଲା? ତହିଁ ଆରଦିନ କୌଣସି୨ କର୍ମଚାରୀଙ୍କୁ ପଚାରିବାରୁ ସେମାନେ କହିଲେ କମିଟିମେମ୍ବରମାନଙ୍କ ନିକଟକୁ ରିପୋଟ ପଠାଇଅଛୁଁ। ସେମାନେ ଯେଉଁପରି ଆଦେଶ ଦେବେ ତଦନୁସାରେ କାର୍ଯ୍ୟ କରିବୁଁ। ଶ୍ରୀ ଲିଙ୍ଗରାଜଙ୍କ ଅନୁଗ୍ରହରୁ ତାଙ୍କ ନିଜ ଦୁଃଖ ବୁଝିବାକୁ ଯେଉଁ ୩ଜଣ ମେମ୍ବର ମୁକରର ହୋଇଅଛନ୍ତି ସେମାନେ ଠିକ୍ କାକୁଡ଼ିପରି ମିଳି ରହିଥାନ୍ତି ଏବଂ ଭିତରେ ଦେଖିଲାବେଳକୁ ତିନିଫାଳ। କାକୁଡ଼ିଟି ଏକ ସ୍ଥାନରେ ଥାଏ କିନ୍ତୁ ମେମ୍ବରମାନେ ତିନିସ୍ଥାନରେ ଥାନ୍ତି ଅର୍ଥାତ୍ ସେ ଦିନ ଜଣେ ଦର୍ପଣୀରେ ଥିଲେ। ପ୍ରତ୍ୟେକମେମ୍ବର ରିପୋଟ ପାଇ କି ପ୍ରତିକାର କଲେ ତାହା ଜଣା ନାହିଁ। ବର୍ତ୍ତମାନ ମେମ୍ବର ଓ ମନ୍ଦିର କର୍ମଚାରିମାନେ ଯେଉଁପରି କାର୍ଯ୍ୟ ଚଳାଉଅଛନ୍ତି ଏହିପରି ଭାବରେ ଆଉ କେତେକବର୍ଷ ଚାଲିଲେ ମନ୍ଦିରର ଓ ମନ୍ଦିରସ୍ଥିତ ଦେବମୂର୍ତ୍ତିମାନଙ୍କର

ଯେ କି ଦଶା ଘଟିବ ତାହା ଆମ୍ଭେମାନେ ଭାବି ପାରୁନାହିଁ। ଆମ୍ଭେମାନେ ପଚାରୁଁ ଭୁବନେଶ୍ୱର ଓ ତନ୍ନିକଟବର୍ତ୍ତି ଗ୍ରାମମାନଙ୍କରେ କଣ ମନ୍ଦିରକାର୍ଯ୍ୟ ବୁଝିବା ଉପଯୁକ୍ତ ଲୋକ କେହି ନାହାନ୍ତି ଯେ ଏପରି ବୈଦେଶିକମାନେ ନିଯୁକ୍ତ ହୋଇ ମନ୍ଦିରର ଅବସ୍ଥା ଶୋଚନୀୟ ହେଉଅଛି। ଆଶା କରୁ କର୍ତ୍ତୃପକ୍ଷ ଏ ବିଷୟରେ ଉଚିତ ସନ୍ଧାନ ନେଇ ପ୍ରତିକାର ବିଧାନଦ୍ୱାରା ସାଧାରଣ ହିନ୍ଦୁଙ୍କର କଥା। ଅନ୍ୟାନ୍ୟ ଦର୍ଶକମାନଙ୍କର ଧନ୍ୟବାଦଭାଜନ ହେବେ।

*୮-ଉତ୍କଳ ଦୀପିକା-୧୯୧୬_ପୃଷ୍ଠା ସଂଖ୍ୟା-୩୬୭*

ଭୁବନେଶ୍ୱରରେ ରାମକୃଷ୍ଣ ମିଶନ

ଓଡ଼ିଶାର ସୁପ୍ରସିଦ୍ଧ ତୀର୍ଥସ୍ଥଳୀ ଭୁବନେଶ୍ୱରଠାରେ ରାମକୃଷ୍ଣ ମିଶନର ଗୋଟିଏ ମଠ ପ୍ରାୟ ଏକ ବର୍ଷହେବ ସ୍ଥାପିତ ହୋଇଅଛି। ରାମକୃଷ୍ଣ ମିଶନର ସନ୍ୟାସୀ ଓ ବ୍ରାହ୍ମଣମାନେ ଭାରତର ନାନା ସ୍ଥାନରେ ଯେ ସବୁ ଲୋକହିତକର କାର୍ଯ୍ୟମାନ କରୁଅଛନ୍ତି ତାହା ପ୍ରାୟ ପ୍ରତ୍ୟେକ ଶିକ୍ଷିତ ଭାରତବାସିଙ୍କୁ ଜଣା। ଯେଉଁଠାରେ ଦୁର୍ଭିକ୍ଷ, ମହାମାରୀ ଓ ଲୋକକ୍ଷୟକାରୀ କୌଣସି ଦୁର୍ଘଟଣା ଉପସ୍ଥିତ ସେଠାରେ ରାମକୃଷ୍ଣ ମିଶନର ଯେତେ ସେବା ଶୁଶ୍ରୁଷା ଓ ସାହାଯ୍ୟ ଭାବେ ଉପସ୍ଥିତ । ଗତବର୍ଷ ଭାଦ୍ର, ଆଶ୍ୱିନ ମାସରେ ଯେତେବେଳେ ଧାନଚାଉଳ ଅଭାବ, ଚାରିଆଡ଼େ ହାହାକାର ପଡ଼ିଗଲା, ସେତେବେଳେ ଲୋକମାନେ ଭୁବନେଶ୍ୱର ମଠଠାରେ ଶତଶତ ମହଣ ଚାଉଳ ଓ ଶତଶତ ବସ୍ତ୍ର ସେହି ଅଞ୍ଚଳର ଦରିଦ୍ରଲୋକଙ୍କୁ ବିତରଣ କରିଥିଲେ। ସେହି ଦିନଠାରୁ ଲୋକମାନଙ୍କର ସେବାଲାଗି ମଠଠାରେ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ଖୋଲି ପ୍ରତିଦିନ ରୋଗିମାନଙ୍କୁ ଔଷଧ ବିତରଣ କରୁଅଛନ୍ତି। ଡାକ୍ତର ଓ ହୋମିଓପାଥିକ ଉଭୟ ପ୍ରକାର ଔଷଧ ସେଠାରେ ଦିଆଯାଏ ଜଣେ ପ୍ରବୀଣ ଡାକ୍ତର ତାଙ୍କର କର୍ମରୁ ଅବସର ଗ୍ରହଣ କରି ଲୋକସେବାଲାଗି ଏହି ମଠରେ ରହି ରୋଗିପରିଚର୍ଯ୍ୟା କାର୍ଯ୍ୟ କରୁଅଛନ୍ତି। ଆଉ ସାଧୁ ସନ୍ୟାସୀ ତ ଅନେକ ଅଛନ୍ତି। ଆମ୍ଭେମାନେ କୌଣସି ସୁତ୍ରରେ ସେଠାକାର ଦାତବ୍ୟ ଚିକିତ୍ସାଳୟର କିଞ୍ଚିତ ବିବରଣ ପ୍ରାପ୍ତ ହୋଇ ଅଛୁଁ। ସାଧାରଣଙ୍କର ଅବଗତନିମିତ୍ତ ପ୍ରକାଶ କଲୁଁ। ଗତ ଜାନୁଆରୀ ମାସରେ ଚିକିତ୍ସାଳୟରୁ ଔଷଧ ନେଇଅଛନ୍ତି ୧୦୧୨ ଜଣ; ସେଥି ମଧ୍ୟରୁ ନୂତନ ରୋଗୀ ୬୬୦ ଜଣ, (ପୁରୁଷ ୪୫୧ ଓ ସ୍ତ୍ରୀ ୨୦୧ ଜଣ) ହାରାହାରି ଦୈନିକ ରୋଗିସଂଖ୍ୟା ୩୨,୬୪ ଜଣ। ଗତ ଫେବ୍ରୁୟାରୀ ମାସରେ ମୋଟ ଲୋକସଂଖ୍ୟା ୧୦୪୦ଜଣ ସେଥିମଧ୍ୟରୁ ନୂତନ ରୋଗୀ ୬୧୧ (ପୁରୁଷ ୩୯୬ ସ୍ତ୍ରୀ ୨୧୫) ହାରାହାରି ଦୈନିକ ରୋଗିସଂଖ୍ୟା ୩୫, ୯୬ ଜଣ। ପ୍ରାୟ ପାଞ୍ଚ କୋଶରୁ ଲୋକମାନେ ଔଷଧ ଲାଗି ଉପସ୍ଥିତ ହେଉଅଛନ୍ତି। ଆଜିକାଲି ଯେ କଠୋର ସମୟ ପଡିଛି ଏବଂ ଲୋକମାନେ ଅର୍ଥାଭାବରୁ ଯେପରି କଷ୍ଟ ପାଉଅଛନ୍ତି ଏବଂ ଖାଦ୍ୟଦ୍ରବ୍ୟର ଅଭାବରୁ ନାନାଦି ରୋଗ ଲୋକସମାଜରେ ପ୍ରବେଶ କରି ଯେପରି ଭୀଷଣ ଓ ମାରାତ୍ମକ ହୋଇ ଉଠୁଅଛି ସେଥିରେ ଏପରି ଗୋଟିଏ ଚିକିତ୍ସାଳୟ ଉପାଦେୟତା ଓ ଆବଶ୍ୟକତା ତା କାହାକୁ ବୁଝାଇଦେବାକୁ ହେବନାହିଁ। ଆହୁରି ମଧ୍ୟ ପାଠକେ ଦେଖିପାରିବେ ଅଳ୍ପଦିନ ହେବ ଆରମ୍ଭ ହୋଇ ଚିକିତ୍ସାଳୟଟି କିପରି ସେହି ଅଞ୍ଚଳର ଲୋକମାନଙ୍କର

ଉପକାରରେ ଆସିଅଛି। ରାମକୃଷ୍ଣ ମିଶନର ପରିଚାଳକମାନେ ସାଧୁ ସନ୍ନ୍ୟାସୀ ଦେଶର ଧନୀ ମହାଜନମାନେ ଲୋକହିତକର କାର୍ଯ୍ୟପାଇଁ ଅର୍ଥ ଓ ସାହାଯ୍ୟ ସେମାନଙ୍କୁ ପ୍ରଦାନ କରିଥାଆନ୍ତି ବୋଲି ସେମାନେ ତାକୁ ନାନା ହିତକର କାର୍ଯ୍ୟରେ ଲଗାଇଥାଆନ୍ତି। ସେମାନେ ଚାରିଆଡୁ ଅର୍ଥ ଓ ଦ୍ରବ୍ୟ ସଂଗ୍ରହ କରି ଓଡ଼ିଶାର ଗୋଟିଏ ପୁଣ୍ୟକ୍ଷେତ୍ରରେ ସର୍ବପ୍ରଥମ ଏହି ଲୋକହିତକର କାର୍ଯ୍ୟ ଆରମ୍ଭ କରିଅଛନ୍ତି। ଆମ୍ଭେମାନେ ଆଶାକରୁଁ ଓଡ଼ିଶାର ଦାନୀ ଓ ସଚ୍ଛଳ ଗୃହସ୍ଥମାନଙ୍କର ଦୃଷ୍ଟି ଏହି କାର୍ଯ୍ୟପ୍ରତି ଆକୃଷ୍ଟ ହେବ ଓ ସେମାନେ ଭାଇମାନଙ୍କର ଉପକାର ଲାଗି ଯଥାଶକ୍ତି ସାହାଯ୍ୟ କରି ଧନ୍ୟ ହେବେ ଓ ଦେଶର ଗୌରବ ରକ୍ଷା କରିବେ।

*ଉତ୍କଳ ଦୀପିକା-୧୯୨୦_ପୃଷ୍ଠା ସଂଖ୍ୟା-୧୫୨*

## ଭୁବନେଶ୍ୱର

ଗତବର୍ଷ ରଥଯାତ୍ରାରେ ୩/୪ ଜଣ ଲୋକ ମରି ଯାଇଥିଲେ। ଏବେ ଏହାର ଅନୁସନ୍ଧାନ କରି ସ୍ଥାନୀୟ କର୍ତ୍ତା ରିପୋର୍ଟ ଦେବାରୁ ଏଠାର ପ୍ରାୟ ୫୦ ଜଣ ଗରିବଲୋକଙ୍କୁ ତାଙ୍କ ଘର ବା ବାରଣ୍ଡା ଭାଙ୍ଗି ଉଠାଇଦେବାକୁ ହୁକୁମ ହୋଇଛି। ଭୁବନେଶ୍ୱର ସାଧାରଣତରଫରୁ ପ୍ରତିବାଦସଭାରେ ଗରିବଲୋକଙ୍କ ପ୍ରତି ସରକାରଙ୍କର ଏହି ଅନ୍ୟାୟ ଓ ଅବିଚାରର ତୀବ୍ର ପ୍ରତିବାଦ କରାଯାଇଅଛି। ପ୍ରତିବାଦସଭାର ନିର୍ଦ୍ଧାରଣମାନ ଅନ୍ୟତ୍ର ପ୍ରକାଶିତ ହେଲା।

*ଉତ୍କଳ ଦୀପିକା-୧୯୨୪_ପୃଷ୍ଠା ସଂଖ୍ୟା-୩୦୬*

## ଭୁବନେଶ୍ୱର ଦେଉଳ

ପୂର୍ବ ସପ୍ତାହରେ ଭୁବନେଶ୍ୱର ଦେଉଳ ମରାମତିସମ୍ବନ୍ଧେ ସରକାରୀ ଇସ୍ତାହାରର ମର୍ମପ୍ରକାଶ କରିଅଛୁଁ। ଭୁବନେଶ୍ୱର ଦେଉଳ ଭାରତବର୍ଷ ମଧ୍ୟରେ ଗୋଟିଏ ପ୍ରଧାନ ପ୍ରାଚୀନକୀର୍ତ୍ତି। ଏହାକୁ ମରାମତିକରି ରକ୍ଷାକରିବା ଦେଶର ପ୍ରଧାନ କର୍ତ୍ତବ୍ୟ। ଏହି ଦେଉଳଟି ଯେ ଗୋଟିଏ କେବଳ ପ୍ରସ୍ତରନିର୍ମିତ ପ୍ରକାଣ୍ଡ ପଦାର୍ଥ ତାହା ନୁହେଁ। ଏହି ଦେଉଳଟିରୁ ଜାତିର ପୂର୍ବଇତିହାସ, ଜାତିର ପୂର୍ବଉନ୍ନତି, ଦେଶର ପୂର୍ବବିଭବ ଏବଂ ଜାତିର ଶିଳ୍ପ ପ୍ରଭୃତି ନାନାବିଷୟ ଜ୍ୱଳନ୍ତ ଅକ୍ଷରରେ ପାଠକରାଯାଏ। ଏପରି କୀର୍ତ୍ତି ନଷ୍ଟ ହୋଇଗଲେ ଦେଶର ପ୍ରଧାନ ଇତିହାସଖଣ୍ଡି ଲୁପ୍ତ ହୋଇଯିବ। ବହୁକାଳରୁ ନାନାପ୍ରକାର କଳ୍ପନା ଜଳ୍ପନା ନାନାପ୍ରକାର ସଭାସମିତି ଓ ବ୍ୟକ୍ତିଗତ ଚିନ୍ତାପରେ ବର୍ତ୍ତମାନ ଏହା ଏକ ପ୍ରକାର ସାଫଲ୍ୟଅବସ୍ଥାରେ ଉପସ୍ଥିତ ହୋଇଅଛି। ଆମ୍ଭମାନଙ୍କର ଦେଶର ଜଣେ ଉଦାରଚେତା ଓ ମଧ୍ୟ ସ୍ୱଦେଶପ୍ରେମୀ ଏମାର ମଠର ମହନ୍ତ ଅଗ୍ରସର ହୋଇ ଏହି କାର୍ଯ୍ୟରେ ମନୋଯୋଗୀ ହେବାରୁ ସରକାର ତାହାଙ୍କ କଥାରେ ବିଶ୍ୱାସ ଓ ନିର୍ଭରକରି ସାହାଯ୍ୟ ଦେବାକୁ ପ୍ରସ୍ତୁତ ହୋଇଅଛନ୍ତି। ସରକାରଙ୍କ ସାହାଯ୍ୟ ଏବଂ ମହନ୍ତ ମହୋଦୟଙ୍କର ସାହାଯ୍ୟରେ କାର୍ଯ୍ୟଟି ଆରମ୍ଭ ହେବାର ସ୍ଥିର ହୋଇଯାଇଅଛି। ଦେଉଳଟି ହିନ୍ଦୁ ଦେବତାଙ୍କର ଏବଂ ଏହିସ୍ଥାନଟି ଗୋଟିଏ ପ୍ରଧାନ ହିନ୍ଦୁ ତୀର୍ଥସ୍ଥାନ। ହିନ୍ଦୁ ସମାଜର ପ୍ରଧାନ କର୍ତ୍ତବ୍ୟ-ଏହି ପୀଠସ୍ଥାନର ମର୍ଯ୍ୟାଦା ସ୍ଥାୟୀ ରଖିବା। ଅବଶ୍ୟ ବହୁଅର୍ଥର ପ୍ରୟୋଜନ ଥିବା ଏବଂ

କେହି ଏତେ ଅର୍ଥଦାନ କରିବାକୁ ସକ୍ଷମନଥିବା ମଧ୍ୟ ସର୍ବ ସାଧାରଣ ହିନ୍ଦୁ ମାନଙ୍କଠାରୁ ଏତେ ଅର୍ଥ ସଂଗୃହୀତ ହୋଇପାରିବ। ସମ୍ବନ୍ଧେ ଅନେକଙ୍କର ନାନାପ୍ରକାର ସନ୍ଦେହ ହେଉଥିବାରୁ କେହି କେହି କିଛି କିଛି ଅର୍ଥ ସାହାଯ୍ୟ କରିବାକୁ ଇଚ୍ଛୁକଥିଲେ ମଧ୍ୟ କାର୍ଯ୍ୟସାଧନ ସମ୍ବନ୍ଧେ ବିଶ୍ୱାସ ହେଉନଥିବାରୁ ଯେ ଯାହାର ଅଳ୍ପ ସାହାଯ୍ୟ ଦେବାକୁ ରାଜିହେଉ ନ ଥିଲେ। ବର୍ତ୍ତମାନ କାର୍ଯ୍ୟଟି ଆରମ୍ଭ ହେଲାପର ସେ ପ୍ରକାର ସନ୍ଦେହ ବା ଆଶଙ୍କାର କାହାରି କାରଣ ନଥିବ ଏଣିକି ଯେ ଯାହାର ଯଥାଶକ୍ତି ଦାନକଲେ ମଧ୍ୟ ବିଶେଷ ଉପକାରହେବ। କାର୍ଯ୍ୟତତ୍ତ୍ୱାବଧାନର ଭାର ସରକାରଙ୍କର ପ୍ରାଚୀନ କୀର୍ତ୍ତିରକ୍ଷା ବିଭାଗର କର୍ତ୍ତୃପକ୍ଷମାନେ ତତ୍ତ୍ୱାବଧାନ ନେବେ ଓ ମଧ୍ୟ ସରକାରୀ ଓ ବେସରକାରୀ ବିଶିଷ୍ଟ ବ୍ୟକ୍ତିଙ୍କଦ୍ୱାରା କମିଟି ଗଠନହୋଇ ସେହି କମିଟିଙ୍କ ଉପରେ ଭାରରହିବ। ପୁରୀ ଜିଲାର କଲେକ୍ଟର ମହୋଦୟ ସେକ୍ରେଟରୀ ହେବେ। ଏପରିସ୍ଥଳେ ଯେ ଯାହା ଦାନ କରିବେ। ତାହା ଅପବ୍ୟୟର କୌଣସି ଆଶଙ୍କା ନାହିଁ। ହିନ୍ଦୁ ସମାଜ ଏବେ ଅଗ୍ରସର ହୁଅ। ନିଜର ପୂର୍ବପୁରୁଷଙ୍କର ପ୍ରାଚୀନ କୀର୍ତ୍ତି ପ୍ରତି ଦୃଷ୍ଟି ପାତକର। ଯେ ଯାହାର କର୍ତ୍ତବ୍ୟସାଧନରେ ମନୋଯୋଗୀ ହୁଅ। ଯେ ଯାହାର ଶକ୍ତି ଅନୁସାରେ ଏହି ପ୍ରାଚୀନ କୀର୍ତ୍ତିରକ୍ଷା ନିମନ୍ତେ କିଛି କିଛି ସାହାଯ୍ୟ ପୁରୀର କଲେକ୍ଟର ଠିକଣାକୁ ପଠାଇ ଦିଅ।

*ଉତ୍କଳ ଦୀପିକା-୧୯୨୫, ପୃଷ୍ଠା ସଂଖ୍ୟା-୩୧୬*

## ଭୁବନେଶ୍ୱର ମନ୍ଦିର

ଭୁବନେଶ୍ୱର ଦେଉଳ ମରାମତି କାର୍ଯ୍ୟ ଚାଲିଅଛି। ବହୁକାଳପର୍ଯ୍ୟନ୍ତ କେତେ ଆନ୍ଦୋଳନ, ଆଲୋଚନା, ସଭା ସମିତି ହୋଇ ପରିଶେଷରେ ସରକାରଙ୍କ ସହାନୁଭୂତି ହେତୁ ଏହି କାର୍ଯ୍ୟଟି ଆରମ୍ଭ ହେଲା। ଭୁବନେଶ୍ୱରପରି ଦେଉଳ ଭୁବନରେ ଆଉ କେଉଁଠାରେ ନାହିଁ। ଭୁବନେଶ୍ୱରର କାରୁକାର୍ଯ୍ୟ ଓ ଶିଳ୍ପକଳା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଏବଂ ଏହା ସମ୍ପୂର୍ଣ ଉତ୍କଳର ଶିଳ୍ପକାର ମାନଙ୍କର ଅମିଶ୍ରତ ଶିଳ୍ପ ଚାତୁରୀର ନିଦର୍ଶନ। ବର୍ତ୍ତମାନ ଯେଉଁ ଇଞ୍ଜିନିୟର ମହୋଦୟ ଏହି କାର୍ଯ୍ୟର ଭାର ଗ୍ରହଣକରି ମରାମତି କାର୍ଯ୍ୟ ଚଳାଉଅଛନ୍ତି, ତାଙ୍କର ମତ ଯେ ବର୍ତ୍ତମାନ ସମୟରେ ୨୦ କୋଟି ଟଙ୍କା ବ୍ୟୟହେଲେ ମଧ୍ୟ ଏପରି ଗୋଟିଏ କାର୍ଯ୍ୟ ହେବା ଅସମ୍ଭବ। ଏହି ଦେଉଳ ନିର୍ମାଣ ସମୟରେ ଉତ୍କଳଦେଶ କେତେଦୂର ସମୃଦ୍ଧିଶାଳୀ ଥିଲା ଏବଂ ଉତ୍କଳର କାରିଗରମାନେ ଶିଳ୍ପ ବିଦ୍ୟାରେ କେତେଦୂର ନିପୁଣ ଥିଲେ ତାହା ସହଜରେ ପାଠକମାନେ ଅନୁମାନ କରିପାରିବେ। ଏ ଜିନିଷଟି ନଷ୍ଟ ହୋଇଗଲେ ଉତ୍କଳରେ ଗୋଟିଏ ପ୍ରଧାନ କୀର୍ତ୍ତି ଲୁପ୍ତ ହୋଇଯାନ୍ତା। ସରକାର ଏହାର ସଂରକ୍ଷଣ ନିମନ୍ତେ ସହାନୁଭୂତି ପ୍ରକାଶ କରିଥିବାରୁ ଆମ୍ଭେମାନେ ଅନ୍ତରର ସହିତ ଧନ୍ୟବାଦ ଅର୍ପଣ କରୁଅଛୁଁ। କେବଳ ଉତ୍କଳବାସୀ କାହିଁକି ଭାରତର ସମସ୍ତ ହିନ୍ଦୁମାନଙ୍କୁ ଅନୁରୋଧ କରୁଅଛୁଁ ଯେହେତୁ ଭୁବନେଶ୍ୱର ଦେଉଳଟି କେବଳ ଉତ୍କଳର କାହିଁକି ସମସ୍ତ ଭାରତମଧ୍ୟରେ ଗୋଟିଏ ପ୍ରଧାନ କୀର୍ତ୍ତି; ତାହା ସଂରକ୍ଷଣ ନିମନ୍ତେ ଯେ ଯାହାର ଶକ୍ତି ଅନୁସାରେ ସାହାଯ୍ୟ ପ୍ରଦାନ କରନ୍ତୁ।

ମରାମତିସମ୍ପର୍କରେ ଇଞ୍ଜିନିୟର ମହୋଦୟଙ୍କ ଠାରୁ ଶୁଣିଲୁଁ ଯେ ଲିଙ୍ଗରାଜଙ୍କ ଦେଉଳମଧ୍ୟରେ ଆଲୋକ ଅଭାବରୁ ସେମାନେ ଉତ୍ତମରୂପେ ତାହାର ମଧ୍ୟଭାଗ ପରୀକ୍ଷା କରି

ପାରୁନାହାନ୍ତି। ଯେଉଁମାନେ ଲିଙ୍ଗରାଜଙ୍କ ଦେଉଳ ମଧ୍ୟରେ ପ୍ରବେଶ କରିଅଛନ୍ତି ସେମାନେ ଜାଣନ୍ତି ଦେଉଳ ଭିତର କିପରି ଅନ୍ଧକାରମୟ, ଶକ୍ତି ନିକଟରେ ଅତି ଅଳ୍ପ ଆଲୋକ ପଡିଥାଏ। କିନ୍ତୁ ଦେଉଳମଧ୍ୟସ୍ଥ ଉପରିଭାଗ ଆଉ କିଛି ଦେଖାଯାଏ ନାହିଁ। ମରାମତି କରିବାକୁ ଗଲେ ଉତ୍ତମରୂପେ ସମସ୍ତ ନ ଦେଖିଲେ ତାହା ମରାମତି କରିବା ସମ୍ଭବପର ନୁହେଁ। ଦେଉଳ ମଧ୍ୟରେ କିରାସିନି ପ୍ରଭୃତି କୌଣସି ତେଲଆଦି ଜଳିବାର ପ୍ରଥାନାହିଁ। କିନ୍ତୁ ଭୁବନେଶ୍ୱର ଦେଉଳ ମଧ୍ୟର ଉପରକୁ ମରାମତ କରିବା ନିମନ୍ତେ ଖୁବ୍ ସତେଜ ଆଲୁଅ ନ ହେଲେ କିଛି ଦେଖିବା ସମ୍ଭବନୁହେଁ। ଇଞ୍ଜିନିୟରମାନେ ପ୍ରସ୍ତାବ କରନ୍ତି ଯେ ପେଟ୍ରୋଲ ଜଳିବାର କୌଣସି ଆଲୁଅ ନ ହେଲେ ତାହାମଧ୍ୟରେ ଯାହାକିଛି ଦୋଷଅଛି ତାହା ପରୀକ୍ଷାକରି ହେବ ନାହିଁ। ସେଠାକାର ସେବକ ପ୍ରଭୃତି ଏ ସମ୍ବନ୍ଧେ ପ୍ରତିବନ୍ଧକ ଜାତ କରୁଅଛନ୍ତି। ମଶାଲ ଆଲୁଅରେ ଏ କାର୍ଯ୍ୟ କଦାଚ ହୋଇ ପାରିବ ନାହିଁ। ମସାଲ ଆଲୁଅ ତେବେ ତେଜ ନୁହେଁ ଓ ମଧ୍ୟ ଦେଉଳମଧ୍ୟରେ ଯେତେ ଚେମେଣିଆ ପ୍ରଭୃତି ଅଛନ୍ତି ମସାଲ ଦେଖିଲା ମାତ୍ରେ ସେମାନେ ଆସି ତହିଁରେ ପଡ଼ି ଆଲୁଅକୁ ଲିଭେଇ ଦେବେ। ଉଚ୍ଚକୁ ଉଠିଥିବା ଲୋକର ସେ ଅବସ୍ଥାରେ ବିପଦଗ୍ରସ୍ତ ହେବା ସମ୍ଭବ। ଏପରି ସ୍ଥଳରେ ଦେଉଳଟି ରକ୍ଷା କରିବା ନିମନ୍ତେ ପେଟ୍ରୋଲ ଆଲୁଅନେଇ ପରୀକ୍ଷା କରିବା ନିମନ୍ତେ ଛାଡ଼ିଦେବା ସମ୍ବନ୍ଧେ ଆପତ୍ତି କରିବା ଆଦୌ ଯୁକ୍ତି ଯୁକ୍ତ ବୋଧ ହେଉନାହିଁ। ଯଦି ନିତାନ୍ତ ଏହାକୁ କେହି ବାଧା ଜନକ ମନେକରନ୍ତି ତେବେ ଯେ କେତେଦିନ ଦେଉଳର ମଧ୍ୟ ଭାଗ ଏହିପରି ଭାବରେ ପରୀକ୍ଷା ପଡ଼ିବ, ସେ କେତେଦିନ କାର୍ଯ୍ୟପରେ ପ୍ରଭୁଙ୍କର ମହାସ୍ନାନ କରାଇ ଦେଲେ ମଧ୍ୟ ଚଳିପାରେ। କିନ୍ତୁ ମନ୍ଦିର ମରାମତ କାର୍ଯ୍ୟରେ ଯେ କୌଣସି ପ୍ରକାର ହେଉ ସହାୟତାର ବିଶେଷ ଆବଶ୍ୟକ। ଆମ୍ଭମାନେ ଏସମ୍ବନ୍ଧେ ପୁରୀର ମୁକ୍ତି ମଣ୍ଡପର ପଣ୍ଡିତମଣ୍ଡଳୀଙ୍କୁ ଓ ମଧ୍ୟ ଅନ୍ୟାନ୍ୟ ବିଶିଷ୍ଟ ହିନ୍ଦୁ ଧର୍ମାଶାସ୍ତ୍ରଙ୍କୁ ପଣ୍ଡିତମାନଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ଏହିକାର୍ଯ୍ୟ ସାଧନ ନିମନ୍ତେ ଯେଉଁ ଉପାୟ ଅବଲମ୍ବନ କଲେ ଇଞ୍ଜିନୀୟରମାନେ ପେଟ୍ରୋଲିୟମ ବା ବଜୁଳିବତୀ ଆଦି ନେଇ ଦେଉଳର ଉପରଟି ମରାମତ କରିପାରିବେ ଏବଂ ହିନ୍ଦୁଧର୍ମ ପ୍ରତି କୌଣସି ବାଧା ନ ଘଟିବ, ସେ ସମ୍ବନ୍ଧେ ଶୀଘ୍ର ନିଜନିଜର ବ୍ୟବସ୍ଥା ପ୍ରକାଶ କରନ୍ତୁ। ତାହାହେଲେ ଭୁବନେଶ୍ୱରର ସେବକ ସମ୍ପ୍ରଦାୟ କିମ୍ବା ଅନ୍ୟ କେହି ହିନ୍ଦୁମାନଙ୍କର ଆପତ୍ତି କରିବାର କୌଣସି କାରଣ ରହିବ ନାହିଁ ଓ ମଧ୍ୟ ମନ୍ଦିର ମରାମତି କାର୍ଯ୍ୟ ଶୃଙ୍ଖଳାରୂପେ ସାଧିତ ହୋଇଯିବ।

*ଉତ୍କଳ ଦୀପିକା-୧୯୨୫, ପୃଷ୍ଠା-୪୬୪*

## ଭୁବନେଶ୍ୱର ମନ୍ଦିର ବେଢ଼ା ସଂସ୍କାର ସମିତି

ଭୁବନେଶ୍ୱର ଗୋଟିଏ ଭାରତ ପ୍ରସିଦ୍ଧ ପୁରାତନ କ୍ଷେତ୍ର। ଭୁବନେଶ୍ୱର ଦର୍ଶନରେ ପ୍ରତ୍ୟେକ ହିନ୍ଦୁ ହୃଦୟ ଆନନ୍ଦ ଭକ୍ତିରସରେ ଆପ୍ଲୁତ ହୁଏ। ତାହାର ବର୍ତ୍ତମାନ ଦୁର୍ଦ୍ଦଶା ଦେଖିଲେ ହୃଦୟବାନ୍ ମାତ୍ରେ ଅଶ୍ରୁ ବିସର୍ଜନ କରିବେ। ସୌଭାଗ୍ୟ ବଶତଃ ଗତବର୍ଷ କ୍ଷେତ୍ରପ୍ରତି ଲିଙ୍ଗରାଜ ମହାପ୍ରଭୁଙ୍କର ମନ୍ଦିରର ଅନେକାଂଶ ମରାମତି ହୋଇଥିଲା। କିନ୍ତୁ କାର୍ଯ୍ୟଟା ଅପୂର୍ଣ୍ଣ ଓ ଅସୁନ୍ଦର ଅବସ୍ଥାରେ ଅଛି। କାରଣ ମନ୍ଦିରଟି ମରାମତି ହେଲେ ସୁଦ୍ଧା ମନ୍ଦିରର ବେଢ଼ା ମଧ୍ୟରେ ଆବହନମାନ କାଳରୁ

ଅନେକ ଭଙ୍ଗା ପଥର ମାଟି, ପାଉଁଶ, ଅଙ୍ଗାର ସ୍ତୁପାକାରରେ ଗଦା୨ ହୋଇ ଜମା ହୋଇଅଛି। ନାନାପ୍ରକାର କେଉଁଠି ଜଙ୍ଗଲ ଆକାର ଧାରଣ କଲାଣି ଆହୁରି ମଧ୍ୟ ରାତ୍ରି ସମୟରେ ଘୋର ଅନ୍ଧକାର ଯୋଗୁଁ ଯାତ୍ରୀମାନେ ବିଶେଷ ଅସୁବିଧା ଭୋଗ କରନ୍ତି। ମନ୍ଦିର ବେଢ଼ାଟି ଶ୍ମଶାନ ପରି ଭୟଙ୍କର ଦେଖାଯାଏ। ତେଣୁ କରି ମାଟି ପଥର ପ୍ରଭୃତୀ କାଢ଼ି ବେଢ଼ାଟି ପରିଷ୍କାର କରିବା ଓ ଯାତ୍ରୀମାନଙ୍କ ସୁବିଧା ନିମିତ୍ତ ରାତ୍ରିରେ ଆଲୁଅ ଯୋଗାଇବା ପାଇଁ ଅନ୍ତତଃ ଦଶହଜାରଟଙ୍କା ଆବଶ୍ୟକ। ମାତ୍ର ମନ୍ଦିରର ଆର୍ଥିକ ଅବସ୍ଥା ଅତି ଶୋଚନୀୟ। ବାର୍ଷିକ ଆୟରେ ମନ୍ଦିରର ଯାବତୀୟ କାର୍ଯ୍ୟ ନିର୍ବାହ କରିବା କମିଟି ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ।

ଏ ମାସ ତା୨୫ରିଖରେ ମନ୍ଦିର ବେଢ଼ା ମଧ୍ୟରେ କ୍ଷେତ୍ରବାସୀ ମୁଖ୍ୟ ବ୍ୟକ୍ତିମାନଙ୍କର ଗୋଟିଏ ସଭା ହୋଇଥିଲା। ସମସ୍ତ ପ୍ରକାର ଅସୁବିଧା ଦୂର କରିବା ନିମିତ୍ତ ନାନାବିଧ ଉପାୟ ନିର୍ଦ୍ଧାରିତ ହୋଇଥିଲା। ସେଥିରେ କଲିକତା ବାସୀ ଭୂତପୂର୍ବ ଜିଲା ଜଜ ରାୟ ବାହାଦୂର ଜେଃ ଏନଃ ଘୋଷ ସଭାପତି ଆସନ ଅଳଂକୃତ କରିଥିଲେ। ଆହୁରି ମଧ୍ୟ ଭୁବନାନନ୍ଦ ଦାସ (ଏମ୍. ଏଲ୍. ଏ.) ଶ୍ରୀଯୁକ୍ତ ବିଚିତ୍ରାନନ୍ଦ ଦାସ (ଆଡ୍‌ଭୋକେଟ) ରେଭେନ୍ସା କଲେଜର ଅଧ୍ୟାପକ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା ଓ ବିପିନ ବିହାରୀ ରାୟ ଓ ବୋର୍ଡର ଭାଇସ୍ ଚେୟାରମାନ୍ ଶ୍ରୀ ବ୍ରହ୍ମାନନ୍ଦ ମହାନ୍ତି ଓ ମନ୍ଦିରର ମେନେଜର ଶ୍ରୀଲଛମନ ରାମାନୁଜ ଦାସ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ଯୋଗଦାନ କରିଥିଲେ। ଏ ସଭାର "ଭୁବନେଶ୍ୱର ମନ୍ଦିର ବେଢ଼ା ସଂସ୍କାର ସମିତି" ନାମ ରଖାଗଲା।

ଏ କମିଟିର ଭୁବନାନନ୍ଦ ବାବୁ ସ୍ଥାୟୀ ସଭାପତି, ଅଧ୍ୟାପକ ପରିଜା ସହକାରୀ ସଭାପତି, ମନ୍ଦିର ମେନେଜର ସଂପାଦକ, ପଣ୍ଡିତ ରତ୍ନାକର ଗରାବଡୁ, କୋଷାଧ୍ୟକ୍ଷ ରୁପେ ନିର୍ବାଚିତ ହେଲେ। ସଭାସ୍ଥଳରେ ପ୍ରାୟ .................ଟଙ୍କା ଚାନ୍ଦା ହୋଇଥିଲା। ଅଧ୍ୟାପକ ପରିଜା............ ଓ ବିପିନ ବାବୁଙ୍କୁ ରେଭେନ୍ସା କଲେଜର ଛାତ୍ରମାନଙ୍କୁ ଏ ବିଷୟରେ ଉତ୍ସାହିତ କରିବା ପାଇଁ କମିଟି ଅନୁରୋଧ କରିଥିଲା। ଏ ସଭା ଭାରତର ଧର୍ମ ପ୍ରାଣ ହିନ୍ଦୁ ସଂପ୍ରଦାୟକୁ ଏହି ମହତ୍ତ୍ୱର କାର୍ଯ୍ୟ ସାଧନ ପାଇଁ ଯଥା ସମ୍ଭବ ସାହାଯ୍ୟ ଆଶା କରାଯାଏ।

*୧୩-ଉତ୍କଳ ଦୀପିକା, ୧୯୨୯, ପୃଷ୍ଠା -୩୯୬*



ଜେମ୍ସ ଫର୍ଗୁସନଙ୍କ ଅଙ୍କିତ କୋଣାର୍କ ଚିତ୍ର (୧୮୩୮)

# କୋଣାର୍କ ସୂର୍ଯ୍ୟ ମନ୍ଦିର

# କୋଣାର୍କ ମନ୍ଦିର ଭଗ୍ନ ସ୍ୱମ୍ବନ୍ଧରେ ଆମ୍ଭମାନଙ୍କ ମତ

କୋଣାର୍କ ମନ୍ଦିର ଭଗ୍ନ ସମ୍ବନ୍ଧରେ ଅନେକେ ଅନେକ ପ୍ରକାର କାରଣ ନିର୍ଣ୍ଣୟ କରି ଅଛନ୍ତି; କିନ୍ତୁ ସେଥିମଧ୍ୟରୁ କୌଣସି କାରଣ ଆମ୍ଭମାନଙ୍କ ମନକୁ ରୁଚୁ ନାହିଁ। କେହି ବୋଲନ୍ତି, ମନ୍ଦିର ସମ୍ପୂର୍ଣ୍ଣରୂପେ ନିର୍ମିତ ହୋଇ ନ ଥିଲା; ହେଉ ତାହା ଆମ୍ଭେମାନେ ଆଗତ୍ୟା ସ୍ୱୀକାର କଲୁଁ; କିନ୍ତୁ ମନ୍ଦିରର କେଉଁ୨ ଅଂଶ ନିର୍ମିତ ହୋଇଥିଲା, ତାହାର ଅକ୍ଷୁଣ୍ଣ ଭାବରେ ଥାନ୍ତା? କେହି ବୋଲନ୍ତି ଶତ୍ରୁକର୍ତ୍ତୃକ ଭଗ୍ନ ହୋଇଅଛି; ଅଚ୍ୟ ଶତ୍ରୁ ଅବା କିଏ? ମୁସଲମାନମାନେତ? ମୁସଲମାନେ ଭୁବନେଶ୍ୱର ମନ୍ଦିର, ଜଗନ୍ନାଥଙ୍କ ଦେଉଳ ନଗର ବା ଗ୍ରାମରେ ଥାଉଁ୨ ତାହା ନ ଭାଙ୍ଗି ନିର୍ଜନ ଓ ସମୁଦ୍ର କୂଳସ୍ଥ କୋଣାର୍କମନ୍ଦିର ଉପରେ ଚଢ଼ାଉ କରିଥିବା ତେତେ଼ ମନକୁ ରୁଚୁ ନାହିଁ। ପୁଣି ଷ୍ଟାର୍ଲିଂସାହେବ ଓ ଫର୍ଗୁସ ସାହେବ (ଅବୁଲଫାଜଲଙ୍କ କଥା ଛାଡ଼ି ଦିଅ) ଯେତେବେଳେ ତାହା ଦେଖିଥିଲେ ତେତେବେଳେତ ମନ୍ଦିରର ଅନେକ ଅଂଶ ଛିଡ଼ା ହୋଇଥିଲା? ଆଉ ତହିଁ ଉତ୍ତାରୁ କୌଣସି ମୁସଲମାନ ସେହି ଅଂଶ ଭାଙ୍ଗି ନାହିଁ? କେହି ବୋଲନ୍ତି, ବାଲି ଉପରେ ମନ୍ଦିର ନିର୍ମିତ ହୋଇଥିବା ଅବା ବଜ୍ରପାତ ହେତୁରୁ ମନ୍ଦିରର ଏଦଶା ଘଟିଅଛି; ତାହାସୁଦ୍ଧା ବିଶ୍ୱାସର ଯୋଗ୍ୟ ନୋହେ; କାରଣ ବାଲି ଉପରେ ଜଗନ୍ନାଥ ଓ ଲୋକନାଥଙ୍କ ଦେଉଳ ନିର୍ମିତ ହୋଇଅଛି ତାହାତ ଫାଟି ଯାଉ ନାହିଁ, ଅବା ଜଗନ୍ନାଥଜିଉଙ୍କ ଦେଉଳ ଉଚ୍ଚ ଥିବା ସତ୍ୱେ ସେଥି ଉପରେ ବଜ୍ରପାତ ହେଉ ନାହିଁ? କେହି ବୋଲନ୍ତି, କେଣାର୍କ ଦେଉଳର ଅଏଁଳାଶ୍ରୀ ଅୟସ୍କାନ୍ତରେ ନିର୍ମିତ ହୋଇଥିଲା; ଏଣୁ ସମୁଦ୍ରରେ ଚଳନ୍ତି ଯାହାଜମାନ ପୁରୀ ବାରାରେ ଭଗ୍ନ ହେଉଥିଲା; ଏଥକୁ କୌଣସି ନାବିକ ତାହା ଠଉରାଇ ପାରି ସେହି ଅଏଁଳାଶ୍ରୀ ଭାଞ୍ଜି ପକାଇ ତାହା ନିଆଁରେ ନିସ୍ତେଜ କରିଦେଲା; ତେଣୁ ମନ୍ଦିର ଭାଞ୍ଜି ଗଲା। ଏହା ଆହୁରି ଅବିଶ୍ୱାସ୍ୟ; ସେହି ମନ୍ଦିରର ଅଏଁଳାଶ୍ରୀ ଅୟସ୍କାନ୍ତରେ ନିର୍ମିତ ହୋଇଥିବା ଓ ତାହା ନାବିକଦ୍ୱାରା ଭଗ୍ନ ହେବା କଥା ସତ୍ୟ ହୋଇ ପାରେ; କିନ୍ତୁ ସେଥିରେ ସମସ୍ତ ମନ୍ଦିର ଓ ପ୍ରାଚୀର ଭଗ୍ନ ହେବ କାହିଁକି? କୋଣାର୍କ ଭଗ୍ନ ହେବାର କାରଣ ଏମାନ କିଛି ନୋହେ। ଆମ୍ଭେମାନେ ଆମ୍ଭମାନଙ୍କ କ୍ଷୁଦ୍ର ବୁଦ୍ଧିରେ ନିମ୍ନଲିଖିତ କାରଣ ନିର୍ଦ୍ଦେଶ କରିଅଛୁଁ।

ପ୍ରଥମ। ଭୁବନେଶ୍ୱର ଓ ଶ୍ରୀକ୍ଷେତ୍ର ପ୍ରଭୃତି ଦେଉଳର ଯୋଡ଼ାଇ କାର୍ଯ୍ୟ ଯେରୂପ ଗୁରୁଜ ଓ ଖୋଳ ବା ଆଳରେ ସମ୍ପନ୍ନ ହୋଇଅଛି, କୋଣାର୍କ ମନ୍ଦିରର ଯୋଡ଼ାଇ କାର୍ଯ୍ୟ ସେପରି ସମ୍ପନ୍ନ ହୋଇ ନ ଥିଲା।

ଦ୍ୱୀତୀୟ। କୋଣାର୍କ ମନ୍ଦିର କେବଳ ପଥରର ସୋରଖୀ ଓ ଚୂନରେ ଯୋଡ଼ାଇ ହୋଇ ଥିଲା; ପୁଣି ତାହା ସମୁଦ୍ରର ଅତିନିକଟରେ ଥିବାରୁ ଆଉ ମନ୍ଦିର ଏବଂ ସମୁଦ୍ର ମଧ୍ୟରେ କୌଣସି ବ୍ୟବଧାନ (ଉହାଡ଼) ନ ଥିବାରୁ ବିଜ୍ଞାନ ଅନୁସାରେ ଲୋଣା ପବନ ସେହି ଯୋଡ଼କୁ ଶିଥିଳ କରି ପକାଇଲା।

ତୃତୀୟ। ମନ୍ଦିରର ଓ ପ୍ରାଚୀର ଉଚ୍ଚତା ଅନୁସାରେ କାନ୍ଥର ବହଳ (ଏସମ୍ବନ୍ଧରେ ଅବୁଲା ଫାଜଲଙ୍କ ଲେଖା ଅତ୍ୟୁକ୍ତି) ଅନୁପାତରେ ଉଣା ହୋଇଥିଲା।

ରାଜା ନରସିଂହ ଦେବ; ଯଜାତି, ଲଲାଟନ୍ଦ୍ରେ କେଶରୀ ଓ ଅନଙ୍ଗଭୀମ ଦେବଙ୍କ ସ୍ଥାପିତ କୀର୍ତ୍ତି ସମାନ ଆପଣାର ଗୋଟିଏ କୀର୍ତ୍ତୀ ରଖିବାକୁ ମନସ୍ଥ କରି କୋଣାର୍କ ମନ୍ଦିର ନିର୍ମାଣ

କରିଥିଲେ; କିନ୍ତୁ ତାଙ୍କ ବିବେଚନାରେ ବିଶେଷ ତ୍ରୁଟି ହୋଇଅଛି। ରାଜା ନରସିଂହ ଦେବ ସେହି ମନ୍ଦିର ନିର୍ମାଣରେ ବହୁତ ଅର୍ଥ ବ୍ୟୟ କରିଥିଲେ, ଅନେକ ପରିଶ୍ରମ କରି ବହୁତ ଦୂରରୁ ଭଲ୨ ଓ ବୃହଦାକୃତି ପଥର ସମୁଦ୍ର କୂଳକୁ ବୁହାଇ ଅତି ସୁନ୍ଦର ଶିଳ୍ପକାର୍ଯ୍ୟ କରାଇ ମନ୍ଦିର ନିର୍ମାଣ କରିଥିଲେ; କେବଳ ବିବେଚନା ଦୋଷରୁ ଏଡ଼େ ସୁନ୍ଦର କୀର୍ତ୍ତି ଏବଂ ପ୍ରଭୃତି ପରିଶ୍ରମ ସମସ୍ତ ବିଫଳ ହୋଇଅଛି ବୋଲିବାକୁ ହେବ। ସେ ଯେବେ ଉପରୋକ୍ତ ମନ୍ଦିରମାନଙ୍କ ଯୋଡ଼ାଇ ସମାନ (ସମୁଦ୍ର କୂଳରେ ହେଉ ପଛକେ) ଉକ୍ତ ମନ୍ଦିରର ଯୋଡ଼ାଇ କାର୍ଯ୍ୟ କରାଇ ଥାନ୍ତେ ଅଥବା ତାହା ସମୂଦ୍ର କୂଳରେ ନିର୍ମାଣ ନ କରି ଅନ୍ୟତ୍ର କରିଥାନ୍ତେ, ତେବେ ସେହି ମନ୍ଦିରର ଏପରି ଶୋଚନୀୟ ଦଶା ଘଟି ନ ଥାନ୍ତା।

*ବାଲେଶ୍ୱର ସମ୍ବାଦବାହିକା-୧୮୮୨_ପୃଷ୍ଠା ସଂଖ୍ୟା-୧*

ଜଣେ ପତ୍ରପ୍ରେରକ ଏକ ଇଂରାଜୀପତ୍ରରେ ଲେଖିଅଛନ୍ତି କି ପୁରୀଜିଲ୍ଲାର ସମୁଦ୍ରକୂଳସ୍ଥ କୋଣାର୍କଠାରେ ବାର୍ଷିକ ଯେଉଁ ଯାତ୍ରା ହୁଅଇ ତହିଁରେ ପ୍ରାୟ ପଞ୍ଚାଶହଜାର ଯାତ୍ରୀ ହୁଅନ୍ତି। ସେଠାରେ ପ୍ରାଚୀ ନାମକ ଗୋଟିଏ କ୍ଷୁଦ୍ରନଦୀ ଅଛି ମାତ୍ର ଯାତ୍ରାସମୟରେ ତାହା ଶୁଖିଲା ପଡ଼ିଥାଏ। ସ୍ଥାନଟି ନିତାନ୍ତ ପଦା ପ୍ରାୟ ଦଶ କ୍ରୋଶ ମଧ୍ୟରେ ଖଣ୍ଡିଏ ଘର ସୁଦ୍ଧା ନାହିଁ। ଜଳ ଓ ଛାୟା ଅଭାବରେ ଯାତ୍ରିଙ୍କର ଯେପରି କଷ୍ଟ ହୁଅଇ ତାହା ଅକଥନୀୟ। ଏସବୁ ଅଭାବ ଦୂରକରିବା କାରଣ ପତ୍ରପ୍ରେରକ ପୁରୀଜିଲ୍ଲାର ମାଜିଷ୍ଟ୍ରେଟ ଏବଂ ସ୍ଥାନୀୟ ବୋର୍ଡ଼ଙ୍କୁ ଅନୁରୋଧ କରିଅଛନ୍ତି। ଏ ଅନୁରୋଧ ଅତ୍ୟନ୍ତ ସୁସଙ୍ଗତ ଏ ବିଷୟରେ ସନ୍ଦେହ ନାହିଁ। ଆମ୍ଭମାନଙ୍କ ବିବେଚନାରେ ପତ୍ରପ୍ରେରକ କେବଳ ସର୍ବସାଧାରଣଙ୍କୁ ଏକଥା ଜଣାଇ କ୍ଷାନ୍ତ ନ ରହି ମାଜିଷ୍ଟ୍ରେଟ ଏବଂ ଜିଲ୍ଲାବୋର୍ଡଙ୍କ ନିକଟକୁ ଆବେଦନପତ୍ରମାନ ପଠାଉନ୍ତୁ। ତାହା ହେଲେ ସେମାନେ ଆପଣା କର୍ତ୍ତବ୍ୟ ପାଳନରେ ତତ୍ପର ହେବେ। ଯେଉଁଠାରେ ଅଧିକ ଯାତ୍ରିର ସମାଗମ ସେଠାରେ ସେମାନଙ୍କର ସ୍ୱାସ୍ଥ୍ୟ ଓ ସୁବିଧାର ସମସ୍ତ ବ୍ୟବସ୍ଥା କରିବା ନିତାନ୍ତ ପ୍ରୟୋଜନ ଏବଂ ଏଥିର ବ୍ୟୟ ନିର୍ବାହ କରିବା କାରଣ ଯେବେ ଯାତ୍ରିଙ୍କଠାରୁ କୌଣସି ଟିକସ ନେବାର ନିତାନ୍ତ ଆବଶ୍ୟକ ହୁଅଇ ତାହା ମଧ୍ୟ କଲେ କିଛି ଆପତ୍ତି ହେବ ନାହିଁ। ବଡ଼୨ ଯାତ୍ରା ବା ମେଳାସ୍ଥାନରେ ଏପରି ବ୍ୟବସ୍ଥା ହୋଇଅଛି। ହରିହରଛତ୍ରମେଳା ଗୋଟିଏ ପଦାସ୍ଥାନରେ ହୁଅଇ କିନ୍ତୁ ମେଳା ସମୟରେ ତାହା ଗୋଟିଏ ସୁସଜ୍ଜିତ ସହରର ବେଶ ଧାରଣ କରଇ। ତହିଁର ବ୍ୟୟ ଟିକସଦ୍ୱାରା ଦୋକାନୀ ଓ ବ୍ୟବସାୟିଙ୍କଠାରୁ ଆଦାୟ ହୁଅଇ। ସଡ଼କ ଓ ଜଳର ସୁବନ୍ଦୋବସ୍ତ କରିବା ଜିଲ୍ଲାବୋର୍ଡଙ୍କ କର୍ତ୍ତବ୍ୟକାର୍ଯ୍ୟ ଅଟଇ ତହିଁପାଇଁ ଯାହା ବ୍ୟୟ ହେବ ସେମାନଙ୍କର ଦେବା ଉଚିତ।

*ଉତ୍କଳ ଦୀପିକା-୧୮୯୧-ପୃଷ୍ଠା ସଂଖ୍ୟା-୪୯*

ପୁରୀ ଅନ୍ତର୍ଗତ ଚନ୍ଦ୍ରଭାଗାତୀର୍ଥସ୍ଥାନ କୋଣାର୍କ ବା କଣାରକ ମନ୍ଦିରର ପାଷାଣ ନିର୍ମିତ ନବଗ୍ରହ ମୂର୍ତ୍ତିକୁ କଲିକତା ଜାଦୁଘରକୁ ଘେନି ଆସିବା କାରଣ ଅନେକ ଦିନରୁ ସରକାର ଚେଷ୍ଟା କରୁଅଛନ୍ତି। ଏଥିପୂର୍ବେ ସେହି ପ୍ରକାଣ୍ଡ ପାଷାଣଖଣ୍ଡକୁ ସମ୍ପୂର୍ଣ୍ଣ ଅବସ୍ଥାରେ ଆଣିବା କାରଣ

ବାରିକମାଷ୍ଟର ଏଲାକାର ସାହେବମାନେ ଅନେକ ଚେଷ୍ଟା କରିଥିଲେ। ମାତ୍ର ଅନେକ ଖର୍ଚ୍ଚା କରି ସୁଦ୍ଧା ତାହାକୁ ସମୁଦ୍ର କୁଳକୁ ଘୁଞ୍ଚାଇ ଆଣି ପାରିଲେ ନାହିଁ। ସମ୍ପ୍ରତି ଉକ୍ତ ପଥରକୁ ଦୁଇଖଣ୍ଡ କରି କାଟି ଆଣିବାର ସ୍ଥିର ହୋଇ କାର୍ଯ୍ୟାରମ୍ଭ ହୋଇଅଛି। ଏଥିରେ ସେ ଅଞ୍ଚଳର ହିନ୍ଦୁମାନେ ସରକାରଙ୍କର ଏହି କାର୍ଯ୍ୟକୁ ସେମାନଙ୍କ ଧର୍ମ ହାନିଜନକ ବିବେଚନା କରି ଅତ୍ୟନ୍ତ ଦୁଃଖିତ ହୋଇଅଛନ୍ତି ଏବଂ ପୁରୀ ସନାତନ ଧର୍ମରକ୍ଷଣୀ ସଭାର ଉଦ୍ୟମରେ ଖଣ୍ଡିଏ ଆବେଦନପତ୍ର ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ପ୍ରେରିତ ହେଉଅଛି। ସେଥିରେ ପ୍ରାର୍ଥନା ହୋଇଅଛି କି ମାନ୍ୟବର ମହୋଦୟ ସବିଶେଷ ଅନୁସନ୍ଧାନ କରି ସେହି ନବଗ୍ରହ ମୂର୍ତ୍ତିଖୋଦିତ ପଥର ସ୍ଥାନାନ୍ତରିତ ହେବାର ଆଦେଶ ରହିତ କରିବେ। ଆମ୍ଭେମାନେ ଅବଗତ ହେଇଅଛୁଁ ଯେ ଏହି ଅମୂଲ୍ୟ ଶିଳ୍ପକାର୍ଯ୍ୟର ସୁରକ୍ଷା ନିମନ୍ତେ ଗବର୍ଣ୍ଣମେଣ୍ଟ ଏ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି ଅନ୍ୟ କୌଣସି ଅଭିପ୍ରାୟ ନାହିଁ। ବାସ୍ତବରେ ଯେବେ ସେହି ମୂର୍ତ୍ତିମାନଙ୍କୁ ହିନ୍ଦୁମାନେ ପୂଜା କରୁଅଛନ୍ତି ଏବଂ ତହିଁର ସୁରକ୍ଷା ନିମନ୍ତେ ଉପଯୁକ୍ତ ବନ୍ଦୋବସ୍ତ କରିଅଛନ୍ତି ତେବେ ତାହା ସ୍ଥାନାନ୍ତରିତ ହେବା ଉଚିତ ନୁହଇ ମାତ୍ର ଯେବେ ହିନ୍ଦୁଙ୍କ ହେଳାରୁ ତାହା ଏମନ୍ତ ଅବସ୍ଥାରେ ପଡ଼ିଥାଏ ଯେ କାଳକ୍ରମେ ପ୍ରାଚୀନ ହିନ୍ଦୁଙ୍କର ଏହି ଅପୂର୍ବ ଶିଳ୍ପକାର୍ଯ୍ୟଟି ନଷ୍ଟ ହୋଇଯିବ ତେବେ ସରକାର ତାହା ସୁରକ୍ଷାର ବନ୍ଦୋବସ୍ତ କରିବାରୁ ଅନ୍ୟାୟ ନ କରି ଆମ୍ଭମାନଙ୍କର ଉପକାର କରିବାର ବୋଲାଯିବ ଓ ତହିଁର ପ୍ରତିବାଦ କରିବା ଅକାରଣ ଅଟଇ।

*ଉତ୍କଳ ଦୀପିକା-୧୮୯୨-ପୃଷ୍ଠା ସଂଖ୍ୟା-୨୮୭*

## ଉତ୍କଳ କି ଜାଗ୍ରତ ହେବନାହିଁ?

ସମ୍ବାଦ ପତ୍ରଯୋଗେ ପ୍ରଚାରିତ ହୋଇଅଛି ଯେ ହିନ୍ଦୁମାନଙ୍କର ପ୍ରଧାନ ତୀର୍ଥ ସ୍ଥାନ କୋଣାର୍କ କ୍ଷେତ୍ରସ୍ଥିତ-ନବଗ୍ରହ ମୂର୍ତ୍ତି ଅଙ୍କିତ ଖଣ୍ଡିଏ ପ୍ରକାଣ୍ଡ ପ୍ରସ୍ତର ଯାହାକି ଏତେକାଳ ପର୍ଯ୍ୟନ୍ତ ହିନ୍ଦୁମାନଙ୍କ ଦ୍ୱାରା ପୂଜିତ ହୋଇ ଆସୁଥିଲା ତାହାକୁ ଇଂରେଜମାନେ କୌଣସି ଉଦ୍ଦେଶ୍ୟ ସାଧନ ସକାଶେ ଖଣ୍ଡ୨ କରି କଟାଉ ଅଛନ୍ତି। ଏସମ୍ବନ୍ଧରେ ହିନ୍ଦୁ ହୃଦୟକି ବିଚଳିତ ହେଉ ନାହିଁ? ଏହି ଅନୁଚିତ କାର୍ଯ୍ୟ ରହିତ କରି ଦେବା ସକାଶେ ସରକାରଙ୍କ ନିକଟରେ ନିବେଦନ କରିବା କି ଉଚିତ ବୋଧ ହେଉନାହିଁ? ଉତ୍କଳର ସଭା ସମିତି ସବୁ ଏତେବେଳେ ନୀରବ କାହିଁକି? ସ୍ୱଦେଶାନୁଚାରୀ, ସ୍ୱଧର୍ମାନୁରାଗୀ ବୋଲି ଯେଉଁ ମାନଙ୍କର ଖ୍ୟାତି ପ୍ରତିପତ୍ତି ଅଛି ସେମାନେ ଏତେବେଳେ କେଉଁଠାରେ? ଏତେବେଳେ ଅଳସ ଭାବାକ୍ରାନ୍ତ ହୋଇ ରହିଲେ ଉତ୍କଳର ଗୌରବ ପରିଚାୟକ ଗୋଟିଏ ମହତ କୀର୍ତ୍ତି ବିଲୁପ୍ତ ହୋଇଯିବ। ଲୋକ ମାନଙ୍କର ଧର୍ମ କାର୍ଯ୍ୟରେ ବ୍ୟାଘାତ ଘଟିବ। ଏକାର୍ଯ୍ୟରୁ କ୍ଷାନ୍ତ ହେବା ସକାଶେ ଯୁକ୍ତିଯୁକ୍ତ କାରଣ ଦେଖାଇ ଆବେଦନ କଲେ ନ୍ୟାୟ ପରାୟଣ ଗବର୍ଣ୍ଣମେଣ୍ଟ ଅବଶ୍ୟ ଗୁହାରୀ ଶୁଣି ତହିଁର ସୁବିଚାର କରିବେ। ମିଳିତ ହୋଇ ବିନୀତ ଭାବରେ ଦୁଃଖ ଜଣାଇବା ଦ୍ୱାରା ଗବର୍ଣ୍ଣମେଣ୍ଟଙ୍କର ଅପ୍ରିୟ ହେବା ଆଶଙ୍କା ବୃଥା ଜାଣି ସମସ୍ତେ ତତ୍‌ପ୍ରତି ସଚେଷ୍ଟ ହେଉନ୍ତୁ ଏହି ଉପଦେଶ ଦେଉଅଛୁଁ।

*ସମ୍ବଲପୁର ହିତୈଷଣୀ, ୧୮୯୨-ପୃଷ୍ଠା ସଂଖ୍ୟା-୯*

କୋଣାର୍କ ବା କୋଣାରକର ନବଗ୍ରହମୂର୍ତ୍ତି ଅଙ୍କିତ ବୃହତ୍ ପଥରଖଣ୍ଡକୁ କାଟି କଲିକତା ଜାଦୁଘରକୁ ଘେନିଯିବା ପ୍ରସ୍ତାବ ବିରୁଦ୍ଧରେ ପୁରୀବାସି ହିନ୍ଦୁମାନେ ଗବର୍ଣ୍ଣମେଣ୍ଟରେ ଆବେଦନ କରିଥିବାର ପାଠକମାନଙ୍କୁ ଜଣା ଅଛି। ଉକ୍ତ ଆବେଦନର ସତ୍ୟତା ଅନୁସନ୍ଧାନର ଭାର ପୁରୀର ଜଣେ ଡେପୁଟୀ ମାଜିଷ୍ଟ୍ରେଟଙ୍କୁ ଦିୟାଯାଇଥିଲା। ସେ ସ୍ଥାନୀୟ ତଦନ୍ତକରି ରିପୋର୍ଟକଲେ କି ପୂର୍ବେ ଏହି ନବଗ୍ରହ ପଥର ପୂଜା ହେଉଥିବାର ଜଣାଯାଉ ନାହିଁ ମାତ୍ର ଗତ ବ୧୫/୨୦ ବର୍ଷରୁ ଯାତ୍ରିଙ୍କର ଅଧିକ ସମାଗମ ଏବଂ ପୂଜାର ଉନ୍ନତି ଦେଖାଯାଏ। ପୂଜାସକାଶେ ଦଶଜଣ ସେବକ ନିଯୁକ୍ତ ଅଛନ୍ତି। ସେମାନେ ପାଳିଅନୁସାରେ କାର୍ଯ୍ୟ କରନ୍ତି। ରବିବାର ଅମାବାସ୍ୟା ପୂର୍ଣ୍ଣିମା ଏବଂ ସଂକ୍ରାନ୍ତି ଦିନମାନଙ୍କରେ ବ୍ୟାଧିମୁକ୍ତ କାମନାରେ ଗ୍ରହଶାନ୍ତି ପୂଜା ଦିଅନ୍ତି। ଇମାରମଠର ମହନ୍ତ ରଘୁନନ୍ଦନ ରାମାନୁଜ ଦାସ ବ୬/୮ ର୍ଷତଳେ ଆପଣାର କୌଣସି ରୋଗମୁକ୍ତ କାମନାରେ ପୂଜା କରିଥିଲେ। ଏଠାରେ ଗ୍ରହଶାନ୍ତି ପୂଜା କଲେ ରୋଗମୁକ୍ତ ହେବାର ବିଶ୍ୱାସ କ୍ରମଶଃ ବିସ୍ତାର ହେଉଅଛି। ଏହି ରିପୋର୍ଟ ମାନ୍ୟବର ଛୋଟଲାଟ ଜାଦୁଘରର ଟ୍ରଷ୍ଟିମାନଙ୍କ ନିକଟକୁ ପଠାଇ ଦେଇ ସେମାନଙ୍କର ବିଶେଷତଃ ହିନ୍ଦୁଟ୍ରଷ୍ଟିମାନଙ୍କର ଅଭିପ୍ରାୟ ଜାଣିବାକୁ ଇଛା କରିଅଛନ୍ତି। ଏକଦିଗରେ ପ୍ରତ୍ନତତ୍ତ୍ୱ ଓ ଶିଳ୍ପର ଗୌରବରକ୍ଷା, ଅନ୍ୟଦିଗରେ ଲୋକଙ୍କ ଧର୍ମ ବିଶ୍ୱାସପ୍ରତି ଆଶା ଏହି ଦୁଇକଥାମଧ୍ୟରୁ କେଉଁଟାକୁ ପ୍ରବଳ ଜ୍ଞାନ କରିବାକୁ ହେବ ଏହିପ୍ରଶ୍ନ ଅଟଇ। ଆମ୍ଭମାନଙ୍କ ବିବେଚନାରେ ପଥରକୁ କଲିକତାକୁ ଘେନି ନ ଯାଇ କଣାରକଠାରେ ସୁରକ୍ଷାର ବ୍ୟବସ୍ଥା କଲେ ଭଲ ହେବ ଏବଂ ପଣ୍ଡାମାନେ ଏହାଦ୍ୱାରା ଲାଭ କରୁଥିବାସ୍ଥଳେ ବ୍ୟୟଭାର ସହ୍ୟ କରିବାକୁ ନ୍ୟାୟତଃ ବାଧ୍ୟ ଅଟନ୍ତି।

*ଉତ୍କଳ ଦୀପିକା-୧୮୯୩-ପୃଷ୍ଠା ସଂଖ୍ୟା-୧୦*

କୋଣାର୍କର ନବଗ୍ରହମୂର୍ତ୍ତିକୁ କଲିକତା ଯାଦୁଘରକୁ ନେବା କର୍ତ୍ତବ୍ୟ କି ନା, ଏ ବିଷୟରେ ଛୋଟଲାଟ ଏସିୟାଟିକ୍ ସୋସାଇଟୀର ହିନ୍ଦୁ ଟ୍ରଷ୍ଟୀମାନଙ୍କ ମତ ଆହ୍ବାନ କରିଅଛନ୍ତି। ସେମାନଙ୍କର ମତ ଅବଧି ପ୍ରକାଶ ପାଇ ନାହିଁ। ଏଥିମଧ୍ୟରେ ଏ ବିଷୟରେ ବଙ୍ଗଦେଶର ପ୍ରାଚୀନ କୀର୍ତ୍ତିସ୍ତମ୍ଭସଂରକ୍ଷଣୀବିଭାଗର ଭୂତପୂର୍ବ ଇଞ୍ଜିନୀୟର ବେଗଲାର ସାହେବଙ୍କର ଖଣ୍ଡିଏ ପତ୍ର କଲିକତାର ବିଖ୍ୟାତ ସମ୍ବାଦପତ୍ରମାନଙ୍କର ପ୍ରକାଶିତ ହୋଇଅଛି। ସେ ଲେଖିଅଛନ୍ତି କି ନବଗ୍ରହମୂର୍ତ୍ତିକୁ ଯାଦୁଘରକୁ ନେଲେ ତଦ୍ଦ୍ୱାରା ପ୍ରାକ୍ତତ୍ତ୍ୱର କୌଣସି ଉନ୍ନତ ସାଧିତ ହେବ ନାହିଁ; ବରଂ ଗୋଟିଏ ପ୍ରାଚୀନ ଓ ପବିତ୍ର ସ୍ଥାନରୁ ସେହି ମୂର୍ତ୍ତିକୁ ଅନ୍ତର କଲେ ଲୋକେ ଗବର୍ଣ୍ଣମେଣ୍ଟଙ୍କ କାର୍ଯ୍ୟକୁ ନିଷ୍ଠୁରତା ବୋଲି ଜ୍ଞାନ କରିବେ। ଏହି ହେତୁରୁ ସେ ପରାମର୍ଶ ଦେଇଅଛନ୍ତି ଯେ ନବଗ୍ରହମୂର୍ତ୍ତିକୁ କୋଣାର୍କରୁ ଘେନି ନ ଯାଇ ମନ୍ଦିରର ଜୀର୍ଣ୍ଣସଂସ୍କାର କଲେ ପ୍ରାଚୀନ ଶିଳ୍ପଗୌରବର ଗୋଟିଏ ଆଦର୍ଶ ସଂରକ୍ଷିତ ହେବ। ସାହେବ ମହୋଦୟଙ୍କର ଯୁକ୍ତି ଓ ପରାମର୍ଶ ସୁସଙ୍ଗତ ଅଟେ। ଆମ୍ଭେମାନେ ଆଶା କରୁଁ ଗବର୍ଣ୍ଣମେଣ୍ଟ ଓ ଏସିୟାଟିକ ସୋସାଇଟୀର ହିନ୍ଦୁଟଷ୍ଟୀମାନେ ତାଙ୍କର ଯୁକ୍ତିଯୁକ୍ତ ଆଗ୍ରହ୍ୟ କରିବେ ନାହିଁ।

*ଉତ୍କଳ ଦୀପିକା-୧୮୯୩_ପୃଷ୍ଠା ସଂଖ୍ୟା-୪୨*

କୋଣାର୍କ ନବଗ୍ରହମୂର୍ତ୍ତି କଲିକତା ଜାଦୁଘରକୁ ସ୍ଥାନାନ୍ତରିତ ହେଲେ ହିନ୍ଦୁଧର୍ମ ଘଟିତ କୌଣସି ଆପତ୍ତି ହେବ କି ନା ମାନ୍ୟବର ପୂର୍ବ ଛୋଟଲାଟ ଜାଦୁଘର କମିଟୀର ଦେଶୀୟ ସଭ୍ୟମାନଙ୍କୁ ପ୍ରଶ୍ନ କରିଥିଲେ, ତଦନୁସାରେ ମହାମହୋପାଧ୍ୟାୟ ଶ୍ରୀଯୁକ୍ତ ମହେଶ୍ଚନ୍ଦ୍ର ନ୍ୟାୟରତ୍ନ ସ୍ଥାନୀୟ ତଦନ୍ତଦ୍ୱାରା ବୁଝିଲେ ଯେ ଆଦି ବିବରଣ ଯାହା ଥାଉ ସମ୍ପ୍ରତି ବହୁସଂଖ୍ୟକ ଲୋକ ସେହି ନବଗ୍ରହ ମୂର୍ତ୍ତି ଅଙ୍କିତ ପ୍ରସ୍ତରଖଣ୍ଡିକୁ ପୂଜା କରୁଅଛନ୍ତି ଏବଂ ଯେ ସ୍ଥାନରେ ପୂଜା ହେଉଅଛି ସେଠାରୁ ସ୍ଥାନାନ୍ତରିତ ହେଲେ ହିନ୍ଦୁମାନଙ୍କ ଧର୍ମ ବିଶ୍ୱାସ ପ୍ରତି ହସ୍ତକ୍ଷେପ ହେବ। ଯାଦୁଘରର ଦେଶୀୟ ସଭ୍ୟମାନେ ଏହିପରି ଉତ୍ତର ହେବାରୁ ବଙ୍ଗୀୟ ଗବର୍ଣ୍ଣମେଣ୍ଟ ଏହିପରି ଚୂଡ଼ାନ୍ତ ଆଦେଶ ଦେଇଅଛନ୍ତି କି ଉକ୍ତ ପ୍ରସ୍ତର ସେହିଠାରେ ରହିବ ଏବଂ ବାରିକମାସ୍ତରି ମହକୁମା ଭବିଷ୍ୟତ୍ରେ ଏହାରୁ ସ୍ୱର୍ଶ କରିବେ ନାହିଁ। ପ୍ରସ୍ତରଟି ସ୍ଥାନାନ୍ତରିତ ହେବା ନିମନ୍ତେ ଗୋଟିଏ ଶକଟ ଉପରେ ବୋଝାଏ ହୋଇ ରହିଅଛି। ସେହି ଶକଟରୁ ଓହ୍ଲାଇ ପୂର୍ବେ ଯେଉଁ ସ୍ଥାନରେ ଥିଲା ସେହିସ୍ଥାନରେ ରଖିଦେବାପାଇଁ ବାରିକମାସ୍ତରି ମହକୁମାପ୍ରତି ଆଦେଶ ହୋଇଥିବ।

*ଉତ୍କଳ ଦୀପିକା-୧୮୯୩_ପୃଷ୍ଠା ସଂଖ୍ୟା-୨୫୩*

କୋଣାର୍କ ନବଗ୍ରହମୂର୍ତ୍ତି ଯାଦୁଘରକୁ ଯିବାର ବନ୍ଦ ହେବାକୁ ସେହିସ୍ଥାନର ଅନ୍ୟାନ୍ୟ ମୂର୍ତ୍ତିମାନ ଯାଦୁଘରକୁ ଯିବାର ଆନ୍ଦୋଳନ ଲାଗିଅଛି। ଏବଂ ସେ ବିଷୟରେ ଗତ ମାସ ତା୧୨ରିଖ ଶନିବାର ଜିଲ୍ଲା ସ୍କୁଲଠାରେ ପ୍ରଧାନ୨ ପଣ୍ଡିତମାନେ ଏବଂ ସନ୍ଥ ମହନ୍ତପ୍ରଭୃତି ସମ୍ଭ୍ରାନ୍ତ ବ୍ୟକ୍ତିମାନେ ସଭାସ୍ଥଳରେ ଉପସ୍ଥିତଥାଇ ଗୋଟିଏସଭା ହୋଇଥିବା କେତେକ ବ୍ୟକ୍ତି ମତ ଦେଇଅଛନ୍ତି, ମାତ୍ର ପଣ୍ଡିତମାନେ ହିନ୍ଦୁଦେବମୂର୍ତ୍ତିମାନ ସ୍ଥାନାନ୍ତରିତ ହେବା ଶାସ୍ତ୍ରନିଷିଦ୍ଧ ଥିବାର ବ୍ୟକ୍ତ କରି ଶାସ୍ତ୍ରୀୟପ୍ରମାଣ ଦେବାକୁ ଅଙ୍ଗୀକୃତ ହୋଇଅଛନ୍ତି।

*ଉତ୍କଳ ଦୀପିକା-୧୮୯୩, ପୃଷ୍ଠା-୨୬୬*

## କୋଣାର୍କର ମନ୍ଦିର ସଂସ୍କାର

ଶ୍ରୀକ୍ଷେତ୍ରର ଦଶକୋଶ ଦୂରରେ ସମୁଦ୍ର ତୀରରେ କୋଣାର୍କର ସେହି ଅପୂର୍ବ ମନ୍ଦିରର ଭଗ୍ନାବଶେଷ ଏବେ ମଧ୍ୟ ପଥିକର ନୟନ ମନ ମୁଗ୍ଧ କରିଥାଏ। ଜଗନ୍ନାଥଙ୍କ ମନ୍ଦିର କହ..-ଭୁବନେଶ୍ୱରଙ୍କର ମନ୍ଦିର କହ,-କାରୁ କାର୍ଯ୍ୟରେ, ଗଠନ ପ୍ରଣାଳୀର ପାରିପାଟ୍ୟରେ ଏବଂ ପ୍ରକାଣ୍ଡତ୍ୱରେ କୋଣାର୍କର ମନ୍ଦିର ନିକଟତର ଅନ୍ୟ କୌଣସି ମନ୍ଦିର ଶ୍ରେଷ୍ଠ ବୋଲି ପରିଗଣିତ ନୁହେ ସେହି ମନ୍ଦିରର ଭଗ୍ନାବଶେଷ ସୁରକ୍ଷା ସକାଶେ ଗବର୍ଣ୍ଣମେଣ୍ଟ ସମ୍ପ୍ରତି ପାଞ୍ଚ ହଜାର ଟଙ୍କା ମଞ୍ଜୁର କରିଅଛନ୍ତି। କୋଣାର୍କରେ ବର୍ତ୍ତମାନ ଜନମାନବ ନାହିଁ, କେବଳ ବାଲୁକା ସ୍ତୁପ ଧୂଧୂ କରୁଅଛି, ଦେଢ଼କୋଶ ମଧ୍ୟରେ କୌଣସି ଗ୍ରାମନାହିଁ। କୋଣାର୍କରେ ଏବେମଧ୍ୟମାତ୍ର ପ୍ରାଚୀନ କାଳର ବୃହତ୍ ଗୋଟିଏ କୂପଅଛି ସତ୍ୟ କିନ୍ତୁ ସେହି କୂପର ଜଳପାନ କରିବାକୁ ଭୟହୁଏ। କୂଅଭିତରେ ଜଙ୍ଗଲ ଜନ୍ମିଅଛି। ତୃଷ୍ଣାତୁର ପଥିକ ମାନଙ୍କର ଜଳ ପାନର ବ୍ୟବସ୍ଥା କରିବା ସର୍ବାଗ୍ରେ ବିଧେୟ। ତପ୍ରରେ ରହିବାର ସ୍ଥାନ ଆବଶ୍ୟକ। ଏହି ଦୁଇକାର୍ଯ୍ୟ ପ୍ରଥମେ

ସମ୍ପନ୍ନ କରି ତତ୍ପରେ ମନ୍ଦିର ରକ୍ଷାକାର୍ଯ୍ୟରେ ଅର୍ଥବ୍ୟୟ କରିବା ଉଚିତ। ସେଠାରେ ରାତ୍ରରେ ବାଘର ଭୟ ଅଛି।

*ସମ୍ବଲପୁର ହିତୈଷିଣୀ-୧୯୦୧_ପୃଷ୍ଠା ସଂଖ୍ୟା-୧୫୭*

ଭାରତୀୟ ପୁରାତତ୍ତ୍ୱ ବିଭାଗର ୧୯୦୮-୧୦୯୦୯ ମଃ ର କାର୍ଯ୍ୟ ବିବରଣୀ ପ୍ରକାଶିତ ହୋଇଅଛି। ଏହି ସୁବୃହତ୍ ଗ୍ରନ୍ଥର ପ୍ରଥମାଂଶରେ କୋଣାର୍କର କୃଷ୍ଣ ମନ୍ଦିର ରକ୍ଷଣ ସମ୍ବନ୍ଧେ ଡାକ୍ତର ଭୋଗେଲ (Dr. Vogal) ୧୯୦୮-୯ ସାଲର "ପୂର୍ବକେନ୍ଦ୍ରର ପୁରାତତ୍ତ୍ୱ ବିବରଣ"ରୁ ମୃତ ଡାକ୍ତର ବ୍ଲକଙ୍କର ଯେଉଁ ମତ ଉଦ୍ଧାର କରି ଅଛନ୍ତି ତାହା ଉଦ୍ଧୃତକଲୁଁ।

The main problem, which we have to face at present.... is the preservation of the spire. This part of the temple has now been completely cleared of debris, ..... and it now becomes evident that the spire of the temple never was completed, probably on account of the death of the king who built the Black Pagoda, Narasimha I, 1240- 1280 A.D."

କେତେକ ଗୋଟି ଖଣ୍ଡିତ ମୂର୍ତ୍ତି ରକ୍ଷଣ ସମ୍ବନ୍ଧେ ଡାକ୍ତର ଫୋଗେଲ ବ୍ଲକଙ୍କ ଗବେଷଣାପୂର୍ଣ୍ଣ "ପୂର୍ବ କେନ୍ଦ୍ରର ସାମ୍ବତ୍ସରୀକ ପୁରାତତ୍ତ୍ୱ ବିବରଣୀ"ରୁ ଯାହା ଉଦ୍ଧାର କରିଅଛନ୍ତି, କାହା ନିମ୍ନରେ ପ୍ରକାଶ କରାଗଲା।

The cuit of Jagannatha at Puri was not, as it is at present associated with the religion of the Vaishnavas, but with that of the Saivas..... We gather from this interesting fact, that one of the most popular religions in the India has been subject to a very important change, even as late as the 14th or 15th century A.D.

*ସମ୍ବଲପୁର ହିତୈଷିଣୀ-:୧୯୧୨-ପୃଷ୍ଠା ସଂଖ୍ୟା-୧୭୯*

# ମହିମା ବାବାଜୀ

ଆମ୍ଭମାନଙ୍କର ଯାଜପୁରସ୍ଥ ସମ୍ବାଦଦାତା ଲେଖନ୍ତି ଯେ ଢେଂକାନାଳ ସୁକିନ୍ଦା କେଉଁଝଡ଼ ପ୍ରଭୃତି ଗଡ଼ଜାତରେ କୁମ୍ଭିପଟ ନାମଧେୟରେ ପ୍ରାୟ ଚାରିପାଞ୍ଚଶତ ଲୋକ ଏକ ସମ୍ପ୍ରଦାୟ ବାନ୍ଧି ଅଛନ୍ତି। ଏହାଙ୍କର ଅପର ନାମ ମହିମାବାବାଜୀ। ଏହି ସମ୍ପ୍ରଦାୟ ମଧ୍ୟରୁ ଦୁଇ ଚାରିଜଣ ମଧୁପୁରରେ ପ୍ରବେଶ ହୋଇ ଲୋକଙ୍କ ଜାତିଧ୍ୱଂସର ଚେଷ୍ଟା କରିବାରୁ ରାଜା ତାହାଙ୍କୁ ହିନ୍ଦୁଧର୍ମର ବିରୋଧୀ ଜ୍ଞାନକରି ଆପଣା ରାଜ୍ୟରୁ ବାହାର କରିଦେଲେ। ସେହିବୈରାଗିଙ୍କ ମଧ୍ୟରୁ ଦୁଇଜଣ ଆଜକୁ ମା ୨ ସ ହେବ ଯାଜପୁରକୁ ଆସି ବ୍ରାହ୍ମଣ କରଣ ରାଢ଼ି ପ୍ରଭୃତି ନାନାଜାତି ମଧ୍ୟରୁ କେତେ ଗୁଡ଼ିଏ ଶିଷ୍ୟ କରି ତାହାଙ୍କୁ ସଙ୍ଗେ ନେଇ ବୁଲୁଅଛନ୍ତି। ରାଜା ଓ ବ୍ରାହ୍ମଣ, ଭଣ୍ଡାରି ଧୋବା, ମାଳୀ ଓ ଦାରୀ ଏହି ପାଞ୍ଚଜାତିକୁ ଛାଡ଼ି ଆଉ ସମସ୍ତଙ୍କ ଘରେ ଭୋଜନ କରନ୍ତି। ଖ୍ରୀଷ୍ଟୀୟାନଙ୍କୁ ସୁଦ୍ଧା ବାରଣ ନାହିଁ। ଏସମସ୍ତଙ୍କ ଘରୁ ଭାତ ମାଗିନେଇ ହାଣ୍ଡିରେ ରଖି ଦାଣ୍ଡରେ ଗୁରୁ ଶିଷ୍ୟସମସ୍ତେ ଏକତ୍ରେ ଭୋଜନ କରି ହାଣ୍ଡିକୁ ଭାଙ୍ଗି ପକାଇ ଦିଅନ୍ତି। ଲୋକେ ଏହାଙ୍କୁ ବଡ଼ ମାନନ୍ତି ଓ କେତେକ ଲୋକ ଏହାଙ୍କଠାରେ ଦୁଃଖ ଜଣାଇ ଆଜ୍ଞା ଘେନି ଅତି ଭକ୍ତି ସହିତ ପ୍ରତିପାଳନ କରିଅଛନ୍ତି। ପୁତ୍ରକାମନା ସୁଦ୍ଧା ସଫଳ କରିବାର ଶୁଣାଯାଏ। ଯାହା ହେଉ ଏହାଙ୍କଦ୍ୱାରା ଜାତିବିନାସର ପ୍ରବଳ ଉପାୟ ହେବାର ଦେଖି ଯାଜପୁରର ବ୍ରାହ୍ମଣମାନେ ସଭାକରି ସ୍ଥିର କରିଅଛନ୍ତି ମହିମାବାବାଜୀଙ୍କ ଦ୍ୱାରା ଯାହାଙ୍କର ଜାତି ନାଶ ହୁଅଇ ସେମାନେ ପତିତ ହେବେ ଓ ବିଧିମତ ପ୍ରାୟଶ୍ଚିତ୍ତ ନ କଲେ କେହି ତାହାଙ୍କର ସଂସର୍ଗୀ ହେବେ ନାହିଁ। ଏପରି ବିଧି ହେବାରୁ ଶିଷ୍ୟଙ୍କ ସଂଖ୍ୟା ଊଣା ହେଉଅଛି ଓ ଯେଉଁମାନେ ଶିଷ୍ୟ ହୋଇଅଛନ୍ତି ତାହାଙ୍କ ମଧ୍ୟରୁ ଅନେକଲୋକ ଘରକୁ ଫେରି ଆସି ପ୍ରାୟଶ୍ଚିତ୍ତର ଉଦ୍ୟମରେ ଅଛନ୍ତି।

ଏସବୁ ସେଠାରେ ଡେପୁଟୀ ମାଜିଷ୍ଟ୍ରେଟ ଶୁଣି ବାବାଜୀଙ୍କର ଅବସ୍ଥା ବୁଝିବାକାରଣ ଗତ ସପ୍ତାହରେ ତାହାଙ୍କୁ ଆପଣା କୋଠିକୁ ଡକାଇ ପଚାରିବାରେ ସେମାନେ ଆପଣା ମତର ଏହି ପରିଚୟ ଦେଲେ ଯେ ସେମାନେ ଦେବ କିମ୍ବା କୌଣସି ଶାସ୍ତ୍ର ମାନନ୍ତି ନାହିଁ କିମ୍ବା ତାହାଙ୍କର ଧର୍ମ ନିର୍ବେଦ ଓ ଅଲଖ କେବଳ ମହିମାକୁ ମାନନ୍ତି। ଏ ମହିମା ନାମର ଅଟଇ ଓ ନାମ ଅର୍ଥରେ ନିରାକାର ବ୍ରହ୍ମ କି ସେ ସକଳ ଲୋକରେ ବିରାଜମାନ ଅଛନ୍ତି ତଥାପି ରାଜା ଓ ବ୍ରାହ୍ମଣ ପ୍ରଭୃତି ପାଞ୍ଚଜାତିଙ୍କ ସହିତ ସେମାନେ ମିଶନ୍ତି ନାହିଁ ତହିଁର କାରଣ ଏହି ପ୍ରଦର୍ଶିତ କଲେ ଯେ ସେମାନେ ଅଧର୍ମୀ ଅଟନ୍ତି କ୍ରିୟା କରନ୍ତି ନାହିଁ ଏ ଘେନି ସେମାନେ ନିଷିଦ୍ଧ ଅଛନ୍ତି। ଡେପୁଟୀବାବୁ ଏସବୁ ଶୁଣି ତାହାଙ୍କୁ ଯୁକ୍ତିଦ୍ୱାରା ଅଭବ୍ୟ କରି ସବ୍‌ଡିବିଜନ ଛାଡ଼ି ଚାଲିଯିବାକୁ ପରାମର୍ଶ ଦେଲେ।

ଏ ବିଷୟରେ ଆମ୍ଭମାନଙ୍କୁ ଗୋଟିଏ କଥା କହିବାକୁ ହେଲା। ଧର୍ମବିଷୟରେ ଆମ୍ଭମାନଙ୍କର କିଛି କହିବାର ନାହିଁ କିନ୍ତୁ ଏ ସମ୍ପ୍ରଦାୟର ଲୋକେ ଯେ ରାଜାଙ୍କୁ ଅଧର୍ମୀ ଜ୍ଞାନ କରନ୍ତି ତହିଁର ତାତ୍ପର୍ଯ୍ୟ କି ଓ ରାଜା ଶବ୍ଦର ଅର୍ଥ କି? ଯେବେ ଗଡ଼ଜାତର ରାଜା ହୋଇ ଥାଏ ତେବେ ତହିଁରେ କିଛି ବକ୍ତବ୍ୟ ନାହିଁ କାରଣ ଯେଉଁ ରାଜାଙ୍କ ଅଧିକାରରେ ସେମାନେ ଅଛନ୍ତି ସେ ତହିଁର ସଦର୍ଥ ତାହାଙ୍କଠାରୁ ବୁଝି ଆବଶ୍ୟକମତେ ପ୍ରତୀକାର କରିବାକୁ ସକ୍ଷମ ଅଛନ୍ତି। କିନ୍ତୁ ଯେବେ ଇଂରାଜ

ଗବର୍ଣ୍ଣମେଣ୍ଟଙ୍କୁ ବୁଝାଏ ତେବେ ଏ କଥାଟି - ବଡ଼ କଠିନ ବୋଧ ହେଉଅଛି ଓ କର୍ତ୍ତୃପକ୍ଷଙ୍କର ଉଚିତ ଯେ ଉକ୍ତ ସମ୍ପ୍ରଦାୟର ଲୋକଙ୍କଠାରୁ ଏଥିର ବିସ୍ତାରିତ ବିବରଣ ଅବଗତ ହେଉନ୍ତୁ କାରଣ ଏମନ୍ତ ହୋଇପାରେ ଇଂରାଜଙ୍କୁ ଏମନ୍ତ ବିଷୟରେ ଅଧର୍ମୀ ବୋଲି ଲୋକଙ୍କଠାରେ ପରିଚୟ ଦେଉଥିବା କି ଯହିଁରେ ରାଜଭକ୍ତି ଊଣା ହେବାର ଓ ସମୟରେ ବିଦ୍ରୋହ ଜାତ ହେବାର ସମ୍ଭାବନା। ଗଡ଼ଜାତଲୋକମାନେ ଅତି ମୂର୍ଖ ସେଦିନ କେଉଝଡ଼ରେ ଏକ ବିଦ୍ରୋହ ହୋଇ ଯାଇଅଛି। ଓ ବାବାଜୀଙ୍କ କଥାରେ ସବୁଠାରୁ ଅଧିକ ବିଶ୍ୱାସ। ଏମାନଙ୍କୁ ଯେବେ ସର୍ବଦା ଇଂରାଜ ରାଜା ଅଧର୍ମୀ ବୋଲି କୁହାଯାଏ ଓ ତହିଁର କାଳ୍ପନିକ କେତେ ଉଦାହରଣ ମଧ୍ୟ ଦେଖାଇ ଦିଆଯାଏ ତେବେ ଏହାଙ୍କର ଦଳ ବୃଦ୍ଧି ହେଲେ ଯେ ଅନିଷ୍ଟ ଘଟିବ ଏଥିରେ ସନ୍ଦେହ କି ଅଛି?

*ଉତ୍କଳ ଦୀପିକା-୧୮୭୩: ପୃଷ୍ଠା ସଂଖ୍ୟା-୧୬୧*

## ପୁରୀରେ ଅଲେଖ ସମ୍ପ୍ରଦାୟଙ୍କର ଅତ୍ୟାଚାର (ଦୀପିକାରୁ)

ଏହି ମାର୍ଚ୍ଚମାନ ପ୍ରଥମଦିବସ ବେଳ ଦୁଇପ୍ରହର ସମୟରେ ଉକ୍ତ ସମ୍ପ୍ରଦାୟର ୧୬ ଜଣ ସ୍ତ୍ରୀ ପୁରୁଷ ଉଲଙ୍ଗ ଅବସ୍ଥାରେ ଭାତହାଣ୍ଡି ଘେନି ଜଗନ୍ନାଥଙ୍କୁ ପତିତ କରିବା ନିମନ୍ତେ ଦେଉଳ ଭିତରକୁ ଜବରଦସ୍ତି ପଶିଲେ। ଦେଉଳ ପରିଛା, ପଣ୍ଡା ପ୍ରଭୃତି ଅନେକ ଯତ୍ନରେ ସେମାନଙ୍କୁ ଦେଉଳରୁ ବାହାର କରି ଆଣିଲେ। ଏମନ୍ତ ସମୟରେ ସେମାନଙ୍କ ସରଦାର ଦଶାରାମ ଯେ କି ଦେଉଳର କବାଟ ଭାଙ୍ଗିବାରେ ଅନେକ ଯତ୍ନ କରିଥିଲା, ସେ ମନ୍ଦିର ସାମନାରେ ଝୁଣ୍ଟି ପଡ଼ି ଅଚେତ ହୋଇ ଘଣ୍ଟାକ ମଧ୍ୟରେ ମରିଗଲା। ପରେ ପୋଲିଶ ଆଣି ଲାସକୁ ମାଇନା ନିମନ୍ତେ ଡାକ୍ତରଙ୍କ ନିକଟକୁ ପଠାଇଲେ, ମାଇନାରେ ସେ ମାଡ଼ରେ ମରି ନଥିବାର ପ୍ରକାଶ ପାଇଲା। ପୋଲିଶର ତଦାରକରେ ମଧ୍ୟ ତାହା ଜଣାଗଲା। ସେମାନେ ମନ୍ଦିରରେ ପଶି ଧର୍ମ ବିଷୟରେ ହସ୍ତକ୍ଷେପ କରିଥିବା ଇତ୍ୟାଦି ବିଷୟର ନାଲିସ ହେବାରୁ ଅବଶିଷ୍ଟ ୧୫ ଜଣ ତିନିମାସ ଲେଖାଏଁ ମିଆଦ ପାଇଅଛନ୍ତି।

ସେମାନଙ୍କ ଘର ରାୟପୁର ଓ ସମ୍ବଲପୁର ପ୍ରଭୃତି ଅଞ୍ଚଳରେ। ସେମାନେ ଆପଣା ଗୁରୁ ଅଲେଖଙ୍କ ଆଜ୍ଞା ଯାହା ଉକ୍ତ ଦଶାରାମପ୍ରତି ହୋଇଥିଲା, ସେହି ଗୁରୁଙ୍କ ଆଜ୍ଞା ପ୍ରତିପାଳନ ସକାଶେ ଶ୍ରୀଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରା ଏହି ତିନିମୂର୍ତ୍ତିରେ ବ୍ରହ୍ମପଦାର୍ଥ ନ ଥିବା ଯୋଗୁଁ ସେହି ତିନିମୂର୍ତ୍ତିଙ୍କୁ ସିଂହାସନରୁ ଆଣି ବଡ଼ଦାଣ୍ଡରେ ପୋଡ଼ିଦେବା ନିମନ୍ତେ ଆସି ଥିବାର ପୋଲିଶ ତଦାରକରେ ଏବଂ ବିଚାରପତି ଡେଃ ମାଜିଷ୍ଟ୍ରେଟଙ୍କଠାରେ ପ୍ରକାଶକଲେ। ଏମାନଙ୍କଛଡ଼ା ଏମାନଙ୍କ ସମ୍ପ୍ରଦାୟ ଆଉ ୨୮ ଜଣ ସତ୍ୟବାଦୀ ମୁକାମରେ ଥିଲେ। ପୋଲିଶ ସେମାନଙ୍କୁ ଚାଲାଣ କରିବାରୁ ସେମାନଙ୍କ ମଧ୍ୟରୁ ଚାରିଜଣ ଉପରୋକ୍ତ କାରଣ ଦାରୁମୂର୍ତ୍ତିମାନଙ୍କୁ ପୋଡ଼ିବା ସକାଶେ ଆସିଥିବାର ଡେଃ ମାଜିଷ୍ଟ୍ରେଟଙ୍କଠାରେ ବ୍ୟକ୍ତ କଲେ। ଏଣୁ ସେମାନେ ସୁଦ୍ଧା ପ୍ରତ୍ୟେକେ ଏକ ସପ୍ତାହ ଲେଖାଏଁ ମିଆଦ ପାଇଛନ୍ତି।

ଅଲେଖ ସମ୍ପ୍ରଦାୟ, ସ୍ୱଭାବତଃ ମ୍ଳେଚ୍ଛ, ସ୍ନାନ କରନ୍ତି ନାହିଁ, ଝାଡ଼ା ଫେରି ପାଣି ଘେନନ୍ତି ନାହିଁ। ଉଲଙ୍ଗ ଅବସ୍ଥାରେ ଥାନ୍ତି ମଧ୍ୟ ସୁରାପାନ କରନ୍ତି।

*ବାଲେଶ୍ୱର ସମ୍ବାଦବାହିକା_୧୮୮୧_ପୃଷ୍ଠା_୪୭*

ଏଠାରେ ଦୁଇସପ୍ତାହ ହେଲା ଜନରବ ହୋଇଅଛି କି ପୁରୀରେ କେଳାଙ୍କ ପରି କେତେଜଣ ସ୍ତ୍ରୀ ପୁରୁଷ ଭାତହାଣ୍ଡି ସଙ୍ଗେ ନେଇ ବଳପୂର୍ବକ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ପ୍ରବେଶ କଲେ। ତେତେବେଳେ ଭୋଗ ବୁହା ହେଉଥିଲା ମନ୍ଦିରର ପହରାବାଲାମାନେ ନିଷେଧ କଲେ ମାତ୍ର ସେମାନେ ନ ମାନି ଜଗନ୍ନାଥଙ୍କ ପାଖକୁ ଯିବାକୁ ଉଦ୍ୟତ ହେଲେ ଏଥିରେ ପହରାବାଲାଙ୍କ ସହିତ କଜିଆ ହୋଇ ଶେଷରେ ମାଡ଼ଗୋଳ ହେଲା ତହିଁରେ ଆକ୍ରମଣକାରିଙ୍କ ମଧ୍ୟରୁ ଏକଜଣ ତତ୍କ୍ଷଣାତ୍ ମରିଗଲା ଆଉ ଲୋକେ କେବଳ ଆପଣା ହାଣ୍ଡିର ଭାତ ବିଞ୍ଚିଦେଇ ଭୋଗ ମାରାକରି ଜଗନ୍ନାଥଙ୍କୁ ପୋଡ଼ି ଦେଇ ତାହାଙ୍କ ଭସ୍ମ ଦେହରେ ବୋଳିବେ ବୋଲି ଧମକାଇ ଚାଲି ଆସିଲେ। ଦଣ୍ଡବିଧ ଆଇନର ଗୁଡ଼ାଏ ଅପରାଧ ମୁହୂର୍ତ୍ତକ ମଧ୍ୟରେ ହୋଇ ଗଲା ମାତ୍ର ପୁଲିସଦ୍ୱାରା ସେମାନେ ଗିରପ୍ତାର କିମ୍ବା ତାହାଙ୍କ ନାମରେ ମୋକଦ୍ଦମା ହେବାର ଜନରବରୁ ପ୍ରକାଶ ପାଉ ନାହିଁ ଏବଂ ଅବଧି କୌଣସି ସରକାରୀ ସମ୍ବାଦ ମଧ ଆସିବାର ଆମ୍ଭେମାନେ ଶୁଣି ନାହୁଁ। ଯାହା ହେଉ ଯେବେ ଏ ଘଟନାରେ ସତ୍ୟର ଲେଶ ଥାଏ ତେବେ ଜଗନ୍ନାଥଙ୍କର ଭାରୀ ବିପଦ ଏବଂ ତାହା ହେଲେ ଅବଧି କୌଣସି ନମ୍ବର ଜଗନ୍ନାଥୀ ନ ବାହାରିବା କିମ୍ବା କାଳିପଦ ବାବୁ ଜଗନ୍ନାଥଙ୍କ ରକ୍ଷା ନିମିତ୍ତ ପୁରୀକୁ ନ ଯିବା କିମ୍ବା ଅନ୍ୟ ପ୍ରତୀକାର ନ କରିବା ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟଇ। ପ୍ରକୃତ କଥା ଆଗାମୀ ସପ୍ତାହରେ ଜଣାଇବାକୁ ସକ୍ଷମ ହେବାର ଆମ୍ଭେମାନେ ଆଶା କରୁଁ।

*ଉତ୍କଳ ଦୀପିକା-୧୮୮୧: ପୃଷ୍ଠା ସଂଖ୍ୟା-୫୪*

## ପୁରୀ ଜଗନ୍ନାଥଙ୍କ ପ୍ରତି ଆକ୍ରମଣ

ଏ ବିଷୟରେ ଆମ୍ଭେମାନେ ଏଥିପୂର୍ବ ଯାହା ଶୁଣି ଥିଲୁଁ ତାହାର ସବିଶେଷ ବୃତ୍ତାନ୍ତ ସମ୍ପ୍ରତି ଅବଗତ ହୋଇ ପାଠକମାନଙ୍କୁ ଜଣାଉ ଅଛୁଁ।

ଯଥା:-

ଚଳିତ ମାସ ପ୍ରଥମ ତାରିଖ ମଙ୍ଗଳବାର ଦିନ ଦୁଇପ୍ରହର ସମୟରେ ନଙ୍ଗଳା ନଙ୍ଗୁଳୀ ୧୬ ଜଣ ଭାତହାଣ୍ଡି ନେଇ ମନ୍ଦିର ମଧ୍ୟକୁ ଯିବାକୁ ଉଦ୍ୟତ ହେଲେ ତହୁଁ ପ୍ରହରୀ ବର୍କନ୍ଦାଜ ଓ ଦ୍ୱାରୀ ଯିବାକୁ ନ ଦେଇ ସିଂହଦ୍ୱାର ବନ୍ଦ କରିବାକୁ ଚାହିଁବାରେ ସେମାନେ ଭାତହାଣ୍ଡି ଗରୁଡ଼ ସ୍ତମ୍ଭଠାରେ ରଖି କବାଟ ପେଲି ଦେଇ ସିଂହଦ୍ୱାର ସାମନା ଭୋଗମଣ୍ଡପ କବାଟ ଭାଙ୍ଗି ଜଗମୋହନ ବାଟେ ଜୟବିଜୟଦ୍ୱାରଠାରୁ ଯାଉଁ୨ ସେଠା କବାଟ ଓ ଦକ୍ଷିଣଦ୍ୱାର କବାଟକୁ ପଢ଼ିଆରୀ ପ୍ରଭୃତି ବନ୍ଦ କରି ଦେଲେ। ତହୁଁ ସେମାନେ ଶ୍ରୀ ଜିଉଙ୍କ ସିଂହାସନଠାକୁ ଯାଇ ନ ପାରିଲେ ଓ ସେମାନଙ୍କୁ ବର୍କନ୍ଦାଜ ପ୍ରଭୃତି ମନ୍ଦିର କର୍ମଚାରୀ ଏବଂ ଯାତ୍ରୀମାନେ କୌଣସି ମତେ ଓଗାଳି ବାହାର କରି ଆଣିଲେ। ସେମାନେ ଉଲଗ୍ନ ଓ ମଦୁଆନ୍ୟାୟ ଥିଲେ ମନ୍ଦିର ବାଟ କେବେହେଁ ଦେଖି ନ ଥିବାରୁ ଝୁଲି୨ ବାହାରି ଆସୁ ଆସୁ ସେମାନଙ୍କ ମଧ୍ୟରେ ଦଶାରାମ ନାମକ ସରଦାର ଥିଲା କି ସେ କବାଟ ଭାଙ୍ଗିବାରେ ଅନେକ ପରିଶ୍ରମ କରିଥିଲା ସେ ବ୍ୟକ୍ତି ଭୋଗମଣ୍ଡପ ପାବଚ୍ଛ ନିକଟ ଅଗ୍ନୀଶ୍ୱର ମହାଦେଙ୍କ ମନ୍ଦିର ସାମନାରେ ପଥର ଚଟାଣରେ ଝୁଣ୍ଟି ପଡ଼ି ଅଚେତ ହେଲା ତହୁଁ

ସେମାନଙ୍କ ସଙ୍ଗୀ ତାକୁ ଧରାଧରି କରି ଗରୁଡ଼ସ୍ତମ୍ଭଠାକୁ ନେଇ ଆସିଲେ ଓ ତାକୁ ଇଚ୍ଛାମତେ ଭାତ ଖୁଆଇଲେ ଓ ପ୍ରାୟ ଏକଘଣ୍ଟା ମଧ୍ୟରେ ସେ ବ୍ୟକ୍ତି ପ୍ରାଣ ତ୍ୟାଗ କଲା। ତଦପର ପୁଲିସ ସାହେବ ଓ ପୁଲିସ ସବ୍ ଇନ୍ସ୍‌ପେକ୍ଟର ଆସି ତାକୁ ଡାକ୍ତର ସାହେବଙ୍କଠାକୁ ପଠାଇଲେ। ଡାକ୍ତର ମାଡ଼ଦ୍ୱାରା ମରି ନ ଥିବା ଇତ୍ୟାଦିର ସାର୍ଟିଫିକଟ ଦେଇଥିବାର ପ୍ରକାଶ ହେଲା।

ପ୍ରଥମ ପୁଲିସର ସବ୍ ଇନ୍ସ୍‌ପେକ୍ଟର ବାବୁ ରାମକୁମାର ମୁଖୁର୍ଯ୍ୟା ତଦ୍‌ପର ବାବୁ କୃପାସିନ୍ଧୁ ମହାନ୍ତି ଉତ୍ତମରୂପେ ତଦାରଖ କଲେ ଓ ମନ୍ଦିରର କର୍ମଚାରୀ ଏବଂ ସେବକ ଓ ମନ୍ଦିରର ବେଇଲାକାଦାର ବ୍ୟକ୍ତିଙ୍କର ଜବାନବନ୍ଦୀ ନେଲେ ମୃତବ୍ୟକ୍ତି ପଥର ଚଟାଣରେ ପଡ଼ିବା ଆଘାତଦ୍ୱାରା ଦୈବୀ ଦୁର୍ଘଟଣାରେ ମରିଥିବା ଓ ମାଡ଼ଦ୍ୱାରା ମରି ନଥିବାର ପ୍ରମାଣ ହେଲା। ଏଥିର ମୋକଦ୍ଦମା ବାବୁ କମଳାନାଥ ଘୋଷ ଡେପୁଟୀ ମେଜଷ୍ଟରଙ୍କୁ ଅର୍ପଣ ହୋଇଥିଲା ସେ ମଧ୍ୟ ଉକ୍ତ ଅନୁସାରେ ଅନେକ ତଦାରଖ କରି ଅବଶିଷ୍ଟ ୧୫ ଜଣଙ୍କୁ ତିନିମାସ ଲେଖାଁଏ କଏଦ ରହିବାର ହୁକୁମ ଗତ ସୋମବାର ଦିନ ସାଦର କରିବାରୁ ସେମାନେ କଏଦ ହୋଇଛନ୍ତି।

ଉକ୍ତ ବ୍ୟକ୍ତିମାନଙ୍କ ଘର ରାୟପୁର ଓ ସମ୍ବଲପୁର ଅଞ୍ଚଳରେ ଅଟେ ସେମାନେ ତାଙ୍କ ଗୁରୁ ଅଲେଖଙ୍କ ଆଜ୍ଞା ଯାହା ମୃତ ଦଶାରାମପ୍ରତି ହୋଇଥିଲା ସେହି ଆଜ୍ଞା ପ୍ରତିପାଳନରେ ଶ୍ରୀ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରା ଏପରି ଦିନି ଦାରୁ ମୂର୍ତ୍ତିମାନଙ୍କରେ ବ୍ରହ୍ମ ପଦାର୍ଥ ନ ଥିବା ହେତୁ ତାଙ୍କୁ ସିଂହାସନରୁ ଆଣି ବଡ଼ଦାଣ୍ଡରେ ପୋଡ଼ିଯିବା କାରଣ ଆସିଥିବାର ପୁଲିସ ତଦାରଖରେ ଏବଂ ଡେପୁଟୀ ମେଜଷ୍ଟରଙ୍କଠାରେ ପ୍ରକାଶ କଲେ ଓ ଏମାନଙ୍କ ଛଡ଼ା ପୁରୁଷ ଓ ସ୍ତ୍ରୀ ଓ ବାଳକ ଓ ବାଳିକା ଯେ ସତ୍ୟବାଦୀ ମୁକାମଠାରେ ଜ୨୮ଣ ଥିଲେ ସେମାନଙ୍କ ଅବସ୍ଥା ଦୃଷ୍ଟିରେ ସେମାନଙ୍କୁ ପୁଲିସ ଚାଳାଣ କରିବାରେ ସେମାନଙ୍କ ମଧ୍ୟରୁ ଚାରିଜଣ ଉକ୍ତ ଅନୁସାରେ ଦାରୁମୂର୍ତ୍ତିମାନଙ୍କୁ ପୋଡ଼ିବା ନିମନ୍ତେ ଆସିଥିବାର ଡେପୁଟୀ ମେଜଷ୍ଟରଙ୍କଠାରେ ଏକରାର କରିବାରୁ ସେମାନଙ୍କୁ ଏକ ସପ୍ତାହ ଲେଖାଏଁ କଏଦର ହୁକୁମ ସାଦର ହୋଇଅଛି ଉକ୍ତ ବ୍ୟକ୍ତିମାନେ ଅତ୍ୟନ୍ତ ମ୍ଳେଚ୍ଛ ସ୍ନାନ କରନ୍ତି ନାହିଁ ଓ ପୋଖରୀ ବସି ପାଣି ନିଅନ୍ତି ନାହିଁ।

ଏହି ଅଲେଖ ସମ୍ପ୍ରଦାୟିଙ୍କ ମତ କିସ ଏମାନଙ୍କ ଗୁରୁ କିଏ ସେ କି ପ୍ରକାରରେ ଆପଣା ମତ ବିସ୍ତାର କରୁଅଛନ୍ତି, କେତେ ଲୋକ ତାହାଙ୍କର ମତାବଲମ୍ବୀ ହୋଇଅଛନ୍ତି, ସେମାନେ ପୂର୍ବେ କି ଜାତି ବା କି ଧର୍ମାବଲମ୍ବୀ ଥିଲେ ଏବଂ ଜଗନ୍ନାଥଙ୍କ ଉପରେ ତାହାଙ୍କର ଏତେ ଆକ୍ରୋଶ କାହିଁକି ଏ ସମସ୍ତ ବିଷୟ ଆମ୍ଭମାନଙ୍କ ସମ୍ବାଦଦାତା ଅନୁସନ୍ଧାନ କରି ଲେଖିଲେ ସର୍ବ ସାଧାରଣଙ୍କର ବଡ଼ ମନୋରଞ୍ଜନ ହୁଅନ୍ତା। ଏ ସମ୍ପ୍ରଦାୟ ମଧ୍ୟରୁ ଯେଉଁମାନେ ବର୍ତ୍ତମାନ ଜେଲଖାନାରେ ଅଛନ୍ତି ସେମାନଙ୍କଠାରୁ ସମସ୍ତ କଥା ମିଳିପାରେ। ଅନୁମାନରେ ବୋଧ ହେଉଅଛି ଏମାନେ ସାନ୍ତାଳଙ୍କ ପରି ଅସଭ୍ୟ ବଣୁଆଁ ଜାତି ଅଟନ୍ତି ଏବଂ କୌଣସି ଚତୁର ଲୋକ ଏହାଙ୍କ ଗୁରୁ ହୋଇ ଏହାଙ୍କୁ ଠକି ଖାଉଅଛି।

*ଉତ୍କଳ ଦୀପିକା-୧୮୮୧: ପୃଷ୍ଠା ସଂଖ୍ୟା-୬୪*

# କୁମ୍ଭିପଟ୍ଟ ବାବାଜୀ

ସମ୍ବଲପୁରର କେତେକ ଜଣ କୁମ୍ଭିପଟିଆ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ଆକ୍ରମଣ କରି ଦଣ୍ଡ ପାଇଥିବା ବିଷୟ ଏଥି ପୂର୍ବେ ଆମ୍ଭେମାନେ ପାଠକବୃନ୍ଦଙ୍କୁ ଜଣାଇ ଅଛୁଁ ତାହା ସେମାନଙ୍କର ସ୍ମରଣ ଥିବ। ଏ ସମାଚାର ଗବର୍ଣ୍ଣମେଣ୍ଟଙ୍କ ଗୋଚରରେ ଆସିବାରୁ ତାଙ୍କର ଅନୁରୋଧକ୍ରମେ ମଧ୍ୟପ୍ରଦେଶର ପ୍ରଧାନ କମିଶନର କୁମ୍ଭିପଟିଆ ସମ୍ପ୍ରଦାୟର ବିବରଣ ଲେଖି ପଠାଇଅଛନ୍ତି। ଉକ୍ତ ବିବରଣ କଲିକତା ଗଜେଟରେ ପ୍ରକାଶ ହେବାରୁ ସମ୍ବାଦପତ୍ରମାନଙ୍କରେ ତାହା ଉଲ୍ଲିଖିତ ହେଉଅଛି ଓ ତାହା କୌତୁକଜନକ ଥିବାରୁ ଆମ୍ଭେମାନେ ମଧ୍ୟ ପାଠକମାନଙ୍କୁ କିଞ୍ଚିତ ଜଣାଉ ଅଛୁଁ।

ସମ୍ବଲପରୁ ଜିଲ୍ଲାରେ ସେ ସମ୍ପ୍ରଦାୟର ଅବସ୍ଥିତି। ସେମାନେ କୁମ୍ଭି ନାମକ ବୃକ୍ଷର ପଟ ବା ପଟୁଆ ପରିଧାନ କରୁଥିବାରୁ କୁମ୍ଭିପଟିଆ ବୋଲାନ୍ତି। ସେମାନଙ୍କ ମଧ୍ୟରୁ କେତେକ ଲୋକ ଏ ଜିଲ୍ଲାକୁ କେବେ କେବେ ଆସି ମୋଫସଲରେ ବୁଲନ୍ତି ଓ ଲୋକେ ସେମାନଙ୍କୁ କୁମ୍ଭିପଟ ବାବାଜୀ କହନ୍ତି ଓ ସମାଦର କରନ୍ତି। ସେମାନଙ୍କ ଧର୍ମର ଅନ୍ୟ ନାମ "ଅଲେଖ"। ସେମାନେ ଅଲେଖସ୍ୱାମୀଙ୍କୁ ଈଶ୍ୱରଙ୍କ ଅବତାର ବୋଲି ମାନନ୍ତି। ଅଲେଖସ୍ୱାମୀ ହିମାଳୟ ପର୍ବତରେ ବାସ କରୁଥିଲେ, ସନ ୧୮୬୪ ସାଲରେ ବାଙ୍କି ଜିଲ୍ଲାର ମାଳବେହାରପୁରକୁ ଆସି ଜ୬୪ଣ ଶିଷ୍ୟ କରି ଅଲେଖ ଧର୍ମ ପ୍ରକାଶ କଲେ। ସେ ଶିଷ୍ୟଗଣଙ୍କ ଯୋଗେ ଏ ଧର୍ମ ପ୍ରଚାରିତ ହେଲା। ଅଲେଖସ୍ୱାମୀ ବାଙ୍କିରୁ ଢେଙ୍କାନାଳ ଗଲେ ଓ ସେଠାରେ ତିନିବର୍ଷ କାଳ ଭିକ୍ଷାଶ୍ରମ ଅବଲମ୍ବନ କରି ମୃତ୍ୟୁ ଲଭିଲେ।

ଯଦ୍ୟପି ଏ ଧର୍ମ ଏ ଜିଲ୍ଲାରେ ପ୍ରଥମେ ପ୍ରକାଶ ହେଲା ମାତ୍ର ସତ୍ୱର ସମ୍ବଲପୁର ଜିଲ୍ଲାରେ ବିଶେଷ ପ୍ରଚାର ହେଲା ଓ ସେଠାରେ ବ୍ରାହ୍ମଣ ବ୍ୟତୀତ ଅନ୍ୟ ସକଳଜାତୀୟ ଲୋକେ ଏ ଧର୍ମ ଗ୍ରହଣ କଲେ। ବର୍ତ୍ତମାନ ସେ ଜିଲ୍ଲାର ଗୋ୩୦ଟି ଗ୍ରାମରେ ଏ ଧର୍ମ ପ୍ରବଳ ଅଛି। କୁମ୍ଭି ପଟିଆମାନେ ତିନି ସମ୍ପ୍ରଦାୟରେ ବିଭକ୍ତ।

(୧) ପ୍ରକୃତ କୁମ୍ଭିପଟିଆ (୨) କନାପଟିଆ - ଏମାନେ ପଟୁଆ ପରିବର୍ତ୍ତେ ଛିଣ୍ଡାକନା ପିନ୍ଧନ୍ତି। (୩) ଆଶ୍ରିତ ଅର୍ଥାତ୍ ଗୃହସ୍ଥ। ପ୍ରଥମ ଦୁଇସମ୍ପ୍ରଦାୟ ନିଅଙ୍ଗୀ ଓ ଗୃହତ୍ୟାଗୀ ଅଟନ୍ତି। କୁମ୍ଭିପଟିଆମାନେ ଏକ ଅଦ୍ୱିତୀୟ ପରମେଶ୍ୱର ମାନନ୍ତି, ସତ୍ୟପାଳନ ଗୁରୁପଦେଶ ଗ୍ରହଣ ଓ ବିଶ୍ୱାସ ଏ ତିନୋଟି ସେ ଧର୍ମର ପ୍ରଧାନ ନିୟମ। ସେମାନେ ଜାତିଭେଦ ମାନନ୍ତି ନାହିଁ ଓ ସକଳ ଜାତୀୟ ଲୋକଙ୍କ ହାତର ଅନ୍ନ ଭୋଜନ କରନ୍ତି କିନ୍ତୁ ରାଜା ବ୍ରାହ୍ମଣ ଧୋବା ଓ ହାଡ଼ି ହସ୍ତର ଅନ୍ନ ଗ୍ରହଣ କରନ୍ତି ନାହିଁ। କାରଣ ରାଜା ଅତ୍ୟାଚାର ପୂର୍ବକ ଅର୍ଥ ସଂଗ୍ରହ କରଇ, ବ୍ରାହ୍ମଣ ଶ୍ରାଦ୍ଧର ଚାଉଳ ଇତ୍ୟାଦି ନେଇ ଖାଏ ଓ ଧୋବା ହାଡ଼ିମାନେ ଅତି ନୀଚକର୍ମ କରନ୍ତି। ସେମାନେ ହିନ୍ଦୁଙ୍କ ୩୩ କୋଟି ଦେବତାଙ୍କ ଅସ୍ତିତ୍ୱ ସ୍ୱୀକାର କରନ୍ତି ମାତ୍ର ସେମାନଙ୍କ ପ୍ରତିମା ପୂଜା କରନ୍ତି ନାହିଁ। ସେମାନେ ବୋଲନ୍ତି ଈଶ୍ୱରଙ୍କୁ କେହି କେବେ ଦେଖି ନାହିଁ ସୁତରାଂ ତାଙ୍କର ପ୍ରତିମା କିରୂପେ ଠିକ ପ୍ରସ୍ତୁତ ହୋଇ ପାରିବ ଏହେତୁ ସେମାନେ ଦେବ ଦେବୀର ପୂଜା କରନ୍ତି ନାହିଁ ଓ ହିନ୍ଦୁଧର୍ମ ପ୍ରତି

ତାଙ୍କର ବିଦ୍ୱେଷଭାବ ଅଛି। ହିନ୍ଦୁମାନେ ତୁଳସୀପତ୍ରକୁ ପବିତ୍ର ଜ୍ଞାନ କରନ୍ତି ବୋଲି ସେମାନେ ତାହା ସ୍ପର୍ଶ କରନ୍ତି ନାହିଁ ଏହି ପ୍ରକାର ଅନ୍ୟ କେତେକ କଥା ଅଛି। ସେମାନେ ପ୍ରାତଃସନ୍ଧ୍ୟା ଉପାସନା କରନ୍ତି। ଦିନବେଳେ ଭୋଜନ କରନ୍ତି ରାତିରେ ଭୋଜନ ନିଷେଧ। ରାତ୍ରରେ କେହି କ୍ଷୁଧାର୍ତ୍ତ ହେଲେ କେବଳ ପାଣି ପିଅଇ। ରୋଗ ହେଲେ ସେମାନେ ଈଶ୍ୱରଙ୍କ ଉପରେ ନିର୍ଭର କରି ଔଷଧ ସେବନ କରନ୍ତି ନାହିଁ। ଦୁଇବର୍ଷ ହେଲା କୁମ୍ଭିପଟିଆମାନେ ଦୁଇ ଦଳର ବିଭକ୍ତ ହୋଇଅଛନ୍ତି। ଭୀମକନ୍ଦ ନାମକ ଜଣେ ବ୍ୟକ୍ତି ସେମାନଙ୍କ ଅଧିନାୟକ ଥିଲା। ସେ ଜନ୍ମାନ୍ଧ କିନ୍ତୁ ବଡ଼ ବୁଦ୍ଧିମନ୍ତ। ସେ କିଛି ଲେଖା ପଢ଼ା କରି ନାହିଁ, କେବଳ ପରାକୃତ ମହାଭାରତ ଓ ଭାଗବତ ଶୁଣି ଗ୍ରନ୍ଥ ରଚନା କରିବାକୁ ପାରଗ ହୋଇଅଛି ଓ କେତେ ଖଣ୍ଡ ଈଶ୍ୱର ସ୍ତୋତ୍ରଗୀତା ରଚନା କରିଅଛି ଓ ସେପରି ସୁନ୍ଦର ରଚନା ବର୍ତ୍ତମାନର ଶିକ୍ଷିତ ଲୋକଙ୍କଦ୍ୱାରା ହେବାର ବିରଳ। କୌଣସି ସ୍ତ୍ରୀ ସହିତ ତାର ପାପ ପ୍ରଣୟ ହେବାରୁ ସେ ସ୍ତ୍ରୀ ଗର୍ଭବତୀ ହେଲାରୁ କୁମ୍ଭିପଟ ସମ୍ପ୍ରଦାୟ ଲୋକଙ୍କର ତାହାପ୍ରତି କିଛି ବିରକ୍ତି ଜାତ ହେଲା ତହୁଁ ସେମାନଙ୍କୁ ଭଣ୍ଡାଇ କହିଲା ଯେ ସେ ସ୍ତ୍ରୀ ଗର୍ଭରୁ ଅର୍ଜୁନ ଜନ୍ମ ହୋଇ ଅଲେଖ ଧର୍ମରେ ଅବିଶ୍ୱାସିମାନଙ୍କୁ ବିନିଷ୍ଟ କରିବେ। ଏଥିରେ ସେମାନେ ବିଶ୍ୱାସ କରି ଅର୍ଜୁନ ଜନ୍ମକୁ ଅପେକ୍ଷା କରି ରହିଲେ କିନ୍ତୁ ସେ ଗର୍ଭରେ କନ୍ୟାଟିଏ ଜାତ ହେଲା ତହୁଁ ଭୀମକନ୍ଦ କହିଲା ନିକଟରେ ମୋତେ ଈଶ୍ୱରାଦେଶ ହୋଇଅଛି ଯେ ସେ ସ୍ତ୍ରୀ ଗର୍ଭରୁ ଦେବକନ୍ୟା ଟିଏ ଜନ୍ମ ହୋଇ ମହିମା ବଳେ ଅବିଶ୍ୱାସିମାନଙ୍କୁ ବିନାଶ କରିବ। କିନ୍ତୁ କେବଳ କେତେକଦିନ ଉତ୍ତାରେ ସେ କନ୍ୟାଟି ପଞ୍ଚତ୍ୱ ପାଇଲା ତହୁଁ ଭୀମ କହିଲା ସେ ଦେବକନ୍ୟା ଏ ପାପମୟ ପୃଥବୀକୁ ଘୃଣା କରି ସ୍ୱର୍ଗଧାମକୁ ଗମନ କଲେ। ଯେଉଁମାନଙ୍କର କିଞ୍ଚିତ ବୁଦ୍ଧି ବିବେଚନା ଥିଲା ସେମାନେ ଏଥିରେ ଅବିଶ୍ୱାସ କଲେ ଓ ପୃଥକ୍ ଦଳ ହୋଇ ଗଲେ ଅବଶିଷ୍ଟମାନେ ଭୀମ ଦଳରେ ରହି ତାକୁ ଏପର୍ଯ୍ୟନ୍ତ ପୂଜା କରୁଅଛନ୍ତି। ପ୍ରତ୍ୟହ ପ୍ରାତଃକାଳେ ଗୋଟିଏ ବେଦୀ ଉପରେ ଭୀମ ସସ୍ତ୍ରୀକ ଆସୀନ୍ ହୁଏ ଓ ତାହାର ଶିଷ୍ୟମାନେ ବେଦୀ ପ୍ରଦକ୍ଷିଣ ପୂର୍ବକ ଦୁହିଙ୍କର ପାଦ ଦୁଗ୍ଧରେ ଧୌତ କରି ତାହା ପାନ କରନ୍ତି। ଦୁଇଦଳ ହେବାର ଅନ୍ୟତର କାରଣ ଏହି ଯେ ଭୀମକନ୍ଦ ଆପଣାକୁ ଈଶ୍ୱରଙ୍କ ଅବତାର ବୋଲି ପରିଚୟ ଦେଇଥିଲା। ଯେଉଁମାନେ ଶ୍ରୀ ଜଗନ୍ନାଥମନ୍ଦିର ଆକ୍ରମଣ କରିଥିଲେ ସେମାନେ ଚନ୍ଦ୍ରପୁର ନିବାସୀ ଓ ଦାସରାମ ତାଙ୍କର ନେତା। ଜଗନ୍ନାଥଙ୍କୁ ପୋଡ଼ି ପକାଇଲେ ହିନ୍ଦୁମାନେ ହିନ୍ଦୁଧର୍ମର ଅଲୀକତ୍ୱ ବୁଝି ପାରିବେ ଓ ସମସ୍ତେ ସତ୍ୟଧର୍ମ ଅର୍ଥାତ୍ ଅଲେଖ ଧର୍ମ ଗ୍ରହଣ କରିବେ ଏହି ମାନସରେ ଦାସରାମ କେତେକ ଜଣ କୁମ୍ଭିପଟଧାରୀ ସଙ୍ଗେ ଘେନି ପୁରୀକୁ ଆସିଥିଲା ଓ ଅବଶେଷରେ ଦଙ୍ଗା ହଙ୍ଗାମାରେ ପ୍ରାଣ ହରାଇଲା।

କୁମ୍ଭିପଟିଆଙ୍କ ମଧ୍ୟରେ କୌଣସି ବ୍ୟକ୍ତି ମିଥ୍ୟା କହିଲେ ଅବା କୌଣସି ଅପରାଧ କଲେ ପତିତ ଓ ସମାଜଚ୍ୟୁତ ହୁଅଇ। କେହି ଏ ଧର୍ମ ଗ୍ରହଣ କରିବାକୁ ଚାହିଁଲେ ଆଗେ ତାହାର ପରୀକ୍ଷା ହୁଏ। ଅନୁଗୁଳରେ କେତେକ ପାଣ ବଡ଼ ଦୁରାଚାରୀ ଥିଲେ ସେଠାର ତହସିଲଦାର ସେମାନଙ୍କୁ "ଅଲେଖ" ଧର୍ମ ଗ୍ରହଣ କରାଇବାରୁ ସେମାନେ ଦୁଷ୍କର୍ମରୁ ନିବର୍ତ୍ତ ହୋଇଅଛନ୍ତି ଓ ସେଠାରେ

ଶାନ୍ତି ବିରାଜୁଅଛି। ଉତ୍ତମ, ତେବେ ଏ ଧର୍ମ ବାସ୍ତବିକ ଫଳଦାୟକ କିନ୍ତୁ କୁମ୍ଭିପଟିଆଙ୍କର ଅଧିନାୟକ ଯେ ମିଥ୍ୟା କହିବା ଓ ବ୍ୟଭିଚାର କରିବାର ପ୍ରକାଶ ତେବେ କୌଣସି ଜାତି ବା ଧର୍ମର ସମସ୍ତ ଲୋକଙ୍କର ସାଧୁ ବ୍ୟବହାର ହୋଇ ପାରଇ ନାହିଁ।

*ଉତ୍କଳ ଦୀପିକା-୧୮୮୧: ପୃଷ୍ଠା ସଂଖ୍ୟା-୨୨୬-୨୨୭*

## ପ୍ରେରିତ ପତ୍ର

"ମହିମା ଧର୍ମାବଲମ୍ବିମାନେ କିଏ" ବୋଧ ହୁଏ ଏହା ପ୍ରାୟ ସମସ୍ତଙ୍କୁ ଅବିହିତ ନଥିବ। ଏହି ଧର୍ମାବଲମ୍ବିମାନେ ଏକଶ୍ୱର ବାଦୀ ଓ ଜାତିଭେଦ ମାନନ୍ତି ନାହିଁ ଏକ ସୂର୍ଯ୍ୟଙ୍କର ଉଦୟଠାରୁ ଅସ୍ତ ପର୍ଯ୍ୟନ୍ତ ସମୟ ଭିନ୍ନ ଅନ୍ୟ ସମୟରେ ଆହାର କରନ୍ତି ନାହିଁ (ଦିବସ ବିନା ରାତ୍ରରେ ଖାଇବା ନିଷେଧ)

ଯିଶୁଙ୍କୁ ପୂନର୍ବାର ଦର୍ଶନ କରିବା ଖ୍ରୀଷ୍ଟିୟାନମାନଙ୍କର ଯେପରି ବିଶ୍ୱାସ ଧର୍ମ ପ୍ରଚାରକ ମହିମାଙ୍କ ସହିତ ଇହ ଜଗତରେ ପୁନର୍ମିଳନ ହେବା ଏହି ଧର୍ମାବଲମ୍ବିମାନଙ୍କର ମଧ୍ୟ ସେହି ପରି ବିଶ୍ୱାସ। ଏ ଧର୍ମଦ୍ୱାରା ସମାଜର କୌଣସି ଉନ୍ନତି ହୋଇ ନାହିଁ। ଏଥିରେ ନୀଚ ଅସଭ୍ୟ ଲୋକମାନେ ଅଧିକାଂଶ ଥିବାରୁ ଧର୍ମର ଗୌରବ ଓ ମହିମା ରହି ପାରିଲା ନାହିଁ ନଚେତ୍ ବ୍ରାହ୍ମଧର୍ମ ପରି ସମାଜର କୌଣସି ଉନ୍ନତି ହୋଇ ଥାଆନ୍ତା।

ଉକ୍ତ ଧର୍ମାବଲମ୍ବିମାନେ ଦୁଇ ଶ୍ରେଣୀରେ ବିଭକ୍ତ; ଯଥା ଯୋଗୀ ଓ ଭୋଗୀ। ପ୍ରଥମୋକ୍ତ ଦଳ କୁମ୍ଭିପଟିଆ ଅର୍ଥାତ କୁମ୍ଭିପଟ ପରିଧାନ କରନ୍ତି। ଏମାନଙ୍କର ମଠ ଢେଙ୍କାନାଳ ଅନ୍ତର୍ଗତ ଜୋରନ୍ଦା ଗ୍ରାମ ପ୍ରାନ୍ତରେ ଅଟେ। ଏଠାରେ ମହିମାଙ୍କର ସମାଧି ଅଛି। ସମାଧି ନିକଟରେ ଗୋଟିଏ ଅମୁହାଁ ଦେଉଳ ଅଛି। ଏ ମଠ ମହୁପଲଡ଼ା ମଠପରି ରମଣୀୟ ନୁହେଁ।

ଶେଷୋକ୍ତ ଦଳ କନାପଟିଆ ଅର୍ଥାତ୍ ଗେରୁବସ୍ତ୍ର ଓ ମଠାଦି ବ୍ୟବହାର କରନ୍ତି। ଏମାନଙ୍କର ମଠଟି ଗଡ଼କୁ ପ୍ରାୟ ତିନିକ୍ରୋଶ ଦୂରରେ ମହୁଲପଡ଼ା ଗ୍ରାମ ନିକଟସ୍ଥ ନିର୍ଜନ ଅରଣ୍ୟ ମଧ୍ୟରେ ଅବସ୍ଥିତି। ଏଠାରେ ମହିମାଙ୍କ ପ୍ରଥମ ଶିଷ୍ୟ ନରସିଂହ ଦାସ ଅଛନ୍ତି। ମଠକୁ ଦେଖି ପୁରା କାଳର ବର୍ଣ୍ଣିତ ଆଶ୍ରମପରି ବୋଧ ହୋଲା ଏବଂ ମନରୁ ପାର୍ଥିବ ଚିନ୍ତା ସକଳ ଦୂରୀଭୂତ ହୋଇ ଅଭୂତ ପୂର୍ବ ସ୍ୱର୍ଗୀୟ ଭାବ ଉଦୟ ହେଲା। ଏହାର ପ୍ରବେଶ ମାର୍ଗ ଦେଇ ଗୋଟିଏ ସୁନିର୍ମଳଝର ପ୍ରବାହିତ ହୋଇ ଜୀବ ଜନ୍ତୁଙ୍କର ଅଭାବ ମୋଚନ କରୁଅଛି। ଅନତିଦୂରରେ ଗୋଟିଏ ଉଚ୍ଚ ମଣ୍ଡପ ଅଛି। ଶିଶ୍ୟମାନଙ୍କ ରହିବା ନିମିତ୍ତ ଅନେକ ଗୁଡ଼ିଏ ଛୋଟ ଛୋଟ ଗୃହ ଅଛି। ଇଷ୍ଟକ ନିର୍ମିତ ଗୋଟିଏ ଶୂନ୍ୟ ଗୃହ, ଗୋଟିଏ ଭଣ୍ଡାର ଗୃହ ଓ ଗୋଟିଏ ଅଗ୍ନିଗୃହ ଅଛି। ଅଗ୍ନିଗୃହର ଚତୁର୍ଦ୍ଦିଗରେ ଚାରିଗୋଟି ଦ୍ୱାର ଅଛି। ଆମ୍ର, ପଣସ ଓ କଦଳୀ ପ୍ରଭୃତି ଛୋଟ ଛୋଟ ବୃକ୍ଷମାନେ ଫଳଭାରରେ ଅବନତ ହୋଇ ସ୍ଥାନର ମହିମା ପ୍ରକାଶ କରୁଥାନ୍ତି। ଆଶ୍ରମବାସିମାନେ ଉକ୍ତ ଆରୋପିତ ବୃକ୍ଷମାନଙ୍କର ଫଳ ଭକ୍ଷଣ କରନ୍ତି ନାହିଁ। ଅନ୍ୟାନ୍ୟ ଲୋକମାନେ ତାହା ଗ୍ରହଣ କରନ୍ତି ପ୍ରତ୍ୟେକ ବୃକ୍ଷର ନିମ୍ନପ୍ରଦେଶରେ ଗୋଟିଏ ଗୋଟିଏ ଆଳବାଳ ଅଛି। ପକ୍ଷିମାନଙ୍କର ଅକୁତୋଭୟରେ ଜଳପାନ କରିବା ଦେଖି ହିଂସା କି ଜଘନ୍ୟ ପଦାର୍ଥ ତାହା ଉତ୍ତମରୂପେ

ହୃଦୟଙ୍ଗମ ହୁଏ। ଯଦି ବା ଆଶ୍ରମରେ ପୋଷିତ ମୃଗ ଶାବକଗଣ ନାହାନ୍ତି। ତଥାପି ହରିଣଗଣ ସମୟେ ସମୟେ ବନରୁ ଆସି ତହିଁର ଅଭାବ ମୋଚନ କରନ୍ତି। ଲତା ସକଳ ବାୟୁ ବେଗରେ ଝୁଲି ପଡୁଥିବାରୁ ବୋଧ ହୁଏ ଏମାନେ ଫଳ ପ୍ରଦାନ କରିବା ଲାଗି ନଉଁ ଅଛନ୍ତି କି?

କ୍ଷୁଦ୍ରାନ୍ ନ କକ୍ଷୁ ହରିଣାନ୍ ମୃଗେନ୍ଦ୍ରଃ
ବିଶଶ୍ୱସେ ପକ୍ଷିଗଣୈଃ ସମନ୍ତ ତୁ
ନଂନମ୍ୟମାନଃ ଫଳ ଦିସ୍ୱୟେବ
ଚକାଶିରେ ତିତ୍ର ଲତା ବିଲୋଳାଃ।

ସୁଚିକ୍କଣ ଚିତ୍ତରଞ୍ଜନ ଅଙ୍ଗନମାଳ, ବୃକ୍ଷୋପରି ସୁଖାସୀନ ବିହଙ୍ଗ କୂଳର ମନୋହର ନିନାଦ, ଏକ ପୁଷ୍ପରୁ ଅନ୍ୟ ପୁଷ୍ପକୁ ଗମନା ଗମନ କାରୀ ଭୃଙ୍ଗ ସଙ୍କୁଳଙ୍କର ଗୁଣୁ ଗୁଣୁ ସୁମଧୁର ସ୍ୱନ, ଅଗ୍ନିଗୃହର ଆହୁତି ଓ ବନପ୍ରଦେଶସ୍ଥ କୁସୁମଚୟର ଗନ୍ଧବହୀ ମନ୍ଦ ମନ୍ଦ ସମୀରଣ ଏବଂ କଦମ୍ବବୃକ୍ଷର ନିମ୍ନ ପ୍ରଦେଶସ୍ଥ ଚିତ୍ତବିନୋଦିନୀ ଓ ଶାନ୍ତି ପ୍ରଦାୟିନୀ ମୃଣ୍ମୟ ବେଦିକା ଆଶ୍ରମର ଶୋଭା ବର୍ଦ୍ଧନ କରିଅଛି ଏବଂ ଦର୍ଶକଙ୍କର ମନକୁ ଆନନ୍ଦ ଲହରିରେ ଖୋଳାଇ ଦେଉଅଛି।

୨୨/୨/୮୩

କଟକ

ଶ୍ରୀ ଦାମୋଦର ପଟ୍ଟନାୟକ

*ଉତ୍କଳ ଦୀପିକା-୧୮୮୩: ପୃଷ୍ଠା ସଂଖ୍ୟା-୮୯*

## କୁମ୍ଭ ପାଟିଆ ସମ୍ପ୍ରଦାୟ

ଓଡ଼ିଶାରେ ଏହି ସମ୍ପ୍ରଦାୟର ଅନ୍ୟୁନ ୨୫୦୦୦ ଲୋକ ବାସ କରନ୍ତି। ଏହି ସମ୍ପ୍ରଦାୟ ୧୮୪୦ ସାଲରେ ମୁକୁନ୍ଦ ଦାସ ନାମକ ଜଣେ ବୈଷ୍ଣବ ଆଚାର୍ଯ୍ୟଙ୍କ ଦ୍ୱାରା ଢ଼େଙ୍କାନାଳ ରାଜ୍ୟର କପିଳାସ ପର୍ବତ ନିକଟସ୍ଥ ଜରଣ୍ଡାଠାରେ ସଂସ୍ଥାପିତ ହେଲା। ଏହି ଧର୍ମାବଲମ୍ବୀମାନେ ରାଜା, ବ୍ରାହ୍ମଣ, ଭଣ୍ଡାରି ଓ ଧୋବାଛଡ଼ା ଅନ୍ୟ କାରିଗରମାନଙ୍କଠାରୁ ଖାଦ୍ୟ ଗ୍ରହଣ କରନ୍ତି। ୧୮୭୫ ସାଲରେ ମୁକୁନ୍ଦ ଦାସଙ୍କ ପରଲୋକପରେ ସୋନପୁରର କନ୍ଧବଂଶର ଭିମଭୋଇ ନାମକ ଜଣେ ଏକ ଗ୍ରନ୍ଥର ପରିଚାଳକ ଥିଲେ। ଓଡ଼ିଶା ଗଡ଼ଜାତ ସମୂହରେ ଏମାନଙ୍କର ଆଧିକ୍ୟ ଦେଖାଯାଏ। ଏବଂ ଅନେକ ସ୍ଥାନରେ ଏମାନଙ୍କ ମଠଅଛି। ଜରଣ୍ଡା ଏମାନଙ୍କ ମୁଖ୍ୟ ତୀର୍ଥ ସ୍ଥାନ।

*ଆଶା*

*ସମ୍ବଲପୁର ହିତୈଷିଣୀ ୧୯୧୪, ପୃଷ୍ଠା-୯୯*

## ଅଲେଖଧର୍ମ

ଓଡ଼ିଶା ପୂର୍ବେ ବୌଦ୍ଧଦେଶ ଥିଲା, କେଶରୀ ବଂଶୀୟ ରାଜାମାନଙ୍କର ପ୍ରାଧାନ୍ୟରେ ଓଡ଼ିଶାରୁ ବୌଦ୍ଧଧର୍ମ ଦବିବାକୁ ବସିଲା ଯାହା ଟିକିଏ ଥିଲା ତାହା ଗଙ୍ଗାବଂଶ ରାଜତ୍ୱବେଳେ କେବଳ ଜଗନ୍ନାଥମନ୍ଦିର ବେଢ଼ାଭିତରେ ରହିଗଲା। ଏହି ନବ ପ୍ରଚାରିତ ଅଲେଖଧର୍ମ

ବୌଦ୍ଧଧର୍ମର ରୂପାନ୍ତର। ବୌଦ୍ଧମାନେ ଶୂନ୍ୟବାଦୀ ହୋଇ ଶେଷକୁ ବ୍ରହ୍ମବାଦୀ ହୋଇଥିଲେ। ଅଲେଖଧର୍ମ ବ୍ରହ୍ମବାଦୀ, ଏକମାତ୍ର ବ୍ରହ୍ମଦର୍ଶନ, ବ୍ରହ୍ମନାମ ଭଜନ ଏହି ଧର୍ମର ଉଦ୍ଦେଶ୍ୟ।

ଅଲେଖଧର୍ମରେ ଜାତିଭେଦ ନାହିଁ, ବେଦ-ପୁରାଣୋକ୍ତ ଦେବ ଦେବୀର ପୂଜାନାହିଁ, ଅଗ୍ନି ପୂଜାନାହିଁ କେବଳ ମାତ୍ର ଈଶ୍ୱରୋପାସନା ଅଛି। ଅଲେଖ ସନ୍ନ୍ୟାସୀମାନେ ଆଜି ଅଲେଖଧର୍ମକୁ ଯେପରି ପ୍ରଚାର କରନ୍ତି ତହିଁରେ ଧର୍ମକିଛି ଭଲକରି ବୁଝାଯାଏ ନାହିଁ। ଶିକ୍ଷିତ ଲୋକମାନେ ଚେଷ୍ଟାକରି ଏହାକୁ ବୁଝି ନପାରିବାରୁ ଏହା ପ୍ରତି ଆସ୍ଥା ଦେଖାଇନାହାନ୍ତି। ଏହି ଅଲେଖ ସନ୍ନ୍ୟାସୀମାନଙ୍କର ସହିତ ବହୁତ କଥାବାର୍ତ୍ତା କରି ଅନେକ ବୁଝିପାରିଅଛୁଁ। ପ୍ରଫେଶର ଆର୍ତ୍ତବଲ୍ଲଭ ବାବୁ ଅଲେଖଧର୍ମ ସମ୍ବନ୍ଧୀୟ ଭୀମଭୋଇ ଗ୍ରନ୍ଥାବଳୀ ଛପାଇ ଏହି ଧର୍ମକୁ ସମସ୍ତଙ୍କ ଆଗରେ ଉପସ୍ଥାପିତ କରିଅଛନ୍ତି।

ମୋଗଲବନ୍ଦୀ ଓ ଗଡ଼ଜାତରେ ଅଲେଖବାବାଜୀ ମାନଙ୍କର ଅନେକ ଟୁଙ୍ଗୀ ଅଛି। ବାବାଜୀମାନେ କୌଣସିଗ୍ରାମରେ ରାତିକରୁ ବେଶି ରହିପାରିବେ ନାହିଁ, ପଇସା ଛୁଁଇବେ ନାହିଁ। ଥାଳି କଂସାରେ ଖାଇବେ ନାହିଁ, ଗୃହସ୍ଥ ଘରେ ରହିବେ ନାହିଁ, ନିତି ରାତିରେ ଧୂନି (ନିଆଁ) ଲଗାଇବେ, ଧୋବା, ଭଣ୍ଡାରି, ବ୍ରାହ୍ମଣ, ରାଜା ଗଣକ, ଗଣିକା ଘରେ ଖାଇବେ ନାହିଁ। ଜଗନ୍ନାଥ ପ୍ରଭୃତି କୌଣସି ଦେବତାପ୍ରସାଦ ଗ୍ରହଣ କରିବେ ନାହିଁ। ଏମାନେ ହିନ୍ଦୁ, ପୌତ୍ତଳିକ ଧର୍ମସହିତ ଅସହଯୋଗ କରିଅଛନ୍ତି ଏବଂ ଆଧୁନିକ ସଭ୍ୟତାର ବିରୁଦ୍ଧରେ ଯାଇ ଅଛନ୍ତି।

ଓଡ଼ିଶାରେ ଅଚ୍ୟୁତାନନ୍ଦ ପ୍ରଭୃତି ପଞ୍ଚଶାଖା କେବଳ ନାମଭଜନ କରିବାକୁ ପ୍ରଚାର କରିଗଲେ। ଆଜିକାଲି ଅନେକ ସତ୍‌ସଙ୍ଗ ବୈଠକ ଅଛି। ଏହି ବୈଠକ ମେଳା ଓ ଅଲେଖ ଧର୍ମପ୍ରଚାର ଉଭୟ ପୌତ୍ତଳିକତା ବିରୁଦ୍ଧରେ କାର୍ଯ୍ୟ କରି କୃତକାର୍ଯ୍ୟ ହୋଇନାହାନ୍ତି। ଅଲେଖ ଧର୍ମୀମାନେ ଟିକିଏ ଉଦାରହେଲେ ଏବଂ ଜାତିଭେଦ ପନ୍ଥା ଭୁଲି ପ୍ରକୃତ ନୀତି ଓ ମହିମା ମାନିଲେ ଏହି ଧର୍ମର ମହତ୍ତ୍ୱ ସମସ୍ତେ ଗ୍ରହଣ କରିପାରନ୍ତେ। ଅଲେଖ ସନ୍ନ୍ୟାସୀସଂଖ୍ୟା ଓଡ଼ିଶାରେ ୩୦୦। ଏହି ତିନିଶ ଲୋକ ଯଦି ଧର୍ମ ପ୍ରକୃତ ସତ୍ୟ କଥା ଏକେଶ୍ୱର ବାଦ ପ୍ରଚାରକରନ୍ତେ, ତେବେ ଏ ଦେଶର ବହୁତ ଉପକାର ହୁଅନ୍ତା। ସନ୍ନ୍ୟାସୀମାନେ ଧର୍ମପ୍ରଚାର ନ କରି କେବଳ ମନ୍ଦିରତୋଳା ଏବଂ ଅମଣିହା ଓ ପିକା ଲାଗିରେ ମାତିଛନ୍ତି। ଯେଉଁମାନେ ଧର୍ମ କରିଥିଲେ ସେମାନେ ନାମମାତ୍ର ଧର୍ମମାନି ଚୈତନ୍ୟ ଭକ୍ତି, ଜଗନ୍ନାଥ ଭକ୍ତି ଓ ଜାତିଆଣ ସଭାରେ ଯଥାବିଧି ଯୋଗ ଦେଉଛନ୍ତି।

ଅଲେଖ ଧର୍ମଗୁରୁ ମହିମାଗୋସାଇଁ ଶିଷ୍ୟମାନଙ୍କୁ 'ଗାଁରେ ରାତିଏ ଓ ଘରକେ ମୁଠିଏ' ଏହି ଦୃଢ଼ବ୍ରତ ଦେଇଗଲେ। ଶିଷ୍ୟମାନେ ଏହାପାଳି ତାଙ୍କର ମହତ୍‌ଉଦ୍ଦେଶ୍ୟ ପ୍ରଚାର କଲେ ଉପଯୁକ୍ତ ଗୁରୁସେବା ହୁଅନ୍ତା କିନ୍ତୁ ଯୋରନ୍ଦାରେ ସେମାନେ ଯେ ମନ୍ଦିର ଗଢ଼ା ଓ ଧୂନିଘର ତୋଳା କାମରେ ଲାଗିଛନ୍ତି ତହିଁର ଶେଷଫଳ କୁସଂସ୍କାର ପୂର୍ଣ୍ଣ ପୌତ୍ତଳିକ ମଠ ଛଡ଼ା ଆଉକ'ଣ ହୋଇପାରେ। ଅଲେଖଧର୍ମ ଭାଇମାନେ ଏ କଥା ବୁଝିପାରି ସୁଦ୍ଧା ସନ୍ନ୍ୟାସୀମାନଙ୍କ ଅଯଥା କାର୍ଯ୍ୟରେ କେବଳ ଉପରୋଧ କରି ବାଧା ଦେଉନାହାନ୍ତି। ପ୍ରକୃତ ସତ୍ୟରେ ଆସ୍ଥା ରଖି କାର୍ଯ୍ୟ ନ କଲେ କେବଳ

ତାହା ଉଜ୍ଜଳ ହେବନାହିଁ। ପୁରୀମନ୍ଦିର ହିନ୍ଦୁ, ଜଗତର ଇଷ୍ଟ, କିନ୍ତୁ ତାହାର ଉଦାରଭାବ ନ ଥିବାରୁ କ୍ରମଶଃ ପତନ ଘଟୁଅଛି। ଅଲେଖଧର୍ମୀ ଭାଇମାନେ ଓ ସନ୍ନ୍ୟାସୀମାନେ ଏ କଥା ଭଲକରି ଭାବି ଦେଖନ୍ତୁ। ଓଡ଼ିଶାରେ ଅଲେଖଧର୍ମୀ ସନ୍ନାସୀ ଶତକଡ଼ା ୧୦ ଜଣ ହେବ ଏମାନେ କିନ୍ତୁ ପୌତ୍ତଳିକ ହିନ୍ଦୁମାନଙ୍କପରି ସର୍ବ ପ୍ରକାର କ୍ରିୟାକାଣ୍ଡ କରୁଥିବାରୁ ଏହି ଧର୍ମ ଅତ୍ୟନ୍ତ ହ୍ରାସ ଲଭିଅଛି, ଏବଂ କିଏ ପୌତ୍ତଳିକ ହିନ୍ଦୁ ଏବଂ କିଏ ଅଲେଖ ଧର୍ମୀ ଏହା ସହଜେ ଜଣାପଡୁନାହିଁ। ଅଲେଖ ସନ୍ୟାସୀ ଏହି ଗୁରୁତର କଥାକୁ ଏହି ସମୟରେ ଛାଡ଼ନ୍ତୁ ନାହିଁ। ଢ଼େଙ୍କାନାଳ ରାଜା ବାହାଦୁର ସେମାନଙ୍କୁ ଧର୍ମର ନୀତି ପ୍ରଚାରିଥିଲେ। ସନ୍ନ୍ୟାସୀମାନେ ନିଜେ ଧର୍ମର ନୀତିଗୁଡ଼ିକ ଜାଣିନାହାନ୍ତି, କ'ଣ ଅବା ବୁଝାଇବେ। ଏଥିରେ ଯଦି ସେମାନଙ୍କର ଚୈତନ୍ୟ ଉଦୟ ନ ହୁଏ ତେବେ ଗୃହୀମାନେ କାହିଁକି ଅବା ଏହି ସନ୍ୟାସୀଦଳ ପ୍ରତି ଆସ୍ଥା ରଖିବେ। ସନ୍ୟାସୀମାନେ ଉତ୍ତମରୂପେ ସବୁ ଭାବିଚିନ୍ତି କାର୍ଯ୍ୟରେ ଅଗ୍ରସର ହୁଅନ୍ତୁ - ଆମ୍ଭମାନଙ୍କର ଏହି କାମନା।

ମହିମା ଧର୍ମାଣ୍ଡଳ-
ରାଣୀହାଟ
କଟକ

*ଉତ୍କଳ ଦୀପିକା-୧୯୨୬: ପୃଷ୍ଠା ସଂଖ୍ୟା-୨୫୧-୨୫୨*

## ନୂତନ ଘଟଣା

ମହିମା ଧର୍ମାବଲମ୍ବୀ ଲୋକମାନେ ସାଧାରଣରେ କୁମ୍ଭିପଟିଆନାମରେ ପରିଚିତ। ସେମାନେ ପିତୃଳାପୂଜା ପ୍ରଭୃତିହିନ୍ଦୁ ଧର୍ମୋକ୍ତ ବିଧି ମାନନ୍ତି ନାହିଁ। ଗଡ଼ଜାତର ନିମ୍ନ ଜାତିର ଲୋକମାନଙ୍କ ମଧ୍ୟରେ ମହିମା ଧର୍ମ୍ମର ଆଦର ଅଧିକ, ଉଚ୍ଚ ଜାତିର ଲୋକମାନଙ୍କ ମଧ୍ୟରେ ଏଧର୍ମ୍ମ ତେତେ ବେଶୀ ଆଦୃତ୍ତ ହୋଇଥିବାର ବୋଧ ହୁଏ ନାହିଁ। ବାମଣ୍ଡାର କେତେ ଗୁଡ଼ିଏ ନିମ୍ନ ଜାତିର ପ୍ରଜା ମହିମା ଧର୍ମ୍ମରେ ଦୀକ୍ଷିତ। ଏକିଲ୍ଲା 'ନଈକୂଳ' ନାମକ ଗ୍ରାମର ଜଣେପ୍ରଜା ଆପଣାର ଭାଇଠାରୁ ପୃଥକ ହୋଇ ପୋଷ୍ୟପୁତ୍ରଗ୍ରହଣକରି ପୈତୃକ ସମ୍ପତ୍ତିର ଅଂଶ ପାଇବା ଆଶାରେ ବାମଣ୍ଡାଧିପତିଙ୍କ ଛାମୁରେ ଆବେଦନ କରିଥିଲେ। ପ୍ରାର୍ଥୀ ମହିମା ଧର୍ମ୍ମାବଲମ୍ବୀ ଥିବାରୁ ମହାରାଜା ମହୋଦୟ ତାହାର ପ୍ରାର୍ଥନା ଅଗ୍ରାହ୍ୟ କରିଅଛନ୍ତି ହିନ୍ଦୁଶାସ୍ତ୍ରର ଆଦେଶ,

"ପିଣ୍ଡଂ ଦତ୍ୱା ଧନଂ ହରେତ୍।"

ପିଣ୍ଡ ପ୍ରଦାନ ନ କରିବା ଲୋକ ଧନାଧିକାରୀ ହେବେ ସ୍ୱଧର୍ମ୍ମ-ସ୍ୱସମାଜ ପରିତ୍ୟାଗ କରିବା ସଙ୍ଗେ୨ ହିନ୍ଦୁ ଶାସ୍ତ୍ରୋକ୍ତ ପିଣ୍ଡଦାନର ଅଧିକାରରୁ ବଞ୍ଚିତ ହୋଇ ଅଛି। ଯାର ପିଣ୍ଡଦାନର ଅଧିକାର ବିଲୁପ୍ତ ହୋଇଅଛି ସେ ପୈତୃକ ଧନ ସମ୍ପତ୍ତିର ଅଂଶ ପାଇ ନ ପାରେ। ମହାରାଜାଙ୍କର ଆଦେଶ ପ୍ରଚାରିତ ହେଲେ ମହିମା ଧର୍ମ୍ମ ଗ୍ରହଣ କରିବା ବିଷୟରେ ଅନେକ ଲୋକ ପଶ୍ଚାପୃଦ ହେବାର ସମ୍ଭାବନା। ଧନଠାରୁ ଧର୍ମ୍ମବଡ଼ ଏ ଜ୍ଞାନ ତ ଆଉ ସମସ୍ତଙ୍କର ନାହିଁ।

*ସମ୍ବଲପୁର ହିତୈଷିଣୀ ୧୮୯୭, ପୃଷ୍ଠା-୩୦*



ସଂକଳକ

ଇଂ ଗୋବର୍ଦ୍ଧନ ଦୋରାଙ୍କ (୨୬ ଜୁନ୍ ୧୯୩୯) ଜନ୍ମସ୍ଥାନ ନୟାଗଡ଼ ଜିଲ୍ଲାର ବଡ଼ଗୋରଡ଼ା ଗ୍ରାମରେ । ସେ ରାଜ୍ୟ ସରକାରଙ୍କ ପୂର୍ତ୍ତ ବିଭାଗରେ ନିର୍ବାହୀ ଯନ୍ତ୍ରୀ ରୂପେ କାର୍ଯ୍ୟ କରି ଅବସର ନେଇଛନ୍ତି।

ଊନବିଂଶ ଶତାବ୍ଦୀର ସପ୍ତମ ଦଶକରୁ ଆରମ୍ଭ କରି ବିଂଶ ଶତାବ୍ଦୀର ତୃତୀୟ ଦଶକ ପର୍ଯ୍ୟନ୍ତ ଓଡ଼ିଶାର ମନ୍ଦିରଗୁଡ଼ିକ ଉପରେ ପ୍ରକାଶ ପାଇଥିବା ସମ୍ବାଦ ଲୋକଲୋଚନକୁ ଆଣିବା ଏହି ସଂକଳନର ଲକ୍ଷ୍ୟ।

ସାରସ୍ୱତ କୃତୀ

1. The Thesaurus of Events and Dates of Orissa, 2003
2. Orissa: An Encyclopaedia of Events (Enlarged Edition of Thesaurus), 2008
୩. ଛୋଟ ମୋର ଗାଁଟି, ୨୦୦୯
୪. Orissa : An Encylopaedia of Personages, 2011
5. Place of Tourist Interest in Odisha : A Cultural Guide, 2014
୬. ଆମ ଗାଁ କଥା, ଆମ ସମୟର କଥା, ୨୦୧୮
୭. ଊନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଓଡ଼ିଶାରେ ଶିକ୍ଷାର ପ୍ରସାର, ୨୦୨୧
୮. ବ୍ୟକ୍ତି ଓ ବ୍ୟାପ୍ତି, ୨୦୨୧
୯. ଊନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଭ୍ରମଣ ବିବରଣ, ୨୦୨୧
୧୦. ଊନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଜିଲ୍ଲେ ନୟାଗଡ଼, ୨୦୨୧
୧୧. ଊନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ବ୍ୟକ୍ତିତ୍ୱ ଆବିଷ୍କାର, ୨୦୨୨
୧୨. ବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଉତ୍କଳ ସମ୍ମିଳନୀ ଓ ଅନ୍ୟାନ୍ୟ ପ୍ରସଙ୍ଗ, ୨୦୨୨

ଇଂ. ଦୋରା ସାରସ୍ୱତ କୃତୀ ପାଇଁ ୨୦୧୩ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ ୨୦୧୫ରେ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି।